# ଚନ୍ଦ୍ରମୋହନ ଗ୍ରନ୍ଥାବଳୀ

ପ୍ରଣେତା :

ଚନ୍ଦ୍ରମୋହନ ମହାରଣା

ପ୍ରକାଶକ :

ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା

ଶ୍ରୀ ଶରତ୍‌ଚନ୍ଦ୍ର ମହାରଣା

# ଚନ୍ଦ୍ରମୋହନ ଗ୍ରନ୍ଥାବଳୀ

ପ୍ରକାଶକ ଓ
ସ୍ୱତ୍ୱାଧିକାରୀ : ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା
ଶ୍ରୀ ଶରତ୍‌ଚନ୍ଦ୍ର ମହାରଣା
ପୋ: ଅ: ରେମୁଣା, ଜିଲ୍ଲା : ବାଲେଶ୍ୱର

ମୁଦ୍ରାକର : ଗ୍ରାମସେବକ ସମବାୟ ପ୍ରକାଶନ ଲିମିଟେଡ୍,
ବାଖରାବାଦ, କଟକ - ୭୫୩ ୦୦୨

ଦ୍ୱିତୀୟ ସଂସ୍କରଣ : ମହାବିଷୁବ ସଂକ୍ରାନ୍ତି, ୧୪୦୪ ସାଲ
ତା ୧୩ ଏପ୍ରିଲ, ୧୯୯୬ ମସିହା

ମୂଲ୍ୟ : ଟ ୮୦-୦୦ ( ଅଶୀ ଟଙ୍କା ) ମାତ୍ର

# CHANDRAMOHAN GRANTHAVALI

Publishers and
Proprietors : Smt. Annapoorna Maharana
Sri Sarat Chandra Maharana
P. O. Remuna, Dist. Balasore

Printer : Gramasevak Samabaya Prakashan Limited,
Bakharabad, Cuttack - 753 002

Second edition : 13 th. April, 1996

Price ; Rs. 80/—( eighty ) only

# ପ୍ରକାଶକଙ୍କର କଥା

ଶ୍ରୀ ଚନ୍ଦ୍ରମୋହନ ମହାରଣା ପ୍ରାୟ ଅଠର ବର୍ଷ ବୟସରେ କେତେକ କବିତା ରଚନା କରି 'ନବୋଦ୍ୟମ' ନାମରେ ୧୮୮୮ ମସିହାରେ ପ୍ରକାଶ କରିଥିଲେ । ତାହାର ପୁନର୍ମୁଦ୍ରଣ ହୋଇନାହିଁ । ସେ ୧୯୦୭ ମସିହା ପର୍ଯ୍ୟନ୍ତ କେତେକ ପତ୍ରିକାକୁ ତାଙ୍କର ଲେଖା ପଠାଉଥିଲେ । ଦୁର୍ଭାଗ୍ୟରୁ ମାଲିମକଦ୍ଦମାରେ ବ୍ୟସ୍ତ ହୋଇ, ପତ୍ନୀବିୟୋଗ ଓ ଅନ୍ୟାନ୍ୟ ଦୁଃଖ ହେତୁ ୧୯୧୫ ମସିହା ପରେ ସେ କୌଣସି ମୌଳିକ ସାହିତ୍ୟ ରଚନା କରିବା ଛାଡ଼ିଥିଲେ । କେତେକ ବନ୍ଧୁଙ୍କର ଅନୁରୋଧରେ ସେ ଓଡ଼ିଆ ବ୍ୟାକରଣ ସୋପାନ ଓ ରଚନା ଶିକ୍ଷା ନିମ୍ନ ଶ୍ରେଣୀର ଛାତ୍ରମାନଙ୍କ ପାଇଁ ଲେଖିଥିଲେ । ଇଂଲଣ୍ଡର ମ୍ୟାକ୍‌ମିଲନ୍ ଏଣ୍ଡ କୋମ୍ପାନୀଙ୍କର ଏଜେଣ୍ଟ କଟକରେ ତାଙ୍କୁ ସାକ୍ଷାତ କରି ଅନୁରୋଧ କରିବାରୁ ସେ 'କଥାବଳୀ' ନାମରେ ୪ ଭାଗରେ ପାଣ୍ଡୁଲିପି କୋମ୍ପାନୀଙ୍କୁ ପଠାଇଥିଲେ । ତାଙ୍କର ବନ୍ଧୁ ଓ ଅଧସ୍ତନ ଶିକ୍ଷକ ପଣ୍ଡିତ ବାସୁଦେବ ମିଶ୍ର ଏଥିପାଇଁ ପ୍ରଥମେ ତତ୍ତ୍ୱାବଧାନ ନେଇଥିଲେ । ପଦ୍ୟଗୁଡ଼ିକୁ ଛାଡ଼ି କୋମ୍ପାନୀ ହେଡ଼ ୪ ଭାଗକୁ ହିନ୍ଦୀ ଓ ତେଲୁଗୁ ଭାଷାରେ ଛାପିଥିଲେ ଏବଂ ପରେ ଟେକ୍‌ସଟ୍ ବୁକ୍ କମିଟି ଦ୍ୱାରା ଅନୁମୋଦିତ କରାଇ, ଦୁଇଭାଗରେ ଚଳାଇଲେ । ଶ୍ରୀ ଚନ୍ଦ୍ରମୋହନ ମହାରଣା ମାତ୍ର ଅଠଶତ ଟଙ୍କାରେ କୋମ୍ପାନୀଙ୍କୁ କପି-ରାଇଟ୍ ଦେଇଥିଲେ । ମ୍ୟାକ୍‌ମିଲନ୍ କୋମ୍ପାନୀଙ୍କୁ ଶରତ୍ ଚନ୍ଦ୍ର ମହାରଣା ତା ୧୧-୯-୧୯୬୩ରେ ପତ୍ର ଲେଖି ଅନୁମତି ମାଗିଥିଲେ । ଅତି ପୁରୁଣା କଥା ହୋଇ ଯାଇଥିବାରୁ ଆବଶ୍ୟକ ଉତ୍ତର ମିଳି ନ ଥିଲା ।

ଡକ୍ଟର ଅରବିନ୍ଦ ଗିରି ଚନ୍ଦ୍ରମୋହନ ମହାରଣାଙ୍କର ସଂକ୍ଷିପ୍ତ ଜୀବନୀ ଲେଖିଦେଇଥିବାରୁ ଆମ୍ଭେମାନେ ତାଙ୍କୁ ଗଭୀର କୃତଜ୍ଞତା ଜଣାଉଅଛୁଁ ।

ଏହି ଗ୍ରନ୍ଥାବଳୀର ପୃଷ୍ଠା ୮୦-୮୧ରେ ପ୍ରକାଶିତ 'ହନୁମାନର ସୀତାଙ୍କୁ ଠାବ କରିବା' ପଦ୍ୟଟି ଚନ୍ଦ୍ରମୋହନଙ୍କର ସ୍ୱରଚିତ ନୁହେଁ । ତାହା "ବଣି ରାମାୟଣ"ରୁ ନିଆଯାଇଥିଲା । ଏଥିପାଇଁ ମୂଳ ରଚକଙ୍କଠାରେ ଓ ମୂଳ ପ୍ରକାଶକଙ୍କ ଠାରେ ଗଭୀର କୃତଜ୍ଞତା ଜ୍ଞାପନ କରୁଅଛୁଁ ।

ଅଳ୍ପ ବୟସର ବାଳକବାଳିକାମାନେ ଅପେକ୍ଷାକୃତ କଠିନ ପଦଗୁଡ଼ିକର ଅର୍ଥ ସହଜରେ ଜାଣିପାରିବା ଉଦ୍ଦେଶ୍ୟରେ ବହିର ପ୍ରଥମାଂଶରେ ଥିବା କେତେକ ପଦର ଅର୍ଥ ୪୬୦-୪୭୨ ପୃଷ୍ଠାରେ ଦିଆଯାଇଛି ।

ଚନ୍ଦ୍ରମୋହନ ମହାରଣାଙ୍କର ଉତ୍କଳପ୍ରେମୀ ବନ୍ଧୁମାନଙ୍କୁ, ଅନ୍ୟ ସାହାଯ୍ୟକାରୀମାନଙ୍କୁ ଓ ଗ୍ରାମସେବକ ସମବାୟ ପ୍ରକାଶନ ଲିମିଟେଡ୍‌କୁ ଆମ୍ଭେମାନେ ଧନ୍ୟବାଦ ଅର୍ପଣ କରୁଅଛୁଁ ।

ଅନ୍ନପୂର୍ଣ୍ଣା ମହାରଣା                    ଶରତ୍ ଚନ୍ଦ୍ର ମହାରଣା

ମହାବିଷୁବ ସଂକ୍ରାନ୍ତି, ତା ୧୩ ଏପ୍ରିଲ ୧୯୯୬ ମସିହା

ପୋ:ଅ-ଚରମ୍ପା ଜିଲ୍ଲା-ବାଲେଶ୍ୱର

# ଚନ୍ଦ୍ରମୋହନ ଗ୍ରନ୍ଥାବଳୀ

## ସୂଚୀପତ୍ର

## ପ୍ରବନ୍ଧ-ବିଭାଗ

# ସ୍ୱପ୍ନ-ବାସ୍ତବତାର ଅନ୍ତରାଳରେ

ରାଧାନାଥ-ଯୁଗର ବିଶିଷ୍ଟ ଶିକ୍ଷାବିତ୍ ସୁସାହିତ୍ୟିକ ଚନ୍ଦ୍ରମୋହନ ମହାରଣାଙ୍କ ମୃତ୍ୟୁ (୪ ଏପ୍ରିଲ, ୧୯୨୯ ମସିହା)ର ୬୧ ବର୍ଷ ପରେ ତାଙ୍କର ପୂର୍ଣ୍ଣାଙ୍ଗ ଗ୍ରନ୍ଥାବଳୀ ପ୍ରକାଶ ପାଇବା ଓଡ଼ିଶାବାସୀଙ୍କ ପାଇଁ ଅତି ଗୌରବର ବିଷୟ । ମୋର କଲେଜ-ଜୀବନରେ ଚନ୍ଦ୍ରମୋହନଙ୍କ କନିଷ୍ଠା କନ୍ୟା ପଦ୍ମା ଓ ଜାମାତା ବିପିନବିହାରୀ ରଣାଙ୍କ ଜ୍ୟେଷ୍ଠପୁତ୍ର ଶ୍ରୀମାନ୍ ଭୈରବଚନ୍ଦ୍ର ରଣାଙ୍କ ସମ୍ପର୍କରେ ମୁଁ ଆସିଥିଲି । ଏହି ସମ୍ପର୍କ ପରେ ମୋତେ ଚନ୍ଦ୍ରମୋହନଙ୍କ ସାହିତ୍ୟକୃତି ସମ୍ବନ୍ଧରେ ଗବେଷଣା ପାଇଁ ପ୍ରେରଣା ଯୋଗାଇଥିଲା । ଏଥିପାଇଁ ଚନ୍ଦ୍ରମୋହନଙ୍କ ରଚିତ ପାଠ୍ୟପୁସ୍ତକ, ବିବିଧ ରଚନାବଳୀ ଓ ଫଟୋ ଚିତ୍ରାଦି କେତେକ ବ୍ୟକ୍ତି ଓ ଓଡ଼ିଶାର ବିଭିନ୍ନ ପ୍ରାଚୀନ ପତ୍ର-ପତ୍ରିକାଦିରୁ ସଂଗ୍ରହ କରିଥିଲି ।

ଉତ୍କଳ ବିଶ୍ୱବିଦ୍ୟାଳୟରୁ ମୋର ପିଏଚ୍.ଡି. ଲାଭ ପରେ ସଂଗୃହୀତ ରଚନା-ବଳୀକୁ ଏକତ୍ର କରି ଗ୍ରନ୍ଥାବଳୀ ଆକାରରେ ପ୍ରକାଶ କରିବାର ବାସନା ମନରେ ଜାଗ୍ରତ ହେଲା । ଏଥିପାଇଁ ଆଠବର୍ଷ କାଳ ମୁଁ ଓ ଚନ୍ଦ୍ରମୋହନ-ସାହିତ୍ୟପ୍ରେମୀ କେତେକ ପ୍ରକାଶକ ଓ ପ୍ରକାଶନ-ସଂସ୍ଥାଙ୍କୁ ଅନୁରୋଧ କରି ନିରାଶ ହେଲୁଁ । ପରିଶେଷରେ ୬ ଚନ୍ଦ୍ରମୋହନଙ୍କ ପୌତ୍ର ଶ୍ରୀ ଜ୍ଞାନଦେବ ମହାରଣା ପ୍ରସ୍ତାବିତ ଗ୍ରନ୍ଥାବଳୀ ଛପା ହେବା ଦିଗରେ ଆମର ସମସ୍ତ ସଚ୍ଚେଷ୍ଟ ଉଦ୍ୟମ ବିଫଳ ହେବା କଥା ଶୁଣିଲା ମାତ୍ରେ ସେ ନିଜ ଖର୍ଚ୍ଚରେ ଏହି କାର୍ଯ୍ୟ ସମ୍ପାଦନ କରିବାକୁ ଆଗ୍ରହ ପ୍ରକାଶ କଲେ ।

ବିଗତ ବର୍ଷରେ ଯେଉଁ ଚନ୍ଦ୍ରମୋହନ ଦିନେ ଅତୀତର ବିସ୍ମୃତି-ଗର୍ଭରେ ହଜିଯାଇଥିଲେ, ଆଜି ସେ ଜଣେ ବହୁ-ଚର୍ଚ୍ଚିତ ପ୍ରତିଭା । ସେ କେବଳ ସତ୍ୟବାଦୀ ଜାତୀୟ ଚେତନାର ପ୍ରେରଣା-ଦାତା ଓ ନୂତନ ପ୍ରକାଶ ଶୈଳୀ-ସ୍ରଷ୍ଟା ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ, ଲବ୍ଧ-ପ୍ରତିଷ୍ଠ ସାହିତ୍ୟିକ କାଳିନ୍ଦୀ-ଚରଣ ପାଣିଗ୍ରାହୀ, ହରିଶ୍ଚନ୍ଦ୍ର ବଡ଼ାଲ, ଅଧ୍ୟାପକ ଶ୍ରୀଧର ଦାସ, ଅନନ୍ତପ୍ରସାଦ ପଣ୍ଡା, ପଣ୍ଡିତ କୁଳମଣି ଦାଶ, ପଣ୍ଡିତ ବିନାୟକ ମିଶ୍ର, ପଣ୍ଡିତ ଜଗନ୍ନାଥ ରଥ, ପ୍ରାବନ୍ଧିକ ଗୋଲକଚନ୍ଦ୍ର ମହାପାତ୍ର, ବିଶିଷ୍ଟ ସ୍ୱାଧୀନତା-ସଂଗ୍ରାମୀ ଭୈରବଚନ୍ଦ୍ର ମହାପାତ୍ର, ନୀଳାମ୍ବର ଦାସ ପ୍ରଭୃତିଙ୍କ ଶିକ୍ଷାଗୁରୁ ନ ଥିଲେ, ପରନ୍ତୁ ସେ ଥିଲେ ଜଣେ ନୀତିବାନ୍ ଶିକ୍ଷକ ଏବଂ ଭାଷା, ସାହିତ୍ୟ, ସଂସ୍କୃତିପ୍ରେମୀ ଭାରତୀୟ । ଉତ୍କଳୀୟ ପ୍ରତିଭାବାନ୍ କିଶୋର-କିଶୋରୀମାନେ କିପରି ଅଧ୍ୟବସାୟ ବଳରେ ନିଖିଳ ଭାରତ ସ୍ତରରେ ଓ ପୃଥିବୀରେ ପ୍ରତିଷ୍ଠା ଲାଭ କରିବେ, ସେଥିପାଇଁ ଚନ୍ଦ୍ରମୋହନ ସର୍ବଦା ଆଶା ପୋଷଣ କରୁଥିଲେ ଏବଂ ଯଥା-ସମ୍ଭବ ପ୍ରେରଣା ଦେଉଥିଲେ । ଯେଉଁମାନେ ତାଙ୍କ ସଂସର୍ଗରେ ଆସି ନ ଥିଲେ, ସେମାନେ ତାଙ୍କର ପ୍ରତିଭା ଓ ଦକ୍ଷତାକୁ ଜାଣି ନ ଥିଲେ ।

ପ୍ରକୃତରେ ଚନ୍ଦ୍ରମୋହନ ଜୀବନ୍ତ ପ୍ରଖ୍ୟାତ ଭାବରେ ଏବେ ବି ବଞ୍ଚି ରହିଛନ୍ତି ତାଙ୍କର ଛାତ୍ରମାନଙ୍କ ହୃଦୟ ମଧ୍ୟରେ । ଦୁଃଖର ବିଷୟ ଓଡ଼ିଶାର ସେଭଳି କୃତୀ ସନ୍ତାନମାନଙ୍କ ମଧ୍ୟରୁ ଅନେକେ ଆଜି ଆମଠାରୁ ବିଦାୟ ନେଲେଣି ।

ଚନ୍ଦ୍ରମୋହନଙ୍କ ରଚନାବଳୀ ଲୋକଲୋଚନର ଅନ୍ତରାଳରେ ରହିଯିବା ଫଳରେ ତାଙ୍କ ପରବର୍ତ୍ତୀ ଆଲୋଚକ ଓ ଗବେଷକମାନଙ୍କ ପାଇଁ ଅଜ୍ଞାତ ବିଷୟ ହୋଇଥିଲେ । ଆଜି ତାଙ୍କର ଗ୍ରନ୍ଥାବଳୀ ପ୍ରକାଶିତ ହେଲେ ଗୁରୁ, ଶିକ୍ଷକ, ଶିକ୍ଷା-ପ୍ରେମୀ, ସାହିତ୍ୟିକ, ଗବେଷକ, ଆଲୋଚକ ତାଙ୍କୁ ଜାଣିବା ସହଜ ହେବ । ତା ୨୪।୧୨।୧୯୧୧ ମସିହାରେ ଘରପୋଡ଼ିରେ ଯଦି ତାଙ୍କର ୩୦।୩୫ ଖଣ୍ଡ ପାଣ୍ଡୁଲିପି ଭସ୍ମୀଭୂତ ହୋଇ ଯାଇ ନ ଥାନ୍ତା, ତା'ହେଲେ ପ୍ରକାଶିତ ଗ୍ରନ୍ଥାବଳୀର ପୃଷ୍ଠା-ସଂଖ୍ୟା ଆହୁରି ପାଞ୍ଚଗୁଣ ଅଧିକ ହୋଇଥାନ୍ତା ଏବଂ ଲୋକେ ତାଙ୍କ ବହୁମୁଖୀ ସାରସ୍ୱତ ପ୍ରତିଭା ଜାଣିବା ସମ୍ଭବ ହୁଅନ୍ତା । ଏହା ଉପରାନ୍ତ ପ୍ରାୟ ଦେଢ଼ଶହ ପୃଷ୍ଠା-ବିଶିଷ୍ଟ ତାଙ୍କର ପୂର୍ଣ୍ଣାଙ୍ଗ ଜୀବନୀଟି ଏବଂ ତିନିଶହ-ପରିମିତ ପୃଷ୍ଠା-ବିଶିଷ୍ଟ 'ସାହିତ୍ୟିକ ଚନ୍ଦ୍ରମୋହନ ମହାରଣା' ଶୀର୍ଷକ ଗବେଷଣାତ୍ମକ ସନ୍ଦର୍ଭଟି ଶୀଘ୍ର ପ୍ରକାଶ ପାଇ ପାରିଲେ ତାଙ୍କର ସାହିତ୍ୟକୃତି ଓ ବ୍ୟକ୍ତିତ୍ୱରେ ଅଧିକ ଆଲୋକପାତ ହେବ ।

ତତ୍କାଳୀନ ସମ୍ବାଦିକ, ଉତ୍କଳ-ପ୍ରଭା, ପ୍ରଜାବନ୍ଧୁ, ନବସମ୍ବାଦ, ସମ୍ବଲପୁର ହିତୈଷିଣୀ, ଉତ୍କଳ-ସାହିତ୍ୟ, ବକୁଳ ଆଦିରେ ପ୍ରକାଶିତ ତାଙ୍କର ଅନ୍ୟ କେତେକ ରଚନା ଏବଂ ସାହିତ୍ୟ-ପ୍ରେମୀମାନଙ୍କ ସହିତ ବିନିମୟ ହୋଇଥିବା ଚିଠିପତ୍ରାଦି ଆଜି ସମ୍ପୂର୍ଣ୍ଣ ଦୁଷ୍ପ୍ରାପ୍ୟ । ସେ ଅତ୍ୟନ୍ତ 'ସଂଗୋପନ-ଶୀଳ' ଥିବାରୁ ଓ ସରକାରୀ ଚାକିରି କରିଥିବାରୁ ଛଦ୍ମ ନାମରେ ଯେଉଁ କେତେକ ରଚନା କତିପୟ ପତ୍ରପତ୍ରିକାରେ ପ୍ରକାଶ କରିଥିଲେ, ସେସବୁ ରଚନାକୁ ପାଇବା ଏବଂ ସେଥିରୁ ଏବେ ତାଙ୍କୁ ପ୍ରକୃତ ଲେଖକ ବୋଲି ଜାଣିବା ମଧ୍ୟ ଦୁରୂହ ଅଟେ ।

ଗ୍ରନ୍ଥାବଳୀ ପ୍ରକାଶନର ଶୁଭକାଳରେ ଯେଉଁସବୁ ଅନୁଷ୍ଠାନ ଓ ପରିଚିତ ବା ଅପରିଚିତ ବ୍ୟକ୍ତି, ଚନ୍ଦ୍ରମୋହନଙ୍କ ଛାତ୍ରମାନେ ଏବଂ ତାଙ୍କ ଆତ୍ମୀୟ ସ୍ୱଜନ ନାନାରୂପେ ସାହାଯ୍ୟ କରିଛନ୍ତି, ମୁଁ ସେମାନଙ୍କୁ ଅନ୍ତରର ସାଧୁବାଦ ଜଣାଉଛି ।

ଏହି ଗ୍ରନ୍ଥାବଳୀ ଓଡ଼ିଶାର ଅଗଣିତ ସାହିତ୍ୟପ୍ରେମୀ ଓ ଶିକ୍ଷାପ୍ରେମୀ ପାଠକଙ୍କ ମହଲରେ ବହୁଳ ଭାବରେ ପ୍ରସାର ହୋଇପାରିଲେ ବହୁ ଦିନର ମୋର ଇପ୍‌ସିତ ସ୍ୱପ୍ନ ବାସ୍ତବରେ ପରିଣତ ହେବ । ଇତି ।

ଡକ୍ଟର ଅରବିନ୍ଦ ଗିରି
ଅଧ୍ୟାପକ, ଓଡ଼ିଆଭାଷା ସାହିତ୍ୟ ବିଭାଗ
ଗୃନ୍ଦବାଲି କଲେଜ, ଗୃନ୍ଦବାଲି ।

# ଚନ୍ଦ୍ରମୋହନ ମହାରଣାଙ୍କର ସଂକ୍ଷିପ୍ତ ଜୀବନୀ

ଶ୍ରୀ ଶ୍ରୀ କ୍ଷୀରଚୋରା ଗୋପୀନାଥଙ୍କ ପବିତ୍ର ପୀଠ ପାଇଁ ରେମୁଣା ଉତ୍କଳରେ ପ୍ରସିଦ୍ଧ । ଏହି ପୀଠର ନିକଟବର୍ତ୍ତୀ ପୁରୁଷୋତ୍ତମପୁର ଗ୍ରାମରେ ଚନ୍ଦ୍ରମୋହନ ମହାରଣା ଅନାଦି ମହାରଣାଙ୍କର ପ୍ରଥମା ପତ୍ନୀ ଦେବକୀଙ୍କ ଗର୍ଭରୁ ଦ୍ୱିତୀୟ ସନ୍ତାନରୂପେ ସୋମବାର ମୀନ ୧୦ ଦିନ, ୧୨୭୭ ସାଲ / ଚୈତ୍ର ପଞ୍ଚମୀ, ୧୭୯୧ ଶକାବ୍ଦରେ ଭୂମିଷ୍ଠ ହୋଇଥିଲେ । ଇଂରାଜୀ ତାରିଖ ଅନୁସାରେ ଏହା ପ୍ରାୟ ୬ ଏପ୍ରିଲ, ୧୮୭୦ ମସିହା ହେବ । ସେ ବେଶି ଦିନ ମାତାପିତାଙ୍କର ସ୍ନେହ-ମମତା ପାଇ ନ ଥିଲେ । ଛଅ ବର୍ଷ ବୟସରେ ମାତାଙ୍କୁ ଓ ନଅ ବର୍ଷ ବେଳେ ପିତାଙ୍କୁ ସେ ହରାଇଥିଲେ । ଅନାଦି ବର୍ଣ୍ଣରେ ବୈଶ୍ୟ ଥିଲେ । ଜାତି କମିଲା ବା ସୁନାରି । ଅଷ୍ଟଲୋହ କର୍ମକାର ନାମରେ ବଙ୍ଗଳା ଓ ବିହାରରେ ଏ ଜାତି କଥିତ । ଅନାଦି କ୍ଷଣକୋପୀ ଥିଲେ । ସେ ଅଳଙ୍କାର ଗଢ଼ିବା ବେଳେ ପାଖରେ ଶିଶୁ ଚନ୍ଦ୍ରମୋହନ ବସି ପଢ଼ୁଥିଲେ । ତାଙ୍କୁ ଅନ୍ୟମନସ୍କ ଦେଖି ପିତା ଗରମ ସଣ୍ଡୁଆଶିରେ ଖେଞ୍ଚି ଦେଲେ । ଫଳରେ ପିଲାର କପାଳରେ ଚେଙ୍କା ଲାଗିଗଲା ଓ ଚିହ୍ନ ରହିଗଲା ।

ବାଲେଶ୍ୱରର ଜମିଦାର ରାଜା ବୈକୁଣ୍ଠନାଥ ଦେ, ଫକୀରମୋହନ ସେନାପତି (ବ୍ୟାସକବି) ଓ ରାଧାନାଥ ରାୟ ରେମୁଣାକୁ ଯାଇ ମିଡ଼ିଲ୍ ଭର୍ଣ୍ଣାକ୍ୟୁଲର୍ ସ୍କୁଲ ୧୮୭୬ ~~ବା ୧୮୭୮~~ ରେ ସ୍ଥାପନ କରିଥିଲେ । ଚନ୍ଦ୍ରମୋହନ ସେହି ବିଦ୍ୟାଳୟରୁ ୧୮୮୦ ମସିହାରେ ଉତ୍ତୀର୍ଣ୍ଣ ହୋଇ ବୃତ୍ତି ପାଇଥିଲେ ।

ଅନାଦିଙ୍କର ପିତା ଗୁରୁପ୍ରସାଦ ପ୍ରଥମା ପତ୍ନୀ ସୁଶୀଳାଙ୍କର ଅକାଳ ମୃତ୍ୟୁ ପରେ ଅହଲ୍ୟାଙ୍କୁ ବିବାହ କରିଥିଲେ । ଏହି ପିତାମହୀ ଅହଲ୍ୟା ଚନ୍ଦ୍ରମୋହନଙ୍କୁ ଉଚ୍ଚ ଶିକ୍ଷା ପାଇବାରେ ଉତ୍ସାହ ଦେଇଥିଲେ । ରେମୁଣାରୁ ବାଲେଶ୍ୱରକୁ ସଡ଼କ ନ ଥିଲା । ବିଲବାଟେ ବୁଦା, ଗୋହିରି, ନାଳ ପାରି ହୋଇ ଲୋକେ ଯାଆସ କରୁଥିଲେ । ରାତିରେ ହେଟା ଓ ଭାଲୁର ଉପଦ୍ରବ ଥିଲା । ଚନ୍ଦ୍ରମୋହନ ବାଲେଶ୍ୱର ଜିଲ୍ଲା ସ୍କୁଲରେ ପଢ଼ିଲେ ଏବଂ ଘରୁ ଯାଆସ କଲେ । ସକାଳ-ସ୍କୁଲବେଳେ ଅହଲ୍ୟା ଦେଇ ଫେରିବା ହେବା ପର୍ଯ୍ୟନ୍ତ ଚନ୍ଦ୍ରମୋହନଙ୍କୁ ବାଟେଇ ଦେବାକୁ ଆସୁଥିଲେ । ଚନ୍ଦ୍ରମୋହନଙ୍କର ବଡ଼ ଭଉଣୀ ସୌଦାମିନୀ ବାଲେଶ୍ୱର ସହରରେ ବାହା ହୋଇଥିଲେ । ଏଣ୍ଟ୍ରାନ୍ସ ପରୀକ୍ଷା ଦେବା ବର୍ଷଟି ସେ ସାନ ଭାଇକୁ ପାଖରେ ରଖାଇ ଏହି ଯିବାଆସିବା ୧୪ ମାଇଲର ପଥଶ୍ରମରୁ ରକ୍ଷା କଲେ । ରାତିରେ ଅଧିକା ଆଲୁଅର ଅଭାବରୁ ଚନ୍ଦ୍ରମୋହନ ଷ୍ଟ୍ରୀଟ୍ କଡ଼ରେ ଥିବା ମ୍ୟୁନିସିପାଲିଟିର ବତୀତଳେ ଠିଆ ହୋଇ ପଢ଼ୁଥିଲେ । ସେତେବେଳେ କଲିକତା ବିଶ୍ୱବିଦ୍ୟାଳୟ ବଙ୍ଗଳା, ଆସାମ, ବିହାର ଏବଂ ଓଡ଼ିଶାର ଏଣ୍ଟ୍ରାନ୍ସ ପରୀକ୍ଷା କରୁଥିଲେ ।

ଚନ୍ଦ୍ରମୋହନ ସେହି ପରୀକ୍ଷାରେ ୧୮୮୫ରେ A grade (ପ୍ରଥମ ଶ୍ରେଣୀ) ରେ ଉତ୍ତୀର୍ଣ୍ଣ ହେଲେ ଓ ୪ର୍ଥ ସ୍ଥାନ ପାଇ ମାସିକ ଟ ୧୫-୦୦ ବୃତ୍ତି ଲାଭ କଲେ। ମାତ୍ର ବୃତ୍ତି ପାଇବାର ଖବର ସେ ୧ ମାସ ପରେ ଜାଣିଲେ ଏବଂ ସେହି ହେତୁ ଏକ ମାସ ପରେ କଟକରେ ରେଭେନ୍‌ସା କଲେଜରେ ନାମ ଲେଖାଇଲେ। ୧୮୮୭ରେ ସେ ଉକ୍ତ କଲେଜରୁ F.A. ପରୀକ୍ଷାରେ A gradeରେ ଏକ ମାତ୍ର ଉତ୍ତୀର୍ଣ୍ଣ ଛାତ୍ର ଥିଲେ ।

କଲେଜରେ ପଢ଼ିବାବେଳେ ତାଙ୍କର ବସନ୍ତ, ମଲ୍ଲିକା, ଶଯ୍ୟାସ୍ଥ ଆଶାମୁଗ୍ଧ ବ୍ୟକ୍ତି ଆଦି କବିତା ମଧୁସୂଦନ ରାଓଙ୍କ ସମ୍ପାଦିତ 'ଉତ୍କଳ ପରିଚାରକ' ପତ୍ରିକାରେ ପ୍ରକାଶିତ ହୋଇଥିଲା। ଚନ୍ଦ୍ରମୋହନ ସେଗୁଡ଼ିକୁ 'ନବୋଦ୍ୟମ' ନାମରେ ୧୮୮୮ ମସିହାରେ ପ୍ରକାଶିତ କରାଇଥିଲେ । ସେଗୁଡ଼ିକ ପ୍ରକୃତି-ବର୍ଣ୍ଣନା ଓ କରୁଣାରସରେ ରସାଶ୍ରିତ। ସରଳ ଭାଷା-ବିନ୍ୟାସ, ସହଜ ଭାବପ୍ରକାଶ, ବର୍ଣ୍ଣନା-ନୈପୁଣ୍ୟ ଓ ଅଳଙ୍କାର-ପରିପାଟୀ 'ନବୋଦ୍ୟମ'କୁ ଅଭିନବ କାବ୍ୟକୃତିର ଗୌରବ ପ୍ରଦାନ କରିଥିଲା ଏବଂ ଚନ୍ଦ୍ରମୋହନ ସାହିତ୍ୟିକମାନଙ୍କଠାରେ ପରିଚିତ ହେଲେ ।

F.A. ପାସ୍ ପରେ ସେ ରୁଡ଼କୀରେ ଇଞ୍ଜିନିୟରିଙ୍ଗ୍ ପଢ଼ିବାକୁ ମନ କରିଥିଲେ ଓ ସେହି କଲେଜର ଏଣ୍ଟ୍ରାନ୍‌ସ ପରୀକ୍ଷାପାଇଁ ଉର୍ଦ୍ଦୁ ଭାଷା ଭଲରୂପେ ଶିଖିଥିଲେ। ମାତ୍ର ଅର୍ଥାଭାବରୁ ସେ ଆଶା ଛାଡ଼ି ରେଭେନ୍‌ସା କଲେଜରେ ବି. ଏ. ପଢ଼ିଲେ। ସାନ ଭଉଣୀ ବିନୋଦିନୀର ବିବାହ ଓ ଘରର ଆର୍ଥିକ ଅଭାବ ଯୋଗୁଁ ସେ ବର୍ଷଟିଏ ପଢ଼ା ବନ୍ଦ କରିବାକୁ ବାଧ୍ୟ ହୋଇଥିଲେ। ରେଭେନ୍‌ସା କଲେଜରୁ ୧୮୯୦ରେ ସେ 'ଏ' ଗ୍ରେଡ୍‌ରେ ଏକ ମାତ୍ର କୃତୀ ଛାତ୍ରଭାବରେ ବି.ଏ. ପାସ କଲେ।

ଉତ୍କଳ ଗୌରବ ମଧୁସୂଦନ ଦାସ 'ଓଡ଼ିଶା ଗ୍ରାଜୁଏଟ୍‌ସ ଏଣ୍ଡ ଅଣ୍ଡର-ଗ୍ରାଜୁଏଟ୍‌ସ ଆସୋସିଏସନ'ର ଆଦିକର୍ତ୍ତା ଓ ସଭାପତି ଥିଲେ। ବୈକୁଣ୍ଠନାଥ ଦତ୍ତ, ରାମଶଙ୍କର ରାୟ, ଚନ୍ଦ୍ରମୋହନ ମହାରଣା ଓ ଜମାଇଁଚରଣ ମିତ୍ର ସଦସ୍ୟ ଥିଲେ। ଗୋକୁଳାନନ୍ଦ ଚୌଧୁରୀ ଉପସଭାପତି ଥିଲେ। (ଉତ୍କଳ-ଦୀପିକା, ତା ୧୭-୩-୧୮୮୮) ମଧୁସୂଦନ ଓଡ଼ିଆ ଶିକ୍ଷିତ ଯୁବକମାନଙ୍କୁ ଚାକିରିପାଇଁ ଲାଳାୟିତ ନ ହୋଇ, କୃଷି, ବ୍ୟବସାୟ, ବାଣିଜ୍ୟ ଦ୍ୱାରା ସ୍ୱାବଲମ୍ବୀ ହେବା ଦିଗରେ ପ୍ରେରଣା ଦେଉଥିଲେ। ଚନ୍ଦ୍ରମୋହନ ମାତ୍ର ୧୮ ବର୍ଷ ବୟସରୁ ମଧୁବାବୁ ଓ ଗୋକୁଳାନନ୍ଦ ବାବୁଙ୍କ ସହ ଏହିରୂପେ ପରିଚିତ ହୋଇଥିଲେ ।

ଚନ୍ଦ୍ରମୋହନ ବି. ଏ. ପାସ୍ ପରେ ବେଙ୍ଗଲ ସିଭିଲ୍ ସର୍ଭିସ୍ ପରୀକ୍ଷା ଦେବାକୁ ଇଚ୍ଛା କରୁଥିଲେ। ରାଧାନାଥ ରାୟ ସେତେବେଳେ ଓଡ଼ିଶା ବିଭାଗର ଜଏଣ୍ଟ ଇନ୍‌ସପେକ୍ଟର ଅଫ୍ ସ୍କୁଲସ୍ ଥିଲେ। ସେ ଚନ୍ଦ୍ରମୋହନଙ୍କୁ ଡେପୁଟି କାମ ପାଇଁ

ମନ ନ ବଳାଇ ଶିକ୍ଷାବିଭାଗରେ ରହିବାକୁ ସୂଚନା ଦେଲେ ଏବଂ ବାଲେଶ୍ୱର ଜିଲା ସ୍କୁଲର ସେକେଣ୍ଡ ମାଷ୍ଟରରୂପେ ନିଯୁକ୍ତ ଦେଲେ । ତା ୨୫-୭-୧୮୯୦ରେ ଚନ୍ଦ୍ରମୋହନ ଚାକିରୀରେ ଯୋଗ ଦେଲେ । ଏହି ସମୟରେ ସେ ରେମୁଣା ଅନ୍ତର୍ଗତ ଖୋସାଲଗଞ୍ଜବାସୀ ବୈଦ୍ୟନାଥ ମହାରଣା ଓ ମାଣିକ୍ୟ ଦେଇଙ୍କର କନ୍ୟା ରାସମଣି-ଙ୍କର ପାଣିଗ୍ରହଣ କଲେ । ଭକ୍ତକବି ମଧୁସୂଦନ ରାଓ କଟକ ନର୍ମାଲ ସ୍କୁଲର ହେଡ଼-ମାଷ୍ଟର ଥାନ୍ତି । ସେପ୍ଟେମ୍ବର ୧୮୯୨ରେ ଚନ୍ଦ୍ରମୋହନ ବାଲେଶ୍ୱରରୁ ଉକ୍ତ ସ୍କୁଲକୁ ସେକେଣ୍ଡ ମାଷ୍ଟରଭାବରେ ବଦଳି ହୋଇ ଆସିଲେ । ମଣିକାଞ୍ଚନର ସଂଯୋଗ ହେଲା । ପୂର୍ବର ଅବଧାନିଆ ପାଠ ପରିବର୍ତ୍ତରେ ସାହିତ୍ୟ, ଜ୍ୟାମିତି, ପାଟିଗଣିତ, ଭୂଗୋଳ ଇତିହାସ ଆଧୁନିକ ପଦ୍ଧତିରେ ପଢ଼ାଗଲା । ଚନ୍ଦ୍ରମୋହନଙ୍କର ଜ୍ଞାନ, ଶିକ୍ଷାଦାନ-ପଦ୍ଧତି ଓ କଠୋର ଶୃଙ୍ଖଳା-ଜ୍ଞାନ, ଚରିତ୍ରବତ୍ତା, ବିଶ୍ୱାସଭାଜନତା ଦ୍ୱାରା ମଧୁସୂଦନ ଖୁସି ହେଲେ । ଜୁନ୍ ୧୮୯୬ରେ ଚନ୍ଦ୍ରମୋହନ ଆଡିସନାଲ ମାଷ୍ଟର ପଦକୁ ଉନ୍ନତି ପାଇଲେ । ହେଡ଼ମାଷ୍ଟର ସାଲତମାମି କର୍ତ୍ତବ୍ୟରେ କଲିକତାରେ ଥିବାବେଳେ ଚନ୍ଦ୍ରମୋହନ ଅଫିସିଏଟ୍ କରିଥିଲେ ।

ଶିକ୍ଷାବିଭାଗରେ ୧୮୯୦ରୁ ୧୮୯୮ ପର୍ଯ୍ୟନ୍ତ ଦୀର୍ଘ ଆଠ ବର୍ଷ ରହି ବେତନ ନ ବଢ଼ିବାରୁ ସେ ବେଙ୍ଗଲ ସିଭିଲ୍ ସର୍ଭିସ୍ ପରୀକ୍ଷା ଦେବାକୁ ପୁଣି ଭାବିଲେ ଏବଂ ଏଥିପାଇଁ ସେ ବେଙ୍ଗଲ ଗବର୍ଣ୍ଣମେଣ୍ଟଙ୍କର ଅନୁମତି ଲୋଡ଼ିଥିଲେ ଏବଂ ଲେଫ୍ଟେନାଣ୍ଟ ଗବର୍ଣ୍ଣର ତାଙ୍କର ପତ୍ର ନମ୍ବର ୬୩୦୨ ତା······ନଭେମ୍ବର, ୧୮୯୫ରେ ତାଙ୍କୁ ଅନୁମତି ଦେଇଥିଲେ ଯେ ସେ ମାର୍ଚ୍ଚ,୧୮୯୬ରେ ଉକ୍ତ ପରୀକ୍ଷା ଦେଇପାରିବେ । ମାତ୍ର ଭକ୍ତକବି ମଧୁସୂଦନଙ୍କର ଉପଦେଶ ଅନୁସାରେ ସେ ପରୀକ୍ଷା ଦେବାରୁ ନିବୃତ୍ତ ହୋଇଥିଲେ । ସେ ଶିକ୍ଷାବିଭାଗରେ ପ୍ରଭିନ୍‌ସିଅଲ୍ ସର୍ଭିସ୍ ପାଇବା ପାଇଁ ତା ୨୪-୪-୧୮୯୯ରେ ଟ୍ରେନିଂ ସ୍କୁଲର ହେଡ଼ମାଷ୍ଟର (ମଧୁସୂଦନ ରାଓ) ଓ ଓଡ଼ିଶା ବିଭାଗର ଇନ୍‌ସପେକ୍ଟର (ରାଧାନାଥ ରାୟ)ଙ୍କ ଜରିଆରେ ବେଙ୍ଗଲ ଗଭର୍ଣ୍ଣମେଣ୍ଟଙ୍କୁ ନିବେଦନ କରିଥିଲେ । ଗବର୍ଣ୍ଣମେଣ୍ଟ ତାଙ୍କୁ ଜୁଲାଇ, ୧୮୯୯ରେ ପ୍ରଭିନ୍‌ସିଆଲ୍ ସର୍ଭିସ୍‌ରେ ପୁରୀ ଜିଲାର ଡେପୁଟି ଇନ୍‌ସପେକ୍ଟର କାର୍ଯ୍ୟରେ ନିଯୁକ୍ତି ଦେଲେ ।

ତ୍ରୈଲୋକ୍ୟନାଥ ଘୋଷ ବାଲେଶ୍ୱର ଜିଲାସ୍କୁଲର ହେଡ଼ମାଷ୍ଟର ଥିବାବେଳେ ତାଙ୍କର ଜ୍ୟେଷ୍ଠପୁତ୍ର ମହେନ୍ଦ୍ରନାଥ ଓ ଚନ୍ଦ୍ରମୋହନ ତାଙ୍କର ଛାତ୍ର ଥିଲେ ଏବଂ ବୃତ୍ତି ପାଇଥିଲେ । ତ୍ରୈଲୋକ୍ୟବାବୁ ଚନ୍ଦ୍ରମୋହନଙ୍କର ଏକତମ ଶୁଭାକାଙ୍‌କ୍ଷୀ ହେତୁ ମଧ୍ୟେ ମଧ୍ୟେ ସୁଖଦୁଃଖର ଖବର ରଖୁଥିଲେ । ସେ ତା ୨୩-୮-୧୮୯୫ରେ ତାଙ୍କୁ ପତ୍ରରେ ଲେଖିଥିଲେ : "ତୁମେ ଶିକ୍ଷାବିଭାଗରେ ଉନ୍ନତି ଦେଖି ନ ଥିବା ହେତୁ ଚାକିରି ଛାଡ଼ିଦିଅ, B. L.

ପଢ଼ି ଓକିଲାତି କର ।” ଚନ୍ଦ୍ରମୋହନଙ୍କର ପତ୍ନୀ ଓକିଲାତିକୁ ନାପସନ୍ଦ କଲେ । ଚନ୍ଦ୍ରମୋହନ ଗୃହକଣ୍ଟ ଛାଡ଼ିଲେ ନାହିଁ ।

ଡିସେମ୍ବର ୧୬ ତାରିଖ, ୧୮୯୩ ମସିହାରେ କଟକ ନର୍ମାଲ ସ୍କୁଲରେ କେତେକ ସାହିତ୍ୟାନୁରାଗୀ ବନ୍ଧୁଙ୍କୁ ନେଇ ଏକ 'ଆଲୋଚନା ସଭା' ଆରମ୍ଭ ହୋଇଥିଲା । ଏହାର ପ୍ରତିଷ୍ଠାତା ଓ ସଭାପତି ଥିଲେ ଭକ୍ତକବି ମଧୁସୂଦନ ଏବଂ ଚନ୍ଦ୍ରମୋହନ ପ୍ରଥମ ସଂପାଦକ ଥିଲେ । ବିଶ୍ୱନାଥ କର, ମଧୁସୂଦନ ଦାସ, ରାଜମୋହନ ବସୁ, ନନ୍ଦକିଶୋର ବଳ, ମିଶ୍ରୁ ନନ୍ଦ, କୃଷ୍ଣପ୍ରସାଦ ଚୌଧୁରୀ, ଶ୍ୟାମସୁନ୍ଦର ନନ୍ଦ, ଦୈତାରି କର, ଗୋପାଳଚନ୍ଦ୍ର ପ୍ରହରାଜ ଆଦି ଯୋଗ ଦେଉଥିଲେ । ଏମାନେ ବିଦ୍ୟାଳୟର ବିଦଗ୍ଧ ବାତାବରଣକୁ ସଜୀବ କରି ରଖିଥିଲେ । ପ୍ରତି ଶନିବାରରେ ବୈଠକ ହେଉଥିଲା । ଆଲୋଚନା ସଭାର ଆଦ୍ୟ ଅଧିବେଶନରେ ଚନ୍ଦ୍ରମୋହନ ସଭାପତିତ୍ୱ କରିଥିଲେ ଓ 'ସାହିତ୍ୟ' ଶୀର୍ଷକ ପ୍ରବନ୍ଧ ପାଠ କରିଥିଲେ । ତାହା 'ଶିକ୍ଷାବନ୍ଧୁ' ପତ୍ରିକାର ୧ମ ବର୍ଷ ୧ମ ସଂଖ୍ୟାରେ ପ୍ରକାଶ ପାଇଥିଲା । ଛାତ୍ର, ଶିକ୍ଷକ ଓ ସ୍କୁଲ ବାହାରୁ ଆଗତ ବ୍ୟକ୍ତିମାନଙ୍କ ହୃଦୟରେ ସତ୍‌ସାହିତ୍ୟ ପ୍ରତି ଅନୁରାଗ ସୃଷ୍ଟି କରିବା ଏହାର ଧ୍ୟେୟ ଥିଲା । ବ୍ୟାପକ ପରିସର ଓ ଉଦ୍ଦେଶ୍ୟରେ ତା ୨।୫।୧୯୦୩ରେ ଏହା 'ଉତ୍କଳ ସାହିତ୍ୟ ସମାଜ' ନାମରେ ରୂପାନ୍ତରିତ ହେଲା । ଉତ୍କଳର ବହୁ ରାଜାମହାରାଜା ଓ ଉତ୍କଳ-ହିତୈଷୀ ସାହିତ୍ୟାନୁରାଗୀ ଅଣ-ଉତ୍କଳୀୟମାନେ ସଭ୍ୟ ହୋଇ ଆଲୋଚନାରେ ଆନନ୍ଦ ଲଭ କରୁଥିଲେ ।

ଉତ୍କଳ ସାହିତ୍ୟ କ୍ଷେତ୍ରରେ କବି ସମ୍ରାଟ୍ ଉପେନ୍ଦ୍ରଭଞ୍ଜଙ୍କର ଲେଖା ଓ କବିବର ରାଧାନାଥ ରାୟଙ୍କ ଲେଖାର ଅନୁରାଗୀଙ୍କ ମଧ୍ୟରେ ଦୁଇ ଦଳ ସୃଷ୍ଟ ହେଲା । 'ଇନ୍ଦ୍ରଧନୁ'ରେ ଗୌରୀଶଙ୍କର ରାୟ, ଗୋପାଳବଲ୍ଲଭ ଦାସ, ସୁଦାମ ନାୟକ ଓ ଦାମୋଦର ପଟ୍ଟନାୟକ ଭଞ୍ଜଙ୍କର ଲେଖାକୁ ଏବଂ 'ବିଜୁଳି'ରେ ରାମନାରାୟଣ ରାୟ, ନୀଳମଣି ବିଦ୍ୟାରତ୍ନ, ବିଶ୍ୱନାଥ କର, ବାମଣ୍ଡାର ରାଜା ସୁଚଳଦେବ, ଡାକ୍ତର ରାମକୃଷ୍ଣ ସାହୁ ରାଧାନାଥଙ୍କ ଲେଖାକୁ ସମର୍ଥନ କଲେ । ଚନ୍ଦ୍ରମୋହନ ଭଞ୍ଜଙ୍କର କବିପ୍ରତିଭାକୁ କେବେ ଅସ୍ୱୀକାର ନ କଲେ ହେଁ, ରାଧାନାଥଙ୍କୁ ସମର୍ଥନ କରିଥିଲେ । ବିଜୁଳିରେ ତାଙ୍କର ଲେଖା ଅନ୍ୟମାନଙ୍କର ଲେଖାକୁ ସଂଯତ ଓ ଶୃଙ୍ଖଳିତ କରିଥିଲା । ଅବଶ୍ୟ ଚନ୍ଦ୍ରମୋହନ କାହାରି ଅନ୍ଧ ସ୍ତାବକ ନ ଥିଲେ ।

ଚନ୍ଦ୍ରମୋହନବାବୁ ଉତ୍କଳ ସାହିତ୍ୟକୁ ଲେଖା ନ ପଠାଇବାରୁ ସଂପାଦକ ବିଶ୍ୱନାଥ କର ତାଙ୍କୁ ଲେଖା ଦେବାକୁ ଅନୁରୋଧ କରିଥିଲେ । ସେ 'କୈଫିୟତ୍' ଶୀର୍ଷକରେ ଉତ୍ତର ଦେଇଥିଲେ—ଉତ୍କଳର ଆଧୁନିକ ଅବସ୍ଥା ସାହିତ୍ୟ-ବିକାଶର ଅନୁକୂଳ ନୁହେଁ ।······(ଗ୍ରନ୍ଥାବଳୀର ପୃ ୨୨୦-୨୨୧ ଦେଖନ୍ତୁ) ।

ଉତ୍କଳୀୟମାନେ ବିଦେଶକୁ ଯାଇ ନାନା ବିଷୟରେ ଉଚ୍ଚ ଶିକ୍ଷା ଲାଭ କରନ୍ତୁ, 'ଦ୍ୱିଜତ୍ୱ' ଲାଭ କରନ୍ତୁ—ଏହା କାର୍ଯ୍ୟତଃ ଦେଖାଇବା ଉଦ୍ଦେଶ୍ୟରେ ଚନ୍ଦ୍ରମୋହନ ଭଣଜା କୈଳାସଚନ୍ଦ୍ର ଭରତକରଙ୍କୁ ଜାପାନର ଟୋକିଓ ବିଶ୍ୱବିଦ୍ୟାଳୟରେ କୃଷି ବିଦ୍ୟା ପଢ଼ିବା ପାଇଁ ଉତ୍ସାହ ଦେଇଥିଲେ । ମୟୂରଭଞ୍ଜର ବିଦ୍ୟୋତ୍ସାହୀ ମହାରାଜା ଶ୍ରୀ ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ଆନୁକୂଲ୍ୟରେ ଭରତକର ଟୋକିଓ ବିଶ୍ୱବିଦ୍ୟାଳୟରେ ତା ୧୬।୭।୧୯୦୭ରୁ ସେପ୍ଟେମ୍ବର, ୧୯୧୦ ପର୍ଯ୍ୟନ୍ତ ପଢ଼ି B.Sc. (Agriculture) ପାସ୍ କରିଥିଲେ । ତା ୫।୮।୧୯୧୪ରେ ତାଙ୍କର ଅକାଳ ମୃତ୍ୟୁ ହୋଇଥିଲା ।

[ ଉତ୍କଳ ସାହିତ୍ୟ—୧୮ଶ ଭାଗ, ୭ମ ସଂଖ୍ୟା, ମାର୍ଗଶିର ୧୩୨୨ ସାଲ —ପୃ ୩୨୯-୩୩୦ ଦେଖନ୍ତୁ ]

ବଙ୍ଗାଳୀମାନେ ଆଗୁସାର ହୋଇ ପାଶ୍ଚାତ୍ୟ ଶିକ୍ଷା ଓ ଇଂରାଜୀ ଭାଷା ଶିଖିବାରୁ ସେମାନେ ସିଭିଲ୍ ସର୍ଭିସରେ, ଶିକ୍ଷା ବିଭାଗ ଆଦିରେ ବଡ଼ ଚାକିରି ପାଉଥିଲେ । ପୁରୀ ଜିଲା ସ୍କୁଲ ଆରମ୍ଭଠାରୁ କ୍ରମାନ୍ୱୟରେ ୧୪ ଜଣ ବଙ୍ଗାଳୀ ହେଡ୍‌ମାଷ୍ଟର ଥିଲେ । ଚନ୍ଦ୍ରମୋହନ ମହାରଣା ୧୯୦୩ରେ ହେଉଛନ୍ତି ସେହି ସ୍କୁଲର ପ୍ରଥମ ଓଡ଼ିଆ ହେଡ୍ ମାଷ୍ଟର । ନୀଳକଣ୍ଠ ଦାଶ ସେତେବେଳେ ତାଙ୍କର ଛାତ୍ର ଥିଲେ । ସେ ତାଙ୍କର ଗ୍ରନ୍ଥାବଳୀ-୧ମ ଖଣ୍ଡରେ ସେ ସମୟରେ ବଙ୍ଗାଳୀ ଶିକ୍ଷକ ଓ ଛାତ୍ରମାନଙ୍କର ପ୍ରତିପତ୍ତି ଏବଂ ଚନ୍ଦ୍ରମୋହନ ବାବୁଙ୍କର ଶିଶୁପ୍ରୀଣତା, ଶୃଙ୍ଖଳା-ରକ୍ଷା, ଚରିତ୍ର-ନିର୍ମାଣ, ନିର୍ଭୀକତା, ଶିକ୍ଷାଦାନ-ପଦ୍ଧତିର ଭୂୟସୀ ପ୍ରଶଂସା କରିଛନ୍ତି । ସେହି ସମୟରେ ଗୋଦାବରୀଶ ମିଶ୍ର, କୃପାସିନ୍ଧୁ ମିଶ୍ର, ପରଶୁରାମ ବର୍ମା ପ୍ରଭୃତି ମଧ୍ୟ ପୁରୀ ଜିଲା ସ୍କୁଲରେ ପଢ଼ୁଥିଲେ । ଗୋଦାବରୀଶ ମିଶ୍ର 'ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋର ସ୍ଥାନ, (ଆତ୍ମଜୀବନୀ)ରେ ବର୍ଣ୍ଣନା କରିଛନ୍ତି—ଚନ୍ଦ୍ରମୋହନବାବୁ ଏକାଦଶ ଶ୍ରେଣୀରେ ଇଂରେଜୀ ପଢ଼ାଉଥିଲେ ! ପିଲାମାନେ ଥରହର ହୋଇଗଲେ । ନୂଆ ହାଉଆ ସବୁ ଶ୍ରେଣୀକୁ ଛୁଇଁଲା । × × × । ଚନ୍ଦ୍ରମୋହନ ବାବୁ ଶ୍ରେଣୀ-ଭିତରେ ପଶି ଗୋଟିଏ ବଙ୍ଗାଳୀ ପିଲାକୁ ବେତରେ ପ୍ରହାର କଲେ । ପିଲାଟି କହିଲା 'ମୁଁ ତୁମକୁ କଚେରୀକୁ ଟାଣିନେବି' । ଅନେକ ଘାଣ୍ଟାଘାଣ୍ଟି ହେଲା । କିନ୍ତୁ ଚନ୍ଦ୍ରମୋହନ ବାବୁଙ୍କୁ କଚେରୀକୁ ଯିବାକୁ ହେଲା ନାହିଁ ।··· । ଶଣିଦା—

କୃପାସିନ୍ଧୁ ମିଶ୍ର ପୁରୀ ଜିଲା ସ୍କୁଲରେ ଚନ୍ଦ୍ରମୋହନ ମହାରଣାଙ୍କର ଛାତ୍ର ଥିବାବେଳେ କୌଣସି କାରଣରୁ ଚନ୍ଦ୍ରମୋହନବାବୁ ତାଙ୍କୁ ସାତ ଦିନ ( ଚନ୍ଦ୍ରମୋହନଙ୍କର ପଢ଼ା-ପିରିଅଡ୍‌ରେ ) ବେଞ୍ଚ ଉପରେ ଠିଆ ହେବାର ଦଣ୍ଡ ଦେଇଥିଲେ । କୃପାସିନ୍ଧୁଙ୍କର ବାତଜ୍ୱର ଥିଲା । ଠିଆ ହେବା ଫଳରେ ପାଦ ଫୁଲିଗଲା । ଏହା ଜାଣି ଚନ୍ଦ୍ରମୋହନ ବାବୁଙ୍କ ମନରେ

ଆଘାତ ହେଲା । ପରେ ସେ ଆଉ କୌଣସି ପିଲାକୁ ଏ ଦଣ୍ଡ ଦେଇ ନ ଥିଲେ । ସେ କୃପାସିନ୍ଧୁଙ୍କର ଗୋଡ଼ ଆଉଁସି ଦେଇଥିଲେ । ( ଶ୍ରୀ ଉଦୟନାଥ ଷଡ଼ଙ୍ଗୀଙ୍କର ଲେଖାରୁ ସଂଗୃହୀତ । )

ଚନ୍ଦ୍ରମୋହନ ଛାତ୍ରମାନଙ୍କୁ ନେଇ ରାସ୍ତା, ନାଳ-ନର୍ଦ୍ଦମା ସଫା କରୁଥିଲେ କୂଅ ଉଠାଳି ଜଳକୁ ଶୋଧନ କରୁଥିଲେ । ରଥଯାତ୍ରାବେଳେ ଯାତ୍ରୀମାନଙ୍କୁ ପାନୀୟ ଶୁଦ୍ଧ ଜଳ ଯୋଗାଇବାରେ ସାହାଯ୍ୟ କରୁଥିଲେ ଏବଂ କଲିକତାରୁ ଟ୍ରେନ୍‌ରେ ବରଫ-ସ୍ଲାବ୍ ଅଣାଇ, କେତେକ ହଇଜା ରୋଗୀଙ୍କୁ ଦେଉଥିଲେ ।

ଚନ୍ଦ୍ରମୋହନ ନୀଳକଣ୍ଠ ଦାଶଙ୍କର ଗ୍ରାମ ଶ୍ରୀରାମଚନ୍ଦ୍ରପୁର-ଶାସନକୁ ଯାଉଥିବା ବେଳେ କୋଇଲିର କୁହୁସ୍ୱନ ଶୁଣି, ଶିକ୍ଷକଙ୍କୁ ପଚାରିଥିଲେ, ଏ ସ୍ୱନ ମାଈ ବା ଅଣ୍ଡିରା କୋଇଲିର ? ଶିକ୍ଷକ ମହାଶୟ ଭୁଲ ଉତ୍ତର ଦେଲେ । ତହୁଁ ଚନ୍ଦ୍ରମୋହନ କାଳିଦାସଙ୍କର ଉକ୍ତି 'ପୁଂସ୍କୋକିଳୋଯନ୍ ମଧୁରମ୍ ଚୁକୁଜ ।' ସେ ସ୍କୁଲର ପିଅନ ହରିକୁ ହରେ, ରାଧୁକୁ ରାଧୋ ବୋଲି ବ୍ୟାକରଣର ନିୟମ ଅନୁସାରେ ଡାକୁଥିଲେ । ଏହିରୂପେ ସେ କେବଳ ଶ୍ରେଣୀଗୃହରେ ପାଠଦାନ ବେଳେ ନୁହେଁ, ଉପରନ୍ତୁ ବାହାରେ ବ୍ୟାବହାରିକ ଜୀବନରେ ସଂସ୍କୃତ ଭାଷା ଏବଂ ଓଡ଼ିଆ ବ୍ୟାକରଣ ଶିକ୍ଷା ଦେଉଥିଲେ । ପୁରୀ ସଂସ୍କୃତ କଲେଜ ସହ ତାଙ୍କର ଘନିଷ୍ଠ ସମ୍ପର୍କ ଥିଲା । ସେଠାର ଆଲୋଚନାରେ ସେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରୁଥିଲେ । ଓଡ଼ିଶାରେ ସଂସ୍କୃତ ଭାଷାର ବିସ୍ତାର ସମ୍ବନ୍ଧରେ ସେ ସରକାରଙ୍କୁ ସୂଚନା ଦେଇଥିଲେ । ( ପୁରୀ କଲେକ୍ଟରଙ୍କ ପତ୍ର ତା ୨୧-୧୧-୧୯୦୪, ନଂ ୧୬୬୭ ) ସେ ସଂସ୍କୃତ ଉପାଧି ପରୀକ୍ଷାର ପରୀକ୍ଷକ ଏବଂ ବିହାର ଓ ଓଡ଼ିଶା ସଂସ୍କୃତ ଆସୋସିଏସନ୍‌ର ସଦସ୍ୟ ଥିଲେ ।

ଓଡ଼ିଆ, ବଙ୍ଗଳା, ଉର୍ଦ୍ଦୁ, ଓ ଇଂରାଜୀର ଶୁଦ୍ଧ ଉଚ୍ଚାରଣ ଓ ପଦ୍ୟରେ ଛନ୍ଦର ଯତିପାତ ଉପରେ ଚନ୍ଦ୍ରମୋହନ ସମୁଚିତ ଧ୍ୟାନ ଦେଉଥିଲେ । ଗୋଦାବରୀଶ ମିଶ୍ର ରେଭେନ୍‌ସା କଲେଜରେ ପଢ଼ିବାବେଳେ ସେକ୍‌ସପୀୟରଙ୍କର ଏକ ଇଂରାଜୀ ନାଟକ ଅଭିନୟ କରିଥିଲେ । ସେ ଏଡ଼େ ଠିକ୍ ଉଚ୍ଚାରଣ କରିଥିଲେ ଓ ଜୀବନ୍ତ ଭାବରେ ଅଭିନୟ କରିଥିଲେ ଯେ ନାଟକ ଦେଖିସାରି ଗୋରା ସାହେବ ଓ ମେମ୍ ପଚାରିଥିଲେ, ଅଭିନେତା କିଏ ଇଂରେଜ ଲୋକ ? ଗୋଦାବରୀଶ ପରେ ଆତ୍ମଜୀବନୀରେ ଲେଖିଥିଲେ—'ଉଚ୍ଚାରଣ ହେଉ ବା ଭାଷାଜ୍ଞାନ ହେଉ ଇଂରେଜୀରେ ବ୍ୟୁତ୍ପତ୍ତି ନିମନ୍ତେ ମୁଁ ଚନ୍ଦ୍ରମୋହନ ବାବୁଙ୍କ ଠାରେ ଋଣୀ । କିନ୍ତୁ ମୁଁ ତା'ର ଯଥାର୍ଥ ସଦ୍‌ବ୍ୟବହାର କରିପାରି ନାହିଁ । ମୋର ବି.ଏ. ପରୀକ୍ଷା ଦେବା ବର୍ଷ ସେପରି ବ୍ୟବହାରର ସୁଯୋଗ ଦୁଇ ଥର ଆସିଥିଲା ।'—ପୃଷ୍ଠା ୫୬ ।

ଚନ୍ଦ୍ରମୋହନ ମହାରାଣା ପାଟନା ବିଶ୍ୱବିଦ୍ୟାଳୟର ମ୍ୟାଟ୍ରିକୁଲେଶନ୍ ପରୀକ୍ଷାର ଇଂରେଜୀ ବିଷୟରେ ପରୀକ୍ଷକ ମଧ୍ୟ ହୋଇଥିଲେ ।



ସନ୍ନ୍ୟାସୀ ଦୟାଲଚନ୍ଦ୍ର ମୁଖାର୍ଜୀ, କାମରୂପ ମଠ, ବନାରସ



ଶ୍ରୀ ଚନ୍ଦ୍ରମୋହନ ମହାରଣା—୧୮୯୭ ମସିହା

ଚନ୍ଦ୍ରମୋହନ ମହାରଣା ସ୍କୁଲର କେତେ ପ୍ରିୟ ଛାତ୍ରମାନଙ୍କ ମନରେ ଜାତୀୟ ଭାବନା, ଐତିହ୍ୟ, ଦେଶସେବା ଓ ତ୍ୟାଗପୂତ ଜୀବନାଦର୍ଶ ଜାଗ୍ରତ କରିବା ଦିଗରେ ଯତ୍ନ କରୁଥିଲେ । ସତ୍ୟବାଦୀର ସାଧକ ପଣ୍ଡିତ ନୀଳକଣ୍ଠ ଦାଶ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ କୃପାସିନ୍ଧୁ ମିଶ୍ର ସମ୍ଭବତଃ ଏହି ପ୍ରେରଣାରେ ସେମାନଙ୍କ ଜୀବନରେ ଉତ୍କଳର ଭାଷା, ଶିକ୍ଷା, ସାହିତ୍ୟ, ସଂସ୍କୃତି ଆଦିର ସର୍ବବିଧ ଉନ୍ନତିରେ ନିଜ ନିଜର ଜୀବନକୁ ଉତ୍ସର୍ଗ କରିଥିଲେ । ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ପୁତ୍ର ମାନ୍ୟବର ରଙ୍ଗନାଥ ମିଶ୍ର (ଓଡ଼ିଶା ହାଇକୋର୍ଟର ଚିଫ୍ ଜଷ୍ଟିସ) ଲେଖିଥିଲେ :

High Court, Cuttack. "....the late Chandra mohan Maharana—a very successful teacher. I did not have the privilege of seeing him but have heard a lot about him from my father late Pandit Godavaris Misra whose teacher he was. When at the beginning of the century my father was in the Zila School at Puri, this celebrated teacher was the Head Master. Those were the years when the National Movement was gathering momentum. This Head Master was working in a Government High School, encouraged young Indian boys to develope feelings of patriotism. The impact of his personality fell on every student and the contact brought about transformation. Chandramohan Babu provided a living model for shaping human character and my father and his associates who entered public life within the province later owed their success to their association with him."

ଚନ୍ଦ୍ରମୋହନ ମାତ୍ର ୮ମାସ କଲିଜିଏଟ୍ ସ୍କୁଲର ଅସ୍ଥାୟୀ ହେଡ୍ ମାଷ୍ଟର ଥିଲେ । ୧୯୦୭ରୁ ୧୯୧୯ ପର୍ଯ୍ୟନ୍ତ ଚନ୍ଦ୍ରମୋହନ କଟକ ଟ୍ରେନିଂ ସ୍କୁଲର ଶାନ୍ତିପୂତ ସାରସ୍ୱତ ପରିବେଶ ମଧ୍ୟରେ ଥିଲେ । ସେହି ଅବଧିରେ ତାଙ୍କର ପ୍ରତିଭାବାନ୍ ଛାତ୍ରମାନେ ହେଲେ—~~ଗୋବିନ୍ଦଚନ୍ଦ୍ର ରଥ,~~ ନୀଳମଣି ବିଦ୍ୟାରତ୍ନ, ଆର୍ତ୍ତତ୍ରାଣ ଶତପଥୀ, ମୃତ୍ୟୁଞ୍ଜୟ ରଥ, କୁଳମଣି ଦାଶ, ବିନାୟକ ମିଶ୍ର, ଚନ୍ଦ୍ରଶେଖର ମିଶ୍ର,



ଶ୍ରୀ ଚନ୍ଦ୍ରମୋହନ ମହାରଣା ୧୯୦୪ ମସିହାରେ ପୁରୀ ଜିଲ୍ଲା ସ୍କୁଲରେ ହେଡ୍‌ମାଷ୍ଟର
ଥିବା ବେଳେ

କୃଷ୍ଣଚନ୍ଦ୍ର କର ପ୍ରଭୃତି । ଏମାନେ ଉତ୍କଳ ସାହିତ୍ୟ ଓ ସଂସ୍କୃତିର ଅଭିବୃଦ୍ଧି ସାଧନ କରି ସ୍ୱନାମଧନ୍ୟ ହୋଇଥିଲେ । "......................ଏହି ଅଙ୍ଗନର ଧୂଳିକଣା ଉତ୍କଳର କେତେ ବରପୁତ୍ର, ବାଗ୍ମୀ, କବି, ଭାବୁକ, ସମାଲୋଚକ ଓ ବାଣୀ-ବିଶାରଦଙ୍କ ଅଦୃଶ୍ୟ ପଦାଙ୍କ ବକ୍ଷରେ ବହି ନୀରବଭାଷାରେ ସେମାନଙ୍କର ସ୍ମୃତିର ଜୟଗାନ କରିଛି; କେତେ ସାହିତ୍ୟମିଳନର କଳଗୁଞ୍ଜନ ଓ ଝଙ୍କାରର ମଧୁ ମୂର୍ଚ୍ଛନା ଏହି ବେଢ଼ାମଧ୍ୟରେ ଘୂମରି ଘୂମରି ଘାଉଁରି ଖାଏ ରାତି ଜଣାଥିରି ମୃଦୁମର୍ମରିତ ମନ୍ଦ ସମୀରଣରେ"—[ ଶତାବ୍ଦୀ ସ୍ମରଣିକା—୧୯୬୦ ଖ୍ରୀଷ୍ଟାବ୍ଦ, ସେକେଣ୍ଡାରୀ ଟ୍ରେନିଂ ସ୍କୁଲ, କଟକ । ପୃ ୨୧ ]

ଅନ୍ୟ ବିଦ୍ୟାଳୟମାନଙ୍କରେ ତାଙ୍କର ଜଣାଶୁଣା ଛାତ୍ରମାନେ :

ଜଗନ୍ନାଥ ରଥ, ପୁରୀ ଜିଲାସ୍କୁଲର ହେଡ୍ ପଣ୍ଡିତ ଓ ମୁକ୍ତିମଣ୍ଡପ ସଭାର ସଭାପତି
ବାସୁଦେବ ମିଶ୍ର, (ଘର ଉମ୍ଭୁନା-ବରପଦା, ପୁରୀଜିଲାରେ)
କଟକ ଟ୍ରେନିଂସ୍କୁଲରେ

କାଶୀନାଥ ମହାପାତ୍ର (ଜସ୍‌ଟିସ ହରିହର ମହାପାତ୍ରଙ୍କର ପିତୃଦେବ)
କଟକ ଟ୍ରେନିଂସ୍କୁଲରେ

ରତ୍ନାକର ଗର୍ଗବଡ଼ୁ, ପୁସ୍ତକ ପ୍ରକାଶକ, କଟକ
ରାଘବ ମିଶ୍ର, ସମ୍ବଲପୁର (କବି ଗଙ୍ଗାଧର ମେହେରଙ୍କର ସାହିତ୍ୟ-ପ୍ରେମୀ)
କଟକ ଟ୍ରେନିଂସ୍କୁଲରେ

ଜସ୍‌ଟିସ ରାଜକିଶୋର ଦାସ (ଡଗରପଡ଼ା)—କଟକ ପ୍ରାକ୍ଟିସିଙ୍ଗ ମି.ଇ. ସ୍କୁଲରେ
ପ୍ରାଣକୃଷ୍ଣ ନନ୍ଦ, ପୃଥିବୀ-ବିଖ୍ୟାତ ପେପର-ଟେକ୍‌ନୋଲଜିଷ୍ଟ—„ „ „
କାଳନ୍ଦୀଚରଣ ପାଣିଗ୍ରାହୀ, ସାହିତ୍ୟିକ, ପୁରୀଜିଲା ସ୍କୁଲରେ ୧୯୧୯ରେ
ଶ୍ରୀଧର ଦାସ, ଲେଖକ ଓ ଖ୍ରୀଷ୍ଟକଲେଜର ଅଧ୍ୟାପକ „ „
ଡକ୍ଟର ରାସକୃଷ୍ଣ ମହାନ୍ତି, ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ
କଲେଜର ପ୍ରିନ୍‌ସିପାଲ „ „

ଭଗବତୀ ପାଣିଗ୍ରାହୀ, M A. — — ପୁରୀଜିଲାସ୍କୁଲ, ୧୯୧୯ରେ
ହରିଶଚନ୍ଦ୍ର ବଡ଼ାଳ, ସବୁଜ ସାହିତ୍ୟର ଲେଖକ ବାଲେଶ୍ୱର ଜିଲା ସ୍କୁଲରେ
ଭୈରବଚନ୍ଦ୍ର ମହାପାତ୍ର, ସ୍ୱାଧୀନତା-ସଂଗ୍ରାମୀ „ „
ନୀଳାମ୍ବର ଦାସ „ „
ଗୌରଚନ୍ଦ୍ର ଦାସ „ „ „ „
ଗଜେନ୍ଦ୍ର ସାହୁ „ „ ବାଲେଶ୍ୱର
ଅନନ୍ତ ପ୍ରସାଦ ପଣ୍ଡା, ସାହିତ୍ୟିକ „ „

ପଦ୍ମଲୋଚନ ଉପାଧ୍ୟାୟ, M.A., ସଂସ୍କୃତ ସାହିତ୍ୟ
ଶିକ୍ଷାର ସୁପରଣ୍ଟେଣ୍ଡେଣ୍ଟ ବାଲେଶ୍ୱର ଜିଲ୍ଲା ସ୍କୁଲରେ
ଗୋଲକଚନ୍ଦ୍ର ମହାପାତ୍ର, ପ୍ରବନ୍ଧ ଲେଖକ— " "
ନିର୍ମଳଚନ୍ଦ୍ର ନନ୍ଦୀ, ଟାଟା କମ୍ପାନିର ଚୀଫ୍ ଜିଓଲଜିଷ୍ଟ "
ବୃନ୍ଦାବନଚନ୍ଦ୍ର ବିଶାଳ, ସ୍ୱାସ୍ଥ୍ୟବିଭାଗର
ଜଏଣ୍ଟ ଡିରେକ୍ଟର " " "
ଜିତେନ୍ଦ୍ର ଘୋଷ, P.T.I.ର ସାମ୍ବାଦିକ " " "
ମଇନ୍ ଉଦ୍ଦିନ ଅହମ୍ମଦ, M.A. ରେଭିନ୍ୟୁ ଡିଭିଜନାଲ୍ କମିସନର—" "

## ଚନ୍ଦ୍ରମୋହନ ମହାରଣାଙ୍କର କେତେକ ବିଶିଷ୍ଟ ସହକର୍ମୀ

ନନ୍ଦକିଶୋର ବଳ, ପଲ୍ଲୀକବି—କଟକ ଟ୍ରେନିଂସ୍କୁଲରେ ୧୯୦୭ରେ ଓ
୧୯୧୦ରେ B.T. ପାସ କରି, ପୁଣି ୧୯୧୬ରେ ।

ମହାମହୋପାଧ୍ୟାୟ ସଦାଶିବ ମିଶ୍ର ପୁରୀ ଜିଲ୍ଲା ସ୍କୁଲରେ
କୃଷ୍ଣଚନ୍ଦ୍ର ସେନଗୁପ୍ତ, M.A.,B.T., ହେ.ମା., କଟକ ପ୍ରାକ୍ଟିସିଂ ମି.ଇ. ସ୍କୁଲରେ
ବିଶ୍ୱମ୍ଭର ମିଶ୍ର, B.A.,B.T., " "
ହାରାଧନ ଘୋଷ, " "
ଆର୍ତ୍ତତ୍ରାଣ ଶତପଥୀ " "
ରାମପ୍ରସାଦ ବହିଦାର, B.A.,B.T କଟକ ଟ୍ରେନିଂ ସ୍କୁଲରେ
ଜଗନ୍ନାଥ ମହାପାତ୍ର, " " "
ମଧୁସୂଦନ ବିଶ୍ୱାଳ, " " "
ଅନୁଗ୍ରହ ନାୟକ " ପୁରୀ ଜିଲ୍ଲା ସ୍କୁଲରେ
ଜଗନ୍ନାଥ ରଥ, କାବ୍ୟତୀର୍ଥ " "
ଜଗନ୍ନାଥ ତ୍ରିପାଠୀ, B.A.,B.T. ବାଲେଶ୍ୱର ଜିଲ୍ଲା ସ୍କୁଲରେ
ଭୀମ ରାଉତ, M.A ,B.T. " "
ଲୋକନାଥ ମହାପାତ୍ର, କାବ୍ୟତୀର୍ଥ " "
ପୁରୁଷୋତ୍ତମ ତର୍କାଲଙ୍କାର, " "
ବିଶ୍ୱନାଥ ରଥ, କାବ୍ୟତୀର୍ଥ— " "
ଅବଦୁଲ୍ ହାମିଦ୍ ଖାଁ, B.A., B.T. " "
ଗୋପାଳଚନ୍ଦ୍ର ମହାନ୍ତ (ବେଣ୍ଟକାର) " "
ବୈଦ୍ୟନାଥ ମହାନ୍ତ (ଅମୃତେଶ୍ୱର) " "

ଆନନ୍ଦ ମିଶ୍ର (କଲିକତା ଆର୍ଟସ ସ୍କୁଲର ପ୍ରଥମ ଓଡ଼ିଆ ଛାତ୍ର) ବାଲେଶ୍ୱର ଜିଲା ସ୍କୁଲରେ
ବସନ୍ତ କୁମାର ପଣ୍ଡା ( ,, ୨ୟ ,, ,, ) ,,
ଅବଦୁଲ୍ ହାଲିମ୍ (ହେଡ୍ ମୌଲଭୀ) ,,
,, ରହେମାନ୍ (ସେକେଣ୍ଡ ମୌଲଭୀ) ,,

ଚନ୍ଦ୍ରମୋହନ ମହାରଣା କଟକରେ ଚାକିରି କରୁଥିବା ବେଳେ କବିବର ରାଧାନାଥ ରାୟ, ଭକ୍ତକବି ମଧୁସୂଦନ ରାଓ, ବାଗ୍ମୀ ବିଶ୍ୱନାଥ କର, ବଳରାମ ଦାସ (ସାହେବଜାଦା ବଜାର), ବାଲମୁକୁନ୍ଦ କାନୁନଗୋ (ବାଙ୍କାବାଦ), ରାଜକିଶୋର ଦାସ (ଡେପୁଟି ମ୍ୟାଜିଷ୍ଟ୍ରେଟ୍-ଘର ବାଙ୍କାବଜାର), ବ୍ରଜସୁନ୍ଦର ଦାସ (ସାହିତ୍ୟିକ, ମୁକୁର ପ୍ରେସ୍), ରାମକୃଷ୍ଣ ରାଓ (ସମ୍ପାଦକ, ବ୍ରାହ୍ମସମାଜ), ରେଭେନ୍ସା କଲେଜର ଅଧ୍ୟାପକଗଣ ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧି, ଗୋପାଳ ଗାଙ୍ଗୁଲି; ରେଭେନ୍ସା କଲିଜିଏଟ୍ ସ୍କୁଲର ହେଡ୍ ମାଷ୍ଟର ବେଣୀମାଧବ ଦାସ; ବିଶ୍ୱନାଥ ସିଂହ (ଉତ୍କଳ), କଳନ୍ଦର ଦାସ (ଉତ୍କଳ), ବୈକୁଣ୍ଠନାଥ ଦତ୍ତ (ଉତ୍କଳ), ଗୋକୁଳାନନ୍ଦ ଚୌଧୁରୀ (ଉତ୍କଳ), ଗୋପାଳଚନ୍ଦ୍ର ପ୍ରହରାଜ (ଉତ୍କଳ, ପରେ ଭାଷାକୋଷ-ପ୍ରଣେତା), ଡବ୍ଲ୍ୟୁ ଡବ୍ଲ୍ୟୁ ହଣ୍ଟରସନ (ରେ.କ. ସ୍କୁଲର ହେ.ମା. ଓ ପରେ ସ୍କୁଲ ଇନ୍ସପେକ୍ଟର) ମିସେସ୍ ବ୍ୟାଙ୍କସ୍ (ରେ. ବାଳିକା ହାଇସ୍କୁଲର ପ୍ରଥମ ଲେଡି ପ୍ରିନ୍ସିପାଲ) ଆଦିଙ୍କ ସହ ଆଳାପ ଆଲୋଚନା କରୁଥିଲେ ।

ଚନ୍ଦ୍ରମୋହନ ତ ଗରିବ ଥିଲେ, ଗୁଣ୍ଠେ ଭୁଇଁ ଘର-ଜମି ନ ଥିଲା । ଚାକିରି ଦ୍ୱାରା କିଛି ଉପାର୍ଜନ କରିବା ପରେ ପଡ଼ିଆ ଜମି କିଣି ନିଜେ କୋଡ଼ିକୋଦାଳରେ ହାଣି ମାରଣ ଧାନଜମି ତିଆରି କରିଥିଲେ । ସେ ଉଦ୍ୟାନର, ବିଶେଷରେ ଫଳ-ଗଛର ପ୍ରିୟ ଥିଲେ । ବାଙ୍କି, ଡୋମପଡ଼ା ଆଦିରୁ ଭଲ ଜାତିର ଆମ୍ବ ଅଣାଇ ଓ କଲିକତାରୁ କଲମୀ ଗଛ ମଗାଇ ବାଡ଼ିରେ ଲଗାଇଥିଲେ । ସେ ଫଳମୂଳ ଗ୍ରାମ-ବାସୀଙ୍କୁ ବାଣ୍ଟୁଥିଲେ । ସେତେବେଳେ କୌଣସି ଧନୀ ଲୋକ ନିଜ ବାଡ଼ିବଗିଚାର ଫଳ, ପରିବା ବାଣ୍ଟିବା ସୌଜନ୍ୟ ବା ଆଭିଜାତ୍ୟର ନିଦର୍ଶନ ଥିଲା । ଯୌବନରେ ସେ ବଳବାନ୍ ଥିଲେ । ଏତେ ପାଠ ପଢ଼ିଥିଲେ ମଧ୍ୟ ଉତ୍ପାଦକ ଶାରୀରିକ ଶ୍ରମ କରୁଥିଲେ । ୧୯୦୩ରେ ବାଲେଶ୍ୱର ଜିଲାର ଡେପୁଟି ଇନ୍ସପେକ୍ଟର ଥିବାବେଳେ ସେ ଉତ୍ତର ବାଲେଶ୍ୱରର ସ୍କୁଲ ପରିଦର୍ଶନ କରିବାକୁ ବଳଦଗାଡ଼ିରେ ଯାଉଥିଲେ । ଜଣେ ଲୋକ ଠିକ୍ ଭାବରେ ଦା'ରେ ଘାସ କାଟୁ ନ ଥିବା ଚନ୍ଦ୍ରମୋହନ ମହାରଣା ଦେଖି, ତାହାର ଦା'ରେ ଘାସ କାଟି ଠିକ୍ ପଦ୍ଧତି ଦେଖାଇ ଦେଇଥିଲେ । ଭୋଗରାଇ ଥାନାର କୁଅଁର-ଜାଲିନା ଗ୍ରାମର ରାମ୍ବାରାମ ମହାନ୍ତି ( ପ୍ରଫେସର ରାମନାରାୟଣ ମହାନ୍ତିଙ୍କର ପିତା) ମାର୍ଚ୍ଚ ୧୯୪୧ରେ ଏ ଘଟଣାଟି କହିଥିଲେ ।

ଚନ୍ଦ୍ରମୋହନ ଛାତ୍ର-ଜୀବନରେ ନିଜେ ବହୁତ ଆର୍ଥିକ ଅଭାବ ମଧ୍ୟ ଦେଇ ଗତିଶୀଳ ହୋଇଥିବାରୁ ସେ ଉପାର୍ଜନକ୍ଷମ ହେବା ପରେ ଗରୀବ, ମେଧାବୀ ଚରିତ୍ରବାନ୍ ଛାତ୍ରଙ୍କ ପ୍ରତି ସହାନୁଭୂତିଶୀଳ ଥିଲେ । କଟକ ଟ୍ରେନିଂ ସ୍କୁଲ, ପୁରୀ ଜିଲା ସ୍କୁଲ ଓ ବାଲେଶ୍ୱର ଜିଲା ସ୍କୁଲରେ ହେଡ଼ମାଷ୍ଟର ଥିବାବେଳେ ସେ ସେହିପରି କେତେକ ଛାତ୍ରମାନଙ୍କର ସୁବିଧା କରିଦେଇଥିଲେ ଏବଂ ନିମ୍ନଲିଖିତ ବ୍ୟକ୍ତିମାନଙ୍କୁ ନିଜ ବସାରେ ରଖି ଖାଇବା ପିଇବାକୁ ଦେଇଥିଲେ : ଗୋଦାବରୀଶ ମିଶ୍ର, ଲକ୍ଷ୍ମୀ-ନାରାୟଣ ସାହୁ (କଟକରେ ଆଇ.ଏସ୍‌ସି ପଢ଼ିବାବେଳେ), ଗୋବିନ୍ଦମୋହନ କମିଲା (ପରେ ଡାକ୍ତର ହୋଇଥିଲେ), ରାଧାମୋହନ ରଣା ( ଘର ରେମୁଣା, ଓକିଲ ହୋଇଥିଲେ), ଉଦୟନାରାୟଣ ମିଶ୍ର (ବି.ଏ. ପରେ ସବ୍‌ରେଜିଷ୍ଟ୍ରାର ହୋଇଥିଲେ, ) ହରିଶଚନ୍ଦ୍ର ବଡ଼ାଳ (ଘର ବାଲେଶ୍ୱର ସହରରେ, ପରେ ଇଣ୍ଡିଆନ୍ ରେଲୱେ ସର୍ଭିସ୍ ପାଇଥିଲେ , ସବୁଜ-ସାହିତ୍ୟିକ),·····ବାଳକୃଷ୍ଣ ପଣ୍ଡା । କଲେଜରେ ପଢ଼ିବାବେଳେ ଚନ୍ଦ୍ରମୋହନଙ୍କୁ ବାଳକୃଷ୍ଣ ପଣ୍ଡାଙ୍କର ପିତା ନାରାୟଣ ପଣ୍ଡା ବିନା ଦଲିଲରେ ଦୁଇଶତ ଟଙ୍କା ଦେଇଥିଲେ । ଚନ୍ଦ୍ରମୋହନବାବୁ ଚାକିରି କରିବା ପରେ ତାହା ପରିଶୋଧ କରିବାକୁ ବସିବାରୁ ନାରାୟଣ ବାବୁ ଟଙ୍କା ନେଲେ ନାହିଁ । ବାଳକୃଷ୍ଣଙ୍କୁ ପାଖରେ ରଖି ପଢ଼ାଇବା ଦ୍ୱାରା ଏ ଋଣକୁ ଚନ୍ଦ୍ରମୋହନବାବୁ ପରିଶୋଧ କଲେ ।

ଦୁର୍ଭାଗ୍ୟକୁ ଚନ୍ଦ୍ରମୋହନ ମହାରଣା ପଡ଼ୋଶୀ ଠାକ (ବିଶ୍ୱନାଥ) ସାହୁ ଗୁଡ଼ିଆ ସହ ଗୋଟିଏ ପୋଖରୀ ବାବଦ୍ରେ ମକଦ୍ଦମା କରିବାକୁ ବାଧ୍ୟ ହୋଇଥିଲେ । ଏ ମକଦ୍ଦମା ୧୩।୧୪ ବର୍ଷ ଲାଗିଲା । ଏ ଗୁଡ଼ିଆର ଦୋକାନରୁ ଚନ୍ଦ୍ରମୋହନଙ୍କର ପରିବାର ସଉଦା ଓ ମିଷ୍ଟାନ୍ନ କିଣୁଥିଲେ । ସାହୁ କଟକକୁ ମକଦ୍ଦମା ସନ୍ଧାନ୍ରେ ଆସି ଚନ୍ଦ୍ରମୋହନବାବୁଙ୍କ ବସାରେ ରହୁଥିଲେ, ଖାଉଥିଲେ ଏବଂ ଫେରିବାକୁ ରେଲଭଡ଼ା ନିଅଣ୍ଟ ପଡ଼ିଲେ ୨।୪ ଟଙ୍କା ତାଙ୍କଠାରୁ ଧାର ନେଉଥିଲେ । କଚେରିରେ ମକଦ୍ଦମା ହେବ, ଅନ୍ୟତ୍ର ସାମାଜିକ ସଦ୍‌ଭାବ ରହିଥିବ । ଜିଦ୍‌ରେ ଓ ପର କଥାରେ ପଡ଼ି ଉଭୟ ପକ୍ଷ ବହୁ ଅପବ୍ୟୟ କଲେ । ସାହୁଘର ଋଣଗ୍ରସ୍ତ ହେଲେ । ଜିତିବା ପରେ ଚନ୍ଦ୍ରମୋହନବାବୁ ଡିକ୍ରୀଜାରି ଓ କ୍ରୋକ୍ ନ କରି ଛାଡ଼ି ଦେଲେ ।

ଏହି ମକଦ୍ଦମା ଚାଲିଥିବାବେଳେ ଚନ୍ଦ୍ରମୋହନବାବୁଙ୍କ ଘରେ (ଗ୍ରାମରେ) ଥିବା ନାଥିଆ-ମା ନାମ୍ନୀ ୪୫।୫୦ ବର୍ଷ ବୟସ୍କା ଚାକରାଣୀ ଅନ୍ୟର କୁଶିକ୍ଷାରେ ପଡ଼ି ଚନ୍ଦ୍ରମୋହନଙ୍କର ଘରେ ତା ୨୪।୧୨।୧୯୧୧ରେ ନିଆଁ ଲଗାଇଦେଲା । ଘର ସହିତ ଚନ୍ଦ୍ରମୋହନଙ୍କର ପ୍ରାୟ ୨୫।୩୦ ଖଣ୍ଡ କାବ୍ୟକବିତାର ପାଣ୍ଡୁଲିପି ପୋଡ଼ି ଭସ୍ମ ହୋଇଗଲା । ଚନ୍ଦ୍ରମୋହନ ତହିଁ ପରଦିନ ସକାଳେ ଘରେ ପହଞ୍ଚି ଦୁଃଖିତ

ହେଲେ । ମାତ୍ର ସ୍ତ୍ରୀକୟାଣୀକୁ କିଛି କହିଲେ ନାହିଁ ଏବଂ ତାକୁ ତାହାର ଘରକୁ ପଠାଇଦେଲେ ।

ବ୍ୟାସକବି ଫକୀରମୋହନ ଚନ୍ଦ୍ରମୋହନଙ୍କୁ ଗ୍ରନ୍ଥାବସ୍ଥାରୁ ଆଦର କରୁଥିଲେ । "ଉତ୍କଳ-ଭ୍ରମଣ"ରେ ସେ ଲେଖିଥିଲେ :

"ଆହେ ଚନ୍ଦ୍ର ମହାରଣେ ! ହେଉ ହେଉ
ଛାଲ ଦଅ ଆଉ ଥରେ କବିତାର ଢେଉ
ଛପାଇବେ ରାମଚନ୍ଦ୍ର * ଚନ୍ତା କି ହେ ଆଉ
ମାଗନେବ ଟଙ୍କା ମୁଠେ ଠୁଙ୍କି ଦେଇ ବାହୁ ।"

ଉତ୍କଳ ସାହିତ୍ୟ ପତ୍ରିକାରେ ଉଭୟ କବିତା, ଗଳ୍ପ, ପ୍ରବନ୍ଧ, ଆଲୋଚନା ଆଦି ଲେଖୁଥିଲେ । ଫକୀରମୋହନଙ୍କର ପରଲୋକ-ପ୍ରାପ୍ତି ପରେ ୧୯୧୮ରେ ଚନ୍ଦ୍ରମୋହନ ତାଙ୍କର ସ୍ନେହ,ଦୟା, ଆଶ୍ରିତ-ବାତ୍ସଲ୍ୟ ଆଦି ଉତ୍କଳ ସାହିତ୍ୟରେ ଲେଖିଥିଲେ । [ ଏହି ଗ୍ରନ୍ଥାବଳୀର ତା ୧୩୭-୧୩୯ ଦ୍ରଷ୍ଟବ୍ୟ । ]

ଆଧୁନିକ ଓଡ଼ିଆ ସାହିତ୍ୟର ବିକାଶ ପାଇଁ ମୟୂରଭଞ୍ଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କର ପୃଷ୍ଠ-ପୋଷକତାରେ 'ଉତ୍କଳ-ପ୍ରଭା' ୧୮୯୧ରେ ବାହାରିଲା । ସେଥିର ୧ମ ଭାଗ ୧ମ ସଂଖ୍ୟାରେ ଚନ୍ଦ୍ରମୋହନଙ୍କର 'ଖଣ୍ଡଗିରି' ପଦ୍ୟ, ୨ୟ ଭାଗ ୧ମ ସଂଖ୍ୟାରେ 'କପିଳାସ' କବିତା ପ୍ରକାଶିତ ହୋଇଥିଲା ଏବଂ ରାଧାନାଥ, ମଧୁସୂଦନ, ଗଙ୍ଗାଧର ମେହେର, ଆଦିଙ୍କ ସହ ଚନ୍ଦ୍ରମୋହନ ପୁରସ୍କୃତ ହୋଇଥିଲେ ।

ଚନ୍ଦ୍ରମୋହନ ଉତ୍କଳ ସାହିତ୍ୟ ସମାଜର ସହକାରୀ ସଭାପତି ପଞ୍ଚମ ବର୍ଷ ପର୍ଯ୍ୟନ୍ତ ଥିଲେ ଏବଂ ତାଙ୍କର କେତେକ ପ୍ରବନ୍ଧ ଉତ୍କଳ ସାହିତ୍ୟରେ ୧୯୦୮ ମସିହା ପର୍ଯ୍ୟନ୍ତ ଧାରାବାହିକ ଭାବରେ ପ୍ରକାଶିତ ହେଉଥିଲା । ତାଙ୍କର ଗ୍ରନ୍ଥାବଳୀରେ ଏଥିରୁ ଅନେକ ପ୍ରବନ୍ଧ ଦିଆଯାଇଅଛି । ଏହା ପୂର୍ବରୁ ପ୍ରଜାବନ୍ଧୁ, ସଂସ୍କାରକ, ଶିକ୍ଷାବନ୍ଧୁ, ନବ-ସମ୍ବାଦ, ସମ୍ବଲପୁର ହିତୈଷିଣୀ, ଉତ୍କଳ-ପ୍ରଭାରେ ତାଙ୍କର ଏକାଧିକ ପ୍ରବନ୍ଧ, କବିତା ଓ ଆଲୋଚନା ପ୍ରକାଶିତ ହୋଇଥିଲା । ସରକାରୀ ଚାକିରି କରିଥିବାରୁ ଓ ଆପଣାକୁ ବଡ଼ ସଙ୍କୁଚିତ କରି ରଖୁଥିବାରୁ 'ଛଦ୍ମ ନାମରେ ମଧ୍ୟ ସେ ଲେଖୁଥିଲେ । ବର୍ତ୍ତମାନ ସେଗୁଡ଼ିକ ଠିକ୍ କରି ଚିହ୍ନିବା କଷ୍ଟକର ଏବଂ ପୁରାତନ ପତ୍ରିକା ମଧ୍ୟ ଦୁଷ୍ପ୍ରାପ୍ୟ ଅଟେ ।

ଚନ୍ଦ୍ରମୋହନ ମହାରଣା ୧୮୯୯ରେ ଓଡ଼ିଶା ଟେକ୍ସ୍ଟ ବୁକ୍ କମିଟିର ମେମ୍ବର ଏବଂ ଓଡ଼ିଶା ସଂସ୍କୃତ ସମିତିର ସହକାରୀ ସଂପାଦକ ଥିଲେ । ସଂସ୍କୃତ

* ମୟୂରଭଞ୍ଜର ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ।

ସାହିତ୍ୟ ପ୍ରତି ତାଙ୍କର ଯେତିକି ଅନୁରାଗ ଥିଲା, ସେତିକି ଗଭୀର ଜ୍ଞାନ ମଧ୍ୟ ସେଥିରେ ଥିଲା । କୁମାର-ସମ୍ଭବ, ରଘୁବଂଶ, ନୈଷଧରେ ଓ ପାଣିନିଙ୍କର ବ୍ୟାକରଣରେ ସେ ଯଥେଷ୍ଟ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ତାଳଚେର ଯୁବରାଜ କିଶୋରଚନ୍ଦ୍ର ବୀରବର ହରିଚନ୍ଦନ କଲିଜିଏଟ୍ ସ୍କୁଲରେ ଛାତ୍ର ଥିବାବେଳେ ୧୮୯୭-୯୮ରେ ଚନ୍ଦ୍ରମୋହନ ଟ୍ରେନିଂ ସ୍କୁଲର ଶିକ୍ଷକ ଥାଇ, ତାଙ୍କର ଗୃହଶିକ୍ଷକ ଓ ଅଭିଭାବକ ଥିଲେ । ଘୋଡ଼ା-ଚଢ଼ାରେ ଚନ୍ଦ୍ରମୋହନବାବୁ ଧୁରୀଣ ଥିଲେ ଓ ଯୁବରାଜଙ୍କୁ ଘୋଡ଼ାଚଢ଼ା ଶିଖାଇ-ଥିଲେ ।

ଦୟାଲଚନ୍ଦ୍ର ମୁଖାର୍ଜୀ ରେଲ ବିଭାଗର ଜଣେ ଷ୍ଟେସନ ମାଷ୍ଟର ଥିଲେ । ସେ ଚାକିରି ଛାଡ଼ି ସନ୍ନ୍ୟାସ ଅବଲମ୍ବନ କରି, ବନାରସ (ବାରାଣସୀ)ର କାମରୂପ ମଠରେ ଓ ଶିମଳାରେ ରହୁଥିଲେ । ସେ ଦୁଇଖଣ୍ଡ ମାତ୍ର ଗେରୁଆ ଲୁଗାରେ ଚଳୁଥିଲେ, ଘୋର ଶୀତ ଦିନେ କମ୍ବଳ ବା ଚାଦର ଘୋଡ଼ୁ ନ ଥିଲେ । ଛତା, ଯୋତା ବ୍ୟବହାର କରୁ ନ ଥିଲେ । ମାତ୍ର ଚାଲିଚଳଣିରୁ ତାଙ୍କୁ ସାଧାରଣ ଲୋକ ସନ୍ନ୍ୟାସୀ ଓ ବିଦ୍ୱାନ୍ ବୋଲି ଜାଣି ପାରୁ ନ ଥିଲେ । ପିଲାଙ୍କ ସଙ୍ଗରେ ସେ ପିଲା ପରି ମିଶୁଥିଲେ । × × × । ଚନ୍ଦ୍ରମୋହନ କଟକରେ ପ୍ରାୟ ୧୯୦୧ରୁ ତାଙ୍କ ସଂସ୍ପର୍ଶରେ ଆସିଥିଲେ । ସନ୍ନ୍ୟାସୀଙ୍କର ପ୍ରଭାବ ଚନ୍ଦ୍ରମୋହନଙ୍କ ଉପରେ ପଡ଼ିଥିଲା । ଯୌବନରୁ ଚନ୍ଦ୍ରମୋହନ ନିରାମିଷାଶୀ ଥିଲେ, ଘରେ ଗେରୁଆ ଲୁଗା ପିନ୍ଧୁଥିଲେ; କୁର୍ତ୍ତା ପିନ୍ଧୁ ନ ଥିଲେ । ଫୁଙ୍ଗା ଦେହରେ ଶୀତ ଦିନେ ମଧ୍ୟ ରହୁଥିଲେ । ନିଆଁ ପୋହୁଁ ଥିଲେ । ସ୍କୁଲକୁ ଓ ବାହାରକୁ ଗଲେ ଧୋତି ଓ କୁର୍ତ୍ତା ପିନ୍ଧୁଥିଲେ ଏବଂ କଠିଣ ପରିବର୍ତ୍ତେ ମୋଜା, ଯୋତା; ଚୋଗା, ଚପକନ୍ ପିନ୍ଧୁଥିଲେ, ଦେଶୀ ଟୋପି ଲଗାଉଥିଲେ । ଦୈନିକ ସେ ୪ ଥର ସ୍ନାନ କରୁଥିଲେ, ଓ ୪ଥର ନୀରବ ପ୍ରାର୍ଥନା କରୁଥିଲେ । ଭୋରରୁ ଦିନେ ଦିନେ ଶଙ୍କରାଚାର୍ଯ୍ୟଙ୍କର ମୋହମୁଦ୍‌ଗର ଉଚ୍ଚସ୍ୱରରେ ବୋଲୁଥିଲେ । ପ୍ରାୟ ତିନି ଥରରେ ମୋଟ ୪ ଘଣ୍ଟା ମୌନ ରହୁଥିଲେ । ଗ୍ରାମରେ ଥିବାବେଳେ ମଧ୍ୟାହ୍ନ ସ୍ନାନ ପରେ ଚନ୍ଦ୍ରଶେଖର ମହାଦେବଙ୍କୁ ଦର୍ଶନ କରୁଥିଲେ । ମାତ୍ର, ପୁରୀରେ ଥିବାବେଳେ କୌଣସି ଦେବଦେବୀଙ୍କୁ ବା ରେମୁଣାରେ ଥିବାବେଳେ କ୍ଷୀରଚୋରା ଗୋପୀନାଥଙ୍କୁ ଦର୍ଶନ କରିବାକୁ ଯାଉ ନ ଥିଲେ । ଅଥଚ ଭୋଗ ଓ ପ୍ରସାଦ ପାଇବାରେ ଆନନ୍ଦ ଲାଭ କରୁଥିଲେ । ସେ ଟଙ୍କା-ପଇସା ଛୁଉଁ ନ ଥିଲେ, ଚପରାସୀ ଅଫିସରୁ ତାଙ୍କର ଦରମା ଆଣି ବସାରେ ଆତ୍ମୀୟ ଲୋକଙ୍କୁ ଦେଇ ଯାଉଥିଲା । ମାତ୍ର ଚନ୍ଦ୍ରମୋହନ ଆୟବ୍ୟୟର ହିସାବ ସେହି ଆତ୍ମୀୟଠାରୁ ମଝି ମଝିରେ ବୁଝୁଥିଲେ । ତାଙ୍କର କୁଳଦେବତା ଗୋପାଳ ମୂର୍ତ୍ତି ପୁରୋହିତ ଶିବପତିଙ୍କ ଘରେ ରହିଥିଲେ ଓ ପୂଜାର ସୁବନ୍ଦୋବସ୍ତ କରାଯାଇଥିଲା । ସେ ସର୍ବଦା ରାସ୍ତାର ବାମ କଡ଼ରୁ ଆହୁରି ଛାଡ଼ି ଚାଲୁଥିଲେ । ଖରା ବା ବର୍ଷାରେ ସେ ଛତା ଧରୁ ନ ଥିଲେ ।

ନିଜର ଅନ୍ୟ ଲୋକ କେବେ କେବେ ତାଙ୍କ ଉପରକୁ ଛତା ଧରି ପାଖେ ପାଖେ ଚାଲୁଥିଲେ । ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କର ଦୃଷ୍ଟିଶକ୍ତି ଓ ଶ୍ରବଣଶକ୍ତି ଉତ୍ତମ ଥିଲା । ସେ ଚଷମା ବ୍ୟବହାର କରି ନ ଥିଲେ । ସ୍ପର୍ଶ-ଶୁଚି ଦୋଷ ହେତୁ ସେ ଖାଦ୍ୟ ଖଟରେ ବା ବଇଠାରେ ପରିବାର ଭିତରେ ମୁଖ୍ୟ ବସୁ ନ ଥିଲେ । ତାଙ୍କର ବାସନ-ବର୍ତ୍ତନ, ପାଇଖାନା ଯିବାର ଲୋଟା ଅଲଗା ରହୁଥିଲା । ସେ ଫାଉଣ୍ଟେନ୍ ପେନ୍ ଓ ଘଣ୍ଟା ବ୍ୟବହାର କରୁ ନ ଥିଲେ । ନିଜର ଯେଉଁ ମାମୁଲି କଲମ ବା ପେନ୍‌ସିଲରେ ଲେଖୁଥିଲେ, ତାହା ଉପରେ କାଗଜ ଗୋଡ଼ା ହେଉଥିଲା ଓ ଲେଖିସାରିବା ପରେ ଧୂଆ ହୋଇ ରହୁଥିଲା ।

ସେ ସ୍ୱଳ୍ପଭାଷୀ ଥିଲେ । **Brevity is the soul of the language.** ଅଳ୍ପ କଥାରେ ନିଜର ଭାବ ବା ବକ୍ତବ୍ୟ ପ୍ରକାଶ କରୁଥିଲେ ।

ଚନ୍ଦ୍ରମୋହନ 'ଉତ୍କଳ ସାହିତ୍ୟ ସମାଜ'ର ସହକାରୀ ସଭାପତି ୫ମ ବର୍ଷ ପର୍ଯ୍ୟନ୍ତ ଥାଇ ବିଭିନ୍ନ ଅଧିବେଶନରେ ପ୍ରବନ୍ଧ ପାଠ କରିଥିଲେ । 'ଆଲୋଚନା ସଭା'ରେ ପଠିତ 'ଭୂଗୋଳ ବିଦ୍ୟା', 'ଇତିହାସ' ଆଦି ଶୀର୍ଷକ ପ୍ରବନ୍ଧ ଉତ୍କଳ ସାହିତ୍ୟରେ ପ୍ରକାଶିତ ହୋଇଥିଲା । କାର୍ଯ୍ୟକ୍ଷେତ୍ରର ପରିବର୍ତ୍ତନ ହେତୁ ନର୍ମାଲ ଟ୍ରେନିଂ ସ୍କୁଲ ଛାଡ଼ିବାକୁ ପଡ଼ିଥିଲେ ବି, ଉତ୍କଳ ସାହିତ୍ୟ ସମାଜ ପ୍ରତି ତାଙ୍କର ସର୍ବଦା ଶୁଭଦୃଷ୍ଟି ଥିଲା । ସେହି ଅନୁରାଗରୁ ପରିଣତ ବୟସରେ ଭଗ୍ନ ସ୍ୱାସ୍ଥ୍ୟରେ କଟକ ଆସି ସାହିତ୍ୟ ସମାଜର ଏକବିଂଶତିତମ ବାର୍ଷିକ ଅଧିବେଶନରେ ତା ୫।୧୦ ୧୯୨୭ ମସିହାରେ) ସଭାପତିର ଆସନ ଅଳଂକୃତ କରିଥିଲେ । ଉତ୍କଳ ସାହିତ୍ୟ ସମାଜର ଶୁଭାରମ୍ଭ ଯେଉଁ ସାତ ଜଣଙ୍କୁ ନେଇ ସର୍ବପ୍ରଥମେ ଆରବ୍ଧ ହୋଇଥିଲା, ଚନ୍ଦ୍ରମୋହନ ଥିଲେ ସେମାନଙ୍କ ମଧ୍ୟରେ ଅନ୍ୟତମ । ଓଡ଼ିଆଭାଷା ସାହିତ୍ୟର ଉନ୍ନତି ଥିଲା 'ଉତ୍କଳ ସାହିତ୍ୟ' ପ୍ରକାଶର ମୁଖ୍ୟ ଉଦ୍ଦେଶ୍ୟ । ଏଥିରେ ଚନ୍ଦ୍ରମୋହନ-ଙ୍କର ଏକାଧିକ ଉପାଦେୟ ପ୍ରବନ୍ଧ ଓ କବିତା ପ୍ରକାଶ ପାଇଥିଲା । (ଗ୍ରନ୍ଥାବଳୀରେ ଅଧିକାଂଶ ସନ୍ନିବେଶିତ ହୋଇଅଛି ।) ତାଙ୍କର ସ୍ୱକୀୟ ଗଦ୍ୟଶୈଳୀ, ତାତ୍ତ୍ୱିକ ପର୍ଯ୍ୟାଲୋଚନା, ଯୁକ୍ତିନିଷ୍ଠ ଭାବ-ସମ୍ପଦ, ଅଭିନବ ବିଷୟ-ନିର୍ବାଚନ ପାଠକମାନଙ୍କୁ ଯେତିକି ଆକର୍ଷଣ କରିଥିଲା, ନବୀନ ଲେଖକମାନଙ୍କ ପାଇଁ ସେତିକି ପ୍ରେରଣାର ଉତ୍ସ ହୋଇଥିଲା ।

୧୮୮୭-୮୯

ଚନ୍ଦ୍ରମୋହନ ବାଲେଶ୍ୱର ଜିଲା ସ୍କୁଲର ଛାତ୍ର ଥିବାବେଳେ ~~୧୮୮୮-୮୯~~ ମସିହାରେ ଫକୀରମୋହନ ସେନାପତିଙ୍କ ସହିତ ତାଙ୍କର ବ୍ୟକ୍ତିଗତ ପରିଚୟ ହୋଇଥିଲା । ରେଭେନ୍‌ସା କଲେଜରେ ଏଫ୍.ଏ. ଶ୍ରେଣୀର ଛାତ୍ର ଥିବାବେଳେ 'ସମ୍ବାଦିକା' ପତ୍ରିକାରେ ସେ ଏକାଧିକ କବିତା ଲେଖି ରାଧାନାଥ ରାୟ, ମଧୁସୂଦନ ରାଓ ଓ ଫକୀରମୋହନଙ୍କର ପ୍ରୀତିଭାଜନ ହୋଇଥିଲେ । ସେତେବେଳେ ବୟସରେ

ତରୁଣ ଓ ସାହିତ୍ୟ-ରଚନା କ୍ଷେତ୍ରରେ ଶିକ୍ଷ୍ୟ-ସ୍ଥାନୀୟ ହେଲେ ବି ଚନ୍ଦ୍ରମୋହନଙ୍କର ସାରସ୍ୱତ ପ୍ରତିଭା ପ୍ରତି ଏହି ବରିଷ୍ଠ ସାହିତ୍ୟିକମାନଙ୍କର ଆସ୍ଥା ଥିଲା ।

ଚନ୍ଦ୍ରମୋହନ ଓଡ଼ିଆ ଭାଷାର ଓ ଜାତୀୟ ଜୀବନର ଏକ ସଙ୍କଟମୟ କାଳରେ ଜନ୍ମ ଗ୍ରହଣ କରିଥିଲେ । ନିଜର ଛାତ୍ରଜୀବନରେ ଓ ଶିକ୍ଷକତାର ପ୍ରଥମ ଅବସ୍ଥାରେ ଓଡ଼ିଆ ଭାଷାରେ ଆବଶ୍ୟକ ପୁସ୍ତକର ଅଭାବ ଥିଲା । ଏପରି କି, ୧୯୧୦/୧୧ ପର୍ଯ୍ୟନ୍ତ ସଂସ୍କୃତ ଭାଷାର ବ୍ୟାକରଣ, ଇଂରାଜୀରୁ ଓଡ଼ିଆକୁ ଏବଂ ଓଡ଼ିଆରୁ ଇଂରାଜୀକୁ ଅନୁବାଦ ବହି ବଙ୍ଗଳା ଭାଷାରେ ଥିଲା ; ଓଡ଼ିଆ ଭାଷାରେ ଓ ଲିପିରେ ନ ଥିଲା । ପୂର୍ବେ ଯେଉଁ ଓଡ଼ିଆ ଭାଷାର ବ୍ୟାକରଣ ଥିଲା, ତାହା ବଙ୍ଗଳାର ଅନୁକରଣରେ ଥିଲା । × × × । କଲିକତାର ମ୍ୟାକ୍‌ମିଲନ୍ ଏଣ୍ଡ୍ କୋ. ଦ୍ୱାରା ଅନୁରୁଦ୍ଧ ହୋଇ, ଚନ୍ଦ୍ରମୋହନ ମହାଭାରତ କଥାବଳି, ଓଡ଼ିଆ ରଚନା ଶିକ୍ଷା (ପ୍ରଥମ ସୋପାନ), ଇଂରାଜୀରୁ ଓଡ଼ିଆକୁ ଅନୁବାଦ ବହି ଲେଖିଥିଲେ । କଥାବଳି ପାଇଁ କମ୍ପାନି ରୟାଲ୍‌ଟି ଯାଚିବାରୁ ସେ ଉତ୍ତର ଦେଇଥିଲେ—"ମୁଁ ଛାତ୍ରଛାତ୍ରୀମାନଙ୍କ ପାଇଁ ଲେଖିଛି, ଟଙ୍କା କଅଣ ନେବି ?" କମ୍ପାନି ତାଙ୍କୁ ଖୁସିରେ ସେତେବେଳର ଭାରତୀୟ ମୁଦ୍ରାରେ ଟ ୮୦୦ ମାତ୍ର ଦେଇଥିଲେ । ଶୁଣା ଯାଇଥିଲା ଯେ କମ୍ପାନି ୩ ବର୍ଷରେ ଏହି ପାଠ୍ୟପୁସ୍ତକ-ବିକ୍ରୟରୁ ତିରିଶ ହଜାର ଟଙ୍କା ଲାଭ ପାଇଥିଲେ । କଥାବଳିର ପଦ୍ୟଗୁଡ଼ିକୁ ବାଦ ଦେଇ, ତାହା ହିନ୍ଦୀ ଓ ତେଲୁଗୁ ଭାଷାରେ ଅନୂଦିତ ହୋଇ ଉକ୍ତ କମ୍ପାନି ଦ୍ୱାରା ପ୍ରକାଶିତ ହୋଇଥିଲା ।

ବିଷୟବସ୍ତୁ-ନିର୍ବାଚନର ବ୍ୟାପକ ଦୃଷ୍ଟିଭଙ୍ଗୀ, ଚରିତ୍ରଗଠନ ଉପଯୋଗୀ ନୀତିଶିକ୍ଷା ଓ ହିତୋପଦେଶ, ଶିଶୁମନ-ଯେନା ସହଜ ସରଳ ଭାବ-ପ୍ରକାଶ, ମଧୁର ରାଗ ଓ ସରଳ ଛନ୍ଦ, ଋତୁବର୍ଣ୍ଣନାର ରୂପସମ୍ଭାର, ବ୍ୟକ୍ତିତ୍ୱମୟୀ ପ୍ରକୃତିର ଚିତ୍ରଣ, ମନଲୋଭା ଉପମା, ନାଟକୀୟ ବର୍ଣ୍ଣନା-ପାଟବ, ଭକ୍ତିଭାବନା, କାରୁଣ୍ୟ, ଅଭିନବ ଗଦ୍ୟଶୈଳୀ କଥାବଳିକୁ ସାର୍ଥକ ସାରସ୍ୱତ ଶିଶୁ-ସମ୍ପଦର ଗୌରବ ପ୍ରଦାନ କରିଛି ।

ତାଙ୍କ ପ୍ରଣୀତ ଓଡ଼ିଆ ବ୍ୟାକରଣ ୧ମ ଓ ୨ୟ ସୋପାନକୁ ଓଡ଼ିଆ ଭାଷାର ପ୍ରଥମ ମୌଳିକ ବ୍ୟାକରଣ ବୋଲିଯାଇପାରେ । ଏହା ପୂର୍ବରୁ ପ୍ରଚଳିତ ଓଡ଼ିଆ ବ୍ୟାକରଣମାନ ଇଂରାଜୀ ଓ ବଙ୍ଗଳା ବ୍ୟାକରଣ ଅନୁସରଣରେ ରଚିତ ହୋଇଥିଲା । ଚନ୍ଦ୍ରମୋହନ ସେଗୁଡ଼ିକର ଅନ୍ଧ ଅନୁସରଣ କରି ନ ଥିଲେ । ତାଙ୍କର ଏହି ବ୍ୟାକରଣ ଛାତ୍ର ଓ ଶିକ୍ଷକମାନଙ୍କ ମହଲରେ ଏତେ ପ୍ରିୟ ହୋଇ ପାରିଥିଲା ଯେ, ୧୯୧୦ରୁ ୧୯୫୦ ପର୍ଯ୍ୟନ୍ତ ପାଠ୍ୟପୁସ୍ତକ ରୂପେ ଚାଲିଥିଲା । ଆଚାର୍ଯ୍ୟ ହରିହର ଦାସଙ୍କର ଇଂରାଜୀ Child's Easy Grammar ପରି, ପାଠ୍ୟପୁସ୍ତକ-ତାଲିକାରେ ନ ଥିଲେ ମଧ୍ୟ ଛାତ୍ରଛାତ୍ରୀମାନେ କିଣୁଥିଲେ । ରଚନାଶିକ୍ଷା (ପ୍ରଥମ ସୋପାନ) କୋମଳମତି ବାଳକ - ବାଳିକାମାନଙ୍କ ପାଇଁ inductive

method) ଉଦାହରଣମାନଙ୍କରୁ ସାଧାରଣ ସୂତ୍ର ଗଠନ ପଦ୍ଧତିରେ ସରଳ ଭାବରେ ଲିଖିତ ଏବଂ ବହିରେ ନାନା ବିଷୟରେ ପ୍ରବନ୍ଧର ଆଦର୍ଶ ରହିଛି ।

ସେ ଦୋଷୀକୁ ଦଣ୍ଡ ଦେଉଥିଲେ ଏବଂ ନିର୍ଦ୍ଦୋଷକୁ କ୍ଷମା ଦେଉଥିଲେ ଓ ସତ୍ସାହସ ପାଇଁ ପ୍ରଶଂସା କରୁଥିଲେ । ପୁରୀ ଜିଲା ସ୍କୁଲର ୧୦ମ ଶ୍ରେଣୀର ଛାତ୍ର ଗୋଦାବରୀଶ ମିଶ୍ରଙ୍କୁ ଇଂରାଜୀରେ ଅଶୁଦ୍ଧି ପାଇଁ ଦଣ୍ଡ ଦେଇଥିଲେ ଏବଂ ନବମ ଶ୍ରେଣୀର ଛାତ୍ର କୃପାସିନ୍ଧୁ ମିଶ୍ର ସ୍କୁଲର କଳଘଡ଼ିକୁ ଅଧଘଣ୍ଟାଏ ପଛକୁ କରି ଦେଇଥିବାରୁ ବେଞ୍ଚ ଉପରେ ଠିଆ ହେବାର ଦଣ୍ଡ ଦେଇଥିଲେ । କୃପାସିନ୍ଧୁର ବାତଜ୍ୱରାକ୍ରାନ୍ତ ଗୋଡ଼କୁ ଦେଖି ହେ. ମା. ଦୁଃଖ କରିଥିଲେ ଓ ଗୋଡ଼କୁ ଆଉଁସି ଦେଇଥିଲେ । ଅଧ୍ୟାପକ ଚିନ୍ତାମଣି ଦାଶ ତାଙ୍କର 'ଐତିହାସିକ କୃପାସିନ୍ଧୁ' ବହିର ମୁଖବନ୍ଧରେ ଏହା ଲେଖିଛନ୍ତି ।

ଜଣେ ଅଭିଜ୍ଞ, ସୁଦକ୍ଷ ହେଡ୍‌ମାଷ୍ଟର ଭାବରେ ଚନ୍ଦ୍ରମୋହନଙ୍କର ସୁନାମ ଥିଲା । ତାଙ୍କର ଦୃଷ୍ଟିରେ ସାମାନ୍ୟ ଟିକିଏ ବିଶୃଙ୍ଖଳା ପଡ଼ିବା ମାତ୍ରେ ସେ ତାକୁ ସୁଧାରିବାକୁ ଯତ୍ନ କରୁଥିଲେ । ଏଥିପାଇଁ ତାଙ୍କୁ ପ୍ରତିକୂଳ ଅବସ୍ଥାର ଓ ଉର୍ଦ୍ଧ୍ୱତନ ଲୋକଙ୍କର ସମ୍ମୁଖୀନ ହେବାକୁ ପଡ଼ିଥିଲା । କିନ୍ତୁ ସେ ଶିକ୍ଷାନୁଷ୍ଠାନର ଛାତ୍ର ଓ ସହକର୍ମୀମାନଙ୍କ ସମ୍ମାନ ରକ୍ଷା କରିବାକୁ ଧ୍ୟାନ ଦେଉଥିଲେ । ତଳେ କେତୋଟି ଘଟଣା ଦିଆଗଲା :—

ପୁରୀଜିଲ୍ଲା ସ୍କୁଲର ଛାତ୍ରାବାସର ଜଣେ ଯୁବକ ଛାତ୍ର ଓ ଅନ୍ୟ ଦୁଇ ଜଣ ବଙ୍ଗାଳୀ ପିଲା ବାୟୁପରିବର୍ତ୍ତନ ପାଇଁ ବାହାରୁ ଆସିଥିବା କୌଣସି ଭଦ୍ର-ଲୋକଙ୍କର ଯୁବତୀ ଅବିବାହିତା ଝିଅ ସହ ସମୁଦ୍ର-କୂଳରେ ବୁଲୁଥିବା ଦେଖି, ହେ. ମା. ଚନ୍ଦ୍ରମୋହନ ବାବୁ ସେହି ଛାତ୍ରାବାସ-ପିଲାଙ୍କୁ ସ୍କୁଲରୁ ବାହାର କରି ଦେଇଥିଲେ । ପିଲାର ଅଭିଭାବକ ହେ. ମା.ଙ୍କ ନାମରେ ମକଦମା କରିବାକୁ ବାହାରିଥିଲେ । ପୁରୀର ବିଶିଷ୍ଟ ମୋକ୍ତାର ରାମଚନ୍ଦ୍ର ଦାଶ ମଧ୍ୟସ୍ଥ ହୋଇ ଏହା ସମାଧାନ କରିଦେଇଥିଲେ । ପଣ୍ଡିତ ନୀଳକଣ୍ଠ ଦାସ ତାଙ୍କର ଆତ୍ମଜୀବନୀ-୧ମ ଖଣ୍ଡରେ-ପରିଚ୍ଛେଦ ୨୭ରେ ଏହା ଲେଖିଛନ୍ତି ।

କଟକ ନର୍ମାଲ ଟ୍ରେନିଂ ସ୍କୁଲର ଅଧ୍ୟକ୍ଷ ଥିବାବେଳେ ପାଲଟପଡ଼ାର ୩ ଜଣ ଦୁଷ୍ଟ ଯୁବକ ଛାତ୍ରାବାସର ନୂଆଣିଆ ଗୁହାଳଘରେ ନିଆଁ ଲଗାଇ ଦେଇଥିଲେ । ଗୁରୁଛାତ୍ରମାନେ ତାହା ତୁରନ୍ତ ନିଭାଇ ଦେଇଥିଲେ । କିନ୍ତୁ କେତେକ ଗୁରୁଛାତ୍ର ପରେ ଦିନେ ରାତିରେ ସେହି ଦୁଷ୍ଟ ଯୁବକଙ୍କୁ ରାସ୍ତାରେ ମାଡ଼ ଦେଇଥିଲେ । ଏହି ହେତୁରୁ ଅଭିଭାବକମାନେ ଅଧ୍ୟକ୍ଷ, ଛାତ୍ରାବାସର ସହକାରୀ ତତ୍ତ୍ୱାବଧାରକ ଓ ଛାତ୍ରମାନଙ୍କ ଉପରେ ମକଦମା ଡାଏର କଲେ । ମିଷ୍ଟର ମଧୁସୂଦନ ଦାସ ଏବଂ ଓକିଲ ଗୋକୁଳାନନ୍ଦ ଚୌଧୁରୀ ସମସ୍ତ ତଥ୍ୟ ଜାଣି

ମକଦମାକୁ ଏପରି ତଦ୍‌ବିର କରିଦେଲେ ଯେ ଦୁଷ୍ଟ ଯୁବକମାନେ ଜିତିବାର ଆଶା ନ ଦେଖି ଏବଂ ଓଲଟା ଦୋଷୀ ସାବ୍ୟସ୍ତ ହେବାର ଆଶଙ୍କାରେ ମକଦମା ଉଠାଇ ନେଲେ ।

ନ୍ୟାଯ୍ୟୋଚିତ କଥାରେ ସେ ଉପରି କର୍ମଚାରୀଙ୍କୁ ଭୟ କରୁ ନ ଥିଲେ । ସେତେବେଳେ ଶିକ୍ଷା ବିଭାଗରେ ଓ ଶାସନ ବିଭାଗରେ ଉଚ୍ଚ କର୍ମଚାରୀମାନେ ଇଉରୋପୀୟ ଥିଲେ । ଓଡ଼ିଶା ଡିଭିଜନର ଗୋରା ଇନ୍‌ସପେକ୍ଟରଙ୍କର ଜଣେ ହେଡ୍ କ୍ଲାର୍କ ଆକ୍ରୋଶ ରଖି ଟ୍ରେନିଂ ସ୍କୁଲର ଜଣେ ଓଡ଼ିଆ ପଣ୍ଡିତଙ୍କୁ ହାଜାରିବାଗ ରିଫର୍ମେଟାରି ସ୍କୁଲକୁ ବଦଳି ଆଦେଶ ପଠାଇଲେ । ସେହି ଚିଠିରେ ଇନ୍‌ସପେକ୍ଟର -ଙ୍କର ଦସ୍ତଖତ ନ ଥିବାରୁ, ହେ.ମା. ଚନ୍ଦ୍ରମୋହନ ମହାରଣା ତାକୁ ଗ୍ରହଣ କଲେ ନାହିଁ । ଇନ୍‌ସପେକ୍ଟର ପରେ ଏହା ଜାଣି କ୍ଲାର୍କଙ୍କୁ ଭର୍ତ୍ସନା କରିଥିଲେ । ଦୈବ-କ୍ରମେ ସେହି କ୍ଲାର୍କ କେତେ ବର୍ଷ ପରେ ସେହି ହାଜାରିବାଗର ଚାକିରିକୁ ବଦଳି ହେଲେ ।

ବିହାର ଓ ଓଡ଼ିଶାର ଡିରେକ୍ଟର ଫ'ଅକସ୍ ସାହେବ ଟ୍ରେନିଂ ସ୍କୁଲ ପରିଦର୍ଶନରେ ଥରେ ଆସିଥିଲେ ଏବଂ କରଣୀ ସୁଧାକର ରାଓଙ୍କୁ ପଦେ କଟୁ କଥା କହିଥିଲେ । ଚନ୍ଦ୍ରମୋହନ ମହାରଣା ଡିରେକ୍ଟରଙ୍କୁ ଏ ବିଷୟରେ ମୌଖିକ ବୁଝାଇ ଦେବାରୁ ଫଅକସ ସାହେବ ଭୁଲ ପାଇଁ ଦୁଃଖପ୍ରକାଶ କରିଥିଲେ । ବାଲେଶ୍ୱର ନିକଟ ରାମପୁର କଲ୍ଲାର ଦୁଇ ଜଣ ମିଲିଟାରି ଲୋକ ମଙ୍ଗଳପୁର ଭୂୟାଁ-ଘରର ପିଲା (ବାଲେଶ୍ୱର ଜିଲା ସ୍କୁଲର ଛାତ୍ର) ବ୍ରଜକିଶୋର ଦାସଙ୍କୁ ରାସ୍ତାରେ ଗାଳି ଦେଇଥିଲେ । ହେ.ମା. ମହାରଣା ମୋକ୍ତାର ମୁକୁନ୍ଦପ୍ରସାଦ ଦାସଙ୍କଦ୍ୱାରା ଉକ୍ତ ମିଲିଟାରି ଲୋକ ଉପରେ ମକଦମା କରିବାର ସୂଚନା ଶୁଣାଇଦେଲେ । ତହୁଁ, ଶୃଙ୍ଖଳାପ୍ରିୟ ଦୁଇ କର୍ମଚାରୀ ସେହି ଛାତ୍ରକୁ କ୍ଷମା ମାଗିଲେ । ବାଲେଶ୍ୱରର ଇଂରେଜ ଏସ୍.ପି. ଜିଲା ସ୍କୁଲ ହତା ଭିତରେ ପଶି ପ୍ରାତଃ ଭ୍ରମଣରେ ଯାଉଥିଲେ । ହେ.ମା. ତାହା ସର୍ବ ସାଧାରଣ ପଥ ନୁହେଁ ବୋଲି ତାଙ୍କୁ ଦର୍ଶାଇବାରେ ସେ ଶୃଙ୍ଖଳାପ୍ରିୟ ସାହେବ କ୍ରୁଦ୍ଧ ନ ହୋଇ ଆନନ୍ଦିତ ହୋଇଥିଲେ ଓ ସଡ଼କ ବାଟେ ବୁଲି ଯାଇଥିଲେ । ସୁନହଟ (ବାଲେଶ୍ୱର)ର ଜମିଦାରଙ୍କର କନ୍ୟା-ବିବାହ ଉପଲକ୍ଷେ ଜିଲା ସ୍କୁଲର ଖେଳ-ପଡ଼ିଆରେ ବାଣ ଆଦି ସଜା ହୋଇଥିଲା । ପିଲାମାନେ ପାଖକୁ ଯାଇ ଦେଖିବାରୁ ବାଣ-କାରିଗର ସେମାନଙ୍କୁ ଗାଳି ଦେଲା । ହେ.ମା. ଏହା ଶୁଣି କଲେକ୍ଟର ଜନଷ୍ଟନ ସାହେବଙ୍କୁ ରିପୋର୍ଟ କଲେ । ହେ.ମା.ଙ୍କର ଅନୁମତି ଆଗରୁ ନିଆ ଯାଇ ନ ଥିବାରୁ କଲେକ୍ଟରଙ୍କ ଅଫିସ-ସୁପରିଣ୍ଟେଣ୍ଡେଣ୍ଟ ଆସି ପିଲାଙ୍କୁ କ୍ଷମା ମାଗିଲେ । ଖେଳପଡ଼ିଆର ଫାଟକ ଖୋଲି ଦିଆଗଲା । × × × ।

ମାନ୍ଦ୍ରାଜରୁ ଜଣେ ଅପରିଚିତ ଯୁବକ ଉତ୍କଳ ରଥଯାତ୍ରା ଦେଖିବାକୁ ପୁରୀରେ ଜିଲ୍ଲା ସ୍କୁଲର ଅତିଥି-ଗୃହରେ ହେ.ମା.ଙ୍କର ଅନୁମତି ନେଇ ୨।୩ ଦିନ ରହିଥିଲେ । ଛାତ୍ରାବାସର ପାଣିପାଣ୍ଡେ (ପାଣିବାଲା) ସେହି ଅତିଥିଙ୍କ ବାକ୍ସରୁ ୫ ୧୨୫ ଚୋରି କରିଥିଲା । ଉତ୍କଳ ଏକଥା ନ ଜଣାଇ, ଚନ୍ଦ୍ରମୋହନ ବାବୁଙ୍କଠାରୁ ୫ ୧୦୦ ଧାର କରି ମାନ୍ଦ୍ରାଜ ଫେରିଗଲେ ଓ ପରେ ଟଙ୍କା ପଠାଇଦେଲେ । ହେ.ମା. ପରେ ସେହି ପାଣିପାଣ୍ଡେ ଚୋରି କରିଥିବା ଜାଣିପାରିଲେ । ମାତ୍ର ସେ ତାକୁ କ୍ଷମା କରିଦେଲେ ।

ଚନ୍ଦ୍ରମୋହନ ମହାଶୟ B:T. ବା ତଦ୍ରୂପ ଟ୍ରେନିଂ ପାଇ ନ ଥିଲେ । ତଥାପି ତାଙ୍କର ଶିକ୍ଷାଦାନ-ଦକ୍ଷତା ଯୋଗୁଁ ସେ ଟ୍ରେନିଂ ସ୍କୁଲ (ଶିକ୍ଷକ-ତାଲିମ ବିଦ୍ୟାଳୟ)ର ଅଧ୍ୟକ୍ଷ ହୋଇଥିଲେ । କେତେକ କହନ୍ତି ଯେ ଶିକ୍ଷକ ବା ଅଧ୍ୟାପକ ସେହି କଳା ବା ଦକ୍ଷତା ନେଇ ଜାତ ହୋଇଥାନ୍ତି । ସେ ଯୁଗରେ ମଧୁସୂଦନ ରାଓ ଆଦି ସେହିପରି ଅସାଧାରଣ ଶିକ୍ଷକ ଓ ଶିକ୍ଷାବିତ୍ ଥିଲେ । ଚନ୍ଦ୍ରମୋହନବାବୁ ପଢ଼ାଇବା ବେଳେ ବିଭିନ୍ନ ବିଷୟର ପରସ୍ପର ସଂପର୍କ ଦେଖାଇ, correlation (ଅନୁବନ୍ଧ) ପ୍ରଣାଳୀରେ ଆଲୋଚ୍ୟ ବିଷୟକୁ ଏପରି ସରସ କରିପାରୁଥିଲେ ଯେ ତାହା ଛାତ୍ରମାନଙ୍କର ମନରେ ରହି ଯାଉଥିଲା । ଶିକ୍ଷାଶାସ୍ତ୍ରୀମାନେ କହନ୍ତି ଯେ ପ୍ରକୃତ ଶିକ୍ଷକଙ୍କର କାର୍ଯ୍ୟ ହେଉଛି—ଜ୍ଞାନ ଆହରଣ କରିବାପାଇଁ ଛାତ୍ରଛାତ୍ରୀଙ୍କୁ ସମର୍ଥ କରାଇବା; ଗୁଡ଼ାଏ ପଢ଼ାଇବା ନୁହଁ । ସେହି ନୀତିକୁ ଚନ୍ଦ୍ରମୋହନ ମହାଶୟ ବେଶି ଅନୁସରଣ କରୁଥିଲେ । ସେ ସମୟରେ କଟକ ଟ୍ରେନିଂ ସ୍କୁଲର ଓ ଜିଲ୍ଲା ସ୍କୁଲର ପାଠାଗାରଗୁଡ଼ିକରେ ଉନ୍ନତ ଧରଣର ବଡ଼ ବଡ଼ ଅଭିଧାନ ଓ ସନ୍ଦର୍ଭ ପୁସ୍ତକମାନ ଥିଲା ଏବଂ ଭଲ ଶିକ୍ଷକମାନେ ଉଚ୍ଚ ଶ୍ରେଣୀର ଛାତ୍ରମାନଙ୍କୁ ସେଗୁଡ଼ିକ ସାହାଯ୍ୟରେ ଜ୍ଞାନ ଅର୍ଜନ କରିବାକୁ ଉତ୍ସାହିତ କରୁଥିଲେ । × × × ।

ସେ କାଳରେ ନୀତିଶିକ୍ଷା ଦେବା ପାଇଁ ସପ୍ତାହରେ ଗୋଟିଏ ଘଣ୍ଟା (ପିରିଅଡ୍) ଜଣେ ସଦାଚାରୀ ପ୍ରୌଢ଼ ଶିକ୍ଷକ ବା ଶିକ୍ଷୟିତ୍ରୀ ଛାତ୍ର ବା ଛାତ୍ରୀମାନଙ୍କୁ ଏକତ୍ର କରାଇ କିଛି କହୁଥିଲେ ଏବଂ ଛାତ୍ରଛାତ୍ରୀ ତଦନୁସାରେ ଆଚରଣ କରୁଛନ୍ତି କି ଯଥାସମ୍ଭବ ଲକ୍ଷ୍ୟ କରୁଥିଲେ । ଚନ୍ଦ୍ରମୋହନ ମହାଶୟ ହେଡ୍‌ମାଷ୍ଟର ଭାବରେ ମଧ୍ୟେ ମଧ୍ୟେ ସତ୍ୟ ଉପାଖ୍ୟାନ (anecdotes) ଜରିଆରେ ଏ ଶିକ୍ଷା ଦେଉଥିଲେ । ତାଙ୍କର ବିଶ୍ୱାସ ଥିଲା ଯେ "morality is caught, never taught," ଅର୍ଥାତ୍, ଗୁରୁଜନଙ୍କର ସଦାଚାର ଦେଖି ଶିଷ୍ୟ ବା ସନ୍ତାନ ତାହା ନିଜେ ଆଚରଣ କରେ; ଖାଲି ଉପଦେଶ ପାଇଲେ ତାହା କରେ ନାହିଁ ।

ଚନ୍ଦ୍ରମୋହନ ମହାଶୟ ଗବେଷଣା ପାଇଁ ନିଜେ ସାମାନ୍ୟ ଯତ୍ନ କରିଥିଲେ ଏବଂ ସମ୍ଭବତଃ ତାଙ୍କର ଏହି ପ୍ରବୃତ୍ତିରେ ପଣ୍ଡିତ ଐତିହାସିକ କୃପାସିନ୍ଧୁ ମିଶ୍ର, ପଣ୍ଡିତ ବିନାୟକ ମିଶ୍ର, ଆଦି ପ୍ରଭାବିତ ହୋଇଥିଲେ ।

ସେ ବିଶ୍ୱାସ କରୁଥିଲେ ଯେ ଯେଉଁ ଉଚ୍ଚ ପଦବୀରେ ପଦାଧିକାରୀମାନଙ୍କୁ ଗୁରୁତର ସିଦ୍ଧାନ୍ତମାନ ଗ୍ରହଣ କରିବାକୁ ପଡ଼େ, ସେହି ପଦବୀରେ ପାରିବତା (merit) ଓ ଦକ୍ଷତା ଥିବା ଲୋକ ହିଁ ରହିବା ଉଚିତ। ସେମିତି ବ୍ୟକ୍ତି ନ ରହିଲେ ସମାଜର ବା ଦେଶର ଅନିଷ୍ଟ ହେବା ସ୍ୱାଭାବିକ।

ବୈଶାଖ କୃଷ୍ଣା ଷଷ୍ଠୀ (ତା ୨୪।୪।୧୯୧୫ ମସୀହା)ରେ ଚନ୍ଦ୍ରମୋହନଙ୍କର ସ୍ତ୍ରୀ ରାସମଣି ହଇଜାରୋଗରେ ଆକ୍ରାନ୍ତ ହେଲେ। ଚନ୍ଦ୍ରମୋହନଙ୍କର ଘନିଷ୍ଠ ବନ୍ଧୁ ଡାକ୍ତର ଈଶାନଚନ୍ଦ୍ର ଦାସଙ୍କ ଦ୍ୱାରା ତୁରନ୍ତ ଓ ଯଥାଲଭ୍ୟ ଚିକିତ୍ସା ସତ୍ତ୍ୱେ ରାସମଣି ୬ ଘଣ୍ଟା ମଧ୍ୟରେ ପ୍ରାଣତ୍ୟାଗ କଲେ। ଗୋଟିଏ ୨ ସାନ ପିଲା ଓ ଗୃହବାସ ଏବଂ କଟକରେ ନିଜର ଗୃହକର୍ମର ଦାୟିତ୍ୱ ତୁଲାଇବାର ଅସୁବିଧା। ବନ୍ଧୁ ଈଶାନଚନ୍ଦ୍ର, ଷଡ଼ୁ ଓ ଶ୍ୟାଳକଙ୍କର ପରାମର୍ଶରେ ଚନ୍ଦ୍ରମୋହନ ବର୍ଷିକ ପରେ ଦ୍ୱିତୀୟ ଥର ଶ୍ରୀମତୀ ସଖୀ ଦେଈଙ୍କୁ ବିବାହ କଲେ।

ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ, ବାମଣ୍ଡାର ମହାରାଜା ବାସୁଦେବ ସୁଢ଼ଳଦେବ, ଯୁବରାଜ ସଚ୍ଚିଦାନନ୍ଦ ଦେବ, ତାଳଚେରର ରାଜା, ଖଲ୍ଲିକୋଟର ରାଜା ଆଦିଙ୍କ ସହ ଚନ୍ଦ୍ରମୋହନଙ୍କର ଉତ୍ତମ ପରିଚୟ ସତ୍ତ୍ୱେ ଏବଂ ଏମାନେ ସାହିତ୍ୟାନୁରାଗୀ ଥିଲେ ହେଁ ଚନ୍ଦ୍ରମୋହନ କେବେ ହେଁ କାହାର ସାହାଯ୍ୟ ବା ପୃଷ୍ଠପୋଷକତା ଗ୍ରହିଁ ନ ଥିଲେ। ଗ୍ରହିଥିଲେ ତାଙ୍କର କାବ୍ୟକବିତା ଛପା ହୋଇଥାନ୍ତା ଓ ଗୃହଦାହରେ ଭସ୍ମୀଭୂତ ହୋଇ ନ ଥାନ୍ତା।

ସେ ସଦାଚାରୀ ଓ ନୈଷ୍ଠିକ ବ୍ରାହ୍ମଣଙ୍କୁ ଭକ୍ତି କରୁଥିଲେ। ପୁରୀରେ ମୁକ୍ତିମଣ୍ଡପ ସଭା ପ୍ରତି ବିଶ୍ୱାସ ଥିଲା ଏବଂ ପୁରୀର ବ୍ରାହ୍ମଣ ସମିତିକୁ ସେ ସାମାନ୍ୟ ସାହାଯ୍ୟ କରୁଥିଲେ। ଶିକ୍ଷା ବିଭାଗର ପରିଦର୍ଶକ ଥିବାବେଳେ ସେ ପୁରୀ ଜିଲାର ବହୁ ପଣ୍ଡିତଙ୍କ ସହ ସଂସ୍କୃତ ଓ ଉତ୍କଳ ସାହିତ୍ୟର ଆଲୋଚନା କରୁଥିଲେ। ସେତେବେଳେ ଶିକ୍ଷାବିଭାଗରେ, ଆଜିକାଲି ପରି, ଜଞ୍ଜାଳ ନ ଥିଲା। ସେ ଉକ୍ତ ଜିଲା ପ୍ରତି ଏତେ ଆକୃଷ୍ଟ ଥିଲେ ଯେ ଅନ୍ତିମ ରୋଗଶଯ୍ୟାରେ କେତେକ ପଣ୍ଡିତ, କୀର୍ତ୍ତି-ସ୍ମୃତି, ଏପରିକି, ଦ୍ରୁମଲତା କଥା କହୁଥିଲେ। ଯଦ୍ୟପି ସେ ଜ୍ୟୋତିର୍ବିଜ୍ଞାନ-ଚର୍ଚ୍ଚାରେ ଆନନ୍ଦ ପାଉଥିଲେ, ତଥାପି ଫଳିତ ଜ୍ୟୋତିଃଶାସ୍ତ୍ର (ଜାତକର ଫଳାଫଳ) ପ୍ରତି କେବେ କୌତୂହଳୀ ନ ଥିଲେ।

ସେ ରାଗିଗଲେ ଦୁଷ୍ଟ ବା ନିର୍ବୋଧ ବୋଲି ଗାଳି ଦେଉଥିଲେ। ମାତ୍ର କେବେହେଁ 'ଶଳା' ବା ତଦ୍ରୂପ ଅଶ୍ଳୀଳ ପଦ ଉଚ୍ଚାରଣ ସୁଦ୍ଧା କରୁ ନ ଥିଲେ। ଚରିତ୍ର ନିର୍ମାଣ ଉପରେ ସେ ଏତେ ଧ୍ୟାନ ଦେଉଥିଲେ ଯେ ପୁରୀ ଜିଲା ସ୍କୁଲରୁ ବିଦାୟ ନେବା ବେଳେ ଛାତ୍ରାବାସର ଛାତ୍ରମାନଙ୍କୁ କହିଥିଲେ, 'ମୁଁ ଆଶା କରୁଛି ଯେ ତୁମ୍ଭମାନଙ୍କର ଚରିତ୍ର ଏପରି ନିର୍ମଳ ହେବ, ଯେପରି ତୁମ୍ଭମାନଙ୍କର ଶତ୍ରୁ ସୁଦ୍ଧା

ଦୋଷ ଖୋଜି ପାଇବ ନାହିଁ ।' ତାଙ୍କର 'କଥାବଳି' ମାଧ୍ୟମରେ ଏହି ଚେଷ୍ଟା ମଧ୍ୟ କରିଯାଇଛନ୍ତି । ବ୍ୟକ୍ତିମାନଙ୍କର ସଚ୍ଚରିତ୍ର ଦ୍ୱାରା ହିଁ ସମାଜର ଉନ୍ନତି ସାଧିତ ହୋଇଥାଏ ।

ସେ ଭୋଜୀ ଥିଲେ । ଲକ୍ଷ୍ମୀନାରାୟଣ ସାହୁ କଟକରେ ଚନ୍ଦ୍ରମୋହନ ବାବୁଙ୍କ ବସାରେ ରହି ଆଇ.ଏସ୍‌ସି. ପଢୁଥିଲେ । ସେ ଚନ୍ଦ୍ରମୋହନ ବାବୁଙ୍କର ଥରକର ଭୋଜ ଲେଖିଛନ୍ତି । ସେ ଆହୁରି ମଧ୍ୟ 'ମୋର ବାରବୁଲା ଜୀବନ'ରେ ଲେଖିଛନ୍ତି, 'ଚନ୍ଦ୍ରମୋହନବାବୁ ପ୍ରତି ରବିବାର ଦୁଇ ତିନି ଜଣଙ୍କୁ ନିମନ୍ତ୍ରଣ କରି ଖୁଆନ୍ତି··· ।'

ଅନ୍ୟମାନଙ୍କୁ ଖୁଆଇବାରେ ସେ ଆନନ୍ଦ ପାଉଥିଲେ । ତାଙ୍କର ଜ୍ୟେଷ୍ଠପୁତ୍ର ରଜନୀରଞ୍ଜନ ମ୍ୟାଟ୍ରିକ୍ୟୁଲେସନ ପାସ କରିବା ଉପଲକ୍ଷେ ସେ କଟକରେ ପ୍ରିୟ ବ୍ୟକ୍ତିମାନଙ୍କୁ ଓ ଶିକ୍ଷକମାନଙ୍କୁ ଭୋଜି ଦେଇଥିଲେ । ବାଲେଶ୍ୱର ଜିଲା ସ୍କୁଲରେ ୧୯୬୩ରେ ସମସ୍ତ ଛାତ୍ର, ଶିକ୍ଷକ ଓ ଅନ୍ୟ କର୍ମଚାରୀଙ୍କୁ ଭୋଜି ଦେଇଥିଲେ ଏବଂ ନିଜେ ବୁଲି କେଉଁ ପିଲା କଅଣ ଖାଇବାକୁ ଭଲ ପାଉଛି, ତାହା ପରିବେଷଣ କରାଇଥିଲେ ।

ଅନ୍ୟର ସୁନାମ ଓ ପ୍ରତିଷ୍ଠା ବଜାୟ ରହୁ—ଏଥିପ୍ରତି ତାଙ୍କର ଦୃଷ୍ଟି ର ଗୋଟିଏ ଉଦାହରଣ ଦେଲୁଁ । ଚନ୍ଦ୍ରମୋହନ ମହାପାତ୍ର ୧୯୬୪ ମସିହାରେ ବିସୂଚିକା (କଲେରା)ରେ ଆକ୍ରାନ୍ତ ହେଲେ । ବାଲେଶ୍ୱର ସହରରୁ ଲବ୍‌ଧପ୍ରତିଷ୍ଠ ହୋମିଓପାଥ ଗୁରୁଚନ୍ଦ୍ର ନାୟକ ତାଙ୍କର ଚିକିତ୍ସା କରିବାକୁ ଆସିଥିଲେ । ସେ ତାଙ୍କୁ ଦେଖିବାମାତ୍ରେ କହିଲେ, "ଗୁରୁ ! ଯଦି ମୋର ଆରୋଗ୍ୟଲାଭର ଆଶା ଦେଖୁଛ, ତେବେ ଚିକିତ୍ସା କର । ଯେବେ ଆଶା ଦେଖୁ ନ ଥିଲେ, ଫେରିଯାଅ ।" ରୋଗୀର ଅବସ୍ଥା ସଙ୍କଟାପନ୍ନ ଥିଲେ ବି ଗୁରୁବାବୁ ଚିକିତ୍ସା କଲେ ଏବଂ ରୋଗୀ ବଞ୍ଚିଗଲେ ।

ଚନ୍ଦ୍ରମୋହନ ମହାପାତ୍ର ମହାତ୍ମା ଗାନ୍ଧୀଙ୍କର ଅସହଯୋଗ ଆନ୍ଦୋଳନର ପରିଣତି ସମ୍ବନ୍ଧରେ ମନେ ମନେ ଭାବୁଥିଲେ । ଥରେ ସେ ଏକାନ୍ତରେ ଜଣେ ଛାତ୍ରକୁ କହିଥିଲେ—"ଗାନ୍ଧୀ ଯୁଗାନ୍ତକାରୀ ଓ ଯୁଗପ୍ରବର୍ତ୍ତକ । ଭାରତରେ ସାଂପ୍ରଦାୟିକତା ରୂପକ ବିଷ ସ୍ୱରାଜଲାଭରେ ପ୍ରତିବନ୍ଧକ । ଏହି ବିଷର ଶେଷ ଫଳ କଅଣ ହେବ ?"

ବାଲେଶ୍ୱର ଜିଲା ସ୍କୁଲର କୃତୀ ଛାତ୍ର ପଦ୍ମଲୋଚନ ଉପାଧ୍ୟାୟ ଡିଉକ୍ ଅଫ୍ କନାଟଙ୍କର ଭାରତ-ଭ୍ରମଣ ଉପଲକ୍ଷେ ମେଡାଲକୁ ସମସ୍ତଙ୍କ ଆଗରେ ତଳେ ଫୋପାଡ଼ି ଦେଇଥିଲେ । ହେ. ମା. ଚନ୍ଦ୍ରମୋହନ ମହାପାତ୍ର ତାଙ୍କ ବିରୋଧରେ କୌଣସି କାର୍ଯ୍ୟାନୁଷ୍ଠାନ କରି ନ ଥିଲେ । ପରିସ୍ଥିତିକୁ ସେ ବିଚକ୍ଷଣତା ସହ ସମ୍ଭାଳି ନେଇଥିଲେ ।

ହେଡ୍‌ମାଷ୍ଟର ଉପେନ୍ଦ୍ର ନାରାୟଣ ଦତ୍ତଗୁପ୍ତ ବାଲେଶ୍ୱରରୁ ବଦଳି ହେବାବେଳେ କୃତୀ ବୃତ୍ତିଧାରୀ ଛାତ୍ର ନୀଳାମ୍ବର ଦାସଙ୍କର ଅଭାବ ଅସୁବିଧା ବୁଝିବାର ଭାର ଚନ୍ଦ୍ରମୋହନବାବୁଙ୍କ ଉପରେ ଦେଇଯାଇଥିଲେ । ନୀଳାମ୍ବର ଦାସ ଗାନ୍ଧୀଜୀଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ, ପଢ଼ା ଛାଡ଼ିଦେଲେ । ନୂତନ ହେ.ମା. ତାଙ୍କୁ ଡାକି କହିଲେ—'ତୁମେ ଦେଶକାମରେ ଯୋଗ ଦେଲ, ଭଲ କଥା ।'

ବିଶିଷ୍ଟ ପ୍ରାବନ୍ଧିକ ଓ ସମାଲୋଚକ 'ଅଧ୍ୟାପକ ଚିନ୍ତାମଣି ଦାଶ ଲେଖିଛନ୍ତି—ଏପରି ଜଣେ ଉଦାରମନା ଶିକ୍ଷକଙ୍କ ସଂସ୍ପର୍ଶରେ ଆସି କୃପାସିନ୍ଧୁ ମିଶ୍ର ସତ୍ୟବାଦୀ-ସ୍କୁଲ ସମ୍ମିଳନୀରେ ଛାତ୍ରମାନଙ୍କୁ ଭାଷଣ ଦେବାବେଳେ ଇଂଲଣ୍ଡର ଆଦର୍ଶ ଶିକ୍ଷକ ଆର୍ଣ୍ଣୋଲଡ୍‌ଙ୍କ କଥା କହିବା ସଙ୍ଗେ ସଙ୍ଗେ ଚନ୍ଦ୍ରମୋହନ ବାବୁଙ୍କର ଛାତ୍ରପ୍ରୀତି ଓ କଠୋର ଶୃଙ୍ଖଳାବୋଧ କଥା କହୁଥିଲେ ।

ଚନ୍ଦ୍ରମୋହନ ସହରରେ ଚାକିରି ପାଇଁ ବାଧ୍ୟ ହୋଇ ରହିଥିଲେ ସୁଦ୍ଧା ଜନ୍ମଭୂମି ଗ୍ରାମର ମମତା ଛାଡ଼ି ନ ଥିଲେ । ଗ୍ରାମର ବାହାରେ ସ୍ୱର୍ଣ୍ଣଚୂଡ଼ ପର୍ବତର ମନୋହର ଦୃଶ୍ୟ, ଉତ୍ତରରେ ପ୍ରବାହିତ ସୋନ ନଦୀର କୁଳୁକୁଳୁ ସ୍ୱନ, ଶରତ୍-କାଳୀନ କେଦାରର ଶ୍ୟାମଳିମା ଏବଂ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତର ସୌନ୍ଦର୍ଯ୍ୟ, ମୃଦୁ ମନ୍ଦ ସମୀରଣ-ସେବନ ତାଙ୍କର କୈଶୋର, ଯୌବନ ତଥା କର୍ମ ଅବସର ଜୀବନର ଉପଭୋଗ୍ୟ ଥିଲା । ଏହି ହେତୁରୁ ସେ ସହରରେ ନିଜର ଘର କରି ନ ଥିଲେ । ଦଶହରାରେ ସେ ଗ୍ରାମବାସୀମାନଙ୍କ ସହ ନବାନ୍ନ ଭକ୍ଷଣ କରି ଆନନ୍ଦ ପାଉଥିଲେ । ସେ ତାଙ୍କର ପିଲାମାନଙ୍କୁ କୃଷକର ଜୀବନ ପ୍ରତି ସମ୍ମାନ ଦେବା ଶିଖାଉଥିଲେ । ଏମାନେ ମଧ୍ୟ କିଛି କିଛି ଶାରୀରଶ୍ରମ କରୁଥିଲେ ।

ବାଲେଶ୍ୱର ସଦର ଥାନାର ଗେଙ୍ଗୁଟି ଗ୍ରାମବାସୀ ବିଶ୍ୱନାଥ ମହାନ୍ତି ବାଲେଶ୍ୱର ଜିଲା ସ୍କୁଲରେ ଚନ୍ଦ୍ରମୋହନ ମହାଶୟଙ୍କର ଛାତ୍ର ଥିଲେ । ସେ ଓଡ଼ିଶା ସ୍କୁଲ ଅଫ୍ ଇଞ୍ଜିନିୟରିଙ୍ଗ୍‌ରୁ ପାସ୍ କରି ଡିଷ୍ଟ୍ରିକ୍ଟ ବୋର୍ଡ଼ ଅଧୀନତାରେ ଓଭରସୀଅର୍ ହୋଇଥିଲେ । ସେ ଚାକିରି କରିବାବେଳେ ରେମୁଣାକୁ ଯାଇ ଚନ୍ଦ୍ରମୋହନ ବାବୁଙ୍କୁ ଦେଖା କଲେ, ଦୁଇଘଣ୍ଟା ତାଙ୍କ ସହ କଥାବାର୍ତ୍ତା କଲେ । ଚନ୍ଦ୍ରମୋହନବାବୁ ବିଶ୍ୱନାଥଙ୍କୁ କହିଲେ—'ବିଶ୍ୱନାଥ ! ମୁଁ ଜ୍ଞାନ ଅର୍ଜନ କରି-ପାରିଲି ନାହିଁ । ଜ୍ଞାନର ଅର୍ଥ ପାଠ ନୁହେଁ; ତାହାର ଅର୍ଥ **ଆତ୍ମଜ୍ଞାନ** ।" ବିଶ୍ୱନାଥ ବାବୁ ତତ୍ପରେ ନିଜେ ଶ୍ରୀମଦ୍-ଭଗବଦ୍-ଗୀତା, ଉପନିଷଦ୍ ଆଦି ଆଧ୍ୟାତ୍ମିକ ପୁସ୍ତକ ଧାରାବାହିକ ରୂପେ ଅଧ୍ୟୟନ କରିବାକୁ ଲାଗିଲେ । ବିଷୟାସକ୍ତି ତ୍ୟାଗ କଲେ । (ତା ୧୭।୩।୧୯୭୦ରେ ବିଶ୍ୱନାଥବାବୁ ତାଙ୍କର ଜଣେ ପ୍ରିୟ ଲୋକଙ୍କୁ ତାଙ୍କ ଘରେ ଏହା କହିଥିଲେ । )

ସେ ତା ୧୫-୩-୧୯୨୪ରେ ପେନ୍‌ସନ୍ ନେବା ପରେ ମଧ୍ୟ ସୁସ୍ଥ ସବଳ ଥିଲେ । ଚାଲି କରି ବାଲେଶ୍ୱରକୁ ୧୨ ମାଇଲ ବାଟ ଯାଆସ କରିପାରୁଥିଲେ । ଶେଷ ବୟସରେ ତାଙ୍କର ମଝେ ମଝେ ଆମାଶୟ ଓ ବାତଜ୍ୱର ହେଉଥିଲା । ଆୟୁର୍ବେଦୀୟ ଚିକିତ୍ସକଙ୍କର ପରାମର୍ଶରେ ସେ ଟିକିଏ ଅଫିମ ଖାଇଲେ । ମାର୍ଚ୍ଚ ୧୯୨୯ରେ ସେ ହଠାତ୍ ରକ୍ତାମାଶୟରେ ପୀଡ଼ିତ ହେଲେ । ଡାକ୍ତର ବିଜୟଚନ୍ଦ୍ର ସେନଗୁପ୍ତ ଏମ୍. ବି. ଓ ହୋମିଓପାଥିକ ଡାକ୍ତର ଗୌରଚନ୍ଦ୍ର ନାୟକଙ୍କର ଚିକିତ୍ସା ଏବଂ ଆତ୍ମୀୟସ୍ୱଜନଙ୍କର ସେବା ଶୁଶ୍ରୂଷା ବିଫଳ ହେଲା । ଚୈତ୍ର ଅମାବାସ୍ୟା ତା ୯ ଏପ୍ରିଲରେ ଅନ୍ତିମ ଆହ୍ୱାନ ଆସିଲା । ତତ୍ପୂର୍ବରୁ ସେ ଗଙ୍ଗାଜଳ ମାଗିଲେ । ତାଙ୍କର ପତ୍ନୀ ଓ ପୁତ୍ର ଗଙ୍ଗାଜଳ ଦେହରେ ସିଞ୍ଚି ଦେଲେ ଓ ତୁଣ୍ଡରେ ଟିକିଏ ଦେଲେ । 'ଭଗବାନ୍ ! ଭଗବାନ୍ !' କହି ସେ ମହାନିଦ୍ରା ଗଲେ ।

ତାଙ୍କର ବିୟୋଗରେ ବ୍ୟଥିତ ହୋଇ 'ଉତ୍କଳ ସାହିତ୍ୟ'ର ସମ୍ପାଦକ ବିଶ୍ୱନାଥ କର ୩୩ଶ ଭାଗ, ୧ମ ସଂଖ୍ୟାରେ ଲେଖିଥିଲେ : "ଚନ୍ଦ୍ରମୋହନଙ୍କ ପରି ସୁପଣ୍ଡିତ, ସୁକବି, ସୂକ୍ଷ୍ମପୁଣ ସମାଲୋଚକ, ସୁଗମ୍ଭୀର ଚିନ୍ତାଶୀଳ ବ୍ୟକ୍ତି ସମଗ୍ର ଉତ୍କଳ-ଖଣ୍ଡରେ ବିରଳ । ତାଙ୍କ ପରି ସୁଶିକ୍ଷକ ଓ ସୁଦକ୍ଷ ପରିଦର୍ଶକ-କର୍ମଚାରୀ ମଧ୍ୟ ଅଳ୍ପ ଦେଖାଯାଇଛନ୍ତି । × × × । ସର୍ବୋପରି ତାଙ୍କର ପ୍ରବଳ ବ୍ୟକ୍ତିତ୍ୱଟି ଆଜି ଆମ୍ଭମାନଙ୍କ ଚକ୍ଷୁରେ ଅଧିକ ପ୍ରତିଭାତ ହୋଇ ଉଠୁଛି । ଅଧ୍ୟୟନଠାରୁ ଆରମ୍ଭ କରି ଅଧ୍ୟାପନା, ପରିଦର୍ଶନ, ରଚନା-ପଦ୍ଧତି, ଭାଷାପ୍ରୟୋଗ ସବୁଥିରେ ସେ ନିଜର ବ୍ୟକ୍ତିତ୍ୱ ଅକ୍ଷୁଣ୍ଣ ରଖି ଜୀବନପଥରେ ଚାଲିଥିଲେ । ସେଥିପାଇଁ ତାଙ୍କୁ କେତେବେଳେ କାହାରିଠାରେ ମୁଣ୍ଡ ନୁଆଁଇବାକୁ ହୋଇ ନାହିଁ । ଆଜିକାଲି ଶିକ୍ଷିତ ମହଲରେ ଏହି ବସ୍ତୁଟିର କି ଶୋଚନୀୟ ଅଭାବ ଘଟିଅଛି ! ଉତ୍କଳ-ଜନନୀ ଚନ୍ଦ୍ରମୋହନଙ୍କ ଭଳି କୃତୀ ସନ୍ତାନମାନଙ୍କୁ ହରାଇଛି ବେଶି, କିନ୍ତୁ ପାଇଛି ବହୁତ କମ୍ ।"

ମାଘ ଶୁକ୍ଳ ନବମୀ,
ତା ୯-୧-୧୯୯୧ ମସୀହା ।

**ଅରବିନ୍ଦ ଗିରି**, ପି.ଏଚ୍-ଡି.
ଅଧ୍ୟାପକ, ଗୁନ୍ଦବାଲି କଲେଜ ।

# ନବୋଦୟମ

## ୧--ବସନ୍ତ

ଅତି ଭୟଙ୍କର ଲୋକ-ଅନାଦର
ଶୀତଋତୁ ଯେବେ ହୁଅଇ ଅନ୍ତର
ମୁକୁଟର ମଣି ଋତୁମାନଙ୍କର
ରୁଚିର ବସନ୍ତ ରାଜତ୍ୱ କରେ ।

ତରୁ, ଲତା, ଗୁଳ୍ମ, ପଶୁ, ପକ୍ଷୀ, ଜନ—
ଯେଉଁ ଦିଗେ ଦୃଷ୍ଟି ପକାଅ, ଜୀବନ
ବିରାଜ କରଇ ସର୍ବତ୍ର ଯେସନ ;
ଯଥାର୍ଥ ବସନ୍ତ ପ୍ରିୟ ଲୋକରେ । ୧ ।

ଚକ୍ଷୁ ସ୍ଥିର ଦେଖି ନୂତନ ନୂତନ
ସୁରୁଚିର ଶୋଭା ; ଅଶକ୍ତ ଲେଖନ
ଲେଖିବାକୁ ତାର ଅସୀମ ବର୍ଣ୍ଣନ
ତାହାର ବର୍ଣ୍ଣନା ବଳଇ ବାଣୀ ।

ସୁକ୍ଷ୍ମରୁ ତୁଳରେ ସୁକ୍ଷ୍ମରୁ ପଟରେ
ନ ପାରନ୍ତି ଚିତ୍ରି ଅତି ଯତନରେ
ସେ ବିଚିତ୍ର ଚିତ୍ର ଚିତ୍ରକରବରେ ;
ସାର୍ଥକ ଜୀବନ, ଦେଖେ ଯେ ପ୍ରାଣୀ । ୨ ।

ହରଇ ସନ୍ତାପ ହୃଦୁଁ ଗୁରୁତର ;
ହରଇ ଶରମ-ବେଦନା ଅଙ୍ଗର ;
କରଇ ମାନସ ଆନନ୍ଦ-ସାଗର;
ଆନନ୍ଦ-ଲହରୀ ଉଚ୍ଛୁଳି ପଡ଼େ ।

ସେ ଆନନ୍ଦ ଗୀର ବର୍ଣ୍ଣି ନ ପାରଇ;
ଅନ୍ୟଠାରେ ବ୍ୟକ୍ତ କରି ତ ନୁହଇ;
ନେତ୍ରେ ଯେ ଦେଖଇ ତାହା ସେ ଲଭଇ;
ମନର ଆନନ୍ଦ ରହେ ମନରେ । ୩ ।

ପ୍ରକୃତର ଶୋଭା କବା ମନୋହର !
ଦେଖ ଚଉଦଗେ ସର୍ବ ତରୁବର.
ହରତ ଲୋହତ ପୀତ ବରନର
କୋମଳ ପତ୍ରନେ ରୁଚିର ଦଶେ ।

ବାଳ ପର୍ଣ୍ଣକୁଳ କମ୍ପେ ଥର ଥର,
ଶବଦ କରଇ ମର ମର ମର,
ଜଡ଼ାଜଡ଼ି ହୁଏ ଅଙ୍ଗ ପରସ୍ପର,
ମଳୟ ବହଲେ ଉଦୀରୀ ଦଶେ । ୪ ।

ସେ ଛବ ଦେଖିଣ ଭାବଇ କଳ୍ପନା—
ମହୀରୁହ ରାଜି ପାଇଣ ଚେତନା,
ପର୍ଣ୍ଣ-ଅଙ୍ଗୁଳିର କର ସଞ୍ଚାଳନା,
ମଳୟ ମାରୁତେ ସଙ୍କେତୁଛନ୍ତି ।

"ଦସ୍ଲାଳୁ ମାରୁତ ! ଆସ ହେ ବହନ
ଦଅ ସର୍ବ ଅଙ୍ଗେ ନୂତନ ଜୀବନ
ଧନ୍ୟ ହେ ମାରୁତ ! ତବ ପିତା ଧନ୍ୟ !
ମର ମର ଛଳେ ବୋଲୁ ଅଛନ୍ତି । ୫ ।

ତରୁବର ପତ୍ର ଲତା କଳେବରେ
ନାନା ବରନର ବର୍ଣ୍ଣ ଶୋଭା କରେ,
କାହିଁ ହରି-ପୀତ, ଲୋହିତ ଅପରେ :
ଦେଖିଣ ସେ ଶୋଭା ଆସଇ ମନେ—

ବଲ୍ଲଭ ସୁନ୍ଦରୀ ଯେତେ ମହୀତଳେ
ଅଭିନନ୍ଦିବାକୁ ମଳୟ ଅନଳେ
ରଙ୍ଗୁ ସୁବରନ ପରନର ଛଳେ
ଆଚ୍ଛାଦିତ ସର୍ବେ ରଙ୍ଗୁ ବସନେ । ୬ ।

ବହଲେ ମଳୟ ଶୀତଳ ସମୀର
କମ୍ପଇ ଲତାର ସରବ ଶରୀର
ନୟନେ ପଡ଼ଇ ଶୋଭା ସେ ଛବର
ଏ ସନ କଳ୍ପନା ହୁଏ ମନରେ—

ସୁରଭିବେ ପ୍ରଗଲ୍‌ଭ ମଳୟ ପବନ
ଅପରୂପ ଶୋଭା କରି ନିରୀକ୍ଷଣ
ପ୍ରେମଭରେ ଦିଏ ବଦନେ ଚୁମ୍ବନ;
ତହିଁରେ ଲତିକା ଲଜ୍ଜାରେ ଥରେ । ୭ ।

ମଧୁର ବସନ୍ତ କୁସୁମ-ସମସ୍ତ
ବସନ୍ତ ଆଗମେ ଧରି ଫୁଲମସ୍ତ;
ଯହିଁ ଚକ୍ଷୁ ପଡ଼େ ସୁମନ ନିଚୟ
ଫୁଲ ଦେଖି ଦେଖି କ୍ଳାନ୍ତ ନୟନ ।

ଧୀରେ ଧୀରେ ଧୀରେ ମଳୟ ବହଇ,
ଏ ଫୁଲୁଁ ସେ ଫୁଲୁଁ ସୁଗନ୍ଧ ହରଇ,
ଚଉଦିଗେ ପୁଣି ଗନ୍ଧ ବିତରଇ
ସନ୍ତୋଷଇ ଘ୍ରାଣ, ହରଇ ମନ । ୮ ।

ଉଦ୍ୟାନେ ଅଙ୍ଗନେ ଭବନେ ସୌରଭ ;
ଯେଉଁ ଦିଗେ ଯାଅ ସେ ଦିଗେ ସୌରଭ ;
ହସ୍ତେ ପଦେ ମୁଖେ ସର୍ବାଙ୍ଗ ସୌରଭ ;
ସୌରଭେ ସୌରଭେ ଆମୋଦେ ଧରା ।

ଚଉଦିଗେ ଫୁଟେ କୁସୁମ ଅଗଣ୍ୟ
ନେନେ ଅବଲୋକ ବିଚିତ୍ର ଲାବଣ୍ୟ
( ଯେତୁ ସରଜିଲେ ଧନ୍ୟ ସେତୁ ଧନ୍ୟ !! )
ସୁଖ-ସାଗରଭେ ମାନସ ଭରା । ୯ ।

ସୁମନ-ନିଚୟ ଉଦ୍ଭିଦ-ରଞ୍ଜନ,
ଅଲଙ୍କାର ଜନେ ଭୂଷଇ ଯେସନ
ଲତା ବୃକ୍ଷେ ତଥା କରଇ ମଣ୍ଡନ,
କିନ୍ତୁ ହାୟ ଏହା କେତେ ଦିନକୁ !

ଦିବସରୁ ଯେବେ ଦ୍ୱିତୀୟ ହୁଅଇ
ତରୁ କଳେବର ପୁଣି ନ ମଣ୍ଡଇ;
ସକଳ ଏସନ କ୍ଷଣିକ ଅଟଇ,
ତ୍ୟଜ ତ୍ୟଜ ମନୁ ବଙ୍କେ ! ଗର୍ବକୁ । ୧୦ ।

କଠୋର ହେମନ୍ତେ ଲଭଇ ବଳୟ
ସରସିଜ-ବନ ; ଶୂନ୍ୟ ଜଳାଶୟ ;
ମଧୁର ମଧୁ-ର ହୋଇଲେ ଉଦୟ
ନବଜୀବ ଲଭେ କମଳ-ବନ ।

ମୁମୂର୍ଷୁ ଜନର ନାସିକା ଅଗ୍ରରେ
ପରାଣ ରହିଲେ, ଯଥା ସେ କାଳରେ
ହିତ ସଞ୍ଜୀବନୀ ତହିଁ ପ୍ରୟୋଗରେ
ପୁନରପି ଲଭେ ନବଜୀବନ । ୧୧ ।

କୁଞ୍ଜ-ବନସ୍ଥଳୀ ନବୀନ ଶ୍ୟାମଳ-
ଶ୍ୟାମଳ ଯେସନ ନବ ଦୂର୍ବାଦଳ ;
ନାହିଁ ଗଣାଯାଏ ଫୁଟଇ କମଳ
ଚୌଦିଗେ ସୌରଭ ବିସ୍ତାର କରେ ।

ଷଟ୍‌ପଦେ ଧାବନ୍ତି ଦଳ ଦଳ ହୋଇ
ଫୁଲରେ ବସନ୍ତେ ମନରେ ହସଇ
କମଳିନୀ ଶତ ନେତ୍ର ବିସ୍ତାରଇ
ଅପରୂପ ଶୋଭା ନୟନ ହରେ । ୧୨ ।

ଚମ୍ପା, ନାଗେଶ୍ୱର, ସୁଗନ୍ଧ-ଆକର,
ଜାଇ, ଯୂଇ, ମଲ୍ଲି, କଆଳ, ଟଗର,
ଅଶୋକ, ବକୁଳ—ଏମାନ ଅପର
ଫୁଟେ କେତେ ତାହା କେ ପାରେ ଗଣି ।

ମନୋରମ ଗନ୍ଧ ଗନ୍ଧ-ବହ ହରେ
ସରବ ଦିଗରେ ସେ ଗନ୍ଧ ବିତରେ,
ମଧୁ-ଲେହ-କୁଳ ଧାବନ୍ତି ବେଗରେ
ନାହିଁ ଅବସର ଦିନ ରଜନୀ । ୧୩ ।

ଯଥାର୍ଥ ଅଶୋକ ଶୋକ-ବିନାଶନ
ପୁଞ୍ଜୀଭୂତ ଯେହ୍ନେ ସକଳ ଲାବଣ୍ୟ
କରନ୍ତୁ ସେ ଶୋଭା ଯେହ୍ନୁ ବିଲୋକନ
ବର୍ଣ୍ଣିନା ତା ମନ ତୋଷି ନ ପାରେ ।

ପ୍ରବାଳର ଛଟା କୋମଳ ପରନେ
ଜଣେ ସୁବରନେ ଫୁଲ ସୁବରନେ
ବିମ୍ବୋଷ୍ଠୀ ଗୌରାଙ୍ଗୀ, ପଡ଼ିଯାଏ ମନେ
ଉଭି ଯେହ୍ନେ ଆଗେ ତରୁ-ଆକାରେ ।୧୪।

କେତକୀର ଗନ୍ଧ ଗନ୍ଧ ମଧ୍ୟେ ବର
ସେ ଗନ୍ଧ ଆଘ୍ରାଣେ ଧାବଇ ସତ୍ୱର
ମଧୁ-ଲୋଭ ଆଶେ ମଧୁକର-ବର
କିନ୍ତୁ କଣ୍ଟକରେ ପଶି ନ ପାରେ ।

ଯଥା ସାଧ୍ୱୀ-ନାରୀ-ନବ-ଯଉବନ
ଦେଖି କାମ-ଅନ୍ଧ ହରାଏ ଚେତନ
କିନ୍ତୁ ପାପମୟ-ବାସନା-ପୂରଣ
ସର୍ବଥା ବିଫଳ ହୁଏ ତାଠାରେ ।୧୫।

ଲଭି ନବ-ଜୀବ ପର୍ଶି-ନୀକର
ମତ୍ତ ନର ନାରୀ, ପ୍ରମତ୍ତ ଖେଚର
ମତ୍ତ ବନଚର, ମତ୍ତ ଜଳଚର
ଆନନ୍ଦର ସୀମା କେପାରେ କଳି ।

ବାରିଧି-ଲହରୀ ଯଥା ପରବରେ
ଯଥା ନଦୀ-ଚୟ ବରଷା-କାଳରେ
କେଦାର-ନିଚୟ ଯଥା ଶରଦରେ
ତଥା ଜୀବକୁଳ-ନନ୍ଦା-ଲହରୀ ।୧୬।

କୋମଳ-ନବୀନ-ପ୍ରବାଳ-ସୁନ୍ଦର
ସହକାର-ଶାଖେ ବସି ପିକବର
କଳା ରୂପେ ନୋହି ବିଷଣ୍ଣ କାତର
ରଟଇ ପଞ୍ଚମ, ମୋହଇ ମନ ।

ଧନ୍ୟରେ କୋକିଳ ! ଧନ୍ୟ ତୋହର ଧ୍ୱନି !!
ସୃଜିଲେ ଯେ ତୋତେ ଧନ୍ୟ ତାଙ୍କୁ ଗଣି !
ଧନ୍ୟ ତାର ପିତା, ଧନ୍ୟ ତା ଜନନୀ
ଧନ୍ୟ ସ୍ୱୟଂ, ଯେହୁ କରେ ଶ୍ରବଣ ।୧୭।

ପୀୟୂଷ-ବରଷୀ ତୋ ମଧୁର ରବ;
ଏ ଧରା ଧାମର ତୋ ରବ ଗରବ;
ତ୍ୟାଗି ତ୍ରିଦଶ-ଆଲୟ-ବିଭବ
ମରତ-ପୁରେ ଯା କରନ୍ତୁ ବାସ ।

ବିପୁଳ ଐଶ୍ୱର୍ଯ୍ୟ ଭୋଗଇ ଅମର,
କିନ୍ତୁ ଶୁଣି ତବ ସୁଧାମୟ ସ୍ୱର
ନୁହେଁ ଚରିତାର୍ଥ ଶ୍ରବଣ ତାଙ୍କର,
ସଫଳ ଜନର ଅବନୀବାସ । ୧୮ ।

× × ×

ବସନ୍ତ-ପ୍ରଭାତ ଅତି ମନୋହର
ବିଟପି-ବିଟପେ ବିହଙ୍ଗମ-ବର,
ଶତଶତ ବସି ମଧୁମୟ-ସ୍ୱର
ବୀଣା-ଜିଣି କଣ୍ଠେ କରନ୍ତି ଗାନ ।

ସେ ଗୀତ-ସରିତ ସେ କଣ୍ଠୁ ବହଇ,
ବହିଣ ମାନବ-ଶ୍ରବଣେ ପଶଇ;
ପ୍ରବେଶେ ମାନସ-ବିହଗ ବୁଡ଼ଇ;
କରେ ସେ ମଧୁର-ରସରେ ସ୍ନାନ । ୧୯ ।

ମଳୟ-ସମୀର ଧୀରେ ସଞ୍ଚରଇ;
ନାନା କୁସୁମରୁ ସୁଗନ୍ଧ ହରଇ;
ଗନ୍ଧେ ଗନ୍ଧବହ କୃତାର୍ଥ କରଇ,
ନିଖିଳ ଜଗରେ ବିଥାରେ ଗନ୍ଧ ।

କରଣ ଦ୍ୱିରେଫ ଗୁଣୁଗୁଣୁ ସ୍ୱନ,
କୁସୁମ ଉଦ୍ଦେଶି ଛୁଟଇ ବହନ,
ବଧ-ପଶୁ ଦେଖି ମୃଗେନ୍ଦ୍ର ଯେସନ,
ଫୁଲ-ରଜେ ହୁଏ ଧୂସର ଅଙ୍ଗ । ୨୦ ।

ଊଷା-ବିକସିତ-ଅଶେଷ-ସୁମନ—
ଶୋଭିତ ଶାଖାରେ କଲେ ପରଶନ
ମୃଦୁ-ଗତି ଶୀତ ଊଷା-ସମୀରଣ,
ହଲିଯାଏ ଶାଖା ସପୁଷ୍ପ-ଅଙ୍ଗ ।

ଦେଖିଣ ଏସନ ମନକୁ ଆସଇ,
ଶତ ଫୁଲ-ଆଖି ତରୁ ପ୍ରସାରଇ,
ଅପର ଦିଗକୁ ଦିଅନ୍ତେ ଅନାଇ,
ନେତ୍ର ସଙ୍ଗେ ତାର ଯାଉଛି ଚଳି । ୨୧ ।

ବକୁଳ କୁସୁମ ବକୁଳ-ମୂଳରେ
ତାରକାଜି ଯେହ୍ନେ ଗଗନ ପଥରେ,
କେତେ ପଡ଼ିଥାଏ ଗଣନା କେ କରେ;
ବହୁ ଦୂର ଯାଏ ଆମୋଦ କରେ ।

ବାଳକ-ବାଳିକା ଜୁଣ୍ଡ ହୋଇ ମୂଳେ
ଯେ ଯାହା ବାସନା-ମତେ ଫୁଲ ତୋଳେ,
ଦେନଇ ମସ୍ତକେ, ଦେନେ କର୍ଣ୍ଣମୂଳେ,
ଶୋଭେ କି ନା ଦେଖେ ଦରପଣରେ । ୨୨ ।

ନଳିନୀ-ବଲ୍ଲଭ-ଉଦୟ ପୂର୍ବରେ
ଦେଖିଣ ନଳିନ ଫୁଟେ ସରୋବରେ
ନ ଫୁଟେ ନଳିନ, ହୁଏ ମାନସରେ,
ସରସୀ ଫିଟାଏ ବହୁ ନୟନ ।

ମୁଦିଥିଲ ସର୍ଯ୍ୟ ନିଶ-ଆଗମନେ
ସହସ୍ର ସହସ୍ର ସରୋଜ-ନୟନେ,
ଉଦିଲେ ଦିନେଶ ପୂରୁବ-ଗଗନେ
ଫିଟାଉଛି ଆଖି ପ୍ରାଣୀ ଯେସନ । ୨୩ ।

ବସନ୍ତ-ପ୍ରଦୋଷ ସମପ୍ରୀତିକର;
ଶ୍ରମରୁ ବିରତ ବିଶ୍ରାମଇ ନର;
ଶ୍ରମ-ଝାଳେ ଆର୍ଦ୍ର ବସନ ଅଙ୍ଗର;
ମଳୟ ପବନ ହରଇ ଶ୍ରମ ।

ନିଶାଗମେ ଜ୍ୟୋତ୍ସ୍ନା ଘୋଟିଯାଏ ମହୀ ;
ସରବ ଅଙ୍ଗରେ ସେ ଜ୍ୟୋତ୍ସ୍ନା ପଡ଼ଇ ;
କି ଅପୂର୍ବ ସୁଖ ମନରେ ଉଦଇ ।
ସ୍ୱର୍ଗବାସ ସୁଖ ନୁହେଁ ତା ସମ । ୨୪ ।

ପ୍ରାଦୁର୍ଭାବ ନାହିଁ ଏକାଳେ ଶୀତର ;
ନିଦାଘରେ ଯଥା, ନୁହଇ ପ୍ରଖର
ଅଂଶୁମାଳୀ ରବି ; ନାହିଁ ପଥିକର
ବରଷାରେ ଯଥା, ବରଷା-ଭୟ ।

କୀଟ ବିହଙ୍ଗମ ପଶୁ ପୁଣି ନର,
ପବନ-ବସନ ଲତା ତରୁବର,
ସକଳ ପ୍ରଫୁଲ୍ଲ, ସର୍ବ ସୁଖକର;
ନିଖିଳ ଭୁବନ ଆନନ୍ଦମୟ । ୧୫ ।

ଧନ୍ୟରେ ବସନ୍ତ ତୋହର ରାଜପଣ ;
ଋତୁମାନଙ୍କର ସତ୍ୟ ତୁ ରାଜନ ;
ତୋ ରାଜ୍ୟେ ବିରାଜେ ନିର୍ମଳ ସୁଖ ।
ତୋହର ରାଜପଣେ ସ୍ୱରଗ ଏ ମହୀ—
ସ୍ୱରଗ ପରାୟେ ସଦା-ଶକ୍ତି-ମୟୀ;
କୌଣସି ପରାଣୀ ନୁହେଁ ବିମୁଖ । ୧୬ ।

ତା ୧୪-୫-୧୮୮୬ ଖ୍ରୀଷ୍ଟାବ୍ଦ ।

---

## ୨—ମାତୃ-ପିତୃହୀନ ବାଳକର ଜନନୀ ପ୍ରତି

ଜନନି ! ବିଶୁଦ୍ଧ-ସ୍ନେହ-ରତନ-ନିଳୟ !
କାହିଁ ଗୋ ରହିଛୁ ମାତଃ ଛାଡ଼ି ତୋ ତନୟ ?
ପାଉଛି ଅସୀମ କଷ୍ଟ କୁମର ତୋହର,
କିରୂପେ ସହିଛୁ କହ ? ହୃଦ କି ପଥର ?
ଅବା ବହୁ ଦୂରେ ଅଛୁ ଦୁର୍ଭାଗ୍ୟ-ନନ୍ଦନ,
ଉଚ୍ଚରବେ ହେଲେ ମଧ୍ୟ, ନ କରୁ ଶ୍ରବଣ ?
ଅବା ଏ ନଶ୍ୱର-ରବ (ତୁ ସ୍ୱର୍ଗ-ବାସିନୀ)
ନ ପ୍ରବେଶେ ତୋ ଶ୍ରବଣେ ଗରଭ-ଧାରିଣି !

କି ଅବା ମରମ-ଭେଦୀ ଦୁର୍ଭାଗ୍ୟ-କ୍ରନ୍ଦନ
କାଳେ ବଧିରବ ହୁଆ, ନ କରୁ ଶ୍ରବଣ;
କର-ଯୁଗେ ଢାଙ୍କି ଅଛୁ ଶ୍ରବଣ-ଯୁଗଳ;
ତେଣୁ ଶୁଣି ନ ପାରୁଛୁ କେତେ ଯେ ବିକଳ
ହେଉଛୁ ତୋହର ନିଜ ଜାତ କଳ୍ପ ସୁତ !
ଭାଗ୍ୟ-ଦୋଷେ ସବୁ ଘଟେ, ଏ ନୋହେ ଅଦ୍ଭୁତ !
ପାର୍ଥିବ କଷ୍ଟରୁ ମାତଃ ! ଲଭିଛୁ ମୋଚନ,
କଷ୍ଟ-ପାରାବାର ବେଢ଼ିଅଛି ତୋ ନନ୍ଦନ ।
ଯେଉଁ ଦିଗେ ପଡ଼େ ଦୃଷ୍ଟି ତାହା ଶୂନ୍ୟ-ମୟ ;
ଅମାନିଶି ତୁଲେ ଦେଖେଁ ସକଳ ସମସ୍ତ ।
ହାୟ ମାତଃ ! ବିଧି ବଡ଼ ବାମ ମୋହ ପ୍ରତି ;
ନ ବିଗ୍ହରେ ବାରେ ସେହୁ ମୁଁ ଅବୋଧ ଅତି ;
ଏ ତରୁଣ-ବୟସେ କି ଦାରୁଣ ଭାର—
ନ କରୁଛି ବିଧାତା ଏ ସାମାନ୍ୟ ବିଗ୍ହର ।
ଏ ଗୁରୁ-ଭାର ଗୋ ମାତଃ ! ନ ପାରୁଛି ବହି ।
ନିଅ ତୁମ୍ଭ ପାଶେ ମାତଃ ! ହୃଦେ ଦୟା ବହି ।
ଯାଏ ଦିବା, ଯାଏ ନିଶି, ଯାଏ ରବି-ଶଶୀ;
ନ ଯାଏ ମୋ କଷ୍ଟ ଏକା, ଦେଖୁଅଛି ବସି ।
ମାତୃ-ହୃଦ ସ୍ନେହ-ମୟ, କହନ୍ତି ଜଗତେ,
ବିପଦେ ବେଦନା ହରେ ମାତା ନାନା ମତେ ;
ହାୟ ମାତଃ ! ଏ କଷ୍ଟରେ ମୁହିଁ ମାତୃ-ହୀନ
ହାୟ ହାୟ, ହାୟ କିସ ନ ସରୁଛି ଦିନ ।
ଶୈଶବ-କାଳରୁ ମାତଃ ! ତୋ କୋଳୁଁ ଅନ୍ତର ;
ଜ୍ଞାନ-ହୀନ ବାଲ୍ୟ-କାଳେ ଗୁଡ଼ିଲେ ପିଅର ।
ମାତୃ-ପିତୃ-ହୀନ ଯେହୁ ଅଟଇ ସଂସାରେ,
କେ ତାର ସହାୟ କହ ଦୁଃଖ-ପାରାବାରେ ?
ଭାସୁଅଛି ଶୋକ-ଦୁଃଖ-ବାରିଧି-ସ୍ରୋତରେ ;
ନାହିଁ ତ ଏସନ ଚକ୍ଷୁ, ଦେଖି ଅଶ୍ରୁ ଝରେ ।
ଅପର ଧନରେ ମୋର ନାହିଁ ପ୍ରୟୋଜନ ;
ଥାଆନ୍ତା ଗୋ ଭାଗ୍ୟେ ଯଦି ମାତୃ-ରୂପ ଧନ,
ଘଟନ୍ତା ତ ଯାହା ଲେଖା ଲଲାଟ-ପଟରେ

କିନ୍ତୁ ଗୋ ଜନନି ! ପୋଛୁ ତୋହ୍ନ ଅଞ୍ଚଳରେ
ନୟନର ବାରିଧାର ରହନ୍ତୁ ସୁଖରେ ।

ତା।୪-୮-୧୮୮୭

---

## ୩—ନିରାଶ ବ୍ୟକ୍ତିର ନିଶୀଥ-ନିଭୃତ-ଚିନ୍ତା

ନିଶି ଅନ୍ଧ-ତମୋ-ମୟ, ସାଗର-ଗମ୍ଭୀର ;
ନାହିଁ ଜନ-ଗତାଗତ ; ବାୟୁ ବହେ ଧୀର,
କିନ୍ତୁ ସଙ୍ଗେ ନ ବହୁଛି ଶବଦ-ମାତ୍ର ହିଁ,
ଯେହ୍ନେ ଜୀବ-ପରଶହୀନ ଜୀବକୁଳ ମହୀ ;
ପ୍ରକୋଷ୍ଠେ ଏକାକୀ ମୁହିଁ; ସ୍ନେହାଶ୍ରୟ-ହୀନ
ପ୍ରଦୀପ, ଯେସନ ବୃଦ୍ଧ, ହୋଇଛି ବଳୀନ ;
ଚଉପାଶେ ମୋତେ ବେଢ଼ି ରହି ଅଛି ତମଃ
ମୀଟମିଟି-ଦୀପ୍ତି ଯେହ୍ନେ ବେଢ଼ିଥାଏ ତମଃ,
ବାରେ ସୁଦ୍ଧା କରୁ ନାହିଁ ନିଦ୍ରା ଆଲିଙ୍ଗନ ;
ଝଟିକା-ଆକୁଳ ସିନ୍ଧୁ ସମାନ ତ ମନଃ
ଚିନ୍ତା-ଊର୍ମ୍ମି-ରାଜି, ସିନ୍ଧୁ-ଊର୍ମ୍ମି-ରାଜି ପରି
ଆଚ୍ଛାଦିଲେ ମାନସ ମୋ; କେତେ ଆଶା ତରି
କଳ୍ପନା-ଦୁର୍ଲ୍ଲଭ-କାଷ୍ଠେ ନିର୍ମ୍ମିତ ଯତନେ
ପ୍ରତିକୂଳ-ଦଶା-ବାୟୁ ସୌଭାଗ୍ୟ-ରତନେ
ଭରି, ମନୋରମ ଗତି ବୁଡ଼ାଇଲି ହେଲେ !
ଭାଗ୍ୟ-ହୀନେ ଆଲିଙ୍ଗନ୍ତି ଲକ୍ଷ୍ମୀ କେତେବେଳେ ?
ପ୍ରତିକୂଳ ଦଶା-ବାୟୁ ! ପ୍ରତିକୂଳତର
ବହ ହେ, ଗୁହାରି ମୋର, ମାନସ-ସାଗର
ବିକ୍ଷିପ୍ତ-ଚିନ୍ତା-ଊର୍ମ୍ମି-ଜାଳରେ ଆକୁଳ
କରି, କର କୃପା; ମନଃ-ସିନ୍ଧୁ ! ଅନୁକୂଳ

ହୋଇ, ଚନ୍ଦ୍ରା-ଊର୍ମି-ଶୃଙ୍ଗେ ଦେହ ଉପକୂଳ
ବିଦରେ—ବନ୍ଦର, ଯେହ୍ନେ ନ ଥାଉ ତା ମୂଳ ।
ଆହା ! କି ଯନ୍ତ୍ରଣା ! ଯାଅ ଚନ୍ଦ୍ରେ ! ଯାଅ ଦେବ !
ଯହିଁ ଲଭ୍ୟ ; ଅଭାଗା ମୁଁ ତୋତେ କିସ ଦେବ ?
ଯାଅ ରତ୍ନ-ସିଂହାସନେ, ଯହିଁ ନରମଣି,
ମୁକୁଟେ ବିରଜେ ଯାର ସୁବରନ-ମଣି ;
ଯାଅ ସେହି ଗୃହେ, ଯହିଁ ସୁପ୍ତ ଲକ୍ଷପତି
ସଦା ସମ୍ପଦ୍ ବିନା ଯେହୁ ନ ଜାଣେ ବିପତ୍ତି ;
ଗିରିବର ଲମ୍ବାଇଣ ଶିଳା-ଘନ ବାହୁ
ଶସ୍ଥାନ,ଯହିଁ ଗୋ ତହିଁ କମ୍ପାଇ ନ ଯାଉ ?
ତରୁଣ ତରୁଣୀ ଯହିଁ ରମ୍ୟ ଶେଯେ ବେନି
—ପ୍ରସାଧିକା ବାନ୍ଧ ଅଛି ବାମା-ମଣି-ବେଣୀ
ତଥା, ଯଥା ବାନ୍ଧ ଅଛି ରମଣୀ-ରତନ
ଜଗତେ ଜୀବନ-ସଙ୍ଗି-ଜୀବିତେଶ ମନଃ—
ଅଙ୍ଗେ ଝିନ ପଟ୍ଟଧାନ, ସୁବାସ ଚନ୍ଦନ,
ପୁଷ୍ପ-ଦାମ ଗଳେ, କରୁଛନ୍ତି ଆଲିଙ୍ଗନ
ଉଭୟେ ଉଭୟେ ତହିଁ କର ମୋ ଗମନ ;
କମ୍ପାଇଁ ପିଞ୍ଜରେ ରଖୁ ମୋ ବିହଗ-ମନଃ ?
.କି ଭ୍ରମଃ ! ଚନ୍ଦ୍ରାକୁ ଦୂର କରିବାର ଆଶେ
ବାନ୍ଧୁଛି ମାନସ-ମୃଗ ଚନ୍ଦ୍ରା-ମସ୍ତ ପାଶେ
ଛାଡ଼େ ଏ କଥା ଭାବନା; ନିଶା ଅବସାନ
ସନ୍ନିହିତ ହେଲା ଆସି ଧ୍ରୁବ ଅନୁମାନ ।
ଫିଟାଏଁ ଗବାକ୍ଷ, ବହୁ ମୃଦୁ ସମୀରଣ ;
ସମୀର-ପ୍ରସାଦେ, ହେଲେ ନିଦ୍ରା ଆକର୍ଷଣ
ହୋଇପାରେ ! —ଆହା ! କିବା ସ୍ୱର୍ଣ-ପ୍ରୀତିକର
ନ ହୋଇଛି ଏଇ ମନ୍ଦ-ଗତି ଶବ୍ଦ-ହର !
ଜୀବନ-ଶୀତଳ-କଣା-ବାହା ସମୀରଣ !
ଜୀବନ ଦିଅ ଏ ଜନେ, ଶୁଣ ନିବେଦନ
—ସୁଦୂର ଗଗନ ବକ୍ଷେ ତାରା ଦୀପ୍ତି-ମଣ୍ଡି
ଜ୍ୱଳୁ ଅଛି ଅତିକ୍ଷୀଣା, ମୋ ଆଶା ଯେମିତି

ମଣେ ମୁହିଁ ହେଉଅଛୁ ସେହୁ ଏ ସମୀର
ଆଶା ଯେହ୍ନେ ପ୍ରେରେ ଜନେ ଆଶ୍ୱାସ-ସମୀର
ନ ଥିବ ତାରକା, କିନ୍ତୁ, ନିଶା-ଅବସାନେ ;
ମୋ' ଆଶା, କି ଲଭିଯିବ ? ତାରକା-ସମାନେ ।

ତା ୫-୮-୧୮୮୭

———

## ୪—ନିଯ୍ୟତି ପ୍ରତି

ନିଯ୍ୟତି ! କେ ପାରେ ବର୍ଣ୍ଣି ମହିମା ତୁମ୍ଭର ।
ନିଖିଳ ସଂସାର ଶାସ୍ୟ ଅଛି ତୋହ କର
ତବ ଚକ୍ରେ ପଡ଼ି ସୂର୍ଯ୍ୟ ଚନ୍ଦ୍ର ତାରା-ଗଣ
ଶୂନ୍ୟ ଦେଶେ କରୁଛନ୍ତି ସଦା ବିଚରଣ ।
ଗ୍ରହରାଜ ଚଉଦିଗେ ଭ୍ରମୁଛି ଧରଣୀ,
ପୃଥ୍ୱୀ ଚଉଦିଗେ ଇନ୍ଦୁ, ଧନ୍ୟ ତୋ ବନ୍ଧନୀ !
ତରୁ ଲତା ପଶୁପକ୍ଷୀ ତବ ଚକ୍ରବଳେ
ଉଦୟ ବିଲୟ ଲଭୁଛନ୍ତି ରବିତଳେ ।
ଫୁଟୁଛି କୁସୁମ କଳ ସୁଗନ୍ଧ, କୋମଳ,
କ୍ଷଣ ପରେ ଶାଖା-ଚ୍ୟୁତ ଲଭୁଛି ଭୂତଳ ।
ଫଳୁଁ ଉପୁଜଇ ବୃକ୍ଷ, ବୃକ୍ଷୁଁ ପୁଣି ଫଳ,
ପୁନରପି ଫଳୁଁ ତରୁ, ଧନ୍ୟ ତୋ କୌଶଳ !
ଯହିଁ ସୌଧ-ସମାକୁଳ ସୁରମ୍ୟ ନଗର,
କାଳକ୍ରମେ ତହିଁ ପୁଣି ଭୀଷଣ ସାଗର ।
ଏକକାଳେ ଯହିଁ ମରୁ ଅତୀବ ଦୁସ୍ତର
ତବ ଚକ୍ରେ ପଡ଼ି ତାହା ଆବାସ ଜନର ।
ଉତ୍ତୁଙ୍ଗ-ଶିଖରି-ଶିରଃ ସାଗର-ଗର୍ଭରେ
ବିଲୀନ ହୁଅଇ କାଳେ, ପଡ଼ି ତୋ ଚକ୍ରରେ ।

ତରଙ୍ଗ-ସଙ୍କୁଳ, ଶୂନ୍ୟ ବାରିଧି ମଧ୍ୟରେ
ଦେଖାଯାଏ ରମ୍ୟ ଦ୍ୱୀପ, ସଙ୍କୁଳ ଜୀବରେ ।
ଅତୁଳ ମହିମା ତବ ! ଅକୂଳ ବାରିଧି-
ଗରଭେ ନିହିତ, ଗୁରୁ ବହୁ ମୂଲ୍ୟ ନିଧି
ମଣ୍ଡିଛି ନୃପତି ସୌଧ, ବହୁ ଦୂରେ ସ୍ଥିତ ।
ନିଶ୍ଚିତ ! ମହିମା ତବ ସର୍ବତ୍ର କୀର୍ତ୍ତିତ ।
ତବ ଚକ୍ରେ ପଡ଼ି ନର କେତେ ଯେ ଭୋଗଇ
ସୁଖ. ଦୁଃଖ ବର୍ଣ୍ଣିବାକୁ କ୍ଷମ କେ ଅଛଇ !
ସାମାନ୍ୟ-କୁଟୀର-ବାସୀ କୃଷକ-ସନ୍ତତି
ତୋହର ଚକ୍ର-ଆବର୍ତ୍ତନେ କାଲେ ନରପତି ;
ତୃଣ-ଶଯ୍ୟା ଠାରେ ଭୋଗେ ରତ୍ନ-ସିଂହାସନ,
ବନର କୁସୁମ ଠାରେ ଦିବ୍ୟ ଆଭରଣ ।
ଗୋପାଳଙ୍କ ଗୁଡ଼ି କାଲେ ହୁଅଇ ଗୋପାଳ
ସର୍ବ ଲୋକ ମାନନୀୟ ମହା ଲୋକ-ପାଳ;
କ୍ଲେଶ-ବହି-ତାଳ-ପତ୍ର ଛତ୍ର କାହିଁ ଯାଏ,
ତାହା ସ୍ଥାନେ ରାଜ-ଛତ୍ର ରମ୍ୟ ଶୋଭା ପାଏ ।
ପକ୍ଷାନ୍ତରେ, ମଦ-ମତ୍ତ ମହାନର-ପତି
ଭିକ୍ଷୁ ଅବା ବନବାସୀ କରୁ ତୁ ନିଶ୍ଚିତ ;
ତନୁ ପରିଧାନ ଠାରେ ବଲ୍‌କଲ ପିଧାନ;
ଭିକ୍ଷା ଦାନ ତେଣେ ଆଉ, ଯେତେ ପରଦାନ,
ଜଗତ ତୋ ଚକ୍ରେ ପଡ଼ି ବଇଚିତ୍ର୍ୟ-ମସ୍ତ;
ପରିବର୍ତ୍ତନର ନାହିଁ ସୀମା ଅବା କ୍ଷୟ ।
ଗୁରୁ ନର ମୁହିଁ, ଦେବ ! କିବା ଶକ୍ତି ମୋର
ବର୍ଣ୍ଣିବ ତୋହର କୀର୍ତ୍ତି ବାଣୀ-ଅଗୋଚର ।
ଅଧୀନ ତୋହର ମୁହିଁ ସମ୍ୟକ ରୂପରେ,
ଅର୍ପିଲି, ଯା ଇଚ୍ଛା କର, ମୋତେ ତୋ କୋଳରେ ।

୧୯, ଶ୍ରାବଣ—ତା ୨-୮-୧୮୮୬

———

# ୫—ସମୁଦ୍ର ପ୍ରତି

ସାଗର ! ଅମ୍ବୁର-ନୀଳ, ଅନନ୍ତ, ଦୁସ୍ତର,
ଧରଣୀ-ମେଖଳା ରମ୍ୟ, ବକ୍ଷରେ ତୋହର
ସହସ୍ର ଅର୍ଣ୍ଣବ-ପୋତ କରେ ବିଚରଣ,
ନୀଳ ବିହାୟସ-ପଥେ ଯଥା ପକ୍ଷିଗଣ ;
କିନ୍ତୁ ବୃଥା ! ସମୁଚ୍ଛିନ୍ନେ ଏ ବିଶାଳ ମହୀ
ବୃଥା-ଅହଙ୍କାରୀ ନର ; ବିସ୍ତାର କରଇ
କ୍ଷମତା ତାହାର ତୋହ ସୀମା ପର୍ଯ୍ୟନ୍ତ ।
ବାରି-ମସ୍ତ ସମତଳେ (ନୁହ କୀର୍ତ୍ତିମନ୍ତ)
ପୋତ-ଭଗ୍ନ-ଅବଶେଷ କାରଣ ତୋହର;
ଉପଦ୍ରବ-ଗ୍ରସ୍ତା-ମାନ୍ଦ ନ ରହେ ନରର
ତୋ ବକ୍ଷରେ, ହେ ବାରିଧେ ! ନୀର-ବିନ୍ଦୁ-ସମ
ପଡ଼ଇ କ୍ଷଣକେ ଖସି, କୌଶଳେ ଅସମ
ମାନବ ; ବୁଦ୍‌ବୁଦଶବ୍ଦେ ଆର୍ତ୍ତନାଦ କ୍ଷଣେ,
ସପଦ ତୋ ଗର୍ଭଗତ; ଜ୍ଞାତ ପରିଜନେ
ନ ପାରନ୍ତି ଜାଣି, ସେହୁ ମୃତ-ନିସ୍ତାମାନ
ନ ଯାଏ; ତାହାର ପକ୍ଷେ ତୋ ଗର୍ଭ ଶ୍ମଶାନ ।
ନ ଶୋଭେ ନୃ-ପଦ-ଚିହ୍ନ, ପୟୋଧେ ! ତୋ ବକ୍ଷେ
ତୋ ଅଙ୍ଗ ଲୁଣ୍ଠନ-ଭୂମି ନୁହଇ ତା ପକ୍ଷେ;
ଧର୍ଷ-ଧ୍ୱଂସୀ ବଳ ତାର ମଣ୍ଡୁ ତୁହ ସ୍ଥୁଳ;
ଉତ୍କ୍ଷେପି ତୋ କୋଳୁ—ହାସ୍ୟ ବୃଥା ଅହଙ୍କାର ।
କମ୍ପେ, ଆର୍ତ୍ତନାଦେ ଉଚ୍ଚୈଃ, ତରଙ୍ଗ-ଜାଲରେ
ସ୍ମରେ ଇଷ୍ଟଦେବ—ତାକୁ ଦୂର-ପ୍ଲାବନରେ,
ଗୁରୁ ବେଗେ ପ୍ରହାରୁ ତୁ ତା ଶିରଃ ତଟରେ;
ରହଇ ଦୁର୍ଭାଗ୍ୟ ପଡ଼ି ଶବ ବିଜନରେ ।
ଭୀମାକାର ରଣ-ତରି ବର୍ଷି ବଜ୍ରାନଳ
ପ୍ରସ୍ତର-ନିର୍ମ୍ମିତ ପୁର କରେ ସମତଳ,
କମ୍ପାଏ ମାନବ-ଗୃହ, କମ୍ପେ ନରପତି
ତୁଙ୍ଗ ସିଂହାସନେ, କାଷ୍ଠ-ତରଙ୍ଗିଳ ପଂକ୍ତି,

ଯାବଲେ ବୋଲାଏ ନର ଭବ ଅଧୀଶ୍ବର,
ମଧ୍ୟମ ଭୂପାଳଗଣେ; ନୀଳ ରତ୍ନାକର !
ଏ ମାନ ତୋ କ୍ରୀଡ଼ନକ; ଯେସନ, ବୁଦ୍ବୁଦ
ଲହରୀ-ଫେନରେ ମିଶି ହୁଅନ୍ତି ବିଲୀନ ।
ତୋ କୂଳ ବିଶାଳ ରାଜ୍ୟ, ଖ୍ୟାତି-ପରିଚିତ—
ଭାରତ-ମିଶର, ରୋମ ପ୍ରଭୃତି ବିଦିତ
ନୁହଇ କାହାକୁ କହ ଏହି ଜଗତର ?
ସମରୂପେ ସର୍ବଦା ତୋ ତରଙ୍ଗନିକର
ଧୌତୁଛି ସେମାନ ; ତହିଁ ଅସଭ୍ୟ ବିଦେଶୀ,
କେତେ ଭିନ୍ନଜାତିମାନ ସମସ୍ତେ ପ୍ରବେଶି,
ଦେଖାଇ କ୍ଷମତା ନିଜ ଲଭିଲେ ବିଳୟ,
କି ପରିବର୍ତ୍ତନ ଅବା ନ କଲୁ ସମସ୍ତ !
କିନ୍ତୁ ହେ ଅମ୍ବୋଧେ ! ଊର୍ମି-ରାଜ-କ୍ରୀଡ଼ା ଛାଡ଼ି
ଅପର ପରିବର୍ତ୍ତନ ନାହୁଁ ଦେଖିପାରି
କଳେବରେ ତୋର; ଚିତାଇ ନୀଳ କପୋଳରେ
ସମସ୍ତ-ବାର୍ଦ୍ଧକ୍ୟ-ରେଖା ନୟନ-ପଥରେ
କାହାର ତ ପଡ଼ୁନାହିଁ; ଆଦ୍ୟ ସର୍ଜ୍ଜନର
ଯଥା, ତଥା ବିରାଜୁଛୁ ହେ ନୀଳ ସାଗର !
ଦିବ୍ୟ ମୁକୁର ତୁ ସିନ୍ଧୁ ! ପରମେଷ୍ଠୀ ଯହିଁ
ସ୍ୱକାୟ ପ୍ରତିମା ଅବଲୋକନ କରଇ ।
ସ୍ଥିର ବା ଚଞ୍ଚଳ; ମୃଦୁ ମଧୁ ପବନରେ
କି ଅବା ଝଟିକା କାଳେ; ଉଭୟ କେନ୍ଦ୍ରରେ
ଘନୀଭୂତ-ତୋୟସ୍ତୋ-ରୂପ, ଅବା ଭୂ-ମଧ୍ୟରେ
ଭୀଷଣ-ତରଙ୍ଗାକୁଳ, ସଦା ତୁ ଅନନ୍ତ
ଅସୀମ, ଉଦାର ଅଟୁ; ଅର୍ଣ୍ଣବ ! ଅନନ୍ତ
କାଳର ପ୍ରତିମା ତୁହି; ଅତୀନ୍ଦ୍ରିୟାସନ;
ସର୍ବଜ ଅତଳସ୍ପର୍ଶ ବିସ୍ମୟ-ଜନନ ।
ମହିମା ତୋ ବଳେ ଗୀର-ଲକ୍ଷ୍ମୀ, ଦୀପ୍ତମାନ
ଇନ୍ଦୁ ପାରିଜାତ ଜାତ, କହଇ ପୁରାଣ,
ତୋ ଉଦରୁ ; ବହୁବିଧ ଉପୁଜେ ରତନ,
ଦୁର୍ଲ୍ଲଭ ପବିତ୍ର ପୁଣି ରମ୍ୟ-ଦରଶନ ;

ତେଣୁ ନାମ ରତ୍ନାକର ; ଲୋଡ଼ା ଜଗତରେ
ଲବଣ ଲବଣାମ୍ବୁଧେ ! ଜାତ ତୋ ଗର୍ଭରେ ;
ଜଗତେ ହ୍ରେ ହ୍ରତକାନ୍ତି ପୟୋଜ-ପଙ୍କତ
ରମ୍ୟ-ଦୃଷ୍ଟି ଦ୍ଵୀପାବଳୀ, ତୋହର ସନ୍ତତ ।
ଜଗତ ତୋଠାରେ ଋଣୀ, ହେ ନୀଳ ସାଗର !
ତୋ ଭାବେ ମୋ ହୃଦ ଦେନ ପ୍ରଣାମ ମୋହର ।

ତା ୧୧-୮-୧୮୮୬

———

## ୬—ମଲ୍ଲିକା

ଉଦ୍ଭିଦ-ଭୂଷଣ-ପୁଷ୍ପ-ରତ୍ନ-ରାଜବରେ
ମଲ୍ଲିକେ ! ମଞ୍ଜୁଳ ମଧୁ-ଉଷା ସମୟରେ
ଭ୍ରମନ୍ତେ ମୋ ଉଦ୍ୟାନରେ, ତୋହ ବିକସିତ
ନବୀନ ମୂରତି ମୋ ହୁଅଇ ପତିତ
ନୟନ ପଥରେ ; ଦେଖି ଯେ କି ଅନୁପମ
ଆନନ୍ଦ ଉଦଇ ମନେ ହାୟ ! ମୁଁ ଅକ୍ଷମ
ବିଅକତ କରିବାକୁ ସେ ପବାନ୍ଦ ଭାବ
ଗୁର ସଙ୍କେତରେ-ହାୟ ! ମହତ ଅଭାବ
ରହିଅଛୁ ଅଦ୍ୟାପି ଏ ମାନବ ସୃଷ୍ଟିରେ—
ନ ପାରେ ବିଅକ୍ତ ତାହା ଗୁର ନୃ-ବାଣୀରେ ।
ମନେହୁଏ ମଲ୍ଲିକ ଗୋ ! ତୁ ଜାବ ମୋ ପରି ;
ନାହିଁ ତ ପ୍ରଭେଦ ବୋଲେ ମାନବ ଯେପରି ;
ସଙ୍କେତୁକୁ ମୋତେ ତୁହ ସସ୍ମିତ ମୁଖରେ ।
ଧୀରେ ଧୀରେ ପଦକ୍ଷେପେ ତୋହ ଉଦ୍ଦେଶ୍ୟରେ ।
ଉଭା ହୋଇ ତୋହ ପାଶେ ନିରୀକ୍ଷି ମୁଁ କ୍ଷଣେ
ପ୍ରସାରେଁ ଦକ୍ଷିଣ ହସ୍ତ ତୋହ ଆକର୍ଷଣେ ;

କନ୍ତୁ ନ ଛୁଉଁଯୁଁ ତନୁ କୋମଳାଙ୍ଗି ! ତୋର
ବିଷାଦ-ଗମ୍ଭୀର ଭାବ ଉଦଇ ମନର ;
ମନେ ପଡ଼େ ମନୁ-ଉକ୍ତ "ତରୁ-ଲତାମାନ
ଅନ୍ତଃ-ସଂଜ୍ଞ ; ଅନୁଭବ କରନ୍ତି ଏମାନ
ସୁଖ ଦୁଃଖ" ବୋଲେ ମନ ଅଟେ ଯଥାରଥ
କହିଲେ ଯା ନରଗୁରୁ ! ମାତୃ-କୋଳ-ଗତ
ହସୁଛୁ ଗରବେ, ଭୁହି ହେଲେ ଶାଖା-ଛଡ଼ା
ମଉଳିବ ତୋ ବଦନ, ଥିବ ନାହିଁ ପରି.
ସେ ଗୁରୁ ନବୀନ ସ୍ମୃତ ତଥା, ଯଥା ଶିଶୁ
ସୁହାସିନୀ ବାଳିକାଟି କୋମଳ ଶିଶିରୁଁ
ମାତୃ କୋଳୁଁ ଛଡ଼ାଇଲେ ମଳିନବଦନା ।
ବାଳା ପରି ଅନୁଭବୁ ତୁ ମନୋ-ବେଦନା ।
ଅନାଇ ରହେଁ ମୁଁ କ୍ଷଣେ ଭାବି ଏହିପରି ।
ପୁଣି ଉଦେ ମୋ ମନରେ ନବେ ତାପ୍ପରି
ଅପର ଭାବନାବଳୀ—ହେଲେ ରବି-କର
ଅଳପ ସମସ୍ତ ପରେ, ସୁମୁଖି ! ପ୍ରଖର,
ନ ଥିବ ଏ ଗୁରୁ ହାସ୍ୟ ନ ଥିବ ଏ ଶୋଭା ।
ଝାଉଁରି ପଶିସ୍ତେ ତନୁ—କେ ପଚୃରେ ଅବା !
ପାହିଲେ ଆଗତ । ନଶି ହୁଏ ତ, ସେଠାରେ
ରହିଛୁ, ନ ଥିବୁ କ୍ଷଣ-ସଖି ! ଏ ଧରିରେ
ଅନୁରୂପ ଦଶା ଦେଖେ ନେତ୍ର ମାନବର
—ମାନବର ନୁହେ ଏକା, ସର୍ବ ଜଗତର ।
ତଥାପି ମଲ୍ଲିକେ ! ତୋର ଧରିରେ ଆଦର ;
ଆଦର କ ଲାଗି ? ଏକା ତୋହ ସୁଗନ୍ଧର ।
ଦେଖୁଛୁଁ ତ ସେହିପରି ମାନବ ମଧ୍ୟରେ—
ଇତର ଯେସନ, ସାଧୁ କାଳ-କବଳରେ
ପଡ଼ଇ, ହୁଅଇ ଦେହ ତହିଁ ପରିଣତ,
ଯାହା ଯେନ ସରଜିଲେ ସ୍ରଷ୍ଟା ବୁଦ୍ଧିମନ୍ତ;
ଖ୍ୟାତ-ସଉରଭ, ତୋହ ସଉରଭ ଯଥା,
ଜଗତ-ମାନସ-ନାସା ପୂରି ରହେ ତଥା ॥

୧୭ ଆଶ୍ୱିନ—ତା ୩୦-୯-୧୮୮୭

———

## ୭—ବିଦେଶରୁ ସ୍ୱଗୃହାଭିମୁଖରେ ବାଲେଶ୍ୱର ପ୍ରତ୍ୟାଗମନ କାଳରେ କୌଣସି ସମୁଦ୍ର-ପୋତରେ ଦୁଇ ସହୋଦରର ବିନାଶ

ଅର୍ଣ୍ଣବେ ଅର୍ଣ୍ଣବ-ପୋତ ଗମଇ ସୁଖରେ
ଉଡ୍ଡୀନ ଭବନ ଯେହ୍ନେ ବିହଗ ଶୂନ୍ୟରେ
ସ୍ୱ କୁଳାୟ ଅଭିମୁଖେ, ଚଳେ ଧୀରେ ଧୀରେ ;
ତା ସଙ୍ଗେ ଚଳଇ ତାହା ପ୍ରତିବିମ୍ବ ନୀରେ ;
ଗଗନ ପ୍ରଶାନ୍ତ ଊର୍ଦ୍ଧ୍ୱେ ; ତେଣୁ ଉଦନ୍ୱନ୍ତ
ଶାନ୍ତ ଯଥା—ପ୍ରଯୋଜନ—ଦୀର୍ଘିକା ଯେମନ୍ତ ।
ଆରୋହୀ-ନରସ୍ତ ମଧ୍ୟେ ତହିଁ ଭ୍ରାତୃଦ୍ୱୟ ।
ପ୍ରାକୃତିକ ଅଲଙ୍କାର ସୌଭ୍ରାତ୍ର, ବିନୟ
ସୋଦର-ଯୁଗଳ ଭୂଷେ—ଗୁଣ-ରତ୍ନମଣି
ଯା ସଙ୍ଗେ ତୁଳନା-ଯୋଗ୍ୟ ନ ମଣୁ ତ ମଣି,
ଯାହା ନ ତଆଗେ ଜନେ ଏ ଦେହେ ଯାବତ
ପ୍ରାଣବାୟୁ ସଞ୍ଚରଇ, ବହଇ ରକତ ।
ବାୟୁ ବହେ ଅନୁକୂଳ, ପ୍ରଶାନ୍ତ ସାଗର
ନାହିଁ ବାଧା ଗମନରେ ଅର୍ଣ୍ଣବ-ପୋତର
ଦେଖିଣ ନାହିଁ ତ ହର୍ଷ—ଅବଧି-ଅବଧି
ଉଭୟ ସୋଦରଙ୍କର; ମନେ ନିରବଧି
ବିଚାର କରନ୍ତି ଦେଖି ଜନନୀ ପିଅର
କେତେବେଳେ, ଶମାଇବେ ଆବେଗ ମନର ;
ଦିନ ଏକ ଅତିବାହି ବନ୍ଧୁଙ୍କର ମୁଖ
ଧଶବେ; ଦିନେକ ପରେ ମାତା-ପିତା-ମୁଖ
ନିରୀକ୍ଷିବେ । ଯହୁଁ ନଦୀ-ମୁଖ ସନ୍ନିହିତ,
ନଦୀ-ମୁଖ-ସନ୍ନିଧିରୁ ଗୃହ ସନ୍ନିହିତ,
ହୋଇଲା, ବଢ଼ିଲା ତାଙ୍କ ମନର ଆବେଗ,
ଧରା-କେନ୍ଦ୍ର-ସନ୍ନିହିତ ହେଲେ ଯଥା ବେଗ
ବଢ଼ଇ ବସ୍ତୁର କ୍ରମେ ପତନ କାଳରେ ।

ପୋଡ-ପ୍ରୋକ୍ଷା ଛୋଡ଼ୁ ଜଳେ ଦଶା-ଆଗମରେ
ନକ୍ଷେପି ରହିଲ ପୋଡ ସର୍ବେ ଆହ୍ୱାଣଲେ ;
ଆହ୍ୱାସ୍ରେ ମନଃ-ମୁଖେ ଗଳ୍ପ ଆରମ୍ଭିଲେ ।
ଜନକ-ଜନମୀ-ମନଃ ସୋଦର-ଯୁଗ୍ମର
ଅଶାବ ଅଥୟ ତେଣେ ; କେବେ ଯେ କୁମର
ନେଉଟିବେ ଆଲେଚନ୍ତି, ମନୋ-ମନ୍ଦରରେ
ଗଢ଼ିଣ ପ୍ରତିମା ଦୁଇ କଳ୍ପନା-ପ୍ରସ୍ତରେ
ପୂଜୁଥାନ୍ତି ଉପହାର ସ୍ନେହ-ଦୁଗ୍ଧ-ବଳ
ନାହିଁ ତ ନପୁଣ ଶିଳ୍ପୀ କଳ୍ପନାକୁ ବଳ ।
ଗୃରୁ-ଶର ଦଲୁଗାମୀ ଜାଣଇ ଜଗତ
କଷ୍ଟ ଶୀତ ; କନ୍ତୁ କେବେଁ ବଧ୍ୱ-ମନୋଗତ
ଜାଣଇ ପୂରୁତ୍ୱ କଏ ? ହୃଦୟ ବଦରେ
ସୁଖ-ତଷ୍ମ ଭଗ୍ନ ହେଲେ ବପଡ-ତରଙ୍ଗରେ ।
ସୋଦରେ ରଚିଲେ ଶଯ୍ୟା; ନହିଲେ ବିଗ୍ରହ
ତହିଁ, ସାର ସ୍ୱ-ଆହାର; ବଧାତା-ବଗ୍ରହ
ହାସ୍ୟ ନ ଜାଣନ୍ତି ବେନ ! ତାରକା-ସ ନାଥ
ଭଜଲେ ନର୍ମଳତର ବଶ୍ୱବଶ୍ୱ-ନାଥ
ଅପୂର୍ବ-ମାଧୁରୀ, ଦବ୍ୟ ଯଥାର୍ଥ ସେ ଛବ
ନ ଭାବ, ନ ଭାବ ମନେ ଅତଭକ୍ତେ କବ ।
ଅନୁଜ ଯେ ଭ୍ରାତା ନହ ଅପର-ବକ୍ଷରେ
ମସ୍ତକ, ବୋଲଇ "ଭାଇ ! ଦେଖରେ ଦେଖରେ
କ ସୁନ୍ଦର ଜହ୍ନ ରାତ ; ମଣଇ ହସୁଛ
ଜହ୍ନମାମୁଁ !"-ମଣଇଁ ମୁଁ, ଇନ୍ଦୁ ନ ହସୁଛ
କନ୍ତୁ କାଳେ ନ ଦେଖିବେ ସେ ଛବ କୁମରେ
ଏ ଭାବ ଏ ଗୁରୁମୂର୍ତ୍ତି ପ୍ରକଟିତ କରେ ।
ଗୃହିଁ ରହଛନ୍ତି ବେନ ଅଚଳ ନେତ୍ରରେ
ଅତକ୍ରମି ଦୃଷ୍ଟିରେଖା ଏସନ କାଳରେ
ନୀରଦ ଖଣ୍ଡିଏ ନଭେ ଧୀରେ ଗଲ ଚଳ
କୁମର ଆଗମ-ବାର୍ତ୍ତା, ମଣେଁ ଦେବ ବୋଲ
ପ୍ରସୂତ-ଜନକେ ; ତହୁଁ ମୁହୂର୍ତ୍ତିକ ପରେ

ତହୁଁ ନିମ୍ନତର ଦେଶେ ଅଧିକ ବେଗରେ
କ୍ଷୁଦ୍ରତର ମେଘ ଖଣ୍ଡ ତା ପଛେ ଚଳିଲ ;
ମଣେଁ ମୁହିଁ ଏ ଖଣ୍ଡିକୁ ବିଧି ପଠାଇଲ
ଅଗ୍ରେ ( ତେ ? ) ନିବାରିବାକୁ ; ତେଣୁ ବୁଦ୍ଧିମନ୍ତ
ବିଧି ତାକୁ ନିରମିଲ ଲଘୁ, ବେଗବନ୍ତ ।
ଶ୍ରମ-ବିନୋଦିନୀ ନିଦ୍ରା ଯଥା-ସମୟରେ
କଲ ସ୍ଥିର ଅଙ୍କଗତ ଉଭୟ ସୋଦରେ ।
ଦୁହେଁ ଊର୍ଦ୍ଧ୍ୱ-ବକ୍ଷାଃ, ଗାଢ଼ ନିଦ୍ରା-ଅଭିଭୂତ ;
ଯେ ଅନୁଜ, ବକ୍ଷ୍ୟ-ଦେଶେ କରିଛି ସଂଯତ
ଛନ୍ଦ କର-ଯୁଗ ଏଣେ ଊର୍ଦ୍ଧ୍ୱେ ନଭସ୍ଥଳୀ
ଅମଳ-ଶଶାଙ୍କ-ହୀନ; ନାହିଁ ତାରାବଳୀ ;
ଘରଞ୍ଚ-ଘର୍ଘର, ଘୋର ଘନ-ଘଟା ଘୋଟି
ଆଚ୍ଛାଦିଛି ଚତୁର୍ଦ୍ଦିଗ, କୃଷ୍ଣ-ପଞ୍ଚ-କୋଟି
ଯେହ୍ନେ ଆବରିଛି ନଭଃ ; ଭୀମ-ପରାକ୍ରମ
ଭୟଙ୍କର ରବ ଗୁଡ଼ି ବହେ ବାତ୍ୟାକ୍ରମ ।
ପ୍ରଳୟ-କରାଳ-ଚଣ୍ଡ-ଝଞ୍ଜା-ପରାହତ,
ପୋତ-ରୋଦ୍ଧା-ବନ୍ଧ ରଜ୍ଜୁ ଛିଣ୍ଡାଇଲା ପୋତ
ଚଳିଲ ଝଟିକା ମୁଖେ । ଏସନ ସମୟ
ତୁଙ୍ଗ-ତୁଙ୍ଗ-ଶୀର୍ଷ-ପାତ-ରୂପ-ଶଙ୍କାମୟ
ସ୍ୱପନେ ହୁଅନ୍ତେ ସୁଖ-ନିଦ୍ରା-ବିପର୍ଯ୍ୟୟ
ଅନୁଜ ଉଠିଣ ଆଗେ, ସଞ୍ଜାତ-ବିସ୍ମୟ
ପ୍ରବୋଧିଲା ଅଗ୍ରଜକୁ; ଦୁହେଁ ପରସ୍ପର
କର ଛନ୍ଦ ଗଳଦେଶେ-ଲେଖା ଅଦୃଷ୍ଟର ।
ବିଳାପିଲେ ତାର ସ୍ୱରେ ! ଝଟିକା ପ୍ରବଳ
ଆଘାତ ତଟରେ ପୋତ କଲକ ବିକଳ !
ବେନି ଭାଇ ଛନ୍ଦାଛନ୍ଦ ହୋଇ ପ୍ରବେଶିଲେ
ସାଗରଗରଭେ ; ଜୀବ-ଲୀଳା ସମ୍ବରିଲେ ।
ପରଦିନ ଦିନ-ମଣି-ବିଷଣ୍ଣ-ନୟନ
ଯେହ୍ନେ-କଲେ ଶବ-ରୂପ-ସୋଦର-ବଦନ
ଦରଶନ ତଟଦେଶେ ; ଦେଖିଲ ଜଗତ ;
ହେଲ ବାର୍ତ୍ତା କ୍ରମେ ମାତା-ପିତା-କର୍ଣ୍ଣ-ଗତ ।

ମାତା ପିତା ସେ ଦାରୁଣ ବାର୍ତ୍ତା ଉତ୍କ୍ଷେପିଲ,
ଶାଶ୍ବତ-ଶୋକାଶ୍ରୁ-ନଦୀ ହାସ୍ଯ ! ବୁହାଇଲା ।
ଆଶ୍ବିନ ୨୧ ଦିନ, ତା ୬-୧୦-୧୮୮୭

———

## ୮—ଶରଦୁଷା - ପ୍ରାକ୍‌କାଳ

ଶରଦେ ଉଠିଲି ଦିନେ ଉଷା-ପ୍ରାକ୍‌କାଳରୁ ;
ନିସ୍ତବ୍‌ଧ ସକଳ ଦିଗ ଯେହ୍ନେ ମହାମରୁ ;
ମନେ ହେଲା ମହା ସିଦ୍ଧ ତାପସୀ-ବସନ୍ତ
ତପେ ରତ ବିଜନରେ ; ପାଦ-ପ୍ରକ୍ଷେପଣ
କଲେ ହେବ ତପୋ-ଭଙ୍ଗ କାଳେ ଧରଣୀର,
ପ୍ରାଙ୍ଗଣେ ବସିଲି ଶଙ୍କି ହୋଇ ଅତି ସ୍ଥିର ।
ଗଗନେ ତାରକା-ରାଜି ରାଜେ ବହୁକ୍ଷଣ
ମଉଳି ଆସିଲେ ଏବେ ଏ କ ତାରାଗଣ
ବିରାଜଇ ଉର୍ଦ୍ଧ୍ବେ ଯାହା ଦେଖୁଛୁ ନୟନ ?
ନୁହଇ ନୁହଇ ବୋଲି ପାଞ୍ଚଇ ତ ମନ୍ ।
ପାଞ୍ଚଇ—ରୂପସୀ-ନିଶା-ଅବଗୁଣ୍ଠନରେ
ଖଚିତ ହୀରକ-ଜାଲ ଜ୍ବଳେ ଦୀପ୍ତି-ଭରେ ;
ଦିନକର-କର କରି ଦୂରୁ ନିରୀକ୍ଷଣ
କର ବଢ଼ାଇଣ କାଳେ କରିବ ହରଣ
ଶଙ୍କାରେ ରଜନୀ-ଧନୀ ତନୁ ଉତ୍ତରୀୟ
ଢାଙ୍କିଲି ଯତନେ ଶିରେ ; ତେଣେଁ ଦୀପ୍ତି-ପ୍ରିୟ
ଲୁଚି ନ ରହିଲେ ହୀରା-ଶକଳ-ସକଳ ;
ହୀରକେ ଏସନ ରୀତି ଦେଖିଣ ବିକଳ
ରଜନୀ ଢାଙ୍କୁଛି ଅନ୍ୟ ଉତ୍ତରୀୟ ତହିଁ ;
ତା'ପରେ ଅପର ଢାଙ୍କେ ; ତାଠୁଁ ଦୀପ୍ତି-ମୟୀ
ହୀରା-ରାଜି କ୍ରମେ କ୍ରମେ ମଳିନ ଦିଶଇ ।
କ୍ଷଣ ପରେ "ତାହା ନୁହେଁ" କଳନା ବୋଲଇ ।

ନା-ନା ତାହା ନୁହଇ ତ ; ହୋଇଲେ ଏସନ
ନ ଦେଖନ୍ତେ ସୁରେ ଊର୍ଦ୍ଧ୍ୱେ, ଦେଖନ୍ତା ତ ଜନ
ସ୍ୱର୍ଗ-ଜାତ । ଯବେ ଦେବ-ଶକଳ ସକଳ
ଦେବାବ୍ଧିରେ ବିଚରନ୍ତେ ଝଟକେ ଶକଳ ;
ଦେବାବ୍ଧି ବିରାଜେ ଯଥା ନୀଳ ବରନର
ଧରଣୀର ଊର୍ଦ୍ଧ୍ୱ ଦେଶେ ; ଏହି ଉଭୟର
ମଧ୍ୟ ଦେଶେ ଦିନେ ଶଙ୍କି କରି ଦରଶନ
ଧରି ନେବ ବୋଲି କର-କର-ପ୍ରସାରଣ
କରୁଛି ପାଳନ୍ତି ଯିବ ଧୀରେ ମୀନ-ଗଣ ;
ଦିଶୁଛି ଶକଳ-ଜ୍ୟୋତ୍ସ୍ନା-କ୍ଷୀଣ କ୍ଷଣୁଁ କ୍ଷଣ ।
ପୁନରପି ଯେବେ ମନଃ ନଇଣ ଆକାଶେ
ଜ୍ୱଳୁ ଥିଲ ଦୀପମାଳା ; ରବି ପରକାଶେ—
ବିଚାର ମହିମା କଳ ପାରେ ସୁରଙ୍ଗର
ନର-ବର-ଯୋଗି-ଜନ-ଧ୍ୟାନ-ଅଗୋଚର,
କିଏ ବା ମାନବେ !-କମେ ଆଶ୍ଚର୍ଯ୍ୟ କୌଶଳେ
ନିଭାଇ ଦିଅନ୍ତି ଦେବେ ପ୍ରଦୀପ-ସକଳେ ।
କଳ୍ପନା-କୁଶଳ ମନଃ ଯେବେ ଅତଃ ପରେ
ଦୂର, ଦୂର-ବ୍ୟାପୀ, ଦିବ୍ୟ, ମେଚକ ପ୍ରାନ୍ତରେ
ମନ୍ଦାକିନୀ-ଜଳୋଦ୍‌ଗତ-ବାଷ୍ପ-ପରିଣତ
ବିରାଜେ ଉଜ୍ଜ୍ୱଳ-ଜ୍ୟୋତ୍ସ୍ନା-ଶିଶିର-ସନ୍ତତ ;
ରବିକର-ତାପେ କମେ ଲଭୁଛି ବିଲୟ,
ଜଗତେ ଯେସନ ପ୍ରାତଃ ଶିଶିରନିଚୟ ।
ମାନସ ଭାବୁକ ଭାବୁଁ ଭାବୁଁ ଏଇ ରୂପ
ବୋଇଲ, କାହାକୁ ବୋଲେ କାହା ଅନୁରୂପ !
ଦିବ୍ୟ ବର୍ତ୍ମ ତାତ୍-ରାଜି ଶିଶିର-ସଦୃଶ ।
ଗର୍ହିତ ଅଟଇ କିନ୍ତେ ତୁଳା ଏ ତାଦୃଶ ।
ବୋଲିଣ ଫେରିଲା ମନଃ ଚନ୍ଦ୍ରା-ଆଭରଣ ।
କାର୍ଯ୍ୟେ ଗଲି ଦେଖି ପୂର୍ବ ରକ୍ତିମ-ବରଣ ।

୨୫ ଆଶ୍ୱିନ, ତା ୯-୧୦-୧୮୮୬

———

## ୪—ଶଯ୍ୟାସ୍ଥ ଆଶା-ମୁଗ୍ଧ ବ୍ୟକ୍ତି

ଶାନ୍ତ-ସିନ୍ଧୁ ନିଦ୍ରେ ! ମାତଃ ! ଯୋଡ଼େଁ ବେନି କର
ଛାଡ଼ି ମୋତେ ଶେଯେ ଏକା ଗମନ ତୁ କର
ବନ୍ଧୁର୍ଦ୍ଦେଶେ ଏ କଷ୍ଟରୁ କ୍ଷଣ କାଳ ପାଇଁ ;
କ୍ଷଣ କାଳ ପରେ ହେବ ତୋର ଅଙ୍ଗ-ଶାୟୀ ।
—ଆସ ଗୋ ମୋହିନୀ ଆଶେ ! ଆସ ମୋହ ପାଶେ
ନିଦ୍ରାକୁ ମୁଁ ଉପେକ୍ଷିଲି ଏକା ତୋ ସକାଶେ ।
ଜଗତେ ତ ନାହିଁ ତୁଳା ; ଦ୍ୟୁଲୋକରେ ପଶି
ମୋ ଆଖିରେ ନୁହିଁଇ ତ କେହି ତୋହ ସରି ।
ତୋତେ ଯେ ନିନ୍ଦଇ ତାର ନାହିଁ ଦରଶନ ;
ପାପୀଏ ଜାଣିବେ କାହୁଁ ଦ୍ୟୁଲୋକ କେସନ
ତୋ ଅପାଙ୍ଗ ଦୃଷ୍ଟି ବାରେ ପଡ଼େ ଯା ଉପରେ
ନରକେ ଥିଲେ ହେଁ ସେହୁ ସ୍ୱର୍ଗ ଭୋଗ କରେ ।
ଧିକ୍ ଯାଦୁ-କର-ବରେ ; ତୋହୋର ମୋହନ
କରେ ବା ଜାଣିବେ କାହୁଁ ? ତୋ କୃପାରେ ଜନ
ଯାହା ଭୋଗ କରେ ତାହା ବଳେ ଦେବ-ଶ୍ରେଣୀଁ ।
ନର-ବର-ବଡ଼ପଣ ସିନା ତୋହ ଯୋଗୁଁ ।
ପ୍ରିୟାଲୁଳ ଦାଶରଥି ତୋହ ବଳେ ବଳୀ
ଜଗତ୍‌ତ୍ରାସ ଦଶାନନେ ରଣେ ଗଲେ ଦଳି ;
ଅକୂଳ ଅତଳସ୍ପର୍ଶ ସିନ୍ଧୁ ଗଲେ ତରି,
ସେତୁବନ୍ଧ ମିଥ୍ୟା ; ତାଙ୍କ ତୁହି ହେଲୁ ତରି ।
ଅରଥ-ଲୋଲୁପ ଜନ ତରିରେ ବିଚରେ
ଭୀମ-ଊର୍ମ୍ମି-ଲୀଳା-ଭୂମି ସାଗର-ବକ୍ଷରେ
ବାନ୍ଧିଣ ସାହସ ଆଶେ ! ତୋହର ମନ୍ତ୍ରରେ ;
ନୋହିଲେ କି ଛୁଇଁ ତରି ସିନ୍ଧୁ-ସମୀପରେ !
ବୀରବଳ-ଗ୍ରନ୍ଥେ ଦେଖୁଁ କେତେ ବୀରବର
ଅପର ଶକତି ପରେ ନ କରି ନିର୍ଭର

ଏକାକୀ ଅକୁତୋଭୟ ଯୁଝି ଶତ ଶତ
ଲଭିଲେ ବିଜୟ କରି ଶତ ପରାହତ—
ତୋ ଅତୁଳ ବଳେ ବଳୀ ବିଶ୍ୱାସ ମୋହର ;
ନୋହିଲେ ସହସ୍ରେ ଜିଣେ ବଳେ ଏକ ନର !
ବିପଦକ୍ଲ-ତମୋମଧ୍ୟେ ବୁଜି ଦରଶନ
କେତେ କ୍ଷୀଣପ୍ରାଣ ନର କରନ୍ତି ଗମନ ;
ଚପଳା ପରାୟେ ତୁହି ଦେଖାଉ ଗୋ ପଥ ।
ନୋହିଲେ ସେବାରେ ତୋର ସରବେ କି ରତ ?
—ଥାଉ ତୋ ଗୁଣର ବ୍ୟାଖ୍ୟା; ଆସ ବିନୋଦିନି !
ବାନ୍ଧେଁ ତୋତେ ବାହୁପାଶେ ମୋ ମନୋମୋହିନି !
—ବୀରବର ! ଏ ଜଗତେ, ଆୟୁ, ଅଛି କିଏ,
ଦେଖାଯାଉ ପରାକ୍ରମେ ଜିଣୁ ଅଛି କିଏ ।
ନୃପତି-ପୁଙ୍ଗବ ! ଯଦି ଶ୍ରେୟଃ ପ୍ରଜାବନ,
ଛାଡ଼, ଛାଡ଼ ଛାଡ଼ ତୁମ୍ଭ ରତ୍ନ-ସିଂହାସନ ;
ମଣେ ଛାର, ତୃଣ ଯେହ୍ନେ, କୋଟି ଅନୀକିନୀ,
ଯେତେବେଳ ଯାଏ ଏକା ଆଶା ମୋ ସଙ୍ଗିନୀ ।
ତପସ୍ୱି-ତପନ ! ତବ ତପ ବୃଥା ଜାଣ,
ମୁହୂର୍ତ୍ତେ ଲଭିବ ନାହିଁ ସ୍ୱର୍ଗେ ଦେବ ଠାଣ ।
ଯୋଗି-ଶ୍ରେଷ୍ଠ ; ବିଅରଥ ବିନା ଯୋଗ ତବ,
ଲୀଳା ଛଳେ ଘଟାଇବୁ ତୁମ୍ଭ ପରାଭବ ।
ସୁରେଶ ! ବିଫଳ ବିନା ତୁମ୍ଭ ଅଭିମାନ,
ଏ ଅବେ଼ ଇନ୍ଦ୍ରତ୍ୱ ରଖି ଦେଖ ଅନ୍ୟ ସ୍ଥାନ ।
ପ୍ରମଦା-ମଉଡ଼-ମଣି ! ତୁମ୍ଭେ ମୋହ କରେ,
ଦିବ୍ୟ-ପ୍ରଭ ମଣି ଯେହ୍ନେ ପୟୋଧି-ଗର୍ଭରେ ।
କିନ୍ନରୀ-ଅପ୍‌ସରୀ-ଗଣ ! ମାତ ସଙ୍ଗୀତରେ ;
ଧୀରେ ନେଇ ମୋତେ ରଖ ନିଦ୍ରାର କୋଳରେ ।

ତା ୧୬-୨-୧୮୮୭, ଜୁବିଲୀ ଦିବସ

———

# ୧୦—ଝଟିକା

ବିଗତ ପର୍ଯ୍ୟନ୍ତେ ନିଶା-ପ୍ରଥମ-ପ୍ରହର ।
ଘନତମ-ଘନ-ଘଟା ଘୋଟିଲା ଅମ୍ବର ।
ଯହିଁ ନେତ୍ର ପଡ଼େ ତହିଁ ଅନ୍ଧ ଅନ୍ଧକାର ;
ଲଭିଲା ନଶିଲ ମଧ୍ୟ ଅପୂର୍ବ ବିକାର ।
ନିଦାଘ-ପ୍ରଦୋଷ-ଭବ ମଧୁର ସମୀର
କ୍ରମଶଃ ହୋଇଲା ଏବେ ଅଧିକ ଅଧୀର ।
ବହିଲା ହୁ ହୁ ହୁ ଶବ୍ଦ ଗ୍ରହ୍ଣି ପ୍ରଭଞ୍ଜନ ;
ମହୀରୁହ-ରାଜ ହେଲେ ମଦ୍ୟପ ଯେସନ,
ପ୍ରିୟ-ସୁତ-ନାଶେ ଯଥା ପିତା-ପ୍ରସବିଣୀ,
ଅବା ଯଥା ପତି-ପ୍ରାଣା ବାମା ଉନ୍ମାଦିନୀ
ହୃଦୀଶ-ବିନାଶ ଶୁଣି । ଏ ସବୁ ନୟନ
କିନ୍ତୁ ତମିସ୍ରାରେ କିଛି ନ କଲା ଦର୍ଶନ ।
ପ୍ରଭଞ୍ଜନ-ବେଗ ଦେଖି ଅତି ତରତର,
ବିପଦ ଆଶଙ୍କି, ଜନେ ହେଲେ ଅଗ୍ରସର
ଆହାରାଦି-ସମାପନେ । ବାଳକ-ରତନ
ଦିବସେ କ୍ରୀଡ଼ାରେ ଶ୍ରାନ୍ତ ମନୋଜ୍ଞ ଶୟନ
ଭୁଞ୍ଜୁ ଥିଲା, ଏ ସମୟେ ପ୍ରବୋଧି ସନ୍ତତି
ଭୁଞ୍ଜାଇବ ବୋଲି ଅନ୍ନ ଅତି ଦ୍ରୁତ ଗତି
ଚଳିଲା ଆକୁଳା ମାତା । କାହିଁ ପ୍ରିୟାବର
ଶ୍ରବିଲେ, ତିଆଗି ଅନ୍ୟ କାର୍ଯ୍ୟ ଗୁରୁ-ତର
ହୋଇଲା ବଲ୍ଲଭ-ମଣି ଅଶନେ ତତ୍ପର ।
କାହିଁ ପୋଥି ହାତେ ଧରି, ପୋଥି ବିଷ ମଣି
କୁମର ପଢୁଣ ଥିଲା ; ଡାକନ୍ତେ ଜନନୀ
ଆନନ୍ଦେ ଅଧୀର ହୋଇ ପୁସ୍ତକ ଥୋଇଲା,
ପାଶ-ମୁକ୍ତ ଏଣି ପରି ଅଶନେ ଚଳିଲା ।
କାହିଁବା ନବୀନ କବି କଳନା-ବ୍ରତତି
ଅଙ୍କୁରିବ ପୁଷ୍ପାବଳି ଯତନରେ ଅତି

ତୋଳଣ, କବିତା-ମାଳା ଗୁନ୍ଥି ବସିଥିଲି,
ଅର୍ଦ୍ଧ ଗୁନ୍ଥା ମାଳା ଥୋଇ ବାହାର ଚଳିଲି ।
ଥୋକାଏ ପ୍ରବଳ ଦେଖି ଘନ-ଆବରଣ
(ସ୍ୱୀକାର ଘଞ୍ଚାଇ ପାରେ ପ୍ରଳୟ ଏ ଘନ)
ବିଶ୍ୱ-ବିନଶ୍ୱର-ଭାବ-ପ୍ରଭୃ-ବଡ଼ପଣ—
ପ୍ରସଙ୍ଗ-ଗିରିରୁ ବହୁ ତର୍କ-ପ୍ରସ୍ରବଣ
ଜନମାଉଥିଲେ ; ଏଣେ ବାମ ପ୍ରଭଞ୍ଜନ
ଶଙ୍କା-ବନ୍ଧେ ରୁଦ୍ଧ କଲି ସେହି ପ୍ରସ୍ରବଣ ।
ମନୋଜ୍ଞ ବାଦ୍ୟଯନ୍ତ୍ର ଘେନି ବାଦନ-କୁଶଳ
କାହିଁବା ଆରମ୍ଭି ଥିଲେ ଯୁବକ ସକଳ
ଶବ୍ଦ-ରସ-ଅନୁରାଗ ଲଳିତ ବାଦନ ;
ତହିଁ ଛି ଛି ! ବାଧା ଦେଲା କୁରୁଚି ପବନ ।
ପାନ୍ଥ ହୃତ-ବୁଦ୍ଧି ଦେଖି ବିପତ୍ତି ଏସନ
ଧାଇଁଲି ଅଗନ-ବେଗ ଆରତ-ଭଞ୍ଜନ
ନାମ ସ୍ମରି ଅନୁକ୍ଷଣ, ଲକ୍ଷି ପାନ୍ଥାଶ୍ରମ ;
ଓଦ୍ଲାଇ ସର୍ବାଙ୍ଗ ତାର ବହିଲି ଘରମ ।
ଯଯାମା ନିଶାଥ ଯହୁଁ କଲି ଅତିକ୍ରମ
ବହିଲି, ପ୍ରଳୟେ ଯଥା, ଭୀମ ବାତ୍ୟା-କ୍ରମ ।
ସାର୍ଥକ ହୋଇଲି ଏବେ ନାମ ପ୍ରଭଞ୍ଜନ
କେତେ ମହୀରୁହ-ବର କେତେ ଯେ ଭବନ
କଲି ଶିର୍ଣ୍ଣ-ପରିହୀନ, କିଏ ସମରଥ
ଗଣିବ ସେ ମର୍ମଭେଦୀ ଗଣ ଯଥାରଥ ।
ବଣ-ବଣ-ଧ୍ୱଂସ କଲି କ୍ରୂର ପ୍ରଭଞ୍ଜନ ;
ରସାଳ-ପନସ-କୁଳ—ଯଥା ଯଦ ଜନ
ହୀରକ-ହାଟକ-ରଜତ-ଜ ଭୂଷଣରେ
ଭୂଷିତ-ସର୍ବାଙ୍ଗ ପଡ଼େ ଦସ୍ୟୁ-କବଳରେ,
ହୃତ-ସର୍ବ-ସ୍ୱାପତେୟ, ହୃତ-ପରିଧାନ,
ଛିନ୍ନ-ନାସା-କର୍ଣ୍ଣ-ଭୁଜ, ଅସହାୟ, ମ୍ଳାନ—
ହୃତ-ଶାଖା-ପର୍ଣ୍ଣ-ଫଳ, ଅତୀବ ବିକଳ ।
ମହାରଥ ଯଥା ଯୁଝି ଅରି-କୁଳ-ବଳ
କରେ ରଣ-ଭୂମି-ଶାୟୀ, ନାରିକେଳ ତରୁ
ପରାକ୍ରାନ୍ତ ପ୍ରଭଞ୍ଜନ ନାଶିଲି ମୂଳରୁ

କେତେ ଯେ କେ ପାରେ ଗଣି ! ଜାଣି ଅବସର
ଆଚରିଲେ ସହାୟତା ନୀରଦ-ନିକର ।
ଘନ-ସଖା ପ୍ରଭଞ୍ଜନ ଧରି ଉତ୍ସାହିଲା ।
ନେତ୍ର କିନ୍ତୁ ତମ ସାନ୍ଦ୍ର ଏହା ନ ଦେଖିଲା ।
          ଯଥା କାଳେ ଉଷା ଦେବୀ ଦେଲେ ଦରଶନ
ଧରଣୀ-ବାସିଙ୍କ ବ୍ୟଗ୍ର ; କିନ୍ତୁ ବାତାୟନ
ଅବା ଦ୍ୱାର ଦେଇ ନୁହେ, ଅନ୍ୟଦା ଯେସନ
ତାମ୍ର ଚୂଡ଼ା-ବାୟୁସାଦ୍ଧ ଉଷା ଆଗମନ
ନ ଘୋଷିଲେ ଧରା' ପର । କିବା ଏ ସତତ
ଦେଖନ୍ତି ପ୍ରଭାତ କାଳେ ଦିନେଶ ଉଦ୍‌ଗତ ;
ପ୍ରଭାତ-ସମୀର ବହେ ମଧୁଗନ୍ଧ ହରି ;
କୁସୁମ-ବିକାଶ ଜାଣି ଗୁଣୁ ଗୁଣୁ କରି
ଧାବନ୍ତି ଷଟ୍‌ପଦାବଳି, ଉଠଇ ସତ୍ୱର
ନିଦ୍ରା ପରିହରି ଜନ ; ମଙ୍ଗଳନିକର
ଗମନ୍ତି ଉଦ୍ଦେଶି ସରଃ ; ପ୍ରାଚୀ-ଲଲାଟରେ
ଅରୁଣ-ରକ୍ତିମ-ଛଟା ଜନ-ମନ ହରେ ;
ଇତ୍ୟାଦି ବର୍ଣ୍ଣିବି କେତେ ! କିନ୍ତୁ ଅଦ୍ୟ କବି
ଶୈତ୍ୟାକୁଳ ବହିର୍ଗମି ଯେ ଅପୂର୍ବ ଛବି
ଉଷା-ସାହାଯ୍ୟରେ କଲା ନୟନ-ଗୋଚର
ନ ଘଟୁ କଦାପି ପୁନଃ-ମାନସ-ସାଗର
ଉଛୁଳେ ସ୍ମରିଲେ ତାହା ; ସୁକ୍ଷୀଣା ଲେଖନୀ
ସେ ମରମ-ଭେଦୀ ଦୃଶ୍ୟ ନ ପାରେ ବରଣି ।
ଦେଖିଲା ମାନବ-ନେତ୍ର ନିଖିଳ ଜଗତ
ଅତି-ହିମ-ବିଶୃଙ୍ଖଳା-କରତଳ-ଗତ ।
ଜନ-ନୟନରୁ ଯଥା ଆକାଶ-ସଲିଳ,
ଝରିଲକ ଅସ୍ରାସାର ; ହୋଇଲା ଶିଥିଳ,
ପ୍ରିୟ-ନାଶେ ଯଥା, ମନଃ ଦେଖି ଏ ବିପଦ ।
କିନ୍ତୁ ଭାବନା ତ ବୃଥା, ଯେଣୁ ନିତ୍ୟପଦ
ଧରଣୀ ମଣ୍ଡଳେ କିଏ ? ଅଲଙ୍ଘ୍ୟ ନିୟତି
ନ ସିଦ୍ଧ ଜଗତେ କାହିଁ ମାନବର ଗତି ?
ଯେ ଇଚ୍ଛେ ସମ୍ପଦ-ଭୋଗ, ସହିବ ଆପଦ ।

ତେବେ ହେ ଧରଣୀ-ବାସି ! ଭଜ ତାଙ୍କ ପଦ,
ଅଛି ଯ ନକ୍ଷତ୍ର-ଚକ୍ର ଯାହା ଆଦେଶରେ
ଅବିରତ ଘୂରୁଅଛୁ, ବିଶୁଦ୍ଧ ସୁଖରେ
ଯଦି ଥାଏ ଅଭିଳାଷ ; ଅଚିରାଂଶୁ-ପ୍ରଭ
ଜନ-ମନୋ-ମୋହକର ବିପୁଳ ବିଭବ,
ଅଚିରାଂଶୁ-ଅନୁଗାମି-ସାନ୍ଦ୍ର-ତପୋ-ନିଭ
ସୁଖ-ଅନୁଗାମୀ ଦୁଃଖେ, ସମାନ ଦର୍ଶିବ ।

---

## ୧୧—ପର୍ବତ

ଅଙ୍କନ-କୌଶଳେ ଏକା କଳ୍ପନାସୁନ୍ଦରୀ
କାମ-ଗତ ନିଭୃତରେ ଯେଉଁ ଚିତ୍ରମାଳ
ସଦାନାଦ୍ୟ-ଅଭିଳାଷ ମାନବେ ଦେଖାଏ,
ତହୁଁ ବଳି ପ୍ରୀତକର ନାହିଁ ଜଗତରେ ।
କଳ୍ପନା-ସେବକ ପରି ସେ ହେତୁ ମାନବ ।
କଳ୍ପନା ଫିଟାଇ ଦିନେ ସ୍ୱୀୟ ସ୍ମୃତିଚିତ୍ର
ଦେଖାଇଲ ମହୀଧର ବହୁଧା ଚରିତ—
ପ୍ରଥମରେ, ପ୍ରାଂଶୁତମ ଚୂଡ଼ା-ଦେଶେ ଥାଇ
କଲେ ଅଧଃ ନେତ୍ର-ପାତ, ବୃହତ୍ତମ ସୌଧ
ତୃଣ-ତୁଲ୍ୟ ଦେଖେ ନେତ୍ର, ଜନ ବା କି ଛାର !
ଅନୁମାନେ ମନଃ ତହୁଁ, ପରମେଷ୍ଠୀ-ନେତ୍ରେ
ବୃଥା-ଅହଙ୍କାର ନର କେଡ଼େ କ୍ଷୁଦ୍ରବସ୍ତୁ !
ଏ ହେତୁକି ଯୋଗୀ ଜନ ଆଶ୍ରଇ ଭୂଧରେ ?
ଦ୍ୱିତୀୟ ଚିତ୍ରରେ ପୁଣି, ମହୀଧରପିତା,
ପରୋପକାରତା ମାତା, ବୃକ୍ଷ ଲତା ଆଦି
କେବା ପୁତ୍ର କେବା କନ୍ୟା । କିନ୍ତୁ ମାତୃ-କଳା
ସ୍ରଜଇ ବିଶେଷ ରୂପେ ପ୍ରଥମ ସନ୍ତତି

ନିର୍ଝରିଣୀ-ଅବୟବେ । ମହତ ଜନର
ବେଗର ମହତ ସହ ; ତେଣୁ ନିର୍ଝରିଣୀ
ମହତ ସିନ୍ଧୁର ଜାୟା ; ଦୌହିତ୍ରେୟ ଘନ
ଚପଳା-ସୁନ୍ଦରୀ-ପତି ଯେଧା ମୂର୍ତ୍ତି ଧରି
ନିବସଇ ନଭଃପୁରେ ଇନ୍ଦ୍ରାୟୁଧ-କର ।
ପରବର୍ତ୍ତୀ ଚିତ୍ରେ ଦେଖେ, ଧରଣୀ ଜନନୀ,
ନଗ ଉରସିଜ ତାର, ନଦୀ କ୍ଷୀର-ଧାର ;
ସେ କ୍ଷୀର ପିଆଇ ମାତା ବଞ୍ଚାଏ ସନ୍ତାନେ
ପ୍ରାଣୀ-ଉଦ୍ଭିଦ-ଆଦି ; ତୃତୀୟ ଚିତ୍ରରେ
ବିଶୁଦ୍ଧ-ବିସ୍ମୟ-ପୂର୍ଣ୍ଣ ଦେଖେ ଏଥୁ ଅନ୍ତେ
ଅନ୍ଧତମଃ ଚଉଦରେ ; ବୃଷ୍ଟି ଅବିଷୟ
ନୁହଇ ଭୂଧର ଏକା, କିନ୍ତୁ ଚରାଚର ।
ଦେଖୁଁ ଦେଖୁଁ ଶେଷ ଚିତ୍ର ବିସ୍ମୟ-ଲହରୀ
ପ୍ରବଳ ଆସିଣ ବେଗେ ଚିନ୍ତା-ପୁଳିନରୁ
ଭସାଇ ବିଷାଦ-ସିନ୍ଧୁ-ଗର୍ଭେ ପକାଇଲା ।

---

## ୧୨—ମଳୟାନିଳ ପ୍ରତି

ହେ ମଧୁ-ଅନିଳ ! ତୋହ୍ନ କର ପରଶରେ
ଯେ ପ୍ରୀତି ଉପୁଜେ ଏହି କ୍ଷୁଦ୍ର-ମାନସରେ,
କିରୂପେ ବର୍ଣ୍ଣିବ କହ ? ପାରିବ କି ବାଣୀ
ସେ ଅତୁଳ-ଶୁଚି-ସୁଖ-ସ୍ୱରୂପ ବଖାଣି ?
ପ୍ରକାଶିବ ବୋଲି କରେଁ ଯତ୍ନ ଅତିଶୟ ;
ନ ପାରିଲେ ମନେ ରଖି ସଲକ୍ଷ ବିସ୍ମୟ ।
ସେ ସୁଖ ନିଶ୍ଚେଷ୍ଟ-କର ଶକ୍ତିର ଆକର,
ଅମଳ, ପାବନ, ମୃଦୁ, ଚିତ୍ତୋତ୍କର୍ଷ-କର ;
ସେ ସୁଖରେ ହେତୁ-ଲେଶ ନାହିଁ ଉନ୍ମାଦର ;
ଅବସାନେ ନ ଘଟଇ ବିକାର ମନର ।
ଶାରଦ-ମରୀଚିମାଳୀ-ବାଲ୍ୟ-ସମୟରେ
ବିଶାଳ, ଉଦାର, ରମ୍ୟ, ନୀଳ ଗଗନରେ

ଆବର ଗଗନ-କେନ୍ଦ୍ର, କ୍ଷୁଦ୍ର-ଅବୟବ
ଅଳକ ଜଳଦ-ଖଣ୍ଡ ଯେଉଁ ଦୁର୍ଲଭ
ଅବକାର୍ଯ୍ୟ "ମଧୁରମା ପ୍ରକଟ କରଇ,
କେବଳ ତା ସହ ଏହ ତୁଳା ସମ୍ଭବଇ ।
ଛୁଉଁଲେ ଶରୀର ମୃଦୁ ତୋ କର, ଅନଳ !"
କରଇ ମାନସ-ଭୂମି ଉଲ୍ଲାସ କଳଳା
ବୀଣା ମଧୁରବ ଶୁଣି ଉରଗ ଯେସନ
ତେସନ ପରଶେ ତୋର ନିଶ୍ଚେଷ୍ଟ ଏ ମନ ।
ଆହାର, ବିହାର, ପାନ ତୁଚ୍ଛ କରି ମନଃ ।
ଆଲୋଚେ ବିସ୍ମୟ-ଭରେ ତୋ ଗୁଣ ମୋହନ ।
ମାନସେ ପ୍ରବଳ ହୁଏ ଏହି ଅଭିଳାଷ,
ତେଆଗି ସକଳ ଅନ୍ୟ, ହେବ ତୋର ଦାସ ।
ଏଇ ତ ନିଶ୍ଚୟ ଯେତେ ସୁଖ ଭୂଲୋକରେ
ତ୍ୱକ୍ ସ୍ପର୍ଶଜ ସର୍ବ-ଶ୍ରେଷ୍ଠ ; କିନ୍ତୁ ଦ୍ୟୁ-ଲୋକରେ
ଏଥୁଁ କି ଅଧିକ ସୁଖ ଭୁଞ୍ଜନ୍ତି ଅମରେ ?
ଏସନ ଏ କ୍ଷୁଦ୍ର ମନେ, ନ ଜାଣେଁ ଅପରେ
କି ସୁଖ ମଣନ୍ତି ଶ୍ରେୟଃ ଏ ସୁଖ ଉପରେ ।

---

## ୧୩—ଅପୂର୍ବ-କାରାବଦ୍ଧ ପୁରୁଷର ପତ୍ର

( ବାଲେଶ୍ୱର-ଅନ୍ତର୍ଗତ-ରେମୁଣା-ନିବାସୀ କୌଣସି ବ୍ୟକ୍ତି ବିଶେଷ କାରଣ-ବଶତଃ ଗୃହତ୍ୟାଗ କରି ଭ୍ରମଣ କରୁଁ କରୁଁ କୁଲିପ୍ରେରକ ହସ୍ତରେ ପଡ଼ି ଆସାମକୁ ନୀତ ହୋଇ ଆଜଯାଏ କୁଲି କାର୍ଯ୍ୟ କରୁଅଛି । ସେ ତାହାର କନିଷ୍ଠ ସହୋଦରକୁ ଯେଉଁ ହୃଦୟବିଦାରକ ପତ୍ର ଲେଖିଥିଲା, ତାହା ଅବଲମ୍ବନ କରି ନିମ୍ନଲିଖିତ ପଦ୍ୟ ରଚିତ ହୋଇଅଛି ) ।

ବିନ୍ଦୁ ବିନ୍ଦୁ ବାରି ପଡ଼େ ନୀରଦରୁ ଯେତେ,
ପୂତ ଭାଗୀରଥୀ ଗର୍ଭେ ପଡ଼େ ତହୁଁ କେତେ

କେହ୍ନ ହୁଏ ବିଷବୃକ୍ଷ-ବର୍ଦ୍ଧନ-କାରଣ ;
ବାରି-ବିନ୍ଦୁ-ମଧ୍ୟେ କିମ୍ପା ବୈଷମ୍ୟ ଏସନ ?
ଅରଣ୍ୟାନୀ ତରୁ ଲତା ବକ୍ଷେ ବହ୍ନି ଧରେ ;
ଗନ୍ଧ-ଧନ କେହ୍ନ ଚଢ଼େ ଦେବ-ମସ୍ତକରେ ;
କେହ୍ନ ପଶେ ଦାବାନଳ-ଭୀମ-ଗରଭରେ ;
କି ହେତୁ ଈଦୃଶ ଦେଖୁଁ ଘାତ ବିପଘାତ ?
ବୋଲିବା 'ଅଦୃଷ୍ଟ ବଶୁଁ' ନୁହେଁ କି ଉଚିତ ?
ଏକ ବୃକ୍ଷ ଫଳ ବସ୍ତ୍ର ଅଛୁଁ ଆମ୍ଭେ ବେନି ;
ପ୍ରାକୃତିକ ଭେଦ ବିନା ଏକା ବସ୍ତୁ ଦେନି ।

କିନ୍ତୁ ହାୟ ! ଅଦୃଷ୍ଟର ବିଚାର ଏସନ,
ଗାର୍ହସ୍ଥ୍ୟ-ସୌଭାଗ୍ୟ-ସିନ୍ଧୁ ବେଢ଼ି ଅନୁକ୍ଷଣ
ଅଛି ତୁମ୍ଭ ଚଉଦିଗେ ; ଯନ୍ତ୍ରଣା-ଆଳୟ
ଲୀଳା-ଭୂମି ସନ୍ଧ୍ୟାପର, ନିରସ୍ତ ନିଳୟ
ବିପତ୍ତି-ସିନ୍ଧୁ ମଧ୍ୟେ ମୁହିଁ ଯାଉଛି ସମସ୍ତ ।
ମନେପଡ଼େ, ଏକାକୀ ମୁଁ ଦିନେ ଅରଣ୍ୟରେ
(ତେଜୋନିଧି ଅଂଶୁ-ମାଳୀ-କର ମଧ୍ୟ ତରେ
ପଶ୍ଚିମକୁ ଯା ଭିତରେ) କରୁଛି ଗମନ,
ଏ ସମୟେ ଘନଘଟା ଘୋଟିଲା ଗଗନ ;
କେବଳ ତ ଅରଣ୍ୟାନୀ ଅନ୍ଧକାର-ମୟ,
ତହିଁରେ ହୋଇଲା ପୁଣି ଭୀମ-ଘନୋଦୟ ;
ଘଡ଼୍ ଘଡ଼୍ ଆରବ ଗ୍ରୁହିଁ ଦମ୍ଭୋଳି ଖେଳିଲା ;
ଶବଦେ ମାନସ ଭୀରୁ ନୈରାଶ୍ୟେ ବୁଡ଼ିଲା ;
କି ଅପୂର୍ବ ସୁଗମ୍ଭୀର ରବ ବନସ୍ଥଳୀ
ପୂରିଲା ସେକାଳେ ତାହା ମନଃ ପାରେ କଳି,
ଅଶକ୍ତ ଲେଖନୀ ହାୟ । ତାହା ବର୍ଣ୍ଣିବାକୁ ।
ମନେ ହୁଏ ବିଧି ହାୟ ! ସଦା ସହିବାକୁ ।

ତାଦୃଶ ସହସ୍ର କଷ୍ଟ କିମ୍ପା ନ ଲେଖିଲା ।
ଅପୂର୍ବ-ନିରସ୍ତ-ବାସ କିମ୍ପା ଘଟାଇଲା ।

ସ୍ପଷ୍ଟ ଅଛି ମନେ ଅଙ୍କା, ଅତି ଭୀମ ଜ୍ୱର
ଅରଧ ବରଷ ଯାଏ ମୋହ କଳେବର
କଲିକ ଆବାସ-ସ୍ଥାନ ; ମୋହ ପର ବଳ

ଦିବସ-ରଜନୀ-ଦୁଇ ଇନ୍ଦ୍ରିୟ ସକଳ
ଶକ୍ତି-ପରିହୀନ କଲି ; ହେଉଛି ମନରେ
କିମ୍ପାଇଁ ଅନନ୍ତ ମୋହ, ଯାହାର କ୍ରୋଡ଼ରେ
ନଜାଣେ ପରାଣୀ ଦୁଃଖ, ସୁଖ ନ ଜାଣଇ,
ନକଲିଏ ଦେହେ ବାସ, କିମ୍ପା ନ କରଇ
ଏ କଷ୍ଟରେ ବାସ ପୁନଃ ଆହେ ଦୟା କର,
ଶୁଦ୍ଧ-ଶାନ୍ତି-ନିଧେ ମୋହ ! ବାରେ ଦୟାକର ;
ପୂଜିବି ପରାଣ ଦେଇ, ହେବି କ୍ରୀତଦାସ,
ଏ ନରସ୍ୱେ ଥିବା ଯାଏ କର ତୁ ଆବାସ
କରୁଣା-ଭିକାରି-ଦେହେ—ଧିକ ମୋ ବାସନା ;
ଧିକ୍ ଏ ଗୁହାରି ମୋର ! କୌମୁଦୀ-ବସନା
ବିମଳ ଶାରଦ ନିଶା କେଭେ କି ସମ୍ଭବେ
କରାଳ-ନୀରଦ-ଚୂଡ଼ ବର୍ଷାକୁଳ ଭବେ ;
କୃପା ଅକୃପାର କୃପା କର ସ୍ୱେଗାବଳି ।
ପାଦେ ପଡ଼ି ଜଣାଉଛି ରଖ ମୋର ଅଳି ;
ନୀ ବେଣି-ଭବନେ ପ୍ରେରି କରି ଜୀବ-ଶେଷ ;
ଘୋଷିବି ଚୌଦିଗେ ଯଶ ; ପ୍ରଶଂସା ଅଶେଷ
କରିବି କହୁଛି ଠିକ୍ ଯଶ ଯେ ଅମର
ବୋଲିବା ବାହୁଲ୍ୟ ଅଟେ ; ଯଦ୍ୟପି ଆଦର
ଯଶ-ସମ ରତ୍ନ ନରଥାଏ ତୃଦ୍ଦର୍ଶନେ
ଭୂଷାଅ ବହନ ଅଙ୍ଗ ଇତ୍ଯୃଣ ରତ୍ନେ ।
ଇନ୍ଦ୍ରାୟୁଧ ! ଭ୍ରମ ଅଛ ଶ୍ରୀରୁ-ନୟନରେ,
କିନ୍ତୁ ମଣେଁ ମିଜ ମୁହିଁ, କୃପା-ଦୃଷ୍ଟି ଥରେ
ଏ ଦୀନ ଉପରେ କ୍ଷିପ ; ନୀବେଣି-ଭବନେ
ଗମନେ ସହାୟ ହୁଅ ; ଚଉଦ ଭୁବନେ,
କହୁଛି ଶପଥ କରି, ରଟିବି କୀରତି ;
ଦମ୍ଭୋଳେ ! ନାହିଁକି ତବ କୀରତିରେ ରତି ?
ଆଶ୍ଚର୍ଯ୍ୟ !-ଅନୁଜ ! କ୍ଷମ ମୋହର ଏ ଭ୍ରମ ।
ଲିପି-ଲେଖା ନଦୀ-ଗର୍ଭେ ଥିଲି ଚନ୍ଦ୍ର-ଭ୍ରମ ।
ଭସୁଁ ଧାରେ ନଦୀରସ୍ୱେ ପଡ଼ିଲି ଭ୍ରମରେ !
କ୍ଷମ ଭ୍ରମ ମମ ଭ୍ରାତଃ ! ବୋଲେଁ ବିନୟରେ ।

ଭ୍ରମିଅଛୁ ଭ୍ରାତଃ ! ଶ୍ରମ ରଙ୍ଗ-ଭୂମି-ବନେ,
ଉପୁଜି ତ ନାହିଁ କିନ୍ତୁ ଭୟ ମୋହ ମନେ
ତଥା ଯଥା ଅନୁଭବେଁ ଏ ଅପୂର୍ବ ବନେ ।
ଅତିକମି ଅଛୁ ବହୁ ଭୂଧର-ଶଙ୍କଟ,
ଦେଖିଥିଲି ନାହିଁ କିନ୍ତୁ ଏସନ ସଙ୍କଟ ।
ଶୁଣିଅଛୁ କାରାଗୃହ ଯନ୍ତ୍ରଣା-ନିଳୟ
କିନ୍ତୁ ତାହା ନୁହେଁ ନଷ୍ଟେ ଈଦୃଶ ନିରୟ ;
ଏତେ ଦିନ ବୋଲି ଅଛୁ କାରା-ବାସ-ସୀମା,
କିନ୍ତୁ ଜାଣ ଏ ଅପୂର୍ବ-କାରା-ବାସ-ସୀମା
ଇହ-ଜନ୍ମ-ଶେଷ ଯାଏ । ଅପୂର୍ବ ସ୍ଥାନରେ
ବାସ ଯୋଗୁଁ କି ଅପୂର୍ବ ଉଦଇ ମନରେ
ଭାବନା-ଲହରୀ-ଚୟ, ମୋର ଭାଷା-କଥା,
ଆନନାଦି-ଭଙ୍ଗିରେ ବି ଅଟଇ ସର୍ବଥା
ବିଫଳ କରିବା ବ୍ୟକ୍ତ ; ଜାଣେ ସେହି ସିନା,
ଭୋଗିଛି ଯେ ନିରୟ; ହାୟ ! ତାହା ବିନା
କେମନ୍ତେ ଜାଣିବ କହ କିଏ ଏ ଜଗତେ !
—ହେ ଈଶ ! ପ୍ରାର୍ଥୁଛି ଦୀନ, ଯେହ୍ନେ ଏ ଜଗତେ
ନ ଘଟୁ, ନ ଘଟୁ କେଭେଁ ଈଦୃଷ ନିରୟ
ଭୋଗିବା କାହାର ଭାଗ୍ୟେ । ଆହେ ଦୟାମୟ !
କି ପାପ କରି ମୁଁ ପୂର୍ବେ, ଏହା ଯାହା ଫଳ !!
ପ୍ରାର୍ଥେଁ, କର କରି କୃପା, କେଉଁ ତପୋବଳ
ସେ ନୁହେଁତ-ପାଶ-ନାଶେ ଅଟେ ସମରଥ ।
ନ କର ପ୍ରାର୍ଥନା ବିଜ୍ଞେ ! ମୋର ବିଅରଥ ।
ଅନୁଜ ! ଅବୋଧ ହାୟ ! ଅଟେ ମନଃ ମୋର,
କେତେ ଉପଦେଶେଁ ମୁହିଁ ; ଶ୍ରବଣ-ଗୋଚର
ନ କରେ କଦାପି ସେହୁ ; ବିହଗ ଯେସନ
ରଖିଲେ ପିଞ୍ଜରେ, ତହିଁ ନ ଲଗଇ ମନଃ,
ହେଲେ ମଧ୍ୟ ପିଞ୍ଜରଟି ମଣି-ମୁକ୍ତା-ମୟ,
ନର-ନେତ୍ର ଆକର୍ଷଇ ମଣି-ମୁକ୍ତା-ଚୟ ;
ତହିଁରେ ପକ୍ଷିର କିସ ? ରତ୍ନ-ରାଜି ବଳି
ବିହଗ ମଣଇ ବଡ଼ ବନ-ଫଳାବଳି ।
ମାନବ ଯାହାକୁ ପୁଣି ବୋଲଇ ରତନ,

କେ କହିଲ ପକ୍ଷୀ ମଣେ ତାକୁ ହିଁ ରତନ ?
ପଦ୍ମରାଗ ଅପଦାର୍ଥ, ବଟଫଳ ବର;
ବଟ-ପତ୍ର ମରକତୁଁ ବଳି ପ୍ରୀତିକର ।
ସତ୍ୟ ଅଟେ ବିହଙ୍ଗମ ପିଞ୍ଜରେ ରହଇ
ପର-ପାପ-ଅଭିଳାଷ-ଦଣ୍ଡବର୍ତ୍ତୀ ହୋଇ ;
କିନ୍ତୁ ସେହି ପର ତାର ସେବାରେ ତତ୍ପର
ରହିଥାଏ ଅନୁକ୍ଷଣ; କିନ୍ତୁ ଏଥି ମୋର
ଦାରୁଣ କିଏ ବା ବ୍ୟକ୍ତ ! ନରହିଁ ନରକୁ
ଯଥା ଦଣ୍ଡ ଦିଏ ତଥା ନୁହେ ଶ୍ୱାପଦକୁ !!
ବୃଥା-ଅହଙ୍କାର ନର ଆପଣାକୁ ମଣେ
ସୃଷ୍ଟି ମଧ୍ୟେ ସର୍ବ-ଶ୍ରେଷ୍ଠ; ଭାବଇ କି ମନେ,
ପାଶବ ବେଭାର ବଳେ ଯାହା ବ୍ୟବହାର
କିରୂପେ ଶୋଭଇ ଗର୍ବ ଏସନ ତାହାର !
ଅଥବା ଜ୍ଞାନର ଅଟେ ଏହା ପରିଚୟ ;
ଜ୍ଞାନ ଦେଲେ ସ୍ରଷ୍ଟା ତାକୁ ଗୁରୁ-ପାପ-ମୟ
ମେଦିନୀ କରିବ ବୋଲି ? ଧିକ ଏ ଜ୍ଞାନକୁ !
କାହିଁକି ? ସହସ୍ର ଧିକ୍ ମୋର ଅଦୃଷ୍ଟକୁ !
ଅନୁଜ ! କହିବି କିସ ! ଯଦା ମୁଁ ଭାବଇ
ସ୍ୱଚ୍ଛନ୍ଦ-ସ୍ୱଚ୍ଛନ୍ଦ ହାସ୍ୟ ! ଉଚିତ ନୁହଇ
ବୋଲିବା ମୋହର ଆଉ ! ଥିଲି ଯେତେ ଦିନ
ବନ୍ଧୁ-ବାସ ଲଲାଟରେ, ସିନା ତେତେ ଦିନ
ସ୍ୱଚ୍ଛନ୍ଦ ବୋଲିବା ଯୁକ୍ତ ; ଯାହା ଅଦୃଷ୍ଟରେ
ନରକରେ ବାସ ଅଛି କହ କି ରୂପରେ
ସ୍ୱଚ୍ଛନ୍ଦ-ସ୍ୱର୍ଗକୁ ସେହୁ ବୋଲେ ନିଜ ବୋଲି ?
ତଥାପି ଅବୋଧ ମନ ନ ପାରଇ ଭୁଲି ।
ତଥାପି ଅବୋଧ ବୋଲେ ତାହାକୁ ହିଁ ନିଜ ;
କ୍ଷମ କ୍ଷମ ଦୁରାକାଙ୍କ୍ଷା ବିକୃତ-ମତିଜ-
ସ୍ୱଚ୍ଛନ୍ଦ ଭାବିଁ ଯଦା ଚିନ୍ତାରେ ମଗନ,
ବରଷାରେ ନଦୀ ଯଥା, ଉଛୁଳଇ ମନ ।
"ଜନନୀ ଓ ଜନ୍ମ-ଭୂମି ସ୍ୱର୍ଗୁଁ ଗୁରୁତର"
ନୁହଇ ଅଲୀକ କେବେଁ ଜନନୀ ମୋହର

ଜୀବିତ ଅଛନ୍ତି ନଷ୍ଟେ ? ଚରଣେ ତାଙ୍କର
ଜଣାଇବ ମୋ ପ୍ରଣାମ । କହିଛି ତ ଜନ
ଜ୍ୟେଷ୍ଠସୁତେ ମାତଙ୍କର ସେନେହ-ବନ୍ଧନ
ନୁହଇ ତାଦୃଶ ଗୁରୁ, କନିଷ୍ଠେ ଯାଦୃଶ,
ହୋଇପାରେ ଯଥାରଥ ଭକ୍ତି ଏତାଦୃଶ ;
କିନ୍ତୁ ମଣେ ଏ ଦୁର୍ଭାଗ୍ୟ, ହେଉ ଯେତେ ସରୁ
ସେନେହ-ପ୍ରଣାଳୀ, ମାତୃ-ହୃଦ-ସାଗରରୁ
ସୁତ-ହୃଦ-ସାଗରେଣଂ ସମ୍ପୂର୍ଣ୍ଣ ରୂପରେ
ପ୍ରଭେଦ ପାରେ କି କେଭେ ? ସିନ୍ଧୁ-ଏକାଂଶରେ
ଜୀବନ-ସଂକ୍ଷୋଭ ହେଲେ ଅପର ଅଂଶରେ
ସ୍ଥିରତା କି ସମ୍ଭବଇ ? ମାତାଙ୍କୁ କହିବ
କୁଳର କଳଙ୍କ ଲାଗି କେଭେ ନ ଭାଳିବ ।
ଭାବନାରେ କାହିଁ ଲଭ ?—ହାୟରେ ପ୍ରେୟସୀ
ମୋହର ଭାଳୁଣ ଥିବ ଅହର୍ନିଶ ବସି ।
ସୁଲୋଚନା ନାମ ତା'ର; ସତ୍ୟ ସୁଲୋଚନା,
ଅନ୍ତଃ ଏ ପୀନ-ନେତ୍ରେ; ହାୟରେ ବାସନା
ନ ପୂରୁଣୁ ମୋ ବାମାର ବିଧି ଅକରୁଣ
ଘଟାଇଲି କୁକ୍ଷଣରେ ବିଚ୍ଛେଦ ଦାରୁଣ ;
ତାରୁଣ୍ୟ-ତରରେ ରାମା ଦେଇଥିଲା ପଦ
ଏସନ କାଳରେ ହେଲା ବିଚ୍ଛେଦ-ଆପଦ ;
ପତି-ତରୀ-ନେଇବା ହାୟ ! ଦୁର୍ଦ୍ଦଶା ତରଙ୍ଗେ
ପତିତ ହୋଇଣ ଭାସି ଭାସି କେତେ ରଙ୍ଗେ
ଦୁର୍ଗମ ମରୁରେ ପଡ଼ି ହେଉଛି ବିକଳ ।
ହେଉଥିବ ପ୍ରିୟା ସିନା ଇନ୍ଦୁକ ଅବିକଳ ।
ସମ୍ମୁଖେ ସଂସାର-ସିନ୍ଧୁ; ସରଳା କେସନ
ତରିବ ବାରିଧି ଭାବି ବିଦରେ ମୋ ମନଃ
ଯଦି ମୋ ଭାଗ୍ୟରେ ଥିଲା ଦୁର୍ଗତି ଏସନ
ଅବିବେକ ବିଧି ହାୟ ! ଦୁହିଙ୍କ ମିଳନ
ଘଟଇଲା କିସ ଲାଗି ! ଭାବନା ଏସନ
ଦହୁଛି ପରାଣ ମୋର, ଯେସ୍ନେ ହୁତାସନ ।
ମନୁଷ୍ୟ ଭାବେ କି କେଭେ ଆପଣାର ଲାଗି ?

କଦାପି ନା ; କଦାପି ନା, ଜବେ ତାହା ଲଗି
ମଞ୍ଚରେ ଅପର ପ୍ରାଣୀ, ଏହି ଭାବନା ହିଁ
ଦହଇ ପରାଣ ସଦା, ଜନ୍ମ କରେ ନାହିଁ
କ ଲଗି ଶରୀର ହାୟ ! ଭସ୍ମେ ପରଣତ !
ନ ଥିଲେ ଏସନ ଚନ୍ତା, ହୁଅନ୍ତା ଜଗତ
ଅର୍ଦ୍ଧ-ଦୁଃଖ-ଋରୁ ମୁକ୍ତ । ଗୁହାର ମୋହର
ଅନୁଜ ! ତୁମ୍ଭର ଠାରେ, ନ ଥିବ ପାସୋର,
କହିବ ପ୍ରିୟାକୁ ମୋର, ସେହୁ ଅନୁକ୍ଷଣ
ନ ଭାଳବ ମୋହ ଲଗି ; ତାହାଙ୍କ ଚରଣ
ସରଳା ଶରଣ ଲଭୁ, ଯାହାଙ୍କ ଅଙ୍କରେ
ଲଭନ୍ତି ଜନମ-ମୁକ୍ତି ସର୍ବେ ଏ ଧରାରେ ।
ତାଙ୍କ ନାମ ଦୀନବନ୍ଧୁ, ଆରତ ଭଞ୍ଜନ ;
ଅଚରେ ଦୁର୍ଗତ ମୋର କରବେ ଖଣ୍ଡନ ;
ଏସନ ବଶ୍ୱାସେଁ ମୁହିଁ—ଅଥବା କ ଛାର
ଏ ଅପୂର୍ବ କାରାବାସ, ଯେଣୁ ଏ ସଂସାର
ଶମ୍ଭୁନ ସ୍ୱପନ ପର; ଅବଶ୍ୟ ମୁକତ
ଲଭିବ ଏ କାରାବାସୁଁ ଯଦା ପରଣତ
କ୍ଷତ-ଅଦ-ପଞ୍ଚଭୂତେ ଗଠିବ ଦେହର ।
ଆଶ୍ୱାସିବ ହେ ଅନୁଜ । ମାଗୁଣି ମୋହର
ନାନା ରୂପେ ପ୍ରେୟସୀଙ୍କ ! ତବ ଲପି ଆସି
ଯେତେବେଳେ ମୋ ଆଗରେ କହିବ ପ୍ରକାଶି
ଆଶ୍ୱସ୍ତା ହୋଇଛୁ ପ୍ରିୟା, ତେବେ ଯାଇ ମୋର
ଘୁଞ୍ଚିବ, ଅଳ୍ପ ହେଲେ, ବେଦନା ମନର ।
କ ଭ୍ରମେ ପଡ଼ିଛୁ ମୁହିଁ ! କାହାକୁ ବୋଇଲ
ମୋ ମନ: ମୋ ପ୍ରିୟା ବୋଲ ! କଏ ବା କହିଲ
ଯାକୁ ପ୍ରିୟା ବୋଲେଁ, ଅଛୁ ସେ ପ୍ରାଣେ ଜୀବତ;
ସଁପି ନାହିଁ ଅପରକୁ ସ୍ୱମନୋ-ଜୀବତ
ମୋହ ଆଗମନ ପରେ । ଧିକ୍ ଚନ୍ତା ଏସନ ।
ହସ୍ତ-ଭ୍ରଷ୍ଟପାଇଁ ହାୟ ! ଅବୋଧ ଏ ମନ:
ଭାଳେ କପାଁ ଅକାରଣ ! ଭାଳ ଏହିରୂପ
ତନୁ ତ ହୋଇବ କ୍ଷୀଣ, ତଟିମା ଯେ ରୂପ

ନିଦାଘ-ଉତ୍କଟ-ତାପେ—କି ଲଭ ତନୁରେ ?
ହର-କୋପାନଳ ଯେହ୍ନେ ଅତନୁ-ତନୁରେ,
ଦହିଲ, ପଡ଼ିଲ ମାଘେ, କିପାଁ ଚନ୍ଦ୍ରାନଳ
ନ ଦହେ ଏ ଦେହ ତଥା ? ଜଗତୁଁ ଗରଳ
ହରିଲ ସକଳ କିଏ ? ପଡ଼ିଲେ ମୋ କରେ
ପିଇ ମୁଁ ବୁଡ଼ନ୍ତ ବାରେ ଶାନ୍ତ ସମୁଦ୍ରରେ ।
ପୁଛଇଁ ମୁଁ ବନ୍ଧୁ ! ଛନ୍ତି ଉତ୍କଳ ଦେଶରେ
ଅନେକ ତ ଧନୀ ଲୋକ; କେହି ତା ମଧ୍ୟରେ
ଦୟା-ପ୍ରଦର୍ଶନ କରି ଅଧମ ଉପରି
ଏ ନରକୁଁ ନାହିଁ କିହେ ପାରିବେ ଉଦ୍ଧରି ?
ପବିତ୍ର ଉତ୍କଳଦେଶେ ଘୋଷ ଏ ଘୋଷଣା—
ଅପୂର୍ବ କାୟାରେ ରୁଛି, କରୁଛୁ ଯାଚନା,
ଉତ୍କଳ- କଳଙ୍କ କେହି ; ଅହେ ଧନୀଗଣ !
ଦେହେ ତୁମ୍ଭମାନଙ୍କର ନାହିଁ କି ଜୀବନ ?
ଧମନୀରେ ତବ କି ହେ ନ ବହେ ରକତ ?
ଭିକ୍ଷୁକେ ଦାନିବା ଭିକ୍ଷା ବିବେକାନୁମତ
ନୁହଇ କି ଭାବି ଦେଖ । ମାଗୁଛୁ ଭିଖାରି,
କୀର୍ତ୍ତି ରଖ ଏ ବିପଦୁଁ ତାହାକୁ ଉଦ୍ଧାରି ।”
—ଆଶ୍ଚର୍ଯ୍ୟ ! ପ୍ରଳାପେଁ ମୁହିଁ ଏସନ କମ୍ପାଇଁ,
ଦୀନ ଲଗି ଧନୀ କେତେ ଭାବୁଛନ୍ତି କାହିଁ !
—ଅନୁଜ ! ପ୍ରଳାପ କ୍ଷମ ଏସନ ମୋହର,
ପ୍ରଳାପୁଁ ପ୍ରଭାତ ହେଲ, ନାହିଁ ଅବସର ।

× × ×

ଅଦୃଷ୍ଟ-ଲେଖନ ହାୟ ! କେ କରିବ ଆନ ?
ପୂରିଛି ଆସାମ ଦେଶ ଗୁରୁ ଦୃଶ୍ୟମାନ ;
ଈଦୃଶ ସୁରମ୍ୟ ସ୍ଥଳେ ମାନେ ପରାଜୟ
ଭୀମ-ମୂର୍ତ୍ତି ବିଜନତା ! କିନ୍ତୁ ରେ ନିରୟ
ଏପରି ପ୍ରଦେଶ ଅଟେ ମାଦୃଶ ଜନର !
ନ ସ୍ଫୁରେ ଭାରତୀ ମୁଖୁଁ, କମ୍ପଇ ଅଧର
କାହାଣୀ କହିଲେ ମୋର ; କେତେ ବା କହିବ !
ବର୍ଣ୍ଣିବା ଶକତ ହାୟ ! ନ ଦେଲ ବିହି ବ !

ମାନସ-ସାଗର ଫେଡ଼ି ଲେଖନୀ-ପ୍ରଣାଳୀ
ଚାଳୁଥିଲ ଭବ-ବାର ;ନଶି-ଶେଷ-ଆଳୀ
ଏସନ ସମୟେ ହେଲ ଗୁରୁ ଅନୁରାଗ
ତେଣୁ ମୁଁ ଛାଡ଼ିଲ ବସ୍ତ ! ହୋଇ ଅସହାୟ
ଲିପି ଲେଖା ତତକ୍ଷଣ, ଏହାତ ନୁହଇ
ଲିପି ଲେଖା କଦାଚନ, ତାହା ମୁଁ ଜାଣଇ,
ମନଃ ପ୍ରଭୁ ଆଦେଶରେ କନ୍ତୁ ଲେଖିଲଇଁ ।

———

## ୧୪—ଶରତ୍

କଦର୍ଯ୍ୟ-ବରଷା-ଅଭ୍ୟସ୍ତାଗମନ,
ଅଭାବ-ଅମଳ-କୌମୁଦୀ-ବସନ,
ଋତୁରାଜ-କଲ୍ପ ଶରତ ଶୋଭନ
  କରେ ରାଜପଣ ଧରଣୀପର ।
ଅଳକା ଅବନୀ ଏହା ଆଗମନେ
ପ୍ରକୃତ-ପ୍ରଦତ୍ତ ପ୍ରଚୁର ରତନେ,
ପ୍ରକୃତ-ପ୍ରଦତ୍ତ ବିଚିତ୍ର ବସନେ
  ଶୋଭା ଧରେ ଆହା କ ମନୋହର । ।୧।
ପ୍ରାଚୀ-ପାଣ୍ଡୁରତା ସୂଚଇ ଯେସନ
ଅଚିରେ ରଜନୀ-ନାଥ-ଉଦୟନ,
ଉଦ୍ଭିଦ-ଶୀର୍ଷରେ ମୁକୁଲୋଦ୍‌ଗମନ
  ସୂଚଇ କୁସୁମ-ସମୟ ଯଥା ।
ପ୍ରକୃତ-ଶିଳ୍ପିର ରାଜତ ଚାମର,
ମାନବ-ନୟନ-କ୍ଷଣ-ମୋହକର,
ଅନୁପମ ସୃଷ୍ଟି ବିକାଶ କାଶର
  ଶରଦାଗମନ-ସୂଚଇ ତଥା । ।୨।
ମାନବ-ଜୀବନ ବନ୍ଧୁ ଶସ୍ୟ-ଧନ
ଶାରଦୀୟ କ୍ଷେତ୍ର କରଇ ମଣ୍ଡନ ;

ଶସ୍ୟ-ବୃଷ୍ଟି-ଲବ ଆହ୍ଲାଦ-ସ୍ରବଣ
ବହଇ ସତତ କୃଷକ-ମନେ ;
ନେଉଛି ଦକ୍ଷିଣୁ ବରେଣ୍ୟ ପବନ
ଉଦୀଚୀ-ପଥରେ କଲେ ପଦାର୍ପଣ,
ରବି-ଦୃଷ୍ଟି-ଭବ ହିମାମ୍ବୁ-ସ୍ରବଣ
ବହଇ ଯେସନ ହିମାଦ୍ରି-ବନେ । ।୩।
ପକ୍ୱ ଶାଳି-ଆଳି ସୁବର୍ଣ୍ଣ- ବରଣ,
ଦୋଳାଇ ଦୋଳାଇ ବହିଲେ ପବନ
ଶୋଭା ଅବଲୋକି ପାଞ୍ଚେ ମୁଗ୍ଧ ମନ?
ଦର୍ଶନ-ବିଷୟ ନୁହଇ କ୍ଷେତ୍ର,
କନ୍ତୁ ବିରାଜଇ ସ୍ୱର୍ଣ୍ଣ-ଦ୍ରବ-ସର ;
ଖେଳଇ ତା'ପରେ ମନ୍ଦ ଶବ୍ଦ-ହର ;
ବାତ-ଯାତ-ଜାତ ହିଲ୍ଲୋଳ-ନିକର
ଅପରୂପ-ଶୋଭା ହରଇ ନେତ୍ର । ।୪।
ପ୍ରକୃତ ସୁନ୍ଦରୀ ପ୍ରସାଧିକା-ମଣି ;
ମରକତ କାନ୍ତି ହରିତ-ବରେଣୀ
ଶାଢୀରେ ଆବୃତ କରଇ ଧରଣୀ ।
ଛୁ ଛୁ ମରକତେ ଆଦରେ ନର ।
ଆହେ ଚିତ୍ରକର ! କର ଏ ବିଗ୍ଭର—
ପ୍ରକୃତିର ଶାଢୀ, ମରକତ-ହାର,
ପ୍ରଶଂସିବା କର ସୌନ୍ଦର୍ଯ୍ୟ କାହାର ?
କାହା ଶୋଭା ବଳି ପୀରତି-କର ? ।୫।
ଗହନ ଗହନ କବର-ପ୍ରବର,
ସୁରଭି, କୋମଳ, ଅତି ମନୋହର,
ବିବିଧ-ଆକୃତି, ନାନା-ବରଣର
କୁସୁମ-ରତନେ ଖଚିତ କରେ ।
ରମଣୀୟ ଶୋଭା ଦେଖି ମଣି-ଗଣ
ଲଜ୍ଜାରେ ଲୁଚନ୍ତି ଖଣିରେ ବିଜନ ;
ସୁରମ୍ୟ ହର୍ମ୍ମ୍ୟରେ ରଜତ କାଞ୍ଚନ ;
ମୌକ୍ତିକ ଲୁଚଇ ଶୁକ୍ତି-ଗର୍ଭରେ । ।୬।

× × ×

× × ×

ଶାରଦ ଗଗନେ ଅଗସ୍ତ୍ୟ-ଉଦୟ
ଦେଖିଣ ଭୟେ ସଲିଳ-ଆଶ୍ରୟ
ପଳାନ୍ତି ବହନ କଳୁଷ-ନିଚୟ ;
ସଲିଳ ଦିଶଇ ନିର୍ମଳତମ ।
ମାନସେ ଯେସନ ତତ୍ତ୍ୱଜ୍ଞାନୋଦୟ
ଦେଖିଣ ମାନବ-ମାନସ-ଆଶ୍ରୟ
ପଳାନ୍ତି ଅଚିରେ କଳୁଷ-ନିଚୟ,
ଅବା ଯଥା ରବି ଦେଖିଣ ତମଃ । ।୭।
ବିଜିତ-ଶଶାଙ୍କ-କମଳବଦନା,
ଲାବଣ୍ୟରଚନା, ମରାଳଗମନା,
ଉଠି ଉଷା ସହ ତରୁଣୀ ଲଳନା
କାଖରେ କଳସ ଗମଇ ଧୀରେ ।
ବିମଳ ସଲିଳ ମୁକୁରେ ପ୍ରବର ;
ଯୁବତୀ-ସୁଲଭ ଗରବ ରୂପର ;
ନିରୀକ୍ଷିବ ବୋଲି ମାଧୁରୀ ମୁଖର
ଯତନେ କଳସ ଥାପଇ ତୀରେ । ।୮।
ସଲିଳ-ମୁକୁରେ ଆନନ-ବିଧୁର
ଦେଖିଣ ରୂପସୀ ସୁଷମା ମଧୁର
ଗରବ ସହିତ ଆନନ୍ଦ ପ୍ରଚୁର
ଉପୁଜେଗି ହୁଏ ମୋହିତ କ୍ଷଣେ ।
କ୍ଷଣକାଳ ପାଇଁ ଭୁଲେ ପ୍ରୟୋଜନ
ଭୁଲଇ ସରସ କୁଳେ ସେ ନିଷଣ୍ଣ ;
ରୂପ-ଚିନ୍ତା-ମୋହ-ମଗ୍ନ ତିଲ୍ଲ ମନଃ ;
ଆନ ଭାବନା ହିଁ ନାହିଁ ତା ମନେ । ।୯।
ସୁର-ପୁର-ବାସୀ ସତତ ତ୍ରିଦଶ
ସାଧୁ-ସାଧୁ-କୃତ-ପ୍ରୀତି-ପରବଶ ;
ତେଣୁ ହେ ଶରତ ! ତୋ କର-ପରଶ
ଦେଖିଣ ମହୀରେ । ତ୍ରିଦଶ-ପତି
ଆହ୍ଲାଦେ ଆୟୁଧମାଂ ଅଶନିମାଂ ଥୁଅନ୍ତି,
ଗଗନ-ବିହାରୀ ଜଳଦ-ପଙ୍କତି

ଆହ୍ୱାନ ସମୀପେ ଆଦେଶ ଦଅନ୍ତ—
ଧରଣୀରେ ହେଉ ବୃଷ୍ଟି-ବିରତ । ।୧୦।
ଦୁର୍ଗମ-କର୍ଦ୍ଦମ-ପ୍ଳାବନ ଜୀବନ
ନଷ୍ଟ କରେ କରେ ଗ୍ରହେଶ ତପନ ;
ସୁଗମ, ସୁନ୍ଦର, ଶୁଷ୍କ ପରିଚ୍ଛନ୍ନ
ଦିଶୁଅଇ ଏବେ ପଥ-ନିଚୟ ।
ଦେଖି ଆନନ୍ଦିତ ସର୍ବଜନ ମନ ;
ଦେଖିଣ ଆନନ୍ଦେ ପଥିକ ଯେ ଜନ
ଲୀଳାକ୍ରମେ ପଥେ କରଇ ଗମନ,
ବିହାୟସେ ଯେହ୍ନେ ବିହଗ-ଚୟ । ।୧୧।
ଶାରଦ-ପ୍ରଭାତ ସମୟେ ଭ୍ରମଣ
ପଲ୍ଲୀ ପ୍ରାନ୍ତ ଦେଶେ ଅତୀବ ମୋହନ
ତରୁ, ପର୍ଣ୍ଣ, ଫଳ, ତରୁଣ ତପନ
ସକଳ ପ୍ରଫୁଲ୍ଲ ଯୌବନ ଯଥା ।
ଯେତେ ଦେଖେ ତେତେ ଅତୃପ୍ତ ନୟନ,
ଧନୀ ଲୋଡ଼େ ଧନ ଅଧିକ ଯେସନ ;
ଜଳେ ମୀନପରି ଖେଳେ ଅନୁକ୍ଷଣ ;
ଭୁଞ୍ଜଇ ପରାଣି-ମରମ-ବ୍ୟଥା । ।୧୨।
ଶାଖି-ସମାବୃତ କାହିଁ ସରୋବରେ
କୋମଳ-ଶ୍ୟାମଳ-ପର୍ଣ୍ଣ ଶଯ୍ୟା'ପରେ
କମଳ କଳିକା ଗୃରୁ ଶୋଭା ଧରେ ;
ଥରଇ ଅଥିର ଅନିଳ-ରୟେ ।
ଶାଖି-ଶାଖା-ପର୍ଣ୍ଣ-ଗୁଳ୍ମ-ମଧ୍ୟ ସରଃ ;
ପୂରୁବ ଗଗନେ ଶୋଭେ ଦିନକର ;
ବିଟପୀ ଅନ୍ତର ଦେଇ ରବି-କର
ପଡ଼େ କଳି ପରେ ଏହି ସମୟେ । ।୧୩।

× × ×

କାହିଁ ବା ବିପିନେ ଶ୍ୟାମ ଦୂର୍ବାଦଳ,
ତା'ପରେ ସୁଶୁଭ୍ର ଶିଶିର-ପଟଳ ;
ଉଭୟ ଅମଳ, ଉଭୟ କୋମଳ ;
ଦେଖିଣ ସୁଷମା ହୁଅଇ ମନେ ;—
ରମଣୀୟ ଶଯ୍ୟା ନବ ଦୂର୍ବାଦଳ ;

ଦେଖି ଶସ୍ତ୍ରନେଚ୍ଛା ଅତୀବ ପ୍ରବଳ
କଳାକ ଅଧୀର ଅମର-ଯୁଗଳ ;
ଉହ୍ଲାଇଲେ ବେନ ପ୍ରଫୁଲ୍ଲ ମନେ । ।୧୪।
ନହଲେ ଶରୀର ସେ ରମ୍ୟ ଶସ୍ତ୍ରନେ ;
ଯାପିଲେ ଯାମିନୀ କେଳି-ବିନୋଦନେ ;
ଉଦୟ-ଅଞ୍ଚଳେ ଦେଖିଣ ତପନେ
ଶଶ-ବ୍ୟସ୍ତ ଦୁହେଁ ପଳାଇଗଲେ ।
ଦେବଙ୍କ ସରବ ଅନୁପମ ନରେ ;
ଦେବ-ମୁକ୍ତା ଦେଖ ଜଳ-ରୂପ ଧରେ ;
ବାହୁଡ଼ନ୍ତେ ଦେବେ ତଥାଗି ଭ୍ରମରେ
ପଡ଼ିଅଛୁ କେତେ ଧରଣୀ ତଳେ । ।୧୫।
ସୁମନ-ଝର୍ଣ୍ଣିରେ ଅତୁଳ ରତନ
ଶୃଙ୍ଗାର ହାରର * ମାଧୁରୀ ମୋହନ ;
ପ୍ରବାଳ-ଖଚିତ ସ୍ଫଟିକ ଯେସନ
ଶୋଭା ପରକାଶେ ତାହା କ ସ୍ତର ।
ପ୍ରବାଳ, ସ୍ଫଟିକ କାଠିନ୍ୟ-ଦୂଷିତ ;
କୋମଳତା-ଗୁଣେ କୁସୁମ ଭୂଷିତ ;
ତେଣୁ ପରି ଦେବେ ରୁଚି-ପ୍ରଶଂସିତ
ଆଦରେ ପିନ୍ଧନ୍ତି ଶୃଙ୍ଗାରହାର । ।୧୬।
ପ୍ରବାଳ, ସ୍ଫଟିକ ପୁଣି ଚିରସ୍ଥାୟୀ ;
ଫୁଲ ଏହି ଅଛୁ, ପୁଣି ଏହି ନାହିଁ ;
ବଳ ମନୋ-ଲୋଭା ଶୋଭା କ୍ଷଣସ୍ଥାୟୀ,
ସତତ ଦୃଷ୍ଟାନ୍ତ ଦେଖୁ ଏହାର ।
ଦରଫୁଟ କଥା ଶିଶୁର ମୁଖରେ
ଲାବଣ୍ୟ-ମାଧୁରୀ ଯୌବନକାଳରେ,
ସୌଦାମିନୀ ଛଟା ଜଳଦ-ପଟରେ
ନ କରେ ମୋହିତ ମନ କାହାର ? ।୧୭।
ପ୍ରଭାତେ ଅକ୍ଷତ କୁସୁମ-ପଟଳ
ଚଳ, ମନୋରମ କରେ ବୃକ୍ଷ-ତଳ,

---

* ଗଙ୍ଗଶିଉଳୀର ଅପର ନାମ ଶୃଙ୍ଗାରହାର ।

ନଭ-ଭୂଷେ ଯଥା ତାରକା-ପଟଳ ;
ସମୀର ସୌରଭ ନଥଇ ହର ।
ସାରଲ୍ୟ-ଗୁଣର ଉପମାର-ସ୍ଥଳ
ବାଳକ-ବାଳିକା କରି କୋଳାହଳ
ନଧିପର ମଣ୍ଡି ସେ କୁସୁମ-ଦଳ
ତୋଳନ୍ତି କୁସୁମ ଭାଜନ ଭର । ।୧୮।
ଯୁବତୀ-ସମିତି ଅବଗାହି ନୀରେ
ନୁଆଁଇ ଆନନ ନରଖି ମହୀରେ
ଶୁଚି, ଫୁଲ୍ଲ ମନେ ବାହୁଡ଼ନ୍ତେ ଧୀରେ ;
ମଙ୍ଗଳ ପଳାଏ ଗମନେ ଜିତ ।
ଦେଖିଣ ସେ ଛବି ଭାବେ ମୁଗ୍ଧ ମନ,
ଶୁଚି ଶାଳୀନତା ଯୁବତୀ-ଭୂଷଣ
କରଣ ରମଣୀ-ବିକାର ଗ୍ରହଣ
ପୂତ, ମୃଦୁ ତେଜେ ଗମେ ଶୋଭିତ । ।୧୯।
ସରୋବର-ଭୂଷା କୁମୁଦ-ନଚୟ
ନମୀଳ ଆସନ୍ତି ଦେଖି ଦନୋଦୟ ;
ଫୁଟିବେ କ ଅବା ମୁଦିବେ, ନଶ୍ଚୟ
କହିବା କଠିନ କୁମୁଦେ ସ୍ପୃହି ।
କୁମୁଦ-ବଲ୍ଲଭ ଅସ୍ତଗିର-ଗତ,
କମଳନୀ-ପତ ଏବେ ପୁରୋଗତ,
ବୋଲେ କମଳନୀ, ଘୋଷଇ ଜଗତ ;
କୁମୁଦର ଲଜ ତଥାପି କାହିଁ । ।୨୦।
ଶାରଦକୁସୁମେ ବନ ମନୋହର ;
ତେଣୁ ସିନା ଏଡ଼େ ଟେକ କାନନର,
ପଦ-ଗଉରବେ ଯେସନ ଜନର,
ଯୌବନ-ଗରବେ ନାରୀର ଯଥା ।
ନର-ଭୂଷା ହରେ କେବଳ ନୟନ ;
ଅଳି-କେଳି-ସ୍ଥଳ ପାଦପ-ଭୂଷଣ
ଘ୍ରାଣ, ଦରଶନ,ପରଶ,ଶ୍ରବଣ
ଗୃହଙ୍କ ଦଅଇ ଚରିତାର୍ଥତା । ।୨୧।

ଗନ୍ଧବହ ମୁଖୁ ବିକାଶ ଫୁଲର
ଶୁଣି ମଧୁକର ଛୁଟଇ ସତ୍ୱର,
କରି ଗୁଣୁରବ ଅତି ମନୋହର
ଅପୂର୍ବ ରସରେ ବୁଡ଼ାଏ ବନ ।
ଶୁଣି ସେ ମଧୁର ଗୁଣୁ ଗୁଣୁ ରବ,
ଦେଖି କାନନର କୁସୁମ-ବିଭବ,
ଆଘ୍ରାଣି ଅତୁଳ କୁସୁମ-ସୌରଭ,
ପୁରଲୋକ ଭ୍ରମେ ବନକୁ ମନ । ।୨୨।
ପତତ୍ରି-ବହୁଳ ବିଜନ-କାନନ ;
ନିଶା ଅପଗତ, ଉଦିତ ପତନ,
ଦେଖି ଝଙ୍କାରନ୍ତି ମୋଦେ ପତ୍ରି-ଗଣ,
ପ୍ରତିଧ୍ୱନି ଛଳେ ଝଙ୍କାରେ ବନ ।
ଅମଳ ଗଗନୁ ତରୁଣ ତପନ
ପେଶେ ଚଉଦିଗେ ଅଖର କିରଣ ;
ଥୋକାଏ ଭେଟନ୍ତି ପଥରେ କାନନ,
ଚୁମ୍ବନ୍ତି ମସ୍ତକେ ବିଟପି-ଗଣ । ।୨୩।
ସୁରଙ୍ଗ ପ୍ରବାଳେ ବନ-ବାତାୟନ ;
ଶିଶିର-ପଟଳେ ପ୍ରବାଳ-ମଣ୍ଡନ ;
ସେହି ବାତାୟନେ ପ୍ରବେଶି କିରଣ
କାନନ, ଭିତରେ ଆଲୋକ କରେ ।
ଅମଳ ଶିଶିର ତ୍ରିଫଳ-ପ୍ରବର * ,
ପ୍ରବେଶି ନିର୍ଗମେ କିରଣ-ନିକର
ହୋଇଣ ବିଭକ୍ତ, ବହୁ ବରନର
ମାଧୁରୀରେ ମନ ମୋହିତ କରେ । ।୨୪।
ପାଷାଣ-ପୁରୁଷ ଶିଖର-ଶିଖର ;
ତଥାପି କି ଅନ୍ୟ ଏଡ଼େ ପ୍ରୀତିକର ;
ଶରତ-ପ୍ରଭାତେ ଆରୋହଣ କର,
ସନୟନ ! ଥରେ ଫେଡ଼ ନୟନ ।

---

* ତ୍ରିଭୁଜମୟ ସୀମାବିଶିଷ୍ଟ ଦୃଷ୍ଟିବିଜ୍ଞାନରେ ଉପଯୋଗୀ କାଚ ବିଶେଷକୁ ତ୍ରିଫଳ କହନ୍ତି । ଏହାର ଇଂରାଜୀ ନାମ ପ୍ରିଜ୍‌ମ୍ ।

ପଲ୍ଲୀ, ସରୋବର, କାନନ, କେଦାର
ନଦୀ, (ସନ୍ନିହିତ ଯହିଁ) ପାରାବାର
ନୟନ-ଚକୋରକୁ ସୁଖ-କାରାଗାର ।
ଧନ୍ୟ ରେ ପ୍ରକୃତି ! ତୋ ଶିଳ୍ପି-ପଣ ! ।୨୪।
ରାଜେ ଯେତେ ରତ୍ନ ପ୍ରକୃତି-ଭଣ୍ଡାରେ
ସକଳ ପରାସ୍ତ ଶରନ୍ନିଶା ଠାରେ ;
ସେ ଅତୁଳ ନିଧି ଯେ ଦେଖିଛି ଥରେ
ଭୁଲି କି ପାରଇ ଯଦା ଜୀବନ ?
ବର୍ଣ୍ଣନେ ଅକ୍ଷମା ଲେଖନୀ କମ୍ପିତା
ବଖାଣି ନ ପାରି ଭାରତୀ ଲଜ୍ଜିତା ;
ଭାବୁକ କଳ୍ପନା ଏକାନ୍ତ ବିସ୍ମିତା ।
ପ୍ରକୃତି ! ପାଇଲୁ କାହୁଁ ଏ ଧନ ? ।୨୫।
ମାନବ-ନୟନ-ତାରା ଅହେ ସୁଧାକର ।
ଯଥାର୍ଥ, ଯଥାର୍ଥ ଯହିଁ, ନାମଟି ତୋହର
କେବଳ ଶରଦକାଳେ ; ଅନ୍ତତଃ ଯେବେ
ପ୍ରଥମରେ ରଖିଗଲା ତୋ ନାମ ଏସନ,
ଶାରଦ ନିଶାରେ ଦେଖି ତୋ ରୂପ ମୋହନ
ଗଢ଼ିଲା, ହୃଦବାଦସ୍ଥ, ଏ ନାମ ତା ମନଃ
ପୁରୁବୁ ଏ ନାମ ଯହିଁ ନ ଥାନ୍ତା ତୋହର,
ସୁଧା ଯେ ଅମୃତ, ଜାଣି ମୂଢ଼ ବି ଯେ ନର । ।୨୬।
ଗଢ଼ନ୍ତା ଅଚରେ ନାମ । ତୋହ ପଟାନ୍ତର
ତୋହ ବିନା ଅନ୍ୟ କିଛି ନାହିଁ ଜଗତର ।
ଏ ଭବ ଏ କ୍ଷୁଦ୍ର ମନେ ଜନମେ ବିସ୍ମୟ
ଶୈଶବ-ଯୌବନ-ଜରା ପରିଣତା-ମୟ
ଆନନ୍ଦ ଲଭନ୍ତି ତୋହୁଁ ; କିନ୍ତୁ ଆନନ୍ଦରେ
ପ୍ରଭେଦ ପ୍ରଚୁର ଅଛି ଗ୍ରାହକ-ଭେଦରେ;
ସେ ବିବିଧ ଆନନ୍ଦରେ ଏହି ସାଧାରଣ,
ସକଳ ଔଦାର୍ଯ୍ୟ-ମୟ ସକଳ ପାବନ । ।୨୭।
ବାଳକ ତୋ ରୂପେ ମୁଗ୍ଧ କ୍ରୀଡ଼ାସଙ୍ଗି-ଙ୍କନେ
ସନ୍ଧ୍ୟାଗମେ ଆଙ୍କୁଥାଏ ତୋରୂପ ଧ୍ୟାନେ ;
ଅମଳ ଗଗନେ ଦେଖି ତୋ ରୂପ ଅମଳ
"ଜହ୍ନମାମୁ, ଜହ୍ନମାମୁ" କରଇ ଚହଳ ।

ବାଳକ-ବାଳିକା-ମନେ ଆହେ ତମୋଽପହ ।
ସମ୍ବନ୍ଧ ରୂପର ତବ ବାଲ୍ୟ କ୍ରୀଡ଼ା ସହ ।
ଜାଣିଥେ ନିଦ୍ରାର କୋଳେ ବିଶ୍ରାମେ ଜଗତ ;
ତୋ କୋଳେ କେଳିରେ ରତ ନବୀନ ଦମ୍ପତି । ।୨୯।
ବକ୍ଷରେ ଶଶାଙ୍କ ! ଧରେ ତୋତେ ଯେ ଗଗନ,
ତାପର ଉଦାର ଜଦା ବେଳକଙ୍କର ମନଃ;
ପ୍ରସନ୍ନ ତୁ ଯଥା ରାଜୁ ଗଗନ-କୋଳରେ
ପ୍ରେମ-ଇନ୍ଦୁ ତଥା ରାଜେ ବେଳଙ୍କ ମନରେ ;
ତରୁଣ-ତରୁଣୀ-ମନେ, ମୋହିନୀ-ମୋହନ
ତୋରୂପ, ଦାମ୍ପତ୍ୟ-ପ୍ରେମ ଅଭେଦ୍ୟ ବନ୍ଧନ ।
ପ୍ରବୀଣ, ପ୍ରବୟସ୍କ, ସାଧୁ, ବିତରାଗ ଜନ
ନିଭୃତ କୌମୁଦୀ-କୋଳେ ଧ୍ୟାନେ ମଗନ ; ।୩୦।
ତୋ ରୂପ-ମାଧୁରୀ ଦେଖି ଜଗତ-ପତିର
ମହିମା ସୁମରି ମନଃ ବିସ୍ମୟରେ ସ୍ଥିର ।
ବିଭୁ-ପ୍ରେମ ସୁଧା ସହ ପ୍ରବୀଣର ମନଃ
ତୋ ରୂପ-ସୁଧାର ଜରେ ଅଙ୍କାତେ ବନ୍ଧନ ।
ଅହିତ ନ ସାଧୁ ବିଧୋ ! ସଂସାରେ କାହାର ।
ମନୋଜ ଦୀପନ ବୋଲି ବିରହି-ଡଗାର
ବୋଲନ୍ତି ଥୋକାଏ ତୋତେ, କିନ୍ତୁ ସେ ଅନୃତ ;
ତୋ ମୃଦୁ କିରଣ-ରାଜ ବର୍ଷିରେ ଅମୃତ ; ।୩୧।
ଉତ୍ତମେ ଉତ୍ତମ-ଯୋଗେ, ସିନା ପୀୟୂଷର
ପୀୟୂଷେ ସମ୍ଭବେ ଯୋଗ ; ତହିଁ ନରକର
ମିଳନ ବିରୁଦ୍ଧ ଅଟେ ବିଧି-ବିଧାନର ।
ତ୍ରିଗୁଣ ପଦାର୍ଥୁଁ ଯେଣୁ ସୁଖ ମାନବର,
ତ୍ରିଗୁଣ-ଅଭାବେ ଲେଶ ନ ଥାନ୍ତା ସୁଖର
ହେ ସୁଧାଂଶୋ ! ଅୟି ଶରତ୍ ! ତୁମ୍ଭ ଦୁହିଁଙ୍କର
ପଦେ ଅରପୁଛି, ଯେନ ପ୍ରଣତି ମୋହର । ।୩୨।

---

## ୧୫—ଶିଶୁ-ବିୟୋଗ

( ୧୮୮୪ ମସିହାରେ ବାଲେଶ୍ୱର ନଗରର କୌଣସି ରମଣୀର ପ୍ରଥମ ପ୍ରସୂତ ଶିଶୁ ଷୋଡ଼ଶ ଦିବସରେ ପ୍ରାଣତ୍ୟାଗ କଲା । ସେହି ଘଟନାର ଅବଲମ୍ବନରେ ଲିଖିତ । )

ନାହିଁ ଯାର ତୁଳା ଲବଣୀ-ପିତୁଳା
ବାଳା କଷ୍ଟେ ଲଭିଥିଲା ;
ଷୋହଳ ଦିନକୁ ପାଞ୍ଚ କୁମରକୁ
କୋମଳାଙ୍ଗୀ ହରାଇଲା ।
ଏହା କି ଅବଧି ନିଧି ଦେଇ ବିଧି
କ୍ଷଣ ପରେ ନେଲା ହରି ।
ପ୍ରଭୁ ବିଶ୍ୱକର୍ତ୍ତା ଦାତା ହୋଇ ହର୍ତ୍ତା
କେଉଁ ପାପ ଏହା ସରି !!
ତରୁଣୀ-ରତନ କରି ଥନ ଥନ
ମୁଖ-ସରୋରୁହ କାନ୍ଦେ,
ହରଣୀ ଯେସନ ଭୟେ ଛନ ଛନ
ଶିଶୁ ଦେଖି ବ୍ୟାଧ-ଫାନ୍ଦେ ।
କମ୍ପେ ଥର ଥର ନବୀନା ଅଧର
ଅଶୋକ-ପ୍ରବାଳ-ତୁଲ,
ଜ୍ୟୋତିହୀନ ତଥା କଣଳସ୍ଥ ଯଥା
ହେଲେ ତରୁ ଛିନ୍ନ-ମୂଳ ।
ତା ହୃଦ ସଙ୍ଗତେ ସେ ଶିଶୁ କୁମରେ
ଯେ କୋମଳ ସୂତ୍ରେ ଭଲେ
ବାନ୍ଧିଥିଲ ବିଧି, ହରନ୍ତେ କୁମର
ଲମ୍ବିଛି ଲୋତକ ଛଳେ ।

ଶିଶୁର ଜନମ ରମଣୀ-ରତନ
ଦେଖି ପାଞ୍ଚୁ ଥିଲି ମନେ,
ବସାଇ କୋଳରେ ଚୁମ୍ବି ସ୍ନେହ-ଭରେ
ହସି ହସାଇବ ଜନେ ।
ଏକେ ତ ଯୌବନ ରତନେ ରତନ ;
ତହିଁ ଶିଶୁ-ମଣି ଯୋଗ ।
ଈର୍ଷାନଳେ ପଡ଼ି ଦେବତାଏ ପୋଡ଼ି
ଘଟାଇଲେ ବିପ୍ରଯୋଗ ।
ଶୁଣ ସୁକୁମାର ! ବନ୍ଧୁ ତ ଭଗାର
କା' ଆଗେ କହିବା ଆଉ ?
ନ ହୁଅ କାତର ଧଇରଯ ଧର
ଗଲା କଥା ଏବେ ଯାଉ ।

ତା ୨୨-୨-୧୮୮୭ ଖ୍ରୀଷ୍ଟାବ୍ଦ

———

# କଥାବଳୀ ପଦ୍ୟାଂଶ

## ୧ମ ଭାଗ

### ୧—କୁଆ କୋଇଲି

କୁଆ କଳା ପୁଣି     କୋଇଲି ତ କଳା,
ରୂପରେ ସମାନ ଦୁହେଁ ;
ଗୁଣରେ ତୁଳିଲେ     କୋଇଲି ସଙ୍ଗରେ
କୁଆ ତ ସମାନ ନୁହେ ।

କର୍କଶ ସ୍ୱରରେ     କାଆ କାଆ ରାବ
ଏଣେ ତେଣେ ବୁଲୁଥାଏ,
ସ୍ୱଭାବରେ ଖଳ     ଅଟେ ବୋଲି କେହି
କୁଆକୁ ପୁଛ ନ ପାଏ ।

ମନୋହର ତରୁ—     ଡାଳରେ କୋଇଲି
କରେ କୁହୁ କୁହୁ ରବ,
କର୍ଣ୍ଣରେ ଅମୃତ     ଢାଳିଲି ପରାଏ
ମଣଇ ତାକୁ ମାନବ ।

ରୂପରେ ରୂପରେ     ମେଳ ଥିଲେ, ଯଦି
ଅମେଳ ଥାଏ ଗୁଣରେ,
ଗୁଣେ ଯେ ଅଧିକ     ସେ ପାଏ ଆଦର
ଏହି ରୀତି ଜଗତରେ ।

———

## ୨—ହଳଦବସନ୍ତ

ପଞ୍ଚ ସୁନା ପରି ଦେହର ବରଣ
ରୂପରେ କେ ତୋହ ସରି,
ଅଣ୍ଟରେ ପକ୍ଷରେ ଯେଉଁ କଳା ତାହା
କଜ୍ଜ୍ୱଳ ଯେସନ ପରି ।
ରୂପ ମନୋହର କଣ୍ଠ ମନୋହର
ସ୍ୱଭାବ ମଧୁର ପୁଣି
ସକଳେ ମୋହିତ ହଳଦବସନ୍ତ !
ଏହି ତନ ଦେଖି ଶୁଣି ।
ନ କରୁ କଳହ ତୁ କାହାରି ସହ
ନ ପୀଡ଼ୁ କାହାରି ମନ ;
ତୋର ତୁ ଆଦର ତେଣୁ ଜଗତର
ଯେସନ୍ତେ ସୁନ୍ଦର ସୁଜନ ।
ହଳଦ ବସନ୍ତ ପରି ରୂପବନ୍ତ
ବାଳକ-ବାଳିକାମାନେ !
ମୋହ କଥା ମନେ ରଖିବ ଯତନେ
ଗୁଣୀ ହୁଅ ତା ସମାନେ ।

---

## ୩—ଡାମରା କାଉ

ଡାମରା କାଉରେ ଡାମରା କାଉ
ଦିନଯାକ ତୁହି ବୋବାଉ ଥାଉ ।
ଗୁଣଟିଏ ଅଛୁ କାଉଁରି ମୁହିଁ,
କେହି ନ ଉଠୁଣୁ ଉଠୁରେ ତୁହି ।
କାଆ କାଆ ରାବି ଉଠାଉ ଆନେ,
ରାବ ଶୁଣି ରାତି ପାହିଲା ଜାଣେ ।

ଡାମରା କାଉରେ ଡାମରା କାଉ
ଗୁଣଟିଏ ଅଛି ତୋହର ଅଉ ।

ତୋଠାରେ ଅଳସପଣ ନ ଥାଏ,
ଶ୍ରମ କରୁ କରୁ ତୋ ଦିନ ଯାଏ ।
ଅନ୍ଧାର ହୋଇଲେ ବିଶ୍ରାମ କରୁ
ଉଠୁ ପୁଣି ତୁହି ସବା ଆଗରୁ ।

ଡାମରା କାଉରେ ଡାମରା କାଉ
ଗୁଣ ଦିଓଟି ତୋ ସର୍ବଦା ଥାଉ ।
ଦୋଷ ତୋର ଅଛି କହେଁ, ତୋ ଆଗେ,
କର୍କଶ ତୋ ରାବ ଭଲ ନ ଲାଗେ ।
ଦିନ ଯାକ ରାଆ ରାଆ ତୁ କରୁ;
ତୋ କଣ୍ଠ ନୁହଇ ମଧୁର ସରୁ ।

ଡାମରା କାଉରେ ଡାମରା କାଉ
ଦୋଷଟାଏ ଅଛି ତୋହର ଆଉ ।
ଗୁଣରେ କୋଇଲି ତୋଠାରୁ ଭଲ,
ତାକୁ ଖୁଂପି କରୁ ତୁ ଜଳବଳ ।
ସାଧୁଜନ ସଙ୍ଗେ ଯେହୁ ଲାଗାଏ
ଅସାଧୁ ବୋଲଇ ସେ ନିନ୍ଦା ପାଏ ।

ଡାମରା କାଉରେ ଡାମରା କାଉ
ଗୁଣ ଦୋଷ ତୋର ତୋଠାରେ ଥାଉ ।
ବାଳକ-ବାଳିକା ଶୁଣ କହଇଁ,
ଦୋଷ ଗୁଣ ବେନି ଦେଖିବ ଯହିଁ,
ଦୋଷକୁ ଉପେକ୍ଷି ଗୁଣ ଶିଖିବ,
ହିତ ହେବ, ସୁଖ ସ୍ନେହ ମିଳିବ ।

———

## ୪ —ବଟବୃକ୍ଷ

ବଟବୃକ୍ଷ ମହାତରୁ ଅନେକ ତା ଗୁଣ,
ତାହାର ସହସ୍ର ଶାଖା, ଘନ ଛାୟା ପୁଣ ।
ଗ୍ରୀଷ୍ମକାଳ ମଧ୍ୟାହ୍ନରେ ବସ ତାର ମୂଳେ,
ଗ୍ରୀଷ୍ମର ଯେ କଷ୍ଟ, ତାହା ନ ଜାଣିବ ଠୁଳେ ।

ଶୀତକାଳେ ଯାଅ ତହିଁ ଲଗିବ ଗରମ,
ଏଣୁ ସେହି ତରୁତଳ ସଦା ମନୋରମ
କୋକିଳ ତା' ଡାଳେ ବସି କୁହୁ ରବ କରେ,
ହଳଦିବସନ୍ତ ଆହା କି ତୋଷ ରୂପରେ ।
ଆହ୍ଲାଦେ ଗୁଣ୍ଡୁଚିମୂଷା ଡେଇଁ ଡେଇଁ ବୁଲେ ;
କାହିଁ ଅବା ବାଦୁଡ଼ି ବସା ଡାଳେ ଡାଳେ ଝୁଲେ ।
କେତେ ପକ୍ଷୀ ଅନ୍ୟ ଜୀବ ତା'ର ମୂଳେ ଡାଳେ,
ନିଅନ୍ତି ଆଶ୍ରୟ ଦିନବେଳେ ନିଶା-କାଳେ ।
ନିଜେ ସହି ଖରା ବର୍ଷା ଶୀତର କଷଣ,
ଜୀବମାନଙ୍କର ହିତ କରଇ ସାଧନ ।
ଏହିରୂପେ ଯେଉଁ ଜନ ନିଜେ କଷ୍ଟ ସହି,
ପରହିତ ସାଧେ, ତାକୁ ମହାଜନ କହି ।

———

## ୫—ବେଙ୍ଗ-ରଜା

ପାଣି ବରଷିଲା ଝିପିର ଝିପିର
କେସୁର ମାଇଲା ଗଜା,
ସାରୁ ଗଛ ମୂଳେ ବେଙ୍ଗଟିଏ ବସି
ଆପେ ବୋଲାଉଛି ରଜା ।
ଚଉପାଶେ ଛନ୍ତି ଆଉ ଯେତେ ବେଙ୍ଗ
ସେମାନଙ୍କୁ ପ୍ରଜା ମଣେ,
ତହିଁରୁ ଗୋଟିଏ ଆପଣା ପାଖରେ
ବସାଇଛି ମନ୍ତ୍ରୀ ପଣେ ।
ଦିଲ ପୋଖରୀରେ ଜଳ ସ୍ଥଳ ଦିଲ
ଯେତେ, ଆଜି ରାଜ୍ୟ ତା'ର,
ଚଉଦିଗେ ଚାହିଁ— ଦେଲେ ଜନମଇ
ମନେ ଆହ୍ଲାଦ ଅପାର ।

ମେଘ ବରଷିଲା ଝପର ଝପର
ଅନ୍ଧାର ଅଇଲା ଘୋଟି,
ଆନନ୍ଦରେ ବେଙ୍ଗ— ରଜା ବୋବାଇଲା,
ଆନ ବେଙ୍ଗ ଗୋଟି ଗୋଟି ।

---

## ୭—ପ୍ରଭାତ

କୁକ୍‌କୁଟ କୋଇଲି କକ୍କଳପାଣ୍ଡି
କାକ ରବ ଦେଲେ, ପାହିଲା ରାଢ ।
ମାଧବ ରାଘବ ମଧୁସୂଦନ !
ନିଦ୍ରା ଭାଙ୍ଗି ଦିଅ, ଉଠ ବହନ ।
ମୁଖ ଧୁଅ, ବୁଲିଯିବା ରେ ଆସ,
କର ରେ ତୁରିତ ଆଳସ୍ୟ ନାଶ ।

ତାରାଟିଏ ଦେଖ ପୂର୍ବ ଦିଗରେ,
ହୀରାମୁଣ୍ଡା ପରି ଦିଶେ ତେଜରେ ।
ତଳେ ଧରା ଯହିଁ ଆକାଶେ ମିଶେ,
ସିନ୍ଦୂର ବୋଳିଲା ପରାଏ ଦିଶେ ।
ପୂର୍ବ ଦିଗ ଦେଖ ଏବେ ଝଲଇ,
ଲିଭଇ ଯାଉଛି ତାରାଟି ତହିଁ ।

ଚାହୁଁ ଚାହୁଁ ଦେଖ ଉଇଁଲା ରବି,
କି ସୁନ୍ଦର ଦିଶେ ଆହା ସେ ଛବି ।
ପ୍ରଭାତ ପବନ କେଡ଼େ ନିର୍ମଳ,
ଦେହକୁ ମଧୁର ଅଳପ ଶୀତଳ ।

ପଲ୍ଲବ ଲହକା ଡାଳ ତରୁରେ,
ଦୋହଲଇ ଆହା କେଡ଼େ ମଧୁରେ ।
ସୁଲୁ ସୁଲୁ କରି ବହୁଛି ବାଆ,
ଧୀରେ ଦୋହଲଇ ନଦୀରେ ନାଆ ।

ବଗିଚ୍ଚାରେ କେତେ ଫୁଟିଛୁ ଫୁଲ,
କେ କହିପାରିବ ଫୁଲର ମୂଲ ?
ରୂପରେ ଚହଟେ, ମହକ ବାସେ,
କେହି ଫୁଟିଲଣି କେ ଫୁଟି ଆସେ ।

ବସି ଯାଇଅଛୁ ଶୋଭାର ହାଟ ;
ଫୁଲେ ଫୁଲେ କରେ ମଧୁପ ନାଟ ;
ଗୁଣୁ ଗୁଣୁ କରି କୁସୁମେ ବସେ,
ଶୁଣ୍ଢଟି ପୂରାଇ ତା ମଧୁ ଶୋଷେ ।
ସଜ ଫୁଲ ପରି ବାଳକେ ! ହେବ,
ସକଳ ମନରେ ଆନନ୍ଦ ଦେବ ।
ପ୍ରଭାତ କାଳଟି କେଡ଼େ ସୁନ୍ଦର ;
ଯେ ରଚିଲେ ତାଙ୍କୁ ସଦା ସୁମର ।



## ୭—ଭିତର ଓ ବାହାର

ନାରିକେଳ-ଫଳ ଅଟେ କଠିନ ବାହାରେ,
ଅନାୟାସେ କିଏ ତାକୁ ଭାଙ୍ଗି ଅବା ପାରେ ?
ମଧ୍ୟେ ଯାହା ଥାଏ ଧଳା ତାହା ଲାଗେ ମିଠା ;
ଖାଇ ଖାନ୍ତି ଅବା କରି କ୍ଷୀରି, ପୂରି, ପିଠା ।
ତାହାର ଭିତରେ ଥାଏ ଯେ ନିର୍ମଳ ଜଳ,
ଲାଗଇ ମଧୁର କେଡ଼େ, କେସନ ଶୀତଳ ।
ପଣସ ଫଳର ଦେହେ ବହୁ କଣ୍ଟା ଥାଏ,
ଭାଙ୍ଗିଲେ ଭିତର ଦିଶେ ସୁବର୍ଣ୍ଣ ପରାଏ ।
ପଣସ ଫଳର ରସ ଅମୃତ ସମାନ,
ସକଳେ କରନ୍ତି ତାହା ଆନନ୍ଦରେ ପାନ ।
ରସାଳ ଅଟଇ ସାର ଫଳମାନଙ୍କରେ,
ଦିଶଇ ସେ କେଡ଼େ ତୋରା ନାନା ବରଣରେ ।
ବାହାର ଯେସନ, ଫଳ ଭିତରେ ତେସନ,
ପ୍ରାଣୀଏ କରନ୍ତି ତାହା ଆନନ୍ଦେ ଭୋଜନ ।

ମହାକାଳ ଫଳ ଅଟେ ରୂପେ ମନୋହର,
ଭାଙ୍ଗିଲେ ଭିତର କଳା ଅତି ଅସୁନ୍ଦର ।
ଭିତର ଯେପରି ତା'ର ଗୁଣଟି ସେପରି,
ଫିଙ୍ଗନ୍ତି ମାନବେ ଦୂରେ ଅନାଦର କରି ।
ବାଳକ ବାଳିକା ! ଶୁଣ ହୋଇ ସାବଧାନ,
ବାହାରେ ଭିତରେ ହୁଅ ରସାଳ ସମାନ ।
ବାହାରେ ଭିତରେ ଯଦି ନୋହିବ ସେପରି,
ହୁଅ ନାରିକେଳ ଅବା ପଣସର ସରି ।
କଦାପି ନ ହୁଅ ଯେହ୍ନେ ମହାକାଳ ଫଳ ;
ଯେ ହୁଏ ତେସନ, ତା'ର ଜନମ ବିଫଳ ।

---

## ୮—ମହୁମାଛି

ମହୁମାଛି ନାମେ କ୍ଷୁଦ୍ର ପତଙ୍ଗ ଅଛଇ,
ରୂପେ ନୋହେ ଖ୍ୟାତ, ମାତ୍ର ଗୁଣରେ ଅଟଇ ।
ପ୍ରତିଦିନ ପ୍ରତ୍ୟୁଷରେ ଉଠି ମହୁମାଛି,
ପଦ୍ମ ଆଦି କୁସୁମରେ ବୁଲେ ବାଛି ବାଛି ।
ଯେଉଁ ଫୁଲେ ନାହିଁ ମଧୁ ନ ଯାଏ ତା ପାଶେ,
ମଧୁ ଥିଲେ ମଧୁପକୁ ବହୁଦୂରୁଁ ବାସେ ।
ବଡ଼ ମେଳ ଦେଖୁ ମହୁମାଛିମାନଙ୍କର,
ରଚନ୍ତି ସକଳେ ମେଳ ବାନ୍ଧି ବଡ଼ ଘର ।
ସେ ଘରେ ସହସ୍ର ଦ୍ୱାର ସହସ୍ର କୋଠରି,
ଜଗି ରହିଥାନ୍ତି ସଦା ସହସ୍ର ପ୍ରହରୀ ।
ଫୁଲେ ଫୁଲେ ବସି ମଧୁ ଭକ୍ଷଣ କରନ୍ତି,
ଯାହା ବଳେ, ମଧୁଚକ୍ରେ ଭଣ୍ଡାରେ ଥୁଅନ୍ତି ।
ଯେତେ ବଢ଼େ ଏହି ମଧୁ, ବଢ଼ଇ ଭଣ୍ଡାର,
ତେତେ ବଢ଼େ ପୁଣି ମଧୁଚକ୍ରର ଆକାର ।
ଅଦ୍ଭୁତ ବିଜ୍ଞାନୀ ଅଟେ ମହୁମାଛି ସିନା,
କରେ କି ସୁନ୍ଦର କାର୍ଯ୍ୟ ସେହି ଯନ୍ତ୍ରବିନା ।

କଣିକାଏ ମଧୁ କାହିଁ ଥାଏ ପୁଷ୍ପ କୁଣ୍ଡେ,
କୌଶଳେ ଓଟାଇ ଆଣେ ମହୁମାଛି ଗୁଣ୍ଡେ ।
ଶ୍ରମ ଅଟେ ବଡ଼ ଗୁଣ, ଆଳସ୍ୟର ଅରି;
ପ୍ରାଣୀର ମନକୁ ଏହା ମହତ ପ୍ରହରୀ;
ମେଳେ ମହା କାର୍ଯ୍ୟସିଦ୍ଧି; ଯେ କରେ ସଞ୍ଚୟ,
ନ ଥାଏ ତା' ମନେ ଅନାହାରେ ମୃତ୍ୟୁଭୟ ।
ଗୁଣମାନଙ୍କରେ ଏହୁ ରତ୍ନ ମଣି ପରି;
ଶିଖ ମହୁମାଛିଠାରୁ ତାକୁ ଗୁରୁ କରି ।

---

## ୯—ମନେ ରଖ

ବାଳକ ବାଳିକାମାନେ ! ଶୁଣ ଦେଇ ମନ,
ମନେ ରଖ ଯତନରେ ମୋହର ବଚନ ।
ଧରିଲେ ଗର୍ଭରେ ମାତା, ପିତା ପାଳୁଛନ୍ତି,
ତୁମ୍ଭ ଭଲ ପାଇଁ ଦୁହେଁ କିବା ନ କରନ୍ତି !
ଗୁରୁ ଜ୍ଞାନ-ଦାତା, ଦେଇ ନାନା ଉପଦେଶ,
ଯତନେ ସାଧନ୍ତି ହିତ ତୁମ୍ଭର ଅଶେଷ ।
ମାତା ପିତା ଗୁରୁଙ୍କର ଆଦେଶ ପାଳିବ,
ସେମାନଙ୍କୁ ସଦା ଭକ୍ତି ସମ୍ମାନ କରିବ ।
ଭାଇ ଭଉଣୀଙ୍କୁ ମଣ ଆପଣା ପରାଏ,
ପରସ୍ପରେ ଥାଉ ସ୍ନେହ ଜୀବ ଥିବା ଯାଏ ।
ନ କର କାହାର ମନ୍ଦ, ନ ପାଞ୍ଚ ମନରେ,
ନ ଦିଅ କାହାକୁ ପୀଡ଼ା କଥାରେ କାର୍ଯ୍ୟରେ ।
ମଧୁର ବଚନ କହି ସକଳେ ତୋଷିବ,
ଯେତେ ପାର, ପର-ଉପକାର କରୁଥିବ ।
ଆନ କେହି କରେ ଯଦି ତୁମ୍ଭ ଉପକାର,
ଭୁଲ ନାହିଁ, କର ପ୍ରତି-ଉପକାର ତାର ।
ତବ ଅପକାର ଯଦି କେହି କେବେ କରେ,
ଉପକାର କର ତା'ର ତାହା ବଦଳରେ ।
ସକଳ ମଙ୍ଗଳ-କାରୀ ଜଗତ-କାରଣ,
ପରମେଶ୍ୱରେ ସଦା କର ହେ ସ୍ମରଣ ।

---

## ୧୦—ସନ୍ଧ୍ୟା

ଦିନ ଶେଷେ ବୁଡ଼େ ରବି ଲୋହିତ-ବରଣ ;
ଅସ୍ତ କିରଣରେ ଝଲେ ପଶ୍ଚିମ ଗଗନ ।
ଖଣ୍ଡ ଖଣ୍ଡ ମେଘ ଭାସି ପଶ୍ଚିମ ଆକାଶେ,
ବିବିଧ ବରଣେ ଆହା କି ଶୋଭା ପ୍ରକାଶେ ।
ଧୀରେଁ ଧୀରେଁ ଆଭା ଗଲା ସେଠାରୁ ଉଭାଇ,
ପୂର୍ବ ଦିଗୁଁ ଅନ୍ଧକାର ଆସୁଅଛି ଧାଇଁ ।
ବାହୁଡ଼ିଲେ ନୀଡ଼େ ପକ୍ଷୀ ମହା କୋଳାହଳେ,
ଗୋଷ୍ଠୁ ବାହୁଡ଼ିଲେ ଗୃହେ ଗୋରୁ ଦଳେ ଦଳେ ।
ଗୃହେ ଗୃହେ ଜଳିଲାକ ସନ୍ଧ୍ୟା ଦୀପାବଳି,
ସଙ୍ଗେ ସଙ୍ଗେ ଶଙ୍ଖଧ୍ୱନି ପଡ଼ୁଛି ଉଛୁଳି ।
ଗୋଟି ଗୋଟି ଫୁଟି ତାରା ମଣ୍ଡିଲା ଗଗନ,
ରତ୍ନଦୀପ ଜାଳିଲେ ବା ଦେବକନ୍ୟାଗଣ ।
ଦିବସଟି କଟାଇଲେ ଯେହୁ ପରିଶ୍ରମେ
ଲୋଡନ୍ତି ବିଶ୍ରାମ ଏବେ ସନ୍ଧ୍ୟାର ଆଗମେ ।
ସନ୍ଧ୍ୟାଟି ବିଶ୍ରାମ କାଳ, ପବିତ୍ର ସମସ୍ତ ;
ଜଗତ ଈଶ୍ୱରେ ଭଜ ମନ କରି ଅସ୍ତ ।

———

## ୧୧—ଦୂର୍ବାଦଳ

( ୧ )

ଦୁଇଟି ବରଣ ତୋର ଆରେ ଦୂର୍ବାଦଳ !
ହରିତ ନବୀନ କାଳେ, ପଛକୁ ଶ୍ୟାମଳ ;
ରୂପ ଉଭୟ ତୋହର,
ନ ଦିଏ ନୟନେ ପୀଡ଼ା, ଅଟେ ପ୍ରୀତିକର ।

( ୨ )

ଇତର ବରଣ କେତେ ଝଟକି ଦିଶଇ,
କେତେ ଅବା ବହୁ ଦୂରୁଁ ନୟନ ରମଇ ;

ତହିଁ ଏମନ୍ତ ଲକ୍ଷଣ,
କରେଖ୍ଁ କରେଖ୍ଁ ଥକ ପଡ଼ଇ ନୟନ ।

( ୩ )

ତୋ ଅଙ୍ଗ-ରଙ୍ଗରେ ହୃଦ ! ନାହିଁ ସେ ଲକ୍ଷଣ ;
ଚକ୍ଷୁପାଶେ ନେକ ତୋତେ ଦେଖେ ଅନୁକ୍ଷଣ,
କ୍ଳାନ୍ତ ଜନମଇ ନାହିଁ ;
ବଧାତା ସକଳେ ତୋତେ ପ୍ରାଣିହିତ ପାଇଁ ।

( ୪ )

ଯେ ଭୂମିରେ କ ଥାଉ ତୁ, କ ଦଶେ ଶୋଭନ ;
ଧରଣୀ ସ୍ତ୍ରୀଅଙ୍ଗେ ତୁହି ବସ୍ତ୍ର ଆବରଣ ;
ଶୁଷ୍କ ମରୁଭୂମି ବିନା,
ଅଛି ହତଶ୍ରୀସ୍ଥ ଆହା ଦଶେ ତୋହି ବନା !

( ୫ )

ସୁକୁମାର ପଦେ କାହିଁ ତୋର ପଟାନ୍ତର ;
ସୁକୁମାର ହୁଏ ତନୁ ଯେଉଁ ମାନବର,
ପୁଣି ସୁନ୍ଦର ଶ୍ୟାମଳ,
ତୋ ସଙ୍ଗେ ତୁଳନ୍ତ ତାକୁ, ନବ ଦୂର୍ବାଦଳ !

( ୬ )

ପ୍ରଭାତରେ ବନ୍ଦୁ ବନ୍ଦୁ ଶିଶିର ନର୍ମଳ
ଝଟକଇ ତୋ ଦେହରେ ଶ୍ୟାମ ଦୂର୍ବାଦଳ !
ମନେ ହୁଏ ଦେଖି ଶୋଭା,
ମୁ ଣ୍ଡେ ମୋତମାଳା ପିନ୍ଧଅଛୁ ଧରି ଅବା ।

( ୭ )

ସ୍ତନ୍ୟ ଦେଇ ପାଳେ ଧାତ୍ରୀ ଶିଶୁକୁ ଯେସନ,
ପାଳନ କରଇ ଗାଭୀ ମାନବେ ତେସନ ;
ତୁହି ପାଳୁ ଅଛୁ ତାକୁ,
କେ ଅଟଇ କ୍ଷମ ତୋହି ଋଣ ଶୁଝିବାକୁ ?

———

# ୧୨—ମେଘ

ଜଳଦ ! ଅଟୁରେ ତୁହି ଗଗନ-ବିହାରୀ ;
ତୋର ଯେ ଜନକ, ତୁହି ଜନକ ତାହାର ।
ଦେଖୁଁ ଶୁଣୁଅଛୁଁ ଜନ୍ମ ଜନମ ତୋହର ;
ବର୍ଷୁ ଜଳ, ହେଉ ଅଛୁ ନୟନ ଗୋଚର ।
କେତେବେଳେ ବହୁଦୂରେ ଭ୍ରମୁ ଆକାଶରେ,
କେବେ ବା ପରଶି ଯାଉ ଧରଣୀ ଦେହରେ ;
କେବେ ଅବା ଗିରିଶୃଙ୍ଗ କରୁ ଆବରଣ,
କଳା ମୁଣ୍ଡେ ଧଳା ଟୋପି ଦିଶଇ ଯେସନ ।
ବହୁରୂପୀ ଅଟୁ ମେଘ ! ଯେତେ ପରକାରେ,
ରଚିଲେ ବିଧାତା ବର୍ଣ୍ଣ, ଦେଖୁ ତୋହଠାରେ ।
କଳା ରୂପ ଧରି ଯେବେ ଘୋଟୁ ତୁ ଅମ୍ବର,
ଚମକେ ବିଜୁଳି ଗର୍ଜେ ବଜ୍ର ଭୟଙ୍କର ।
ଦେଖିଲେ ସେ ରୂପ ତୋର ଉପୁଜଇ ଭୟ,
ଯତେ ଅବା ଘଟାଇବୁ ତୁ ମହା ପ୍ରଳୟ ।
ଶରଦରେ ନୀଳାକାଶେ ଧଳା ରୂପ ତୋର,
ନିରଖିଲେ ଆହ୍ଲାଦରେ ପୂରେ ହୃଦ ମୋର ।
ଦିନାନ୍ତେ ବୁଡ଼ଇ ଯେବେ ପଶ୍ଚିମରେ ରବି,
କେତେ ରମଣୀୟ ଆହା ଦିଶଇ ତୋ ଛବି;
ଝଲଇ ଲୋହିତ ପୀତ ଆଦି ବରଣରେ;
କେ ବର୍ଣ୍ଣି ପାରିବ, ଅବା କହି ବଚନରେ ?
ସପ୍ତବର୍ଣ୍ଣ ସୁବିଶାଳ ଗୃହୁ ଇନ୍ଦ୍ରଧନୁ,
ମଣିମୟ ହାର ପରି ମଣ୍ଡଇ ତୋ ତନୁ ।
ନିଶାକାଳେ ଚନ୍ଦ୍ର ତାରା ଖେଳନ୍ତି ଗଗନେ
ତୋହ କୋଳେ ଲୁଚକାଳି-ଖେଳ ନିକାଞ୍ଚନେ ।
ତୋ ଦେହୁଁ ବରଷେ ଘନ ! ଯେଉଁ ବାରିଧାର,
ଧରି କଳେବର କରେ ନୟନର କାର ।
ଫଳେ ଦୂର୍ବାଦଳେ ପୁଣି ଶସ୍ୟ କ୍ଷେତେ ପର୍ଣ୍ଣେ,
ମଣ୍ଡଇ ଧରଣୀ ତନୁ ଗୃହୁ ଶ୍ୟାମ ବର୍ଣ୍ଣେ ।

ତର୍କୁ ଗର୍କୁ ଡଥାପି ତୁ ପର ଉପକାରୀ,
କୋଟି ପ୍ରାଣୀ ପ୍ରାଣ ରକ୍ଷା କରେ ତୋର ବାର ।

———

## ୧୩—ଶୈଶବ

ଖେଳେ ବୁଲେ ଶିଶୁ, ଯାହା ପାଏ ଖାଏ,
ପିଏ ଜନନୀର ସ୍ତନ୍ୟ ;
ନିଶା ଆଗମରେ ନିଦ୍ରାକୁ ଭଜଇ
ଏ ଲୀଳାରୁ ନାହିଁ ଅନ୍ୟ ।
ହସାଇଲେ ହସେ, କନ୍ଦାଇଲେ କାନ୍ଦେ,
ନୋହିଲେ ସନ୍ତୋଷେ ଥାଏ;
ନିତ ଏହି ରୀତ ; ଏ ରୂପେ ମର୍ତ୍ତ୍ୟରେ
ଅମୃତ ସେ ଭୁଞ୍ଜୁଥାଏ ।
ନ ଜାଣଇ ଚିନ୍ତା, ନାହିଁ ତାର ଆଶା,
ନ ଚାହଇ ସେହୁ ଧନ ;
ତେଣୁ ସଦା ତୋଷ, ନିର୍ମ୍ମଳ ସଲିଳ
ପରାଏ ସଦା ତା' ମନ ।
ମଧୁର ସରଳ ପବିତ୍ର କୋମଳ
ସ୍ୱଭାବ ଦେବତା ପରି ;
ଆଉ ଯେତେ କାଳ ଅଛୁ ମାନବର,
ନୁହଇ ଶୈଶବ ସରି ।

———

## ୧୪—ପ୍ରାର୍ଥନା

ନିଖିଳ ଜଗତ ସାଇଁ ! ଆହେ କୃପାସିନ୍ଧୁ !
ଅଧମ ବାଳକେ ଦିଅ ତୋ କୃପାର ବିନ୍ଦୁ ।
ପବିତ୍ର ହେଉ ମୋ ମନ, ମୋ ଦେହ ସବଳ,
ତୋହି ଆଜ୍ଞା ପାଳି ହେଉ ଜନମ ସଫଳ ।
ନିରନ୍ତର ସତ୍ୟ ପୁଣି ପ୍ରିୟବାଣୀ କହି
ସକଳ ଜନର ମନ ଯେହ୍ନେ ମୁଁ ତୋଷଇଁ ।

ଯେଉଁ ଯେଉଁ କର୍ମେ ହୁଏ ପ୍ରାଣୀଙ୍କ ମଙ୍ଗଳ,
ତାହା ହିଁ ଆଚରୁ ଥାଉ ଏ କର-ଯୁଗଳ ।
କର୍ମରେ ହିଁ ଦିବସଟି ମୋର କଟି ଯାଉ,
ଦିନ ଅନ୍ତେ ସୁନିଦ୍ରରେ ରଜନୀ ମୋ ପାହୁ ।
ଜନନୀ ପିଅର ମୋର, ମୋ ଭାଇ ଭଉଣୀ,
ଗୁରୁଜନ, * ପରିଜନ, ପ୍ରତିବାସୀ ପୁଣି,
ଏମାନଙ୍କୁ ମହାପ୍ରଭୁ ! ରଖ ହେ କୁଶଳେ,
ସତତ ସୁମରୁଥାଉଁ ତୋ ନାମ ସକଳେ ।
ବେଳରେ ବରଷୁ ମେଘ; ଆମ୍ଭର ଏ ଧରା
ନିରନ୍ତର ଧନ-ଧାନ୍ୟେ ହୋଇଥାଉ ଭରା !

———

* ପାଠ୍ୟପୁସ୍ତକ କମିଟି ଅନୁସାରେ, ମୂଳ ସଂସ୍କରଣରେ ଥିଲ ରାଜା ରାଣୀ ॥

—ପ୍ରକାଶକଗଣ ॥

# କଥାବଳୀ ପଦ୍ୟାଂଶ

## ୨ୟ ଭାଗ

### ୧—ବକୁଳ

ମହୀରୁହ କୁଳେ ତୁହି ଅଟୁରେ ବକୁଳ ।
ପର୍ଣ୍ଣେ ଫଳ-ବର୍ଣ୍ଣେ ପୁଣି କୁସୁମେ ମଞ୍ଜୁଳ ।
ଚିର-ପର୍ଣ୍ଣ ମହୀରୁହ-ସମାଜେ ତୋ ନାମ ;
ଦେବତା ବିଳାସୀ ବକ୍ଷେ ତୋ କୁସୁମ-ଦାମ ;
ମଧୁପ ଭଣ୍ଡାରେ ତୋହ ପୁଷ୍ପର ଆସବ
ଘୋଷେ ତରୁବର ! ତୋର ସୌଜନ୍ୟ ବିଭବ ।
ବସନ୍ତେ ନିଦାଘେ ବର୍ଷା ଶରତ କାଳରେ
ଅଳଂକୃତ ତୋର ବପୁ କୁସୁମ-ମାଳାରେ ।
ରମଣୀୟ ଅନୁପମ ନିୟତ ତୋ ଛାୟା
ଲଗାଏ ମାନବ ମନେ କି ମୋହନ ମାୟା ।
ସରଣୀ ପାର୍ଶ୍ୱରେ ତଥା ବନେ ଉପବନେ
ସରସୀ କୂଳରେ ପୁଣି ଦେବ ଆୟତନେ
ତୋ ବରନ୍ଦ୍ର ବିମଣ୍ଡିତ ଚିର ଯୌବନରେ
ପଥିକ ଦର୍ଶକ ମନ ଅଲକ୍ଷିତେ ହରେ ।

———

### ୨—ଗ୍ରୀଷ୍ମ

ରହୁଁ ରହୁଁ ସୁମଧୁର ବସନ୍ତ ସମୟ,
ପ୍ରଚଣ୍ଡ ନିଦାଘ କାଳେ ଭଜିଲା ବିଳୟ ।
ଖରୁଁ ଖରତର ହେଲା ରବିର କିରଣ ;
କାହିଁ ଗଲା ଏବେ ମଧୁ ମୃଦୁ ସମୀରଣ !
ମଧ୍ୟାହ୍ନେ ବହିଲା ଖର ତପନ ଅନିଳ,
ତୃଷାତୁର ପ୍ରାଣୀ ଲୋଡ଼େ ଶୀତଳ ସଲିଳ ।

ପ୍ରାଣୀଙ୍କୁ ଆତପ କ୍ଳେଶ ପଡ଼ିଲାକ ବଳି ;
କ୍ଳେଶ ହରିବାକୁ ଛମ ଛାୟାଏ ମାବଳି ।
ତରୁଡାଳେ ବହଙ୍ଗମେ ନାସ୍ତଲୋ ବସିଲେ,
ପଶୁମାନେ ଶାଙ୍କାତଳେ ବଶ୍ରାମ ଲଭିଲେ ।
ଉଡ଼ାଇଣ ଆତପଙ୍କ ଧୂଳାଜେ ଚଳିଲେ ;
କ୍ଳାନ୍ତ ହୋଇ ଛାୟାତାରୁ ଯୋକାଏ ଅଣ୍ଡିଲେ ।
ଗୃହମଧ୍ୟେ କରେ କେହ୍ନ ବ୍ୟଜନ ଚାଳନ,
ଭାଗ୍ୟବନ୍ତ ଜନ ଦେହେ ଲେପଇ ଚନ୍ଦନ ।
ରବିକର—ଅସହ୍ୟ ମହାପ୍ରଜାକର,
ନବୀସର ପଲ୍ଲବରେ ବାଡ଼ନ୍ତି ମନ୍ଥର ।
ପ୍ରାନ୍ତର-ସିକତାସ୍ଥଳୀ-ଧରଣୀ ଆକାଶ,
ଥର ଥର ଜନମାଏ ଜନନେବେ ତ୍ରାସ ।
ନଦାଘ ଝାଞ୍ଜିରେ ଧୂଳି ପୋଟଇ ଅମ୍ବରେ,
ପ୍ରାଣୀଏ ପଡ଼ନ୍ତି ତେଣୁ କଷ୍ଟୁ କଷ୍ଟତରେ ।
ମରୁଭୂମିଗ୍ରସ୍ତ ଝାଦେ ଉଣ୍ଡାଇ ମାରଇ
ମଗ୍ନଚକା : ତେଣୁ ନାମେ କଳଙ୍କ ରଟଇ ।
ଝଂବକୂଳେ ବଂଶିଳେ ଦିବା ଅବସାନ
ମଠନ୍ତି ପିଣ୍ଡକୁ ଯେହ୍ନେ ବାହୁଡ଼ିଲ ପ୍ରାଣ ।
ଜଳାଶୟେ କ୍ରମେ କ୍ଷୀଣ ହୁଅଇ ସଲିଳ ;
ଯହିଁ ଅଛି ଅଳ୍ପ ଜଳ, ତହିଁ ସେ ଆବିଳ ।
ଖରତାପେ ଉଡ଼ଯାଏ ପଲ୍ଲବ ଝବନ
ମୀନ ଆଦି ଜଳଚରେ ତ୍ୟଜନ୍ତି ଜୀବନ ।
ଦିବସ ଦାରୁଣ ଅଟେ ନଦାଘ ଋତୁର,
ନଶୀଥୁଁ ପ୍ରଭାତ ଯାଏ ଯାମିନୀ ମଧୁର ।
ପରଶ-ମଧୁର ଅଟେ ଉଷା ସମୀରଣ,
ସେ ମାଧୁର୍ଯ୍ୟ ହରନଏ ଉଇଁଲେ ତପନ ।
ଅଶୋକ ଅଶ୍ୱତ୍ଥ ବଟ ତମାଳ ବକୁଳ
ପୁନ୍ନାଗ ରସାଳ ଆଦି ଛାୟା ତରୁକୁଳ ।
କଣ୍ଟେ କରନ୍ତି ସ୍ନିଗ୍ଧ ଧରା କଳେବର ;
ଆଶ୍ରୟ ହୁଅନ୍ତି ତେଣୁ ପଶୁପକ୍ଷୀ ନର ।

ରସାଳ ପଣସ ଲିଚୁ ମଞ୍ଜରୁହମାନ
ମଧୁର ସୁରମ୍ୟ ଫଳେ ଶୋଭାର ନିଧାନ ।
ରସେ ବର୍ଣ୍ଣେ କେଉଁ ଫଳ ରସାଳର ସର ?
ଭୁଞ୍ଜି ଏହା ଜୀବ ମଣେ ଧନ୍ୟ ସ୍ୱର୍ଗ ପର ।
ଫୁଟଇ କେଲିକଦମ୍ବ ବଉଳ-କେଶର,
ଫୁଟେ ଚମ୍ପା, ଫୁଟୁ ଥାଏ ମଲ୍ଲୀ ନାଗେଶ୍ୱର ।
ତରୁ କର ପର୍ଣ୍ଣହୀନ ମନୋଜ୍ଞ ପାଟଳୀ
ଅତୁଳ ସୌରଭେ କରେ କମନୀୟ ସ୍ଥଳୀ
ଏ ଜଗତେ ସୁଖ ଦୁଃଖ ଅଛୁ ସବୁଠାଇଁ ;
ଉଭୟେ ଅଛନ୍ତି ରଚି ଜଗତର ସାଇଁ ।
ଅପାତରେ ଯହିଁ ଦୁଃଖ, ପରମାଣେ ସୁଖ,
ବାଳକେ ! ନୋହିବ କେଭେଁ ଦୁଃଖରେ ବିମୁଖ

———

## ୩—ବର୍ଷା

ଗ୍ରୀଷ୍ମ ସହଚର ବରଷାକାଳ,
ଗଗନେ ଉଇଲା ଜଳଦମାଳ,
ବାୟୁମୁଖେ ନବଘନ ଚଳିଲ,
କ୍ଷଣେ ସେହୁ ଅନ୍ତରୀକ୍ଷ ବ୍ୟାପିଲ,
ଚମକେ ଚପଳା,
ସଙ୍ଗେ ଡାକି ବଜ୍ର ଗର୍ଜନ କଲା । । ୧ ।

ତଡ଼ ତଡ଼ କରି ବରଷେ ବାରି,
ଝାଡ଼େ ଗୁଳୁଗୁଳି ପକାଏ ଧାରି,
ଧୂଳି ମାରି ଦିଏ ଆଦ୍ୟ ଆସାର;
ମେଘ ଯାଏ ଉଡ଼ି;
ପରଦିନ ପୁଣି ଆସେ ବାହୁଡ଼ି । । ୨ ।

କୃଷିକାର୍ଯ୍ୟ ସାରି ଭୂମି କର୍ଷଣ
ବୃଷ୍ଟି ବସିଥାଏ ସେ ଅନୁକ୍ଷଣ;

ଲଗାଣ ମେଘର ଉଦ୍ୟମ ଦେଖି,
କୃଷେ ଧାନ ଆନ କର୍ମ୍ମ ଉପେକ୍ଷି,
ଯତନେ ରତନ
ମିଳଇ ଜଣା ଏ ଧ୍ରୁବ ବଚନ । ।୩।

ଘନ ଘନ ଏବେ ହେଲା ବରଷା;
ଉଜ୍ଜଳ ଆସାରେ ନୀରସା ରସା;
ଗୋଟି ଗୋଟି ହୋଇ ଅଙ୍କୁର କୋଟି
ଧରଣୀ ଶ୍ରୀଅଙ୍ଗେ ଉଠିଲା ଫୁଟି,
ନିରେଖି ସେ ଶୋଭା,
ମଣେ ଏ ଆହ୍ଲାଦ ପୁଲକ ଅବା । ।୪।

କଅଁଳିଲା ଦୂର୍ବା ମହୀ-ମଣ୍ଡନ;
ଆନନ୍ଦେ ପୂରିଲା ଗୋକୁଳ-ପ୍ରାଣ;
ନାଳେ ଅବିରାମ ଧାରା ଚଳିଲା;
ସରସୀ ପଲ୍ୱଳ କ୍ରମେ ପୂରିଲା;
ମକମକେ ଭେକ,
ଉଲ୍ଲାସେ ଘୋଷଇ ବରଷା-ଟେକ । ।୫।

ଗିରିଟଙ୍କେ କୋଟି ଝର ଫୁଟିଲା;
ତଟିନୀ ଯୌବନେ ପଦ ଅର୍ପିଲା;
ନଦୀରେ ଚଳିଲା ବୋଇତ ଭେଳା;
ଘାଟେ ଘାଟେ ହେଲା ପକ୍ଷୀର ମେଳା;
ବରଷା କର୍ଦ୍ଦମ
ଜନପଦ ମାର୍ଗ କଲା ଦୁର୍ଗମ । ।୬।

ଦାରୁଣ ନିଦାଘେ ସନ୍ତାପେ ଥିଲେ,
ଜଳଚର ଏବେ ମୁଦ ଲଭିଲେ;
ଜଳଚର-କୀଟ-ବଂଶ ବଢ଼ିଲା,
ଗୋଟିକରୁ ଶତ ଶତ ଜନ୍ମିଲା,
ବ୍ୟାପିଲା ଏ ଧରା
ଏ ଋତୁ ଏମାନଙ୍କ ପାଇଁ ପରା । ।୭।

ନଦୀ ବେଳେ ବେଳେ ଲଙ୍ଘଇ କୂଳ
କୂଳ ତରୁକୁଳ କରେ ଉନ୍ମୂଳ,
ଗରବେ ଓଟାର ଗରଜେ ନଏ,
ଦରିଦ୍ର କୁଟୀର ଭାଙ୍ଗି ସେ ଦଏ,
କହ ଲୋ ତଟିନି !
କି ଯଶ ଦୁର୍ବଳେ ପୀଡ଼ି ବା କିଣି ? ।୮।

ନଦୀ କହେ, ସତ୍ୟ, କୁଟୀର କ୍ଷର ;
ସ୍ୱ ତଟେ ଅଜାଡ଼େ ପଙ୍କ ପ୍ରଚୁର;
ଧନେ ଧାନ୍ୟେ କୂଳ କରଇ ଭରା ;
ବଢ଼ି ଗଲେ ଗୁଡ଼ ହସଇ ଧରା ;
କୂଳବାସୀ ଜନ
କୂଳ ତେଜିବାକୁ କୁଣ୍ଠିତମନ । ।୯।

ଘନ-ନୀଳକାନ୍ତ ଜାମ୍ବୁ ପାଚଇ ;
ମାଳ ମାଳ ଡାଳ ତରୁ ମଣ୍ଡଇ ;
ସୁରସ ସୁରୂପ ସଫୁର ବାସେ
ଆକୃଷ୍ଟ ଶୃଗାଳ ତସ୍କର ଆସେ,
ଜଳଦ-ଡମ୍ବରୁ—
କଦମ୍ବ ହରଇ ନେଣ ଦୂରରୁ । ।୧୦।

ଘଞ୍ଚ ଗୁଳ୍ମରାଜି କରେ ମଣ୍ଡନ
ଘନ-ପୀତକାନ୍ତ ଶଣ ସୁମନ ;
ପଥିକ ନେତ୍ରେ ଏ ନବ ଅତିଥି
ନ ମାଗୁଁ ଅଜାଡ଼ି ଦଏ ସୁପ୍ରୀତ ;
ଅପୂର୍ବ ଭଆଣ;
ଧରଣୀ ଶିରେ କି ହେମ ବିତାନ ? ।୧୧।

ତରୁ ଶିର ଗୁଞ୍ଜି ମାଳତୀ ଲତା
ଶିରେ ଟେକିଥାଏ କୁସୁମ-ଛଟା ;
କଣ୍ଟକ-ଦୁର୍ଗରେ ଜନମ ଲଭି

ପ୍ରଚ୍ଛନ୍ନେ ଫୁଟଇ କଥା ସୁରଭି
ସୁବାସ ବିତରି
ଭ୍ରମଇ ସମୀର ପ୍ରହରି କରି । ।୧୨।

---

## ୪—ଶରତ୍

ଶ୍ରାବଣ ଧାରର ବିରାମ
ଧରଣୀରେ ହୋଇଲା,
ମେଘ ବିନା ନଭେ ମଣ୍ଡଳ
ସୁବିମଳ ଦିଶିଲା ।

ରବିକର ହେଲା ପ୍ରଖର
ଏବେ ଆସିଲା ଶୁଖି
ମାର୍ଗରେ ଦୁର୍ଗମ କର୍ଦ୍ଦମ ;
ପାନ୍ଥେ ହୋଇଲେ ସୁଖୀ ।
ବେଳେ ବେଳେ ଖଣ୍ଡ ଜଳଦ
ଯାଉଁ ଯାଉଁ ଗଗନେ
ସଲିଳ କଣିକା ବରଷେ
ବସୁନ୍ଧରା ବଦନେ ।
ସୁରଞ୍ଜିତ ସପ୍ତ ବର୍ଣ୍ଣରେ
ଇନ୍ଦ୍ର କୋଦଣ୍ଡ ଛବି
ସୁବିଶାଳ ତନୁ ପ୍ରକଟେ
ଦେଖି ସମ୍ମୁଖେ ରବି ।
ଦକ୍ଷିଣ ଦିଗର ଲଲାଟେ
ମଥାମଣି ପରାଏ
ବିରାଜିଲେ ଅଗସ୍ତି
ଆହା କି ଶୋଭା ପାଏ !

ନଦୀହ୍ରଦ ସର ସଲିଳ
ହେଲା କଳୁଷମାନ
ତରେହିତ, ରବି-କରଣେ
ଅନ୍ଧକାର ସମାନ ।
କୁଙ୍କୁମ ବରଣେ ଦଣ୍ଡ
ଉଷା କ ମନୋଲୋଭା,
ଦ୍ୱିଗୁଣିତ କରେ ପ୍ରଭାତ
ସେହି ପବନ ଶୋଭା ।
ଅଗଣିତ ଗଙ୍ଗଶିଉଳୀ
ତରୁମୂଳେ ତୂଳରେ
ଉଷା ସମୀରଣେ ମୁକୁଳା
ସଉରଭ ବତରେ ।
ପ୍ରବାଳ ବୃନ୍ତରେ ଖଚିତ
ସଜ ସ୍ଫଟିକ ଦଳ
ଲଭନ୍ତା ତୁଳନା, ହୋଇଲେ
ସୁବାସିତ କୋମଳ ।
ନଦୀକୂଳ ପଠା ପାଟରେ
କାଶ କୁସୁମ ଶୋଭା
କରେଛି ମଣ୍ଡି ଧରଣୀ
ହସେ ଆହ୍ଲାଦେ ଅବା ।
ବିମଳ ସରସୀ ସଲିଳେ
ଶୁଭ୍ର ମରାଳ ପନ୍ତ
ସମୀରଣ ଲୋଳ ଲହରୀ—
ମାଳେ ରଙ୍ଗେ ଦୋଳନ୍ତ ।
ଜଳେ ସ୍ଥଳେ ପଦ୍ମ ମାଳତୀ
ଏବେ ଫୁଟୁ ଅଛନ୍ତ
ବାଡ଼ମାନଙ୍କରେ ଅଟନ୍ତ—
ଜିଡା କୁସୁମ-ପନ୍ତ ।

ମଧୁର ଗୋଧୂଳି ସମୟୁ
ଅସ୍ତରବି କରଣେ
ବାରୁଣୀ ଗଗନ ଝଲଇ
ତପ୍ତ ସ୍ୱର୍ଣ୍ଣ ବରଣେ ।
ଉଦର ପୂରାଇ ଆନନ୍ଦେ
ଗୋରୁପଲ ମନ୍ଥରେ
ବାହୁଡ଼ୁ ଅଛନ୍ତି ଗୋଠରୁ
ଶୋଭି ନୟନ ହରେ ।
ଜହ୍ନି ଫୁଲ ଜହ୍ନି-ଲତିକା—
ଶେଯେ ଆସିଲା ଫୁଟି,
ଶ୍ୟାମ ଦୂର୍ବା ପଥେ କି ଅବା
ସ୍ୱର୍ଣ୍ଣ ତାରକା କୋଟି ।
ପବିତ୍ର ପ୍ରଦୋଷ ସମୟେ
ପ୍ରତି ଗୃହେ ଜଳିଲା,
ସନ୍ଧ୍ୟା ଦୀପାବଳି, ଉଠିଲା
ଶଙ୍ଖ ଧ୍ୱନି ପଡ଼ିଲା ।
ବିମଳ ଆକାଶେ ରାଜିଲେ
ତାରାପତି ଅମଳ,
ଚଉପାଶେ ବେଢ଼ି ବସିଲେ
ତାଙ୍କୁ ତାରା-ପଟଳ ।
ସରୋବର ଅଙ୍ଗ ମଣ୍ଡିଲେ
କୋଟି କୁମୁଦ ଫୁଟି,
କୁମୁଦ କୌମୁଦୀ ଦେଲେକ
ତମୋ ଦମ୍ଭକୁ ତୁଟି ।
ହିମକର କରେ ବରଷା
ହିମକଣା ଅଲକ୍ଷ୍ୟେ,
ରବିକର ତାମ ଧରଣୀ—
ଅଙ୍ଗୁ ହରେ ପଲକେ ।

ଊର୍ଦ୍ଧ୍ୱେ ବସି ଶଶୀ ହସିଥେ
ଅର୍ଦ୍ଧ ଜଗତପରେ
ନ ଧର କୋଦଣ୍ଡ କ ଅବା
ଦଣ୍ଡ, ରାଜନ୍ୟ କରେ ।
ପର୍ବତ କାନନ ନଗର
ଜନପଦ ପ୍ରାନ୍ତରେ
କଉମୁଦୀ-ସୁଧା-ଧଉତ
ଜନ ନୟନ ହରେ ।
ଶରଦେ କୁମାର ପୂର୍ଣ୍ଣିମା—
ହଶା କ ମନୋହର,
ହଷିଲ ବିଧାତା ଭିଆଣେ
କାହିଁ ତା' ପଟାନ୍ତର ?
କରନ୍ତ କୁଆଁ ଗ୍ସି ଜହ୍ନରେ
କୁମାରୀ-ଏ ପ୍ରସନ୍ନ
କୁମାର ପୂର୍ଣ୍ଣିମା ଉତ୍ସବ
ଯଥାବିଧି ପାଳନ ।

———

## ୫—ହେମନ୍ତ

କନ୍ୟାକୁ ତେଜି ରବ ତୁଲାକୁ ଗଲେ,
ହେମନ୍ତ ଉଭା ହେଲା ମହୀମଣ୍ଡଳେ ।
କାଳକୁ ଗ୍ଣ୍ଣିହି ଅବସର-ଦରଶୀ
ବାଣ୍ଦେ ବିନା ବାଡେ ଗଲା ବରଷି ।
ନଇଁଲା ଧାନଶୀଷା ଶସ୍ୟ-ଗୌରବେ,
ଭେଟିଲେ ସ୍ନେହୀଜନ ଯେହ୍ନେ ବାନ୍ଧବେ ।
ଶିର ନୁଆଇଁ ଧୀରେ ପ୍ରଣାମ କରେ
ମାନବ ସ୍ୱାଢ ଅବା ଅଛୁ ଅଚରେ ।

ହରିତ ପରିଣତ ହେଲା ପୀତରେ,
ଏ କାଳେ କୃଷି-ଶୋଭା ନୟନ ହରେ;

ସୁବର୍ଣ୍ଣ ଜଳଧିରେ ଧୀରେ ସଞ୍ଚରି
ସମୀର ସୃଜେ ଶତ ସ୍ୱର୍ଣ୍ଣ-ଲହରୀ ।

ଦୁର୍ବହ ଫଳଭାର ନ ପାରି ବହି
ଶୋଇଲେ ଧାନ୍ୟତୃଣ ଆଲିଙ୍ଗି ମହୀ

ଆନନ୍ଦେ ପୂରିଗଲା କୃଷକମନ
ସଫଳ ହେଲା ଯେଣୁ ଶ୍ରମ ଯତନ ।

ନେତ୍ରକୁ କୃଷିକ୍ଷେତ୍ର ମୋହନ କାରୀ,
ସ୍ରବୁଛି ସ୍ୱର୍ଗୁଁ ଅବା ପୀୟୂଷ ଧାରୀ ।

କୃଷକ ଶତ ମନୋରଥ ଗଢ଼ଇ;
ଧାନ୍ୟ ବା ଧନ ଥିଲେ କି ନ ମିଳଇ ?

ସହସ୍ର ଶତବର୍ଗ କୁସୁମ ଫୁଟେ ;
ରମ୍ୟ କନକକାନ୍ତି ସେହୁ ପ୍ରକଟେ ;

ଛବିଳ ପତଙ୍ଗମ ପାର୍ଶ୍ୱ ଉଡ଼ି
ବିହରି ପରିତୋଷେ ମଧୁ ଭୁଞ୍ଜଇ ।

ଶିଶିର ବରଷଇ ନିଶା କାଳରେ ;
କମଳିନୀକ ଜରା ଆକ୍ରମେ ସରେ ;

କ୍ରମେ ଅ-ଖର ହୁଏ ରବି କିରଣ ;
ନିଶୀଥେ ଶୀତବସ୍ତ୍ର ଲୋଡ଼ଇ ଜନ ।

ଦିବସ ଆୟୁ କ୍ରମେ ଊଣା ହୁଅଇ,
ପାଲଟେ ନିଶୀଥିନୀ କ୍ରମେ ବଢ଼ଇ ।

ହେମନ୍ତ ଏହି ରୂପେ କରଇ ଗତି,
ଅନ୍ତରେ ପହଞ୍ଚିବ ଶିଶିର କତି ।

———

# ୭—ଶିଶିର

ହେମନ୍ତ ଚଳିଲା ଶିଶିର ଅଇଲା
ଧରଣୀରୁ ଶିଷ୍ଣ ତୁଟିଲା,
କରନ୍ତେ ଅମଳ ଧାନ୍ୟ କୃଷୀବଳ
କୃଷିକ୍ଷେତ୍ର ଶୂନ୍ୟ ଦିଶିଲା ।
ପ୍ରଖରେ
ଉତ୍ତରୁଁ ପବନ ବହିଲା ।
ଗଗନେ ତପନ ତେଜରେ ନିଉନ
ଦକ୍ଷିଣୁଁ ଦକ୍ଷିଣେ ଘୁଞ୍ଚିଲା ।
ପରତାପେ ଶୀତ ବଢ଼ିଲା ବହୁତ
ତବାନଳି ନାହିଁ ଗୁଡ଼ିଲା;
ନିଦାଘେ ଚନ୍ଦନ ପରାଏ ତପନ-
କିରଣ ଦେହକୁ ଲଗିଲା ।
କୁଟୀରେ
ଅନଳେ ଆଦର ହୋଇଲା ।
ନରନାରୀ ଅଙ୍ଗେ ଏବେ କେତେ ରଙ୍ଗେ
ଶୀତବସ୍ତ୍ର ଛବ ଶୋଭିଲା ।
ଶିଶିରେ ଦିବସ ହେଲା ଅତି କୃଶ,
ଅତି ବଡ଼ ନିଶା ହୋଇଲା,
ଗୋଧୂଳି ନୋହୁଣୁ କୋଟି ହିମ ରେଣୁ
ଧରଣୀରୁ ତାପ ହରିଲା ।
ନିଶାରେ
ଅଜସ୍ର ତୁଷାର ବର୍ଷିଲା ;
ଧଳା ଉତ୍ତୁବୋଲା ତପସ୍ୱୀ-ମହିଳା
ପରାଏ ଯାମିନୀ ଦିଶିଲା ।
କମଳିନୀ ବନ ଲଭିଲା ନିଧନ
ଶିଶିର ପରଶେ ପୋଡ଼ିଣ,
ଦିଶେ ହତଶିରୀ ସରସୀ, ଯେପରି
ବିଧବା ଭୂଷଣ ବିହୀନ ।

ଏକାଳେ
ବିପିନେ ଅଶୋଭା ହୋଇଲା,
କେତେ କେତେ ତରୁ      ଲତାର ଅଙ୍ଗରୁ
ପକ୍ୱ ପତ୍ରରାଶି ଝଡ଼ିଲା ।
ପଶୁ ପକ୍ଷୀ ନର      ରୂକ୍ଷ କଳେବର
ଅଙ୍ଗୁ କାନ୍ତି ହିମ ହରନ୍ତେ ;
ଚରାଚରେ ଜରା      ଗ୍ରାସିବାରୁ ଧରା
ବିକଳା ଦିଶଇ କେମନ୍ତେ ।

ଶିଶିରେ
ତୁଙ୍ଗ ଗିରିଶୃଙ୍ଗେ ହିମାନୀ
ମହାସ୍ତୂପେ ପଡ଼ି      ସବୁ ବସେ ମାଡ଼ି
ମାରି ଦିଏ ନର-ସରଣୀ ।
ମିଳି ଆଖୁ ଗୃହୀ      ଆଖୁଶାଳେ ବସି
ପେଡ଼ା ଅନୁକୂଳ କରନ୍ତି ।
ରସ ଅଭିଳାଷୀ      ବାଳକେ ପ୍ରବେଶି
ହରଷେ ସୁରସ ପିଅନ୍ତି ।

ସେ ରସ
ଚିନି ଖଣ୍ଡ କନ୍ଦ ନିଦାନ,
ରସାବଳୀ ଗଜା      ଲଡୁ ଛିସ୍ସ ଖଜା
କରନ୍ତି ତହିଁରେ ନିର୍ମାଣ ।
ରବି କୃଷିମାନ      ଶୋଭାର ନିଧାନ
ନଦୀତଟର କୂଳ ମଣ୍ଡଇ ;
ସ୍ଥବିରା ଧରଣୀ-      ଲଲାଟେ କି ମଣି
ରଞ୍ଜିତ ଅଳକା ଶୋଭଇ ?

ସୁକାନ୍ତ
ସୋରିଷ କୁସୁମ ଫୁଟଇ
ଗୁଞ୍ଜରି ମଧୁପ      ତହୁଁ ମଧୁଲବ
ଓଟାରି ଯତନେ ସଞ୍ଚଇ ।
ନୀଳ ମନୋରମ      ଅତସୀ କୁସୁମ
ଗଗନେ ନିରେଖି ହସଇ ।

ବିବିଧ ଅମଳ ଆଳୁ ଆଦି କନ୍ଦ
ମାନବ ଭୋଗକୁ ଆସଇ ।
ଏ ଋତୁ
ଭୋଗୀ ପାଇଁ ଧାତା ଗଢ଼ିଲେ,
ନାନା ଉପାଦେୟ ଚର୍ବ୍ୟ ଲେହ୍ୟ ପେୟ
ସମସ୍ତଙ୍କୁ ମିଳେ ଏକାଳେ ।
ଅସମ୍ଭେଦେ ବନ୍ଧୁ ବଦର କର୍କନ୍ଧୁ
ଶିଶିର-ଲକ୍ଷ୍ମୀର ବକ୍ଷରେ
ବରଣେ ଉଜ୍ଜ୍ୱଳା ରମ୍ୟ ଫଳମାଳା
ଲମ୍ବାଇ ଦିଅନ୍ତି ଆଦରେ ।
ଏ ସ୍ଥିତ
ଅକପଟ ବନ୍ଧୁ ଜନର
ସମ୍ପଦ ତୁଟିଲେ ଦେଖା ଦିଏ ଭଲେ
ଆନ ଯେତେବେଳେ ଅନ୍ତର ।
ଏ କାଳେ ଚଲିକା ଶୋଭି ମଞ୍ଜୁଳିକା
ନାନା ଜାତି ଜଳ-ବିହଙ୍ଗ
କାହୁଁ କାହୁଁ ଆସି ଜୀବିକା ଲାଳସୀ
ମଣ୍ଡନ୍ତି ଚଲିକା ଶ୍ରୀଅଙ୍ଗ ।
ଧରିରେ
ପଟାନ୍ତର କାହିଁ ତାହାର ?
ପକ୍ଷୀ ଶତ ଶତ କରନ୍ତି ନିୟତ
କି ରଙ୍ଗେ ଆହାର ବିହାର ।

———

## ୭—ବସନ୍ତ

ଧରି ଜରା କର ଗଲା ଅପସର
ଶିଶିର ସମୟ ଧୀରେ ;
ସିଦ୍ଧ ସଞ୍ଜୀବନୀ ଋତୁ ଶିରୋମଣି
ପ୍ରବେଶ କଲେ ମହୀରେ

ଦକ୍ଷିଣ ଦୁଆରେ ଫେଡ଼ି ଧାଡକାରେ
ବିଜେ କଲେ ଋତୁ-ରାଣ ;
ଧରଣୀ ବଦନ- ମଣ୍ଡନ ବନ୍ଧନ
ଦଶିଲାକ ଆନ ଆନ ।
ଗହଣରେ ଧୀରେ ମଳୟ ସମୀର
ଉଦାଚୀ ପବନେ ଖରେ
ହେଲେ ହଟାଇଲା, ମୃଦୁ ପରଶିଲା
ଗୁଳ୍ମ ଲତା ତରୁବରେ ;
ଖେଚରେ ଭୂଚରେ ପୁଣି ଜଳଚରେ
ପାଷାଣେ ତଥା ସଲିଳେ
ସେ ପରଶମଣି ପରଶିଲା କ୍ଷଣି
ନବୀନ ସର୍ବେ ଦିଶିଲେ ।
ତରୁ ଲତା ଅଙ୍ଗେ ଏବେ କେତେ ରଙ୍ଗେ
ଶୋଭାର ହେଲା ବିଳାସ ;
କେହୁ ପଲ୍ଲବିଲା, କେହୁ ମୁକୁଳିଲା,
କାହିଁ ବା ପୁଷ୍ପ ବିକାଶ ।
କୁସୁମେ ସଞ୍ଚର ସଉରଭ ହର
ସମୀରଣ ବିତରିଲା ;
ନିମିଷକେ ଆସି ମଧୁ-ଅଭିଳାଷୀ
ମଧୁପ ତହିଁ ମିଳିଲା ।
ଗୁଞ୍ଜରି ଗୁଞ୍ଜରି ରସାଳ ମଞ୍ଜରୀ
ଅଳିକୁଳ ଗଲେ ଗ୍ରାସି ;
ମାଳତୀ ନିଆଳୀ ଜାଇ ଯୂଈ ମଲ୍ଲୀ
ଏହି ସ୍ଥିତ ସବୁ ଠାଇଁ ।
ଚମ୍ପା ନାଗେଶ୍ୱର ଗୋଲାପ ଟଗର
କାମିନୀ ସୁଗନ୍ଧରାଜ
ମାଧବୀ ବକୁଳ କେତକୀ କମଳ
ମୁଚୁକୁନ୍ଦ ପୁଷ୍ପରାଜ
ରୂପରେ ଯେସନ ସୌରଭେ ତେସନ
ହରନ୍ତି ଏ ଜନମନ ;

ଅଶୋକ ପଲାଶ ମାଧୁରୀ ବିଳାସ
କରୁଥାନ୍ତି ପ୍ରକଟନ ।
ରୂପ ଚହଟଇ, ବାସ ମହକଇ
ନାନାଜାତ କୁସୁମର ;
ସରୋବରରେ ବନେ ବଗିଚା ଉଦ୍ୟାନେ
ଶୋଭା-ହାଟ ବସନ୍ତର ।
ପଲ୍ଲବ ବିତାନେ କୋକିଳ ପଞ୍ଚମେ
ଗୁଡ଼ାଏ କୁହୁତାନ ;
ଶ୍ରବଣର କାୟ ସେ ଅମୃତ ଧାରା ;
କେଉଁ ବୀଣା ତା' ସମାନ ?
ହଳଦିବସନ୍ତ— ରୂପଟି ଯେମନ୍ତ
କଣ୍ଠ ମଧୁର ତେସନ ;
ରୂପେ ଗୁଣେ ତା'ର କାହିଁ ପଟାନ୍ତର ?
ତେଣୁ ସେ ପ୍ରୀତି-ଭାଜନ ।
ଶ୍ୟାମ ଶୁକ ସାରୀ ବିପିନ-ବିହାରୀ
ବଜାନ୍ତି ବସନ୍ତ-ବୀଣା ;
କର୍ଣ୍ଣେ ଯେଉଁ ନର ସେ ପୀୟୂଷ-ଝର
ପିଅଇ, ହୁଅଇ କ୍ଷୀଣା ।
ଗୁଡ଼ି ଗୁଡ଼ି ଶୀତ ହେଲାଣି ଅତୀତ
ଗ୍ରୀଷ୍ମ ମାଡ଼ି ଆସି ନାହିଁ,
ଶ୍ରାବଣେ ଦୁର୍ଗମ ବରଷା-କର୍ଦ୍ଦମ
ବହୁ ଦୂରେ ଅଛି କାହିଁ ।
ଆକାଶ ବିମଳ, ଚନ୍ଦ୍ରମା ବିମଳ
ବିମଳ ତାରକା ପୁଞ୍ଜ,
ସରୋବର- ନଦୀଝର ନୀର,
ସୁରଭି ସୁଚନ୍ଦ କୁଞ୍ଜ ।
ପ୍ରଭାତ ପ୍ରଦୋଷ ରଜନୀ ଦିବସ
ସର୍ବେ ଏବେ ସୁଖକର ;
ଲାବଣ୍ୟରେ ଝଳ ପ୍ରକୃତିର ଶିରୀ
ଦିଶେ ଆହା କି ସୁନ୍ଦର !

ନୟନେ ଶ୍ରବଣେ ପରଶରେ ଘ୍ରାଣେ
ଅନୁଭବ ସୁଖରାଶି,
କୁସୁମ କାଳରେ ପଶୁ ପକ୍ଷୀ ନରେ
ବିରହନ୍ତି ମୁଦେ ଭାସି ।
ବାଳକ ବାଳିକା ! କୁସୁମ-ମାଳିକା
ତୁମ୍ଭେମାନେ ମାନବରେ ;
ଯେ ଧାତା ରଚିଲେ ଏ କୁସୁମ କାଳେ
ନମ ତାଙ୍କ ଶ୍ରୀ-ପଦ୍ମରେ ।

---

## ୮—ଚନ୍ଦ୍ର

ଅସ୍ତାଚଳଁ ଅବତରି ବୁଡ଼ିଲେ ଭାସ୍କର
ବ୍ୟାପିଯାଏ ବିଶ୍ୱବକ୍ଷ ଧରଣୀ ଅମ୍ବର ।
ନେତ୍ରପ୍ରିୟା ବିଘାତକ କ୍ଷଣେ ଅନ୍ଧକାର
ଜଳସ୍ଥଳ ନୀଳ ପୀତ କରେ ଏକାକାର ।
ପ୍ରାଚୀମୂଳେ ଦଶିଗଲେ ତୋ ରୂପ ମୋହନ
ପ୍ରକୃତି ଉଠଇ ହସି ହେ ଚନ୍ଦ୍ର ! ତକ୍ଷଣ ।
ତରୁଲତା ଅନ୍ତରାଳେ, ଖୋଲେ, କନ୍ଦରରେ
କୂପେ, କୋଣେ ଲୁଚିଯାଏ ତମିସ୍ରା ତ୍ରାସରେ ।
କୋଟି ତାରା ମଧ୍ୟେ ଇନ୍ଦୁ ! ରୂପଟି ତୋହର
ମଣିମୟ ଅଳଙ୍କାରେ ମଧ୍ୟ ମଣି ସର ।
କୁମୁଦ ବିକାଶ ଛଳେ ଶତମୁଖେ ହସି
ଆହ୍ଲାଦ ପ୍ରକାଶ କରେ ସରସୀ ରୂପସୀ ।
କଣଳୀସ୍ଥ ନୟନକୁ ଆହା ମନୋହର
ଆନନ୍ଦାଶ୍ରୁ-ବିନ୍ଦୁ ଝରେ ତରୁଲତାଙ୍କର ।
ତୋ ରୂପେ ତୋ ଗୁଣେ ମୁଗ୍ଧ ବିଶାଳ ସାଗର
ଆଲିଙ୍ଗନେ ପ୍ରସାରଇ କଲ୍ଲୋଳ ଶ୍ରୀକର ।
ଧରଣୀ ହ୍ରଦୁଦେ ଜଳ ସହସ୍ର ଦର୍ପଣ
ସହସ୍ର ନୟନେ ହେରେ ତୋ ବିଶ୍ୱ ମୋହନ ।

ଅଦ୍ଭୁତ ଅଦ୍ଭୁତ ନେତ୍ରେ ତୋ ସୁଧା-ବଦନ
ନିଶୀଥିନୀ ଅନୁକ୍ଷଣ କରେ ନିରୀକ୍ଷଣ ।
ନିଶୀଥରେ ଅନୁଭବେ ସମାଧି ନିଶ୍ଚଳ
ପ୍ରକୃତ ପରମାନନ୍ଦ ସୁଧା ସୁବିମଳ ।
ସୁଖଶୋଭା ଆହ୍ଲାଦର ଅଟୁ ଉପମାନ
କାବ୍ୟ କବିତାରେ ସଦା ପାଉ ପୁରଃ ସ୍ଥାନ ।
ମହାକୁଳେ ସମୁଦ୍‌ଭବ ଶଶାଙ୍କ ! ତୋହର
ପାରିଜାତ କଉସ୍ତୁଭ ତୋର ସହୋଦର ।
ଅମୃତ ସୋଦର ଆନ, ଇନ୍ଦିରା ସୋଦରା ।
କୁଳ ରୂପ ଗୁଣ କୀର୍ତ୍ତି ଗାଏ ବସୁନ୍ଧରା ।
ଯୁଗେ ଯୁଗେ ସମନେତ୍ରେ ଦେଖେ ତୋତେ ଜନ
ସକଳ ହୃଦୟେ କରୁ ତୁ ସୁଧା ବର୍ଷଣ ।
ଜହ୍ନ ମାମୁଁ ଡାକୁଥିଲେ ପିତା, ପିତାମହ
ପୁତ୍ର ପୌତ୍ର ଡାକୁଛନ୍ତି ଏବେ ଅହରହ ।

———

## ୯—ଖଣ୍ଡଗିରି

‘ଅଇଲା ବାସନ୍ତୀ ଉଷା କର ନିଦ୍ରାଭଙ୍ଗ’
ପରଶେ ଅନିଳ, କଣ୍ଠେ ବୋଇଲା ବିହଙ୍ଗ ।
ନିସତ୍ରସ୍ଥ ବ୍ୟାଘ୍ରଶିଶୁ ଅପହାରୀ ବ୍ୟାଧ
ଦୂରୁଁ ଶୁଣି ଶିଶୁପ୍ରାଣା ବ୍ୟାଘ୍ରୀର ନିନାଦ
ତେଜି ବ୍ୟାଘ୍ରଶିଶୁ ଯଥା ପଳାଏ ସତ୍ୱର
ପଳାଇଲା ନିଦ୍ରା, ତଥା ଅବା ଖରତର ।
ଶୁଣି ତା କାକଳି-ରବ ବାସନ୍ତୀ ଉଷାର
କ୍ଷଣେ ଉଠିଲା ମନେ ଔତ୍ସୁକ୍ୟ-ବିକାର
ଅସ୍ଫୁଟ ନିସ୍ୱନେ ବୋଲେ ଉଷା-ସମୀରଣ
‘‘ଆସ, ଆଖି ଫେଡ଼ି ଥରେ କର ଦରଶନ
କେତେ କମନୀୟ ଶୋଭା ପ୍ରକୃତି ଧରିଛି ।’’
ପକ୍ଷୀ କଣ୍ଠୁ ବଳି ମାଧୁରୀ ବାହାରିଛି ?

ପିପାସୁ ପାଇଲି ଯହୁଁ ଏ ପୀୟୂଷ ରସ
ଅଧିକ ପିପାସା-ପାଶେ ପଡ଼ିଲା ମାନସ ।
ଶ୍ୟାମଶାଦ୍ୱୀ-ପରିବୃତା ପ୍ରକୃତି-ସୁନ୍ଦରୀ
ଚଉପାଶେ ତରୁରାଜି ଯେସନେ ପ୍ରହରୀ ;
ସମ୍ମୁଖେ ଅସ୍ପଷ୍ଟ ଛବି ଉଚ୍ଚତର କିଛି
ବିଶାଳ ନିସ୍ପନ୍ଦ ଭାବେ ବିଧିକି ରହିଛି ।
ଅତିଦୂରେ ପ୍ରାଚୀମୂଳ ବଣୁଅଛି ଧଳା
ଶୋଣୁଛି, ଶୋଭକି ଯଥା ହସିଲେ ଅବଳା ।
ଅଦୃଶ୍ୟ ସ୍ଥାନରୁ ଆସି ଲଳିତ ସଙ୍ଗୀତ
ଅଯାଚିତେ କରୁଅଛି ମାନସ ମୋହିତ ।
ଯଥା ସେ ମଧୁରବଧୂ ଅବଗୁଣ୍ଠନରେ
ଆବୃତ ବଦନ-ଶଶୀ କଳଶୀ କାଖରେ
ଅଧୋମୁଖୀ ଡାଳି ଦିଏ ଗୀତ-ସୁଧାରସ
ପଥିକ ପିଇଣ ଲଭେ ଅପୂର୍ବ ହରଷ ।
ଅଭିନବ ଅନୁଭବ ଲଭିଲି ମାନସ
କିନ୍ତୁ ଅଳ୍ପ ରହିଗଲା ସଂଶୟ-ପରଶ—
କି ବସ୍ତୁ ପ୍ରକାଣ୍ଡ ରାଜୁଅଛି ସମ୍ମୁଖରେ
ବାସନ୍ତୀ ଗଗନେ ରବି ଉଠିଲା କ୍ରମରେ ।
ଥିଲା ଯାହା ଉଷାକାଳେ ସଂଶୟ-କାରଣ
ପ୍ରକୃତି ଭୂଷଣାଗାର, ଦେଖିଲି ନୟନ
ଦେଖିଲି ସମ୍ମୁଖେ ରାଜେ ରମ୍ୟ ଖଣ୍ଡଗିରି
ଯା ଯୋଗୁଁ ଦ୍ୱିଗୁଣ ଝଲେ ପ୍ରକୃତିର ଶିରୀ
ଚିର ଅଭିଳାଷ ଏବେ ହୋଇଲା ସଫଳ
ପିଇଲି ପିପାସୁ ମନ ଆନନ୍ଦ ବିମଳ ।
ଯାହାର ମହିମା ଶୁଣି ହେଉଥିଲା ମନ
ପିଞ୍ଜରେ ଯତନେ ରୁଦ୍ଧ ବିହଗ ଯେସନ
ସେହି ଖଣ୍ଡଗିରି ଏବେ ଦେଖିଲି ନୟନ
ସେହି ଖଣ୍ଡଗିରି, ରମ୍ୟ ବିଜନ ପାବନ ।
ବିଜନ ଶୋଭାରେ ପୂରି ରାଜୁଛି ଶଇଳ
କହୁଛି ପରଶି ଦେହ ମଳୟ ଅନିଳ,

ବିବିଧ ବିହଗ ମାତି ଅଛନ୍ତି ଗାନରେ
ରହିଛି ବିବିଧ ଫୁଲ ଫୁଟି କାନନରେ ।
ସୁରଙ୍ଗ ପ୍ରବାଳେ ତରୁଲତା-ଅବୟବ
ଶୋଭୁଛି କୋମଳ, ସ୍ନିଗ୍ଧ, ସୁରୁ ଅଭିନବ ।
ଗୁମ୍ଫାଚୟ, କୁଣ୍ଡଚୟ ସର୍ବେ ପୁରାତନ
ସର୍ବୋପରି ଜୈନ୍ୟ କୀର୍ତ୍ତି ଦେବ ଆୟତନ ।
ତରୁଣ ତପନ କର ଅତି କ୍ଷିନ ବାସ
ଢାଙ୍କି ନ ଢାକିଛି ସର୍ବ ଏ ଶୋଭା-ସମାସ ।
କେମନ୍ତେ ଭୁଲିବି କହି ଶଇଳ-ରତନ ?
ହେ ଶୈଳ ? ତୋହର ଦେଖି ମାଧୁରୀ ପାବନ
ଚୁମ୍ବକରେ ଲୌହ ପରି ଲାଗିଗଲା ମନ ।
ମନରେ ପ୍ରବଳ ହେଲା ଏହି ଅଭିଳାଷ
କରିବି କୋଳରେ ତୋର ମୁହିଁ ସଦା ବାସ ;
ପାବନ, ମୋହନ କୋଳ ତୋର ନ ତେଜିବି ;
ଜଗତର କୋଳାହଳ ଆଉ ନ ପଶିବ ।

———

## ୧୦—ହନୂମାନର ସୀତାଙ୍କୁ ଠାବ କରିବା

ଶିଂଶୁପା ବୃକ୍ଷର ଡାଳେ ହନୂ ମନେ ମନେ ଭାଳେ,
ନିଶ୍ଚୟ ଜାନକୀ-ଜନକ-ନନ୍ଦିନୀ, ଦେଖିଲିଁ ବେନି ଡୋଳେ
କି ଭାଗ୍ୟ ବଳେ !
ଶୁଖିଛି ଚନ୍ଦ୍ରବଦନ ଝରଇ ନୀର-ଲୋଚନ
ତେବେ ହେଁ ଶୋଭାକୁ ଉପମା ଦେବାକୁ ନାହି ବା ତିନି ଭୁବନ;
ନାରୀ-ରତନ ।
ବିହି କି ନ କରେ ପୁଣି ! ଶ୍ରୀରାମଚନ୍ଦ୍ର-ଘରଣୀ,
ଅସୁରପୁରେ ଅସୁରୀ ଜଗିଛନ୍ତି ଜଗତର ଠାକୁରାଣୀ,
ରମଣୀ-ମଣି
କହନ୍ତେ ବଂଶାନୁଗୁଣ, ଭେଦନ୍ତେ ସତୀ-ଶ୍ରବଣ,
ତରୁରୁ ଶୁଣିଲେ ମର୍କଟ ଗୋଟିଏ କହେ ରାମ କୀର୍ତ୍ତି-ଗୁଣ,
ସେ ପୁଣ ପୁଣ ।

କପି ! ତୁ କାହୁଁ ଅଇଲୁ ?                    ଶ୍ରୀରାମ ନାମ ଧଇଲୁ,
ମୋ ହୃଦୟ-ବନ ଦହନ-କାଳରେ ଚନ୍ଦନ ଲେପନ କଲୁ
ଯାହା ବୋଇଲୁ ।
ହନୁ ବୋଲନ୍ତି ଗୋ ମାତ ;                    ଶ୍ରୀରାମଚନ୍ଦ୍ରଙ୍କ ଦୂତ !
ଏମନ୍ତ କହିଣ ଚରଣ ତଳରେ ପଡ଼ିଲା ଯାଇ ତୁରିତ
ସେ ରାମଦୂତ ।
ଶ୍ରୀରାମ-ମୁଦ୍ରିକା ଦେଲେ,                    ସଙ୍କେତମାନ କହିଲେ,
ତୁମ୍ଭଙ୍କୁ ପୃଥିବୀଯାକ ଖୋଜୁଅଛୁଁ । ଅଞ୍ଜନା-ସୁତ କହିଲେ ।
ପ୍ରତୀତ ଗଲେ ।
ରାମ କଲେ ବାଲୀ ହତ ;                    ସୁଗ୍ରୀବଙ୍କୁ କଲେ ମିତ,
କୋଟି କୋଟି କପି ମୋହର ସମାନେ ହୋଇଛୁଁ ପ୍ରଭୁଙ୍କ ଭୃତ୍ୟ ;
କହିଲି ସତ ॥
ସମୁଦ୍ର ଡେଇଁ ଅଇଲି,                    ଲଙ୍କାଗଡ଼ରେ ପଶିଲି
ତୁମ୍ଭ ଶ୍ରୀଚରଣ ଦର୍ଶନ ନ ପାଇ ପ୍ରାଣ ମୁଁ ହରାଉଥିଲି ।
ଭଲି ଦେଖିଲି ।
ରାମ ମାଲ୍ୟବନ୍ତ-ଗିରି-                    ଶିଖେ ଛନ୍ତି ବନେ କରି ;
ସୁଗ୍ରୀବ ସହିତେ ଅନେକ ମର୍କଟ ବନଗିରି ଛନ୍ତି ପୂରି
ସେ ଋକ୍ଷ ହରି ।
ଆସ ସ୍କନ୍ଧେ ମୋର ବସ,                    ଘେନିଯିବି ରାମ ପାଶ,
ରାବଣ ସହିତେ ମାରନ୍ତି ; ପ୍ରଭୁଙ୍କ ପ୍ରତିଜ୍ଞା ହୋଇବ ନାଶ ;
ଦେଖ ସାହସ ।
ଶୁଣିଣ ଦେବୀ ହରଷ ;                    ହନୂକୁ ବସାଇ ପାଶ,
ବୋଲଇ ବଶୀ, ବିଶ୍ୱାସ କଥା ଶୁଣି ସଂଶୟ ହେଲା ବିନାଶ ।
ଏ ରାମରସ ।

———

## ୧୧—ପ୍ରତିଧ୍ୱନି

କାନନ ମଧ୍ୟରେ ଗିରିଗୁହା-ଗୃହେ
ପାଷାଣ ସୌଧରେ ଧନୀ
ନିକାଞ୍ଚନ ବାସେ ସଦା ପ୍ରଣୟିନୀ
ନିବସଇ ପ୍ରତିଧ୍ୱନି ।

ଏକାକୀ ଅରୂପା ସଦା ଜାଗରୂକା
ଥାଏ ତହିଁ ନୀରବରେ ;
କର୍ଣ୍ଣୁ ଅବା ଯନ୍ତ୍ରୁ ବାହାରିଲେ ଧ୍ୱନି
ତା' ସତ୍ତ୍ୱା ପ୍ରକାଶ କରେ ।

ସୁକୁମାରୀ ହୃଦ- ତନ୍ତ୍ରୀ ବାଜି ଉଠେ
କ୍ଷଣେ ସମବେଦନାରେ ;
ପର ସୁଖ ଦୁଃଖ- କୌତୁକ ଦେଖିଲେ
ମୌନେ ସେ ରହି ନ ପାରେ ।

ଆଗରେ ତାହାର ଅଟ୍ଟହାସ କଲେ
କରେ ସେହୁ ଅଟ୍ଟହାସ ।
ଛିଙ୍କିଲେ ଜୃମ୍ଭିଲେ ଛିଙ୍କଇ ଜୃମ୍ଭଇ,
କାସଇ ଶୁଣିଲେ କାସ ।

ଡାକଇ ଡାକିଲେ, କାନ୍ଦଇ କାନ୍ଦିଲେ,
ଗାଇଲେ ଶୁଣି ସେ ଗାଏ ,
ଶୁଣିଲେ କାହାର ବାହୁନିବା, ସେହୁ
ସେପରି ବାହୁନୁଥାଏ ।

ତାହାକୁ କହିବ ଯେଉଁ କଥା, ସେହୁ
ଫେରାଇ ସେ କଥା କହେ ;
କଥା ଦୋଷ ଗୁଣ ନ କରେ ଗ୍ରହଣ ;
ତା'ଠାରେ କିଛୁ ନ ରହେ ।

ତା'ଠାରୁ ଅନ୍ତର ହେଲେ ପୂର୍ବ ପରି
ମଉନରେ ସେ ରହଇ ।
କାନନେ, କନ୍ଦରେ, ପାଷାଣ-ସୌଧରେ
ଆକାଶରେ ଲୀନ ହୋଇ ।

———

## ୧୨—ପୁଷ୍ପ

ଯେତେ ଯେତେ ଅଛୁ ବିଧାତା ଭିଆଣ
ତହିଁରେ, ତୁ ଅଟୁ ସାର ,
ନୋହିଲେ କୁସୁମ ! ଚଢ଼ି ପାରନ୍ତୁ କି
ଶିରେ ତୁହି ଦେବତାର ?
କେତେ ତୋ ଆକାର, କେତେ ପରକାର,
କେତେ ବା ରୂପ ତୋହର !
ଥାଉ ଜଳେ ସ୍ଥଳେ ତରୁଲତା-କୋଳେ
ମସ୍ତକେ ଗୁଳ୍ମ-ତୃଣର ।
ବିଷ୍ଣୁଙ୍କ ସହସ୍ରେ ନାମ ଅଛି ବୋଲି
ଲୋକରେ ଅଛଇ ଶୁଣା,
ତେଢିକି କୁସୁମ ! ନାମ ସଂଖ୍ୟା ତୋର
ଅଧିକ କି ଅବା ଊଣା ।
କେତେ ରୂପେ ତୁହି କେତେ ନାମ ବହି
କେତେଠାଉଁ କରୁ ବାସ ,
କେଉଁ ରୂପ ଅବା ସୁରଭି ସୁମନ
କାହିଁ ବା ନ ଥାଏ ବାସ ।
ପଦ୍ମ କୋକନଦ କହ୍ଲାର କୁମୁଦ
ଏ ରୂପ ତୋହର ଜଳେ ,
ହ୍ରଦ, ସରୋବର ମଣ୍ଡଳ ଆବର
ତଡ଼ାଗ, ପାଟ, ପଲ୍ୱଲେ ।
ଚମ୍ପା, ନାଗେଶ୍ୱର, ଅଶୋକ, ଟଗର,
ମୁଚୁକୁନ୍ଦ, ଶେଫାଳିକା,
ନୀପ, କୃଷ୍ଣଚୂଡ଼ା, ବକୁଳ, ପାଟଳୀ,
କଞ୍ଚନ, ଗିରିମଲ୍ଲିକା,

ମାଧବୀ, ବଧୂଲି, ମନ୍ଦାର, ନିଆଳି,
ଗୋଲପ, ମଲ୍ଲୀ, ସେବତୀ,
କୁନ୍ଦ, ଜାଇ, ଯୂଇ, ମରୁଆ, କେତକୀ
ଅପାରିଜିତା, ମାଲତୀ,
ସୁରଭି ମଞ୍ଜୁଳ ରସାଳ ମୁକୁଳ,
ବନମଲ୍ଲୀ, କୁରୁଅନା,
କରବୀର, ଶଣ, ଶତବର୍ଗ ପୁଣ
ସୁଗନ୍ଧରାଜ, ଦଅଣା—
ଏମାନ ଅପର କେତେ ରୂପ ତୋର
କେତେ କମନୀୟ ରଙ୍ଗେ
ସ୍ଥଳେ ନାନା ସ୍ଥାନେ ନିତ ନିତ ଦେଖୁଁ
ତରୁଲତା ଗୁଳ୍ମ ଅଙ୍ଗେ ।
ତୋ ଯୋଗେ କରଇ ପ୍ରକୃତ ସୁନ୍ଦରୀ
ଆପଣା ଅଙ୍ଗ ମଣ୍ଡନ ;
ବିଳାସୀ ବିଳାସେ ଶୁଭକାର୍ଯ୍ୟେ ପୁଣି
ଲୋଡ଼ା ହେଉ ହେ ସୁମନ !
ସୃଷ୍ଟିରେ ଅତୁଳ ମଧୁ ନିହିଥାନ୍ତି
ବହି ତୋହି, କଳେବରେ
ଅପରୂପ ଶିଳ୍ପୀ ଅଳି ଲବେ ଲବେ
ଓଡ଼ାର ସଞ୍ଚୟ କରେ ।
ଭୋଗୀ-ଭୋଗେ ପୁଣି ରୋଗୀ-ରୋଗେ ତାହା
ଲୋଡ଼ା ହୁଏ ଅହରହ ।
ସୁକୁମାର ପଣେ, ରୂପେ, ପ୍ରୟୋଜନେ
ତୋହ ସର କିଏ କହ ।

———

## ୧୩—ମହିମା

ଚୌଦିଗେ ବିଗ୍ରଳେ ବିଶ୍ୱ ରଞ୍ଜିତ ଶୋଭାରେ ।
ସୁବିଶାଳ କଳେବର ଧାତ୍ର ମହିମାରେ ।
ଶୋଭା-ମହିମାକୁ ନେତ୍ରେ କଲେ ନିରୀକ୍ଷଣ ।
ବିସ୍ମୟେ ସ୍ତବଧ ହୁଏ ଏହି ଅକିଞ୍ଚନ ।
ତୋହର କୃତ ଏହି ବିଶ୍ୱ ଏଡ଼େ ମହାସ୍ଥାନ,
ହେ ବିଶ୍ୱ-ବିଧାଣି ! ନୋହୁ ତୁ କେଡେ ମହାନ !
ଉଇଁଲେ ତୋ ଭାନୁ ଦିଶେ ସକଳ ଭାସ୍ୱର,
ତମ ତରତରେ ଆଶ୍ରେ ପର୍ବତ କନ୍ଦର ।
ତୋ ଶଶୀ ମଣ୍ଡିଇ ଯେବେ ଅମର ସରଣୀ,
କୌମୁଦୀ-ସୁଧାରେ ଧୌତ ହୁଅଇ ଅବନୀ ।
ଅକ୍ଷୟ ପ୍ରଦୀପାବଳି ଅନନ୍ତ ଆକାଶେ,
କୋଟି ତାରା ରୂପେ ରାଜି ତମୋଦର୍ପ ନାଶେ ।
ଅନନ୍ତ ଲହରୀ ଲୀଳା ଅକୂଳ ସାଗରେ,
ଉର୍ଦ୍ଧଶିଳ ହିମସ୍ତୂପ ହିମାଦ୍ରି-ଶିଖରେ ।
ମହା ନଦ-ନଦୀ ହ୍ରଦ ସୁରମ୍ୟ-ପୁଳିନ,
କଳନାଦୀ ନିର୍ଝରଣୀ ବିଶାଳ ବିପିନ ।
ଭୈରବ ତାଣ୍ଡବକାରୀ ସଲିଳ ପ୍ରପାତ,
ଫିହାରି ଆଗ୍ନେୟଗିରି ଭୀମ ଅଗ୍ନ୍ୟୁତ୍ପାତ,
ବିରଳ ମାନବ-ବାସ ଉଭୟ ମେରୁର
ହିମକାଳେ ଦୀର୍ଘ ନିଶା ମହା ପ୍ରଭାପୂର,
ନିଦାଘେ ପ୍ରଚଣ୍ଡ ଭାନୁ, କୃଶ ନଦୀ, ସର
ବରଷାରେ ଘନଘଟା ଭୀମ କଳେବର,
ତରୁଲତା ଫଳପୁଷ୍ପ ସୁରଭି ସୁନ୍ଦର,

ସୁଚାର ପତତ୍ରିକୁଳ, ପତଙ୍ଗ-ନିକର
ଅନ୍ତରୀକ୍ଷେ ଉଷା ସନ୍ଧ୍ୟା-ରୂପ ମନୋହର,
ମେଘମାଳା, ସୌଦାମିନୀ, କୋଦଣ୍ଡ ଇନ୍ଦ୍ରର,
ଏମାନ ହେ ବିଶ୍ୱ-ଶିଳ୍ପି ! ତୋ ଶିଳ୍ପ ଆଗାରେ,
ନିରନ୍ତର ବିରାଜିତ ମହା ମହିମାରେ ।
ମହିମା-ସିନ୍ଧୁରୁ ବିନ୍ଦୁମାତ୍ର ଅକିଞ୍ଚନ
ବଖାଣି ପାରିବ, ଶକ୍ତି କାହିଁ ବା ଏସନ !
ଆସ ଆସ ରବି ଶଶୀ ! ଅୟି ତାରାଗଣ !
ନଦ ନଦୀ ହ୍ରଦ ! ଆସ, ସାଗର କାନନ !
ଆସ ସର୍ବେ ବନ୍ଦି ବିଶ୍ୱରାଜ ଶ୍ରୀଚରଣ,
ଭକ୍ତି ପ୍ରେମେ କରୁଁ ତାଙ୍କ ମହିମା କୀର୍ତ୍ତନ ।

———:

# କଥାବନ୍ଳୀ - ଗଦ୍ୟାଂଶ

## ୧—ଈଶ୍ୱର

୧ । ଏଠାରୁ ପାଞ୍ଚଶ କୋଶ ଦୂରରେ ରାମେଶ୍ୱର ନିକଟରେ ଜଣେ ବୃଦ୍ଧ ହିନ୍ଦୁ ସୌଦାଗର ବାସ କରୁଥିଲେ । ସେ ଜାତିରେ ବ୍ରାହ୍ମଣ ଓ ସେ ନିଜେ ବହୁତ ପଢ଼ିଥିଲେ ଏବଂ ଧାର୍ମିକ ଲୋକ ଥିଲେ । ତାଙ୍କର ଗୋଟିଏ ପୁତ୍ର ଥିଲା । ତାହାର ନାମ ରାମ ।

୨ । ରାମର ବୟସ ଅଳ୍ପ, ମାତ୍ର ସେ ବଡ଼ ବୁଦ୍ଧିମାନ୍ । ତାକୁ ତାହାର ପିତା ଆଠ ବର୍ଷ ଯାଏ ଘରେ ପଢ଼ାଉଥିଲେ । ପିତା ନିଜେ ବଡ଼ ବିଦ୍ୱାନ୍ । ସେ ରାମକୁ ଅନେକ ବିଷୟ ଶିଖାଇଥିଲେ ।

୩ । ରାମକୁ ଆଠବର୍ଷ ହୁଅନ୍ତେ ତାହାର ପିତା ତାହାକୁ ପାଠଶାଳାରେ ଛାଡ଼ିଲେ । ଅବଧାନେ ରାମକୁ ପଚାରିଲେ, ତୁମ୍ଭେ କିଛି ପଢ଼ିଛ ? ରାମ କହିଲା, "ମୁଁ କିଛି କିଛି ଲେଖିପଢ଼ି ଜାଣେ ।" ତୁମ୍ଭଙ୍କୁ ଗଣି ଆସେ ?" ରାମ କହିଲା, "ଆଜ୍ଞା, ମୁଁ ଗଣି ଶିଖିଛି ।"

୪ । ତହିଁଉତ୍ତାରୁ ଅବଧାନେ ରାମର ପିତାଙ୍କୁ କହିଲେ, "ଆପଣ ରାମକୁ ଲେଖି ପଢ଼ି ଓ ଗଣି ଶିଖାଇ ଅଛନ୍ତି । ତାକୁ ଈଶ୍ୱରଙ୍କ ବିଷୟ କିଛି ଶିଖାଇ ଅଛନ୍ତି କି ?" ପିତା କହିଲେ, "ରାମକୁ ପଚାରନ୍ତୁ ।"

୫ । ଅବଧାନେ ରାମକୁ ପଚାରିଲେ, "ତୁମେ ଈଶ୍ୱରଙ୍କ ବିଷୟରେ କିଛି ଶିଖିଅଛ ?" ରାମ କହିଲା, "ଆଜ୍ଞା, ଅଳ୍ପ ଅଳ୍ପ ଶିଖିଅଛି ।" ଅବଧାନେ ରାମକୁ କହିଲେ, "ମୁଁ ତୁମ୍ଭଙ୍କୁ ଈଶ୍ୱରଙ୍କ ବିଷୟରେ ତିନିଗୋଟି ପ୍ରଶ୍ନ ପଚାରିବି । କହିଲ, ଈଶ୍ୱର କେଉଁଠାରେ ଅଛନ୍ତି ? ସେ କ'ଣ ଜାଣନ୍ତି ? ଏବଂ କଣ କରିପାରନ୍ତି ?"

୬ । ରାମ କହିଲା "ଆଜ୍ଞା, ମୁଁ ଆପଣଙ୍କୁ ଉତ୍ତର ଦେଉଛି । ମାତ୍ର ଆଗେ ମୋତେ ତିନିଗୋଟି ବିଷୟ କହି ଦିଅନ୍ତୁ । ପ୍ରଥମେ କହନ୍ତୁ, ଈଶ୍ୱର କେଉଁଠାରେ ନାହାନ୍ତି ? ଦ୍ୱିତୀୟରେ କହନ୍ତୁ, ଈଶ୍ୱର କ'ଣ ଜାଣନ୍ତି ନାହିଁ ? ତୃତୀୟରେ କହନ୍ତୁ, ଈଶ୍ୱର କଣ କରି ପାରନ୍ତି ନାହିଁ ?"

୭ । ଅବଧାନେ ଏହା ଶୁଣି ବଡ଼ ଖୁସି ହେଲେ । ସେ ରାମର ପିତାଙ୍କୁ କହିଲେ ଆପଣଙ୍କ ପୁଅକୁ ଭଲ ଶିକ୍ଷା ଦେଇଅଛନ୍ତି । ମୁଁ ତାକୁ ଈଶ୍ୱରଙ୍କ ବିଷୟରେ ଆଉ କିଛି ଅଧିକା ଶିଖାଇବି ନାହିଁ; ଅନ୍ୟାନ୍ୟ ବିଷୟରେ ମୋତେ ଅଧିକ ଯାହା ଜଣା ଅଛି, ତାହା ହିଁ ଶିକ୍ଷା ଦେବି ।

———

# ୨—ଅଳସୁଆ ବାଳକ

୧ । ରଙ୍ଗ ନାମରେ ଗୋଟିଏ ସାନ ପିଲା ଅଛି । ସେ ଅଳସୁଆ ଅଟେ ଏବଂ ଖେଳିବାକୁ ଭଲପାଏ । ତାକୁ ପଢ଼ାଶୁଣା ଭଲ ଲାଗେ ନାହିଁ । ତାହାର ପିତା ଜଣେ ଧନୀ ଲୋକ ଏବଂ ତାଙ୍କର ଘରଟି ଖୁବ୍ ବଡ଼ । ରଙ୍ଗର ପଢ଼ିବା ନିମନ୍ତେ ସେ ଗୋଟିଏ ସାନ କୋଠରୀ ଛାଡ଼ି ଦେଇଥିଲେ ।

୨ । ଆଜି ସକାଳେ ରଙ୍ଗର ଉଠିବାକୁ ବହୁତ ବିଳମ୍ବ ହେଲା । ବିଛଣାରୁ ଉଠି ସେ ପଢ଼ାଘର ଭିତରକୁ ଗଲା । ସେଠାକୁ ଯାଇ ସେ ଖଣ୍ଡିଏ ପୁସ୍ତକ ବହି ଫିଟାଇଲା ନାହିଁ । ସେ ସେଗୁଡ଼ିକ ଗୋଟାଏ ପାଖକୁ ଆଡ଼େଇ ରଖିଦେଲା । ଏହିପରି କିଛି ସମୟ ଚାଲିଗଲା । ବେଳ ହେଲାରୁ ମା ଡାକ ପକାଇଲେ, "ରଙ୍ଗ ! ସ୍କୁଲକୁ ଯା" ।

୩ । ତାହା ଶୁଣି ରଙ୍ଗ ବହିଗୁଡ଼ିକ ନେଇ ବାହାରିଲା । କିନ୍ତୁ ସେ ସ୍କୁଲକୁ ଗଲା ନାହିଁ, ଗୋଟାଏ ପଡ଼ିଆରେ ବୁଲିଲା । ସେଠାରେ ପକ୍ଷୀମାନେ ମଧୁର ରବ କରୁଥିଲେ । ରଙ୍ଗ ପଡ଼ିଆରେ ଖେଳିବ ବୋଲି ମନେ ମନେ ଭାବିଥିଲା । ମାତ୍ର ଦେଖିଲା ଯେ ପିଲାମାନେ ସମସ୍ତେ ସ୍କୁଲକୁ ଚାଲି ଯାଇଅଛନ୍ତି ; କାହା ସଙ୍ଗରେ ଖେଳିବ ?

୪ । ରଙ୍ଗ ବୁଲୁଁ ବୁଲୁଁ ଦେଖିଲା ଯେ ଗୋଟାଏ କୁଆ ଥଣ୍ଟରେ ଖଣ୍ଡିଏ ଶୁଖିଲା କାଠି ନେଇ ଉଡ଼ି ଆସୁଅଛି । ସେ ତାକୁ କହିଲା, "ଆ, ମୋ ସାଙ୍ଗେ ଖେଳିବୁ ।" କୁଆ କହିଲା, "ନା, ନା । ବର୍ଷାଋତୁ ଆସିବା ପୂର୍ବରୁ ମୋତେ ବସାଖଣ୍ଡିକ ତିଆରି କରିବାକୁ ହେବ । ମୁଁ ଖେଳିବି ନାହିଁ ।" ଏହା କହି ସେ ଉଡ଼ିଗଲା ।

୫ । ତହିଁ ଉତ୍ତାରୁ ରଙ୍ଗ ଦେଖିଲା ଯେ କେତେଗୁଡ଼ିଏ ମହୁମାଛି ଏକ ଫୁଲରୁ ଅନ୍ୟ ଫୁଲକୁ ଉଡ଼ି ଯାଉଅଛନ୍ତି । ସେମାନଙ୍କୁ ଚାହିଁ ରଙ୍ଗ କହିଲା, "ହେ ସୁନ୍ଦର ମହୁମାଛିମାନେ ! ଆସ ମୋ ସଙ୍ଗରେ ଖେଳିବ । ସେମାନେ କହିଲେ, "ନା, ନା, ଏହିକ୍ଷଣି ଆମ୍ଭମାନଙ୍କୁ ଫୁଲରୁ ମହୁ ମିଳିବ; ବିଳମ୍ବ ହେଲେ ଫୁଲଗୁଡ଼ିକ ମଉଳିଯିବ, ମହୁ ମିଳିବ ନାହିଁ । ଆମ୍ଭମାନଙ୍କ ସହିତ ଅଧିକ କଥା କହ ନାହିଁ । ଆମ୍ଭମାନଙ୍କୁ ବହୁତ କାମ ପଡ଼ିଛି, ଏହିକ୍ଷଣି ତୁମ ସଙ୍ଗରେ କଥାବାର୍ତ୍ତା କରିବାକୁ ସମୟ ନାହିଁ ।"

୬ । ତତ୍ପରେ ରଙ୍ଗ କେତେଗୁଡ଼ିଏ ପିମ୍ପୁଡ଼ି ଦେଖିଲା । ସେମାନେ ପାଟିରେ ଗୋଟିଏ ଗୋଟିଏ ଚାଉଳ ବହି ନେଉଥିଲେ । ରଙ୍ଗ କହିଲା, "ହେ ପିମ୍ପୁଡ଼ି-

ମାନେ ! ଟିକିଏ ରହ, ମୋ ସଙ୍ଗରେ ଖେଳିବ, ଖେଳ ସରିଲେ ତୁମ୍ଭେମାନେ କାମକୁ ଯିବ ।"

୭ । ଏହାଶୁଣି ପିମ୍ପୁଡ଼ିମାନେ କହିଲେ, "ବର୍ତ୍ତମାନ ଖାଦ୍ୟ ସମ୍ଭାଳିବାର ଉପଯୁକ୍ତ ସମୟ । ଆମ୍ଭେମାନେ ଆଗରୁ ଖାଦ୍ୟ ସମ୍ଭାଳି ରଖି ଥାଉଁ ଯେ, ବର୍ଷା ଶେଷ ପର୍ଯ୍ୟନ୍ତ ବସି ଖାଉଁ । ଆମ୍ଭେମାନେ ଏକ ମିନିଟ୍ ସୁଦ୍ଧା ବିଳମ୍ବ କରିପାରୁଁ ନାହିଁ । ଦେଖ, ତୁମ୍ଭ ସଙ୍ଗରେ କଥା କହୁଁ କହୁଁ ଅନେକ ସମୟ ନଷ୍ଟ ହେଲା ।" ଏହା କହି ସେମାନେ ତରତର ହୋଇ ଚାଲିଗଲେ ।

୮ । ଏହା ଦେଖି ଓ ଶୁଣି ରଙ୍ଗ ଭାବିଲା, "ମୁହିଁ କଅଣ ଏହି ଗ୍ରାମ ଭିତରେ ଏକା ଅଳସୁଆ, ମୋ ପରି ଆଉ ଗୋଟିଏ ସୁଦ୍ଧା ତ ନାହିଁ । ପକ୍ଷୀ, ପିମ୍ପୁଡ଼ି ଓ ମହୁମାଛିମାନେ ସୁଦ୍ଧା କାର୍ଯ୍ୟରେ ଏଡ଼େ ବ୍ୟସ୍ତ ଯେ ଖେଳିବାକୁ ସମୟ ପାଉ ନାହାନ୍ତି । ତାହାହେଲେ ଏଣିକି ମୁଁ ମଧ୍ୟ କାର୍ଯ୍ୟରେ ଲାଗିବି । ଏହା ଭାବି ସେ ଏକା ଦୌଡ଼କେ ସ୍କୁଲରେ ପହଞ୍ଚିଲା । ତେତେବେଳକୁ ଶିକ୍ଷକ ମହାଶୟ ସ୍କୁଲକୁ ଆସି ନ ଥିଲେ । ରଙ୍ଗ ସେହି ଦିନଠାରୁ ପଢ଼ାରେ ମନ ଦେଲା । ସମସ୍ତେ ତାହାକୁ ଉତ୍ତମ ବାଳକ ବୋଲି କହିଲେ ।

---

## ୩—କୁଭାଷା କହିବ ନାହିଁ

୧ । ଦାମ ନାମରେ ଗୋଟିଏ ବାଳକ ପ୍ରତିଦିନ ବିଦ୍ୟାଳୟକୁ ଯାଏ । ତାହାର ବୟସ ଆଠବର୍ଷ । ସେ ବାପମାଆଙ୍କର ଏକମାତ୍ର ପୁଅ; ତେଣୁ ସେମାନେ ତାକୁ ବଡ଼ ଭଲପାନ୍ତି । ଦିନେ ଶିକ୍ଷକ ତାହାର ପିତାଙ୍କଠାକୁ କହିପଠାଇଲେ ଯେ ଦାମ ସେଦିନ ବିଦ୍ୟାଳୟରେ ମନ୍ଦ ବ୍ୟବହାର କରିଅଛି ।

୨ ତହିଁ ଆରଦିନ ସକାଳେ ଦାମ ଖାଇ ସାରି ବହି ନେଇ ବିଦ୍ୟାଳୟକୁ ଯାଉଅଛି । ଏହି ସମୟରେ ପିତା ତାହାକୁ ଡାକି କହିଲେ, "ଦାମ ! ଟିକିଏ ରହିଲୁ, ମୋର କିଛି କହିବାର ଅଛି ।"

୩ । ଏହା ଶୁଣି ଦାମର ମାତା ପିତା-ପୁତ୍ରଙ୍କର କଥାବାର୍ତ୍ତା ଶୁଣିବା ଲାଗି ଦ୍ୱାର ପାଖରେ ଠିଆ ହେଲେ । ପିତା କହିଲେ, "ଶିକ୍ଷକ ମୋତେ କହି ପଠାଇଛନ୍ତି, ତୁ କାଲି ବିଦ୍ୟାଳୟରେ ବଡ଼ ମନ୍ଦ ବ୍ୟବହାର କଲୁ । ମୁଁ ଏହା ଶୁଣି ବଡ଼ ଦୁଃଖିତ ହୋଇଅଛି । ତୁ କଅଣ କରିଥିଲୁ କି ?"

୪ । ରାମ କହିଲା, "ମୁଁ ତ କିଛି ମନ୍ଦକାର୍ଯ୍ୟ କରିନାହିଁ । ମୁଁ ଗୋବିନ୍ଦର ବହିକୁ ତଳେ ପକାଇ ଦେଇଥିଲି, ସେ ମୋତେ ଗାଳିଦେବାରୁ ମୁଁ ତାକୁ ଗାଳି ଦେଲି । ସେ ପାଟିକରି ମୋତେ କୁକଥା କହିଲା । ମୁଁ ବି ତାକୁ ସେହିପରି କହିଲି । ବାପା ! କହିଲ, ଏ କଣ ମୋର ଅନ୍ୟାୟ ହେଲା ? ଶିକ୍ଷକ ମହାଶୟ ଗୋବିନ୍ଦ ଉପରେ ଓ ମୋ ଉପରେ ରାଗିଲେ ?

୫ । ଏହା ଶୁଣି ପିତା କହିଲେ, "ପୁଅ ! ତୁ ବଡ଼ ଅନ୍ୟାୟ କରିଅଛୁ । ଶିକ୍ଷକ ମହାଶୟଙ୍କର ମୋତେ ଏ କଥା ଜଣାଇବା ଠିକ୍ ହୋଇଅଛି । ତୁ କେବେହେଁ କାହାରିକୁ ଗାଳିଦେବୁ ନାହିଁ । ଉତ୍ତମ ବାଳକ କାହାରଠାରୁ ଗାଳି ଶୁଣିଲେ ସୁଦ୍ଧା ତାକୁ ଗାଳିଦିଏ ନାହିଁ । ତାହାର ମୁଖରୁ କେଭେହେଁ ମନ୍ଦକଥା ବାହାରେ ନାହିଁ । ମଇଳା ଯେପରି କୁକଥା ସେହିପରି; ତାହା ଲୋକକୁ ମଇଳା କରିଦିଏ । ପୁଅ ! ତୁ ଆଉ କେବେହେଁ ମନ୍ଦକଥା କହିବୁ ନାହିଁ ।"

୬ । ମାତା କହିଲେ, "ଏକଥା ଠିକ୍ । ମନ୍ଦ ପିଲାମାନେ କୁକଥା କହନ୍ତି । ତୋର ପିତା କେବେହେଁ କାହାରିକୁ ମନ୍ଦ କଥା କହି ଅଛନ୍ତି, ଶୁଣିଛୁ ? ସେ ଯାହା କହିଲେ ତାହା ମନେ ରଖ ଏବଂ ସେହିପରି କାର୍ଯ୍ୟ କର ।"

୭ । ରାମ ଉତ୍ତମ ବାଳକ, ସେ ତାହାର ପିତାମାତାଙ୍କୁ ଭଲପାଏ ଏବଂ ସେମାନଙ୍କୁ ଖୁସି କରିବାପାଇଁ ଯତ୍ନ କରୁଥାଏ । ସେ କହିଲା "ବାପା ! ମୁଁ ଆଉ କେଉଁ ମନ୍ଦ କଥା କହିବ ନାହିଁ ।" ରାମର ଏହି ପ୍ରତିଜ୍ଞା ଟଳିଲା ନାହିଁ, ସେହି ଦିନଠାରୁ ସେ କାହାରିକୁ ମନ୍ଦ କଥା କହିଲା ନାହିଁ ।

---

## ୪—ପାଠଶାଳାକୁ ଯିବା

୧ । ବୃନ୍ଦାବନ ଗ୍ରାମରେ ଆନନ୍ଦ ବୋଲି ଗୋଟିଏ ଶ୍ରେଷ୍ଠ ବାଳକ ଓ କମଳା ବୋଲି ଗୋଟିଏ ଶ୍ରେଷ୍ଠ ବାଳିକା ଥିଲେ । ଆନନ୍ଦ ଗୋଟିଏ କାଖରେ ପୋଥି ଏବଂ ଆର କାଖରେ ଛତା ଧରି ଆଗରେ ଯାଉଅଛି; କମଳା ଗୋଟିଏ ମୁଣିରେ ବହିଗୁଡ଼ିକ ପୁରାଇ ପଛରେ ଯାଉଅଛି । ସେମାନେ ଗ୍ରାମଦାଣ୍ଡର ବାମକଡ଼ ଧରି ଚଟଶାଳୀକୁ ଯାଉଅଛନ୍ତି । ଆଜି ସକାଳେ ସେମାନେ କଅଣ କଥାଭାଷା ହୋଇଥିଲେ ତାହା ତୁମ୍ଭଙ୍କୁ କହିବୁଁ ।

୨ । କମଳା—"ମା ! ଚଟଶାଳୀକୁ ଯିବାର ସମୟ ହେଲାଣି । ମୋ ମୁଣ୍ଡ କୁଣ୍ଡାଇ ଦିଅ ।"

୩ । ମାତା—"ଏଡ଼େ ତରତର କାହିଁକି ? କେଶ ଫିଟା, ମୁଁ ତେଲ ଲଗାଇ କୁଣ୍ଡାଇ ଦେଇ ପୁଣି ବାନ୍ଧିଦେବି । ତୁ ଆଜି ବଡ଼ ବିଳମ୍ବରେ ଉଠିଲୁ । ଭଲକରି ମୁଣ୍ଡ ବାନ୍ଧିଦେବାକୁ ମୋତେ ଏହିକ୍ଷଣି ସମୟ ନାହିଁ । ମୁଁ ଆଜି ଗୋଟିଏ ଗଣ୍ଠି ପକାଇ ଦେଉଛି, କାଲି ଭଲକରି ଜୁଡ଼ା ବାନ୍ଧିଦେବି ।"

୪ । କମଳା—"ମା ! ଆନନ୍ଦ କାହିଁ ? ସେ ଆଜି ମୋ ସାଙ୍ଗରେ ଗୃହଶାଳୀକୁ ଯିବନି କି ?"

୫ । ମାତା—"ସେ ଘର ଭିତରେ ଠିଆହୋଇ କାନ୍ଦୁଛି । କାଲି ତା'ର ଲୁଗା ମଇଳା ହୋଇଯାଇଛି, ଆଜି ପିନ୍ଧିବ କଅଣ ? ସଫା ଲୁଗା ନାହିଁ ।"

୬ । କମଳା—"ଅବଧାନେ କାଲି ତାକୁ କହିଲେ 'ମଇଳା ଲୁଗା ପିନ୍ଧି କେଭେଁ ପାଠଶାଳାକୁ ଆସିବୁ ନାହିଁ ।' ମା ! ତାକୁ ଆଜି କୋଟ ପାଇଜାମା ପିନ୍ଧାଇ ଦିଅ ।"

୭ । ମାତା—"ଆନନ୍ଦ ! ଏଣ୍ଡେ ଆ । ତୋ ବହି କାହିଁ ?"

୮ । ଆନନ୍ଦ—"ବହି ତ କାହିଁ ମିଳୁନାହିଁ । ମା ! ମୁଁ କାଲି ଖୋଲି ଆଲମାରି ଥାକରେ ବହି ରଖିଦେଇଥିଲି, ଆଜି ଖୋଜିଲି ବେଳକୁ ନାହିଁ ।"

୯ । କମଳା—"ନା, ନା, କାଲି ତୁ ଆଲମାରିରେ ବହି ରଖି ନାହୁଁ । କାଲି ତୁ ଯେଉଁକ୍ଷଣି ଘରକୁ ଆଇଲୁ, ସେହିକ୍ଷଣି ବହିଗୁଡ଼ାକ ଗୋଟିଏ କୋଣରେ ଫୋପାଡ଼ି ଦେଇ ଖେଳିବାକୁ ଦୌଡ଼ିଗଲୁ ; ଲୁଗାଟିକି ମଇଳା କରି ଆଇଲୁ । ହେଇଟି, ତୋ ବହିତକ କୋଣରେ ପଡ଼ିଛି ।"

୧୦ । ଆନନ୍ଦ ବହିତକ ଘେନି ତରତର ହୋଇ ଗୃହଶାଳୀକୁ ଗଲା, କମଳା ତାହା ପଛେ ପଛେ ଗଲା । ଠିକ୍ ସମୟରେ ସେମାନେ ଗୃହଶାଳୀରେ ପହଞ୍ଚିବେ କି ? ହଁ; ଖୁବ୍ ଚଞ୍ଚଳ ଗଲେ ପହଞ୍ଚିବେ । ହେଇଟି ଘଣ୍ଟା ବାଜୁଛି, ଶୁଣି ପାରୁଚ ତ ?

---

## ୫—ପିମ୍ପୁଡ଼ି ଓ ଝିଣ୍ଟିକା

୧ । ଗାଁ ଶେଷରେ ଖଳାମାନଙ୍କରେ ଧାନ-କଳେଇଗୁଡ଼ାକ ଗଦା ମରି ହୋଇଥିଲା । ଦିନେ ଟାଣ ଖରା ହୋଇଥିଲା ; ଗୋଟିଏ ଝିଣ୍ଟିକା ବିଲ କଆରରେ ଏଣୁ ତେଣିକି, ତେଣୁ ଏଣିକି ଡ଼ିଆଁ ମାରି ଗୀତ ବୋଲି, ଖେଳି ଘାସ ଚୁଙ୍କୁଥିଲା ।

୨ । ଠିକ୍ ସେହିକବେଳେ ଗୋଟିଏ ପିମ୍ପୁଡ଼ି ଗୁଡ଼ଳଟିଏ କାମୁଡ଼ି ତାହା ପାଖକୁ ଅଣିଲା । ଗୁଡ଼ଳଟି ଖୁବ୍ ଭାରି । ବହିବାକୁ ନେଇଯିବା ଲାଗି ତାକୁ ବଡ଼ ପରିଶ୍ରମ ପଡ଼ୁଥିଲା ।

୩ । ଝିଣ୍ଟିକା କହିଲା,"ଭାଇ ତୁ କାହିଁକି ଏତେ ପରିଶ୍ରମ କରୁଛୁ; ଆ, ମୋ ସାଙ୍ଗରେ ଖେଳ, ଭଲ ଝଡ଼ୁପାଗ ହୋଇଅଛି । ଜାଗାଟି ବେଶ୍ ଗରମ ହୋଇଥିବାରୁ ଭଲ ଲାଗୁଛି ।"

୪ । ପିମ୍ପୁଡ଼ି କହିଲା, "ନାହିଁ ରେ ଭାଇ ! ମୁଁ ବର୍ଷାଦିନଲାଗି ଖାଦ୍ୟ ସଞ୍ଚୟ ରଖୁଛି, ଏ ସମୟରୁ ସଞ୍ଚୟ ନ ରଖିଲେ ସେତେବେଳକୁ କିଛି ମିଳିବ ନାହିଁ । ଏତେବେଳେ ଖେଳିଲେ ସେତେବେଳେ ଭୋକରେ ପ୍ରାଣ ଯିବ ସିନା ।"

୫ । ଝିଣ୍ଟିକା କହିଲା, "ତୁ ବଡ଼ ମୂର୍ଖ, ଏତେବେଳେ ତ ଖାଇବାକୁ ବହୁତ ମିଳୁଛି, ଖୁସି ହୋଇ ଖେଳ । ଏତେ ଦିନୁ ବର୍ଷା କଥା ଭାବି ତୋର ମୁଣ୍ଡ କାହିଁକି ଏପରି ବୁଲାଉଅଛୁ ? ଆହୁରି ତ ଅନେକ ଦିନ ଅଛି ।"

୬ । କିନ୍ତୁ ପିମ୍ପୁଡ଼ି ତାହାରକଥା ନ ଶୁଣି କାମ କରିବାକୁ ଲାଗିଲା । ଗୋଟିଏ ଘରର କାନ୍ଥ ତଳେ ତାହାର ବଡ଼ ସୁନ୍ଦର ବିଲଟିଏ ଥିଲା; ସେ ତହିଁରେ ଆପଣା ସକାଶେ ଓ ଛୁଆମାନଙ୍କ ପାଇଁ ଖୁଦଗୁଡ଼ଳ ସଞ୍ଚୟକରି ରଖିଲା ।

୭ । ତହିଁଉତ୍ତାରୁ ବର୍ଷାଋତୁ ହେଲା । ଝିଣ୍ଟିକାର ରହିବାପାଇଁ ଘର ନାହିଁ, କି ଖାଇବାପାଇଁ ଖାଦ୍ୟ ନାହିଁ । ସେ ଯେଉଁ କିଆରିରେ ବୁଲୁଥିଲା ତାହା ପାଣିରେ ବୁଡ଼ିଗଲା । ଝିଣ୍ଟିକା ଖାଇବାକୁ ନ ପାଇ ଥଣ୍ଡାରେ ମଲା ।

୮ । ପିମ୍ପୁଡ଼ି ଏବଂ ତାହାର ଛୁଆମାନେ ଶୁଖିଲା ସ୍ଥାନରେ ରହିଲେ ଏବଂ ଖୁବ୍ ଖାଇବାକୁ ପାଇଲେ । ପିମ୍ପୁଡ଼ି ଯେଉଁ ଖାଦ୍ୟକୁ ଆଗରୁ ସଞ୍ଚୟକରି ରଖିଥିଲା, ସେମାନେ ତାହା ଖାଇ ବଞ୍ଚିଲେ ।

ଯେତେବେଳେ ଖୁବ୍ ମିଳୁଥିବ ସେହି ସମୟରୁ ନ ମିଳିବା ସମୟପାଇଁ ସଞ୍ଚୟ କରି ରଖିବ ।

---

## ୭—ନିର୍ବୋଧ ମୂଷା

୧ । ଦିନେ ଗୋଟିଏ ମୂଷାଛୁଆ କହିଲା "ମା ! ମୁଁ ଆଜି ବୁଲିବାକୁ ଯାଇଥିଲି । ଗୋଟିଏ ଶ୍ରେଷ୍ଠ ଘର ଦେଖିଆସିଛି । ସେଠାରେ ତୁ ଆଉ ମୁଁ ଦୁହେଁଯାକ ରହିବା ।"

୨ । "ସେ ଘରର କାନ୍ଥ ନୂଆ କାଠରେ ତିଆରି । ତାହାର ଗୋଟିଏ ଦୁଆର ଅଛି । ଘର ଭିତରେ ତଳୁ ଉପରକୁ ଉଚ୍ଚ ହୋଇ ଗୋଟିଏ କାଠ ଅଛି । ମା ! ଚାଲ ସେଠାକୁ ଯିବା । ବୋଧହୁଏ ସେ ଘରେ ଛେନା ଟଙ୍ଗା ହୋଇଅଛି ।"

୩ । ମା କହିଲା "ନାହିଁ, ବାପା ! ଏଇଠାରେ ରହିବା ଭଲ । ଯାହାକୁ ତୁ ସୁନ୍ଦର ଘର ବୋଲି କହୁଛୁ, ମୋର ସନ୍ଦେହ ହେଉଛି ଯେ ସେ ଗୋଟାଏ ଯନ୍ତା ।"

୪ । ଏଥିରେ ମୂଷାଛୁଆର ମନ ମାନିଲା ନାହିଁ । ସେ ମନେ ମନେ ବିରକ୍ତ ହୋଇ ଦାନଯାକ ଘରେ ବସିରହିଲା । ଭାବୁଥାଏ "ମା ଟିକିଏ କେଉଁଆଡ଼େ ଚାଲିଗଲେ ମୁଁ ସେଠାକୁ ଯିବି ।"

୫ । ଶୋଇଲା ବେଳ ହେଲାରୁ ମା ଟିକିଏ ଘୁମାଇ ପଡ଼ିଲା । ସେତେବେଳେ ଛୁଆଟି ସେହି ସୁନ୍ଦର ନୂଆ ଘରକୁ ଚାଲିଗଲା । ସେ ସେହିଘର ଭିତରେ ପଶିଲାକ୍ଷଣି ଯନ୍ତାରେ ପଡ଼ିଗଲା ।

ବଡ଼ ବଡ଼ଙ୍କର କଥା ନ ମାନିଲେ ଲୋକେ ଏହିପରି ବିପଦରେ ପଡ଼ନ୍ତି ।

---

## ୭—ଲୋଭୀ କୁକୁର

୧ । ଦିନେ ଗୋଟିଏ କୁକୁର କଚ୍ଚା ମାଂସ ପାଇ ତାକୁ ଧରିକି ଝଟ୍ ପଳାଇଲା, ମନେ ମନେ ଭାବିଲା, 'ଏକୁଟିଆ ବସି ଏହାକୁ ନିଶ୍ଚିନ୍ତ ହୋଇ ଖାଇବି ।"

୨ । ବାଟରେ ଗୋଟିଏ ଛୋଟ ନଦୀ ପଡ଼ିଲା, ସେହି ନଦୀ ଉପରେ ଗୋଟିଏ ପୋଲ ବନ୍ଧା ହୋଇଥିଲା । ନଦୀର ଜଳ ଦର୍ପଣ ପରି ନିର୍ମଳ । ତହିଁରେ ମୁହଁ ଦିଶୁଥିଲା ।

୩ । ପୋଲ ଉପରେ କୁକୁରଟି ଦୌଡ଼ି ଦୌଡ଼ି ଯାଉଅଛି ଏମନ୍ତ ସମୟରେ ସେ ପାଣିକି ଚାହିଁ ଦେଲା । ନଜର ପଡ଼ିଲା ଦେଖି ତାକୁ ଜଣାଗଲା ଯେମନ୍ତ ଆଉ ଗୋଟିଏ କୁକୁର ଖଣ୍ଡେ ବଡ଼ ମାଂସ ଧରି ପଳାଇ ଯାଉଅଛି ।

୪ । କୁକୁର ମନେ ମନେ ଭାବିଲା "ଏହି ମାଂସ ଖଣ୍ଡିତ ମୋର ମାଂସ ଠାରୁ ବଡ଼ ଦିଶୁଛି । ଏ ଖଣ୍ଡିକ ଛଡ଼ାଇ ନେଲେ ମୋତେ ଆଉ ଖଣ୍ଡିଏ ମାଂସ ଖାଇବାକୁ ମିଳିବ ।"

୫ । ଏପରି ଭାବି, ପାଣିରେ ଯେଉଁ ମାଂସ ଖଣ୍ଡିକ ଦିଶୁଥିଲା, ତାକୁ ଝିଙ୍କି ଆଣିବା-ପାଇଁ ସେ ପାଟି ମେଲି କରିଦେଲା । ଆପଣା ମୁହଁରେ ଯେଉଁ ମାଂସଖଣ୍ଡିକ ଥିଲା, ତାହା ତତ୍କ୍ଷଣାତ୍ ପାଣିରେ ପଡ଼ି ବୁଡ଼ିଗଲା ।

ଲୋଭରେ ପରଠାରୁ ଛଡ଼ାଇବାକୁ ଯାଇ କୁକୁର ପ୍ରକୃତ ମାଂସ ଖଣ୍ଡିକ ବି ହରାଇଲା ।

---

## ୮—ହାତୀ ଓ ଛୋଟ ବାଳକ

୧ । ମାୟାପୁର ନାମରେ ଗୋଟିଏ ଗ୍ରାମ ଅଛି । ସେହି ଗ୍ରାମର ଗୋଟିଏ ଗରିବ ସ୍ତ୍ରୀଲୋକ ପ୍ରତିଦିନ କଦଳୀ ବିକେ । ସେହି ସ୍ତ୍ରୀର ଗୋଟିଏ ଝିଅ ଥିଲା, ତାହାର ବୟସ ଦୁଇବର୍ଷ । ସେ ମା ପାଖରେ ବସିଥାଏ, ଏବଂ ମନ ହେଲେ କେତେ-ବେଳେ କେତେବେଳେ ଦୋକାନ ପାଖରେ ଥିବା ଗଳି ଭିତରକୁ ଦୌଡ଼ି ଯାଏ ।

୨ । ରାଜାଙ୍କର ହାତୀ ଅନେକ ସମୟରେ ସେହି ଗଳି ଭିତରେ ଯିବା ଆସିବା କରେ । ସମୟ ସମୟରେ ସ୍ତ୍ରୀଲୋକଟି ହାତୀର ଖାଇବା ଲାଗି ତାହାର ଝିଅ ହାତରେ ଗୋଟିଏ ଗୋଟିଏ କଦଳୀ ପଠାଇଦିଏ । ବାଳକାଟି ହାତୀ ଦେଖିଲେ ଭୟ କରେ ନାହିଁ । ଯେତେବେଳେ ହାତୀ ତାହାର ହାତରୁ କଦଳୀ ନିଏ, ସେତେବେଳେ ସେ ତାକୁ ଚାହିଁ ଆନନ୍ଦରେ ହସେ ।

୩ । ଦିନେ ହାତୀଟି ବାଯ଼ା ହୋଇଗଲା ଏବଂ ଗାଡ଼ି ଶଗଡ଼ ଭାଙ୍ଗି ସେହି ଗଳିରେ ଦୌଡ଼ିଲାବେଳେ ଲୋକଙ୍କର ଅନେକ କ୍ଷତି କଲା । ଏହା ଦେଖି ଲୋକେ ପଳାଇଗଲେ । ଗରିବ ସ୍ତ୍ରୀଲୋକଟି ମଧ୍ୟ ଗୋଟିଏ ଘର ଭିତରକୁ ଦୌଡ଼ିଗଲା ; କିନ୍ତୁ ଗଲାବେଳେ ଝିଅଟିକୁ ନେଇଯିବାକୁ ଭୁଲିଗଲା ।

୪ । ସମସ୍ତେ ଭାବିଲେ ବାଯ଼ାହାତୀ ବାଳକାଟିକୁ ନିଶ୍ଚୟ ମାରି ପକାଇବ । କିନ୍ତୁ ହାତୀ ଯେତେବେଳେ ଆସି ସେଠାରେ ପହଞ୍ଚିଲା, ସେ ବାଳକାକୁ ନ ମାରି ଯୋଡ଼ପାହାରରେ ଉଠାଇ ନେଇ ତାହାର ମା ହାତକୁ ବଢ଼ାଇଦେଲା । ତେତେବେଳେ ତାହାର ମା ଭୟରେ ଥର ଥର ହୋଇ ଘରର ଦୁଆରେ ଠିଆ ହୋଇଥିଲା । ତହିଁ ଉତ୍ତାରୁ ଗର୍ଜ୍ଜନ କରି ହାତୀଟି ଚାଲିଗଲା ।

---

## ୯—କାକ ଓ କୋକ

୧ । ଦିନେ ଖରା ଗରମ ହେଲା । ସେ ଦିନ ବେଳ ବୁଡ଼ି ଆସୁଅଛି, ଏମନ୍ତ ସମୟରେ ଗୋଟିଏ କୋକି ତାହାର ଗାତରୁ ବାହାରିଲା । ସେ ଦିନଯାକ ଶୋଇ ପଡ଼ି ଥିଲା; ମୋଡ଼ିମାଡ଼ି ହୋଇ କହିଲା, "ବାହାରକୁ ଯାଇ ଖାଇବା ପାଇଁ କିଛି ଆଣିବା; ବେଳ ଉଚ୍ଛୁର ହୋଇଗଲାଣି ।"

୨ । ଠିକ୍ ସେତିକିବେଳେ ଗୋଟିଏ କାକ ଖଣ୍ଡିଏ ମାଂସ ଚୋରି କରି ଆଣି ଉଡ଼ି ଉଡ଼ି ଆସି, ଗୋଟିଏ ଗଛର ଡାଳରେ ବସିଲା ଏବଂ ମାଂସ ଖଣ୍ଡିକ ଖାଇବାକୁ ଆରମ୍ଭ କଲା ।

୩ । କୋକି ସେତେବେଳେ ଗଛ ମୂଳରେ ବୁଲୁଥିଲା । କାକ ଉପରେ ତାହାର ଦୃଷ୍ଟି ପଡ଼ିବାରୁ ସେ ଥକା ହୋଇ ଠିଆ ହେଲା, ଏବଂ ଗଛଉପରକୁ ମୁହିଁ ଓଠ ଚାଟିଲା । ସେ ମନେ ମନେ ଭାବୁଥାଏ, ଆଃ ମାଂସ ଖଣ୍ଡିକ ମିଳିଲେ ଖାଆନ୍ତି । ତାହା ବଡ଼ ଦିଶୁ ନାହିଁ ସତ୍ୟ, କିନ୍ତୁ ଏ ମେଉଁ କାଳ ପଡ଼ିଲାଣି ସେଥିରେ କଳେ ମିଳିଲେ ଖୁବ୍ ମିଳିଲା । ସେତିକି ପାଇଲେ ଆପଣାକୁ ଧନ୍ୟ ମନେ କରିବା ଉଚିତ ।

୪ । ସେଠାରେ ବସିଯାଇ ଭାବିଲା, "ଯେବେ କାକଟି ଧରା ପଡ଼ନ୍ତା କେବଳ ତାହାର ମାଂସ ଖଣ୍ଡିକ ଖାନ୍ତି ନାହିଁ, ତାକୁ ବି ଖାନ୍ତି । ସେ ତ ପାଖରେ ନାହିଁ ।" ସେ ଏହିପରି ଭାବୁଛି, ତାହାର ନିଜ ମାତାର ଗୋଟିଏ କଥା ତାହାର ମନେ ପଡ଼ିଲା । କୋକିର ମାତା ବଡ଼ ଧୂର୍ତ୍ତ ; ସେ ଅନେକ କୌଶଳ ଜାଣିଥିଲା । ସେ ଥରେ କୋକିକୁ କହିଥିଲା,"ପକ୍ଷୀମାନେ ନିତାନ୍ତ ଓଲୁ । ଥରେ ମୁଁ ଗୋଟିଏ ସୁନ୍ଦର ମାଉଁସିଆ କୁକୁଡ଼ା ଦେଖି ତାକୁ କହିଲି, ତୁ ତ ବଡ଼ ସୁନ୍ଦର ଦିଶୁଛୁ ।' ଏହା ଶୁଣି ସେ ମୋ ପାଖକୁ ଆଇଲା । ସେ ଆଇଲାକ୍ଷଣି ମୁଁ ତାକୁ ମାଡ଼ି ବସି ଖାଇଲି ।"

୫ । ଏହା ଭାବି କୋକି ଗଛ ଉପରକୁ ମୁହିଁ କାକକୁ କହିଲା, "ଆଃ ! ତୁ କେଡ଼େ ସୁନ୍ଦର ଦିଶୁଛୁ । ନିଶ୍ଚୟ ତୁ ପକ୍ଷୀମାନଙ୍କର ରାଣୀ । ତୋର ପକ୍ଷଗୁଡ଼ିକ କେଡ଼େ ସୁନ୍ଦର । ତୋର ଚକ୍‌ଚକିଆ କଳା ଡେଣା ଓ ଲାଞ୍ଜପରି ସୁନ୍ଦର ପଦାର୍ଥ ମୁଁ ଆଉ ଦେଖିନାହିଁ ।"

୬ । କାକ ଏପରି ପ୍ରଶଂସା ଆଉ କେବେ ଶୁଣି ନ ଥିଲା । ସେ ଭାରି ଖୁସି ହୋଇ ସ୍ଥିର ଭାବରେ ବସି ରହିଲା । କିଛି କହିଲା ନାହିଁ ।

୭ । କୋକିର ଇଚ୍ଛା ସେ ସେ ପାଟି ଫିଟାଉ । ତେଣୁ ସେ କହିଲା "ହେ ପକ୍ଷୀମାନଙ୍କ ରାଣି ! ମୁଁ ଶୁଣିଛି ତୋର ସ୍ୱର ବଡ଼ ମଧୁର । ଲୋକେ କହନ୍ତି ତୋର କଣ୍ଠର ମଧୁରତା ସହିତ ତୁଳନା କଲେ ସାରୀର କଣ୍ଠ ଅଧେ ବି ନୁହେଁ । ତୋର ସେହି ମଧୁର ସଙ୍ଗୀତ ମୋତେ ଟିକିଏ ଶୁଣାଇଲୁ ।"

୮ । ନିର୍ବୋଧ କାକ ଏହା ଶୁଣି ଏଡ଼େ ଖୁସି ହେଲା ଯେ ଆପଣା ଥଣ୍ଟରେ ମାଂସ ଥିବା ଭୁଲିଯାଇ ବୋବାଇବା ପାଇଁ ଥଣ୍ଟ ମେଲାଇଲା । ସେ କା କା ବୋବାଇବା ମାତ୍ରେ ମାଂସ ଖଣ୍ଡି ଖସି ପଡ଼ିଲା ।

୯ । ସେତେବେଳକୁ କୋକ ଭୋକିଲା ହୋଇ ଆଁ କରି ବସିଥାଏ । ମାଂସ ଖଣ୍ଡିକ କାକର ଥଣ୍ଟରୁ ଖସି କୋକର ପାଟିରେ ପଡ଼ିଲା । କୋକ ହସି ହସି ଅଧନିଶ୍ୱାସ ହୋଇ ଯାଉଥିଲେ ହେଁ ମାଂସ ଖଣ୍ଡିକ ପାଇଲାକ୍ଷଣି ଝାଉ କରି ଗିଳିଦେଲା ।

## ୧୦—ସତ୍ୟର ମାଳୀ

୧ । ବହୁକାଳ ପୂର୍ବେ ବଙ୍ଗଦେଶରେ ଅବ୍‌ଦୁଲ୍ଲା ନାମରେ ଜଣେ ଧନୀ ମହାଜନ ଥିଲେ । ସେ ଅତି ଉତ୍ତମ ଲୋକ, ସାଧୁ ଏବଂ ସତ୍ୟବାଦୀ । ସମସ୍ତେ ତାଙ୍କୁ ଭଲ ପାଉଥିଲେ ଏବଂ ଭଲ ବୋଲି କହୁଥିଲେ । ଗ୍ରାମର ସେ ମୁଖ୍ୟ ଲୋକ ଥିଲେ । ବହୁତ ସମ୍ପତ୍ତି ଥିଲେ ହେଁ ତାଙ୍କର ମନରେ ଗୋଟିଏ ବେଦନା ଥିଲା । ତାହାଙ୍କର ଏକମାତ୍ର ପୁଅର ନାମ କାସିମ୍ । ତାହାର ବୟସ ୧୨ ବର୍ଷ । ସେ ବିଦ୍ୟାଳୟରେ ପଢ଼େ । ତାହାର ଗୋଟିଏ ମନ୍ଦ ଅଭ୍ୟାସ ଥିଲା ଯେ ସେ କେବେହେଁ ଠିକ୍ ସତ୍ୟ କଥା କହେ ନାହିଁ ।

୨ । ପିଲାଟି ବଡ଼ ବୁଦ୍ଧିମାନ୍, ଭଲ ପଢ଼େ । କିନ୍ତୁ କେହି ତାହାର କଥାରେ ବିଶ୍ୱାସ କରନ୍ତି ନାହିଁ । ଗଛରେ ସେ ଯଦି ଗୋଟିଏ ଫଳ ଦେଖେ, କହେ 'ମୁଁ କୋଡ଼ିଏଟି ଦେଖିଅଛି ।'' ଯେବେ ତାହାର ପିତାଙ୍କ ଦୋକାନକୁ କୋଡ଼ିଏ ଜଣ ଗରାଖ ଆସିଥାନ୍ତି, ତେବେ ସେ କହେ, ''ପଚାଶ ଜଣ ଆସିଥିଲେ ।'' ଯେବେ ସେ ପିତାଙ୍କ ଠାରୁ ଚାରିଅଣା ପଇସା ପାଏ, ତେବେ ସେ ପିଲାମାନଙ୍କୁ କହେ, ମୁଁ ଚାରିଟଙ୍କା ପାଇଅଛି ।

୩ । ସେ ଦେଶରେ ଜଣେ ଧାର୍ମିକ ଫକୀର ଥିଲେ । ସେ ନାନା ଆଶ୍ଚର୍ଯ୍ୟଜନକ କାର୍ଯ୍ୟ କରୁଥିଲେ । ଦିନେ ସେ ମହାଜନଙ୍କ ଘରକୁ ଆସିବାରୁ ଅବ୍‌ଦୁଲ୍ଲା ତାହାଙ୍କୁ ବଡ଼ ଆଦରରେ ଖାଇବାକୁ ଦେଇ ଆଶୀର୍ବାଦ କରିବାକୁ କହିଲେ । ତହିଁ ଉତ୍ତାରେ ସେ ନିଜର ପୁଅ କାସିମ୍‌ର କଥା କହି ଫକୀରଙ୍କୁ ପଚାରିଲେ, ଆପଣ ତାହାର ମନ୍ଦ ଅଭ୍ୟାସ ଛଡ଼ାଇଦେଇ ପାରିବେ କି ?'' ଫକୀର କହିଲେ ଈଶ୍ୱରଙ୍କ କୃପା ହେଲେ ସେ ଅଭ୍ୟାସ ଚାଲିଯିବ । ମୁଁ ତାହାର ଅଭ୍ୟାସ ଛଡ଼ାଇବା ପାଇଁ ଯତ୍ନ କରିବି । ତାକୁ ମୋ ପାଖକୁ ପଠାଇଦିଅ । ନିର୍ଜନରେ ମୁଁ ତାକୁ କିଛି କହିବି ।''

୪ । କାସିମ୍ ଅଇଲାରୁ ଫାଟକରେ ବାହାରିଲେ ଯାଇ ଫକୀର ତାହା ସଙ୍ଗେ ଦେଖା-କଲେ । ବାଳକକୁ କହିଲେ ''ବାବା ! ମୁଁ ତୁମ୍ଭଙ୍କୁ କିଛି ଦେବି ।'' ଏହା କହି ସେ ଗୋଟିଏ ମୋତିର ମାଳା ମୁଣ୍ଡିରୁ ବାହାର କରି ବାଳକର ବେକରେ

ପିନ୍ଧାଇ ଦେଇ କହିଲେ, ଏହାକୁ ପିନ୍ଧ । କେବେହେଁ ଏହାକୁ ବାହାର କରିବ ନାହିଁ । ମୋ ଛଡ଼ା ଆଉ କେହି ଏହାକୁ ବାହାର କରିବେ ନାହିଁ । ତିନି ମାସ ଭିତରେ ମୁଁ ପୁଣି ଆସି ମାଳକୁ ନେଇଯିବି । ଏହାକୁ ପିନ୍ଧିଲେ ତୁମ୍ଭର ଅପକାର ନ ହୋଇ ଉପକାର ହେବ ।" ଏହା କହି ସେ ବାଳକଟିର ମୁଣ୍ଡରେ ହାତ ବୁଲାଇଲେ ଏବଂ ତାକୁ ଆଶୀର୍ବାଦ କରି ଚାଲିଗଲେ ।

୫ । ଏ ମାଳଟିର ବଡ଼ ଅଦ୍ଭୁତ ଗୁଣ । ଏହାପୂର୍ବେ ଅନେକ ଧାର୍ମିକ ଲୋକ ଏହାକୁ ପିନ୍ଧିଥିଲେ । ଏହି ମାଳର ନାମ 'ସତ୍ୟ ମାଳ' । ପିନ୍ଧିବା ଲୋକ ଯେତେ-ବେଳଯାଏ ସତ୍ୟ କହୁଥାଏ, ମାଳର ଆକୃତି ଯେଉଁକି ସେଉଁକି ଥାଏ; କିନ୍ତୁ ମିଛ କହିଲାକ୍ଷଣି ମାଳଟି ବଡ଼ ହୋଇଯାଏ ।

୬ । କାସିମ୍ ମାଳ ପିନ୍ଧି ତାକୁ ଦେଖାଇବା ପାଇଁ ବିଦ୍ୟାଳୟକୁ ଦୌଡ଼ିଗଲା । ସେଠାରେ ପିଲାମାନଙ୍କୁ ସେ କହିଲା, "ଦେଖ, ମୋର ମାଳଟି କେଡ଼େ ସୁନ୍ଦର ।" ସମସ୍ତେ କହିଲେ "ବାହାବା, ମାଳଟି ପ୍ରକୃତରେ ବଡ଼ ସୁନ୍ଦର । ତୁମ୍ଭେ ଏହାକୁ କେଉଁଠାରୁ ପାଇଲ ?" କାସିମ୍ କହିଲା, "ବାବା କାଲି ଦୁଇହଜାର ଟଙ୍କାରେ କିଣି ମୋତେ ଦେଇଅଛନ୍ତି ।" ସେ ଏହା କହିଲା ମାତ୍ରେ ମାଳଟି ଟିକେ ଲମ୍ବ ହୋଇଗଲା । ଏହା ଦେଖି ପିଲାମାନେ ବଡ଼ ଆଶ୍ଚର୍ଯ୍ୟାନ୍ୱିତ ହେଲେ ଏବଂ କାସିମ୍ ଡରିଗଲା । ସେ କହିଲା, "ନା,ନା, ମୁଁ ତୁମ୍ଭମାନଙ୍କୁ ସତ୍ୟ କହି ନାହିଁ । ଜଣେ ଧାର୍ମିକ ଫକିର ମୋତେ ଏହା ଦେଇ ଅଛନ୍ତି ।" ସେ ଏହା କହିଲା କ୍ଷଣି, ମାଳଟି ଯେଉଁକି ଥିଲା, ସେଉଁକି ହୋଇଗଲା ।

୭ । ପିଲାମାନେ ପଚାରିଲେ, "ଫକୀର କାହିଁକି ତୁମ୍ଭକୁ ଏହା ଦେଲେ ?" କାସିମ୍ କହିଲା । ମୁଁ ସତ୍ୟ କହୁଥିବାରୁ ସେ ଏହା ପୁରସ୍କାର ସ୍ୱରୂପ ମୋତେ ଦେଇ ଅଛନ୍ତି ।" ଏହି କଥା ତାହାର ତୁଣ୍ଡରୁ ବାହାରିବା ମାତ୍ରେ ମାଳଟି ପୁଣି ଲମ୍ବ ହୋଇଗଲା । ପିଲାମାନେ ପୂର୍ବଠାରୁ ଅଧିକ ଆଶ୍ଚର୍ଯ୍ୟାନ୍ୱିତ ହେଲେ ଏବଂ କାସିମ୍ ଗୋଟାଯାକ ଥରିଲା । ସେ କହିଲା, "ନା,ନା, ମୁଁ ସତ୍ୟ କହୁଥିବାରୁ ସେ ମୋତେ ଏହା ଦେଇ ନାହାନ୍ତି । ସେ ମୋତେ କହିଲେ, ତିନିମାସ ପର୍ଯ୍ୟନ୍ତ ଏହାକୁ ପିନ୍ଧିଥିବ ।" କାସିମ୍ ଏହା କହିଲାକ୍ଷଣି ମାଳଟି ପୂର୍ବବତ୍ ଛୋଟ ହୋଇଗଲା ।

୮ । ଏଥରେ ପିଲାମାନେ ମାଳର ଅଦ୍ଭୁତ ଗୁଣ ବୁଝିପାରିଲେ । କାସିମ୍‌କୁ ମଧ୍ୟ ଭୟ ହେଲା । ସେ ଏହାକୁ ଓହ୍ଲାଇ ପକାଇବାକୁ ଚେଷ୍ଟା କଲା ମାତ୍ର ମାଳଟି ବାହାରିଲା ନାହିଁ । ସୁତରାଂ, କାସିମକୁ ତାହା ପିନ୍ଧିବାକୁ ହେଲା ।

ଯେତେବେଳେ ସେ ମିଛକଥା କହୁଥିଲା, ସେତେବେଳେ ମାଳଟି ବଡ଼ ହୋଇ ଯାଉଥିଲା । ଏଥିରୁ ଲୋକେ ଅନାୟାସେ ଜାଣି ପାରୁଥିଲେ ଯେ ସେ ମିଥ୍ୟା କହୁଅଛୁ । ମାସକ ଭିତରେ କାସିମ୍ ପୂର୍ବାପେକ୍ଷା ସତ୍ୟବାଦୀ ହୋଇଗଲା । ଦୁଇମାସ କାଳ ସେ ସବୁବେଳେ ସତ୍ୟ କହିଲା ।

୯ । ତିନମାସ ପୂର୍ଣ୍ଣ ହେଲାବେଳକୁ ଫକିର ଫେରି ଆସିଲେ । ତାଙ୍କର ଦୟା ଲଗି ଅବଦୁଲ୍ଲା ତାଙ୍କୁ ଧନ୍ୟବାଦ ଦେଇ କହିଲେ, "ମହାଶୟ ! ଆପଣଙ୍କର ଅଦ୍ଭୁତ କ୍ଷମତା, ଆପଣ ମୋର ପିଲାଟିର ମିଛ କହିବା ଅଭ୍ୟାସ ଛଡ଼ାଇ ଦେଇ ଅଛନ୍ତି । ସେ ଆଜି କାଲି ସବୁବେଳେ ସତ୍ୟ କହୁଅଛୁ ।" ଫକୀର କହିଲେ, "ଈଶ୍ୱରଙ୍କୁ ଧନ୍ୟବାଦ ଦିଅ । ତୁମ୍ଭର ପୁତ୍ର ନିମନ୍ତେ ମୋର ପ୍ରାର୍ଥନା ସେ ଶୁଣିଅଛନ୍ତି । ତାହାଙ୍କ କୃପାରୁ ତୁମ୍ଭର ପୁତ୍ର ସତ୍ୟବାଦୀ ହୋଇଅଛୁ । ତାକୁ ଆଉ ମାଳ ପିନ୍ଧିବାକୁ ହେବ ନାହିଁ ।" ଏହା କହି ସେ ସତ୍ୟର ମାଳଟି ନେଇ ମୁଣ୍ଡରେ ଭକ୍ତି କରି ଚାଲିଗଲେ ।

୧୦ । ଯେଉଁ ବାଳକମାନେ ଏହି ଗଳ୍ପ ପଢୁଅଛନ୍ତି, ସେମାନେ ସତ୍ୟ କହନ୍ତି କି ? ଯେବେ ସେହି ଅପୂର୍ବ ମାଳକୁ ସେମାନଙ୍କ ଗଳାରେ ଦିଆଯିବ, ତେବେ ତାହା ବଡ଼ ହୋଇଯିବ, ନା ଯେତିକି ଅଛୁ ସେତିକି ରହିବ ?

---

## ୧୧—ବ୍ୟାଧ ଏବଂ କପୋତ

୧ । ଦକ୍ଷିଣ ଦେଶରେ ବନରେ ଗୋଟିଏ ବଟବୃକ୍ଷ ଉପରେ କପୋତ ଓ କପୋତୀ ଦୁହେଁ ବସା କରିଥାଆନ୍ତି । ସେମାନେ ବହୁକାଳରୁ ନିଜର ପିଲାଗୁଡ଼ିକ ସେନି ଏକତ୍ର ବାସ କରି ସୁଖରେ ଦିନ କାଟୁଥିଲେ ।

୨ । ଦିନେ ଗୋଟିଏ ବ୍ୟାଧ ସେହି ବନରେ ପଶୁଥିଲା । ତାହାର ହାତରେ କାଣ୍ଡ, କାଣ୍ଡ-ବାଉଁଶ ଥାଏ, ଏବଂ ସେହି କାନ୍ଧରୁ ଖଣ୍ଡିଏ ଜାଲ ଝୁଲୁଥାଏ । ସେ ଦିନଯାକ ବହୁତ ବୁଲିଲା ; ମାତ୍ର ତାକୁ ଶିକାର ମିଳିଲା ନାହିଁ, କାରଣ ପକ୍ଷୀ-ମାନେ ତାକୁ ଦେଖିଲାକ୍ଷଣି ଉଡ଼ି ପଳାଉଥିଲେ ।

୩ । ଶେଷରେ ସେ ଗୋଟିଏ ବଟବୃକ୍ଷ ମୂଳରେ ଆସି ଠିଆ ହେଲା । ଉପରକୁ ଚାହିଁ ଦେଖିଲା ଯେ ଯୋଡ଼ିଏ କପୋତ ଲଗାଲଗି ହୋଇ ବସି ଅଛନ୍ତି । ସେମାନଙ୍କୁ ଦେଖିଲାକ୍ଷଣି ସେ ଧନୁରେ ଶର ଯୋଖି ବିନ୍ଧିବାକୁ ପ୍ରସ୍ତୁତ ହେଲା ।

୪ । ଏହା ଦେଖି ନିରାଶ୍ରୟ କପୋତକପୋତୀ ବଡ଼ ଭୀତ ହେଲେ ; ମାତ୍ର ଉଡ଼ିଯାଇ ପାରିଲେ ନାହିଁ; କାରଣ ସେତେବେଳେ ଗୋଟିଏ ବାଜ ସେମାନଙ୍କ ମୁଣ୍ଡ ଉପରେ ଉଡ଼ୁଥିଲା । ସେମାନଙ୍କର ଭୟ ହେଲା, ଉଡ଼ିଲେ କାଳେ ବାଜ ସେମାନଙ୍କୁ ମାଡ଼ିବସିବ ।

୫ । ଏହିପରି ସଙ୍କଟରେ ପଡ଼ି ସେମାନେ ଆଖି ବୁଜି ପ୍ରାଣ ପଣ ମନରେ ଈଶ୍ୱରଙ୍କୁ ପ୍ରାର୍ଥନା କଲେ । ସେମାନଙ୍କୁ ଚାହିଁଲେ ବୋଧ ହେଉଥିଲା, ଯେପରି କି ଜୀବନରେ ସେମାନଙ୍କ ଆଶା ନାହିଁ । ଦୟାମୟ ପ୍ରଭୁ ସେମାନଙ୍କର ଜୀବନ ରକ୍ଷା କଲେ ।

୬ । ବ୍ୟାଧ କାଣ୍ଡ ବିନ୍ଧିବାକୁ ବସିଅଛି, ଏହି ସମୟରେ ହଠାତ୍ ଗୋଟିଏ ନାଗ ସାପ ବିଲରୁ ବାହାରି ଆସି ତାହାର ପାଦରେ ଚୋଟ ମାରିଲା । ସେ ଚମକି ପଡ଼ି ଏକ ପାଖିଆ ହୋଇ ଯିବାରୁ କାଣ୍ଡ ଗଛ ଆଡ଼କୁ ନ ଯାଇ, ଆକାଶକୁ ବାହାରିଗଲା । ତାହା କପୋତ-କପୋତୀଙ୍କ ଦେହରେ ନ ବାଜି, ବାଜ ଦେହରେ ବାଜିବାରୁ ବାଜଟା ତତ୍‌କ୍ଷଣାତ୍ ମରିଗଲା । ଏଣେ ବ୍ୟାଧଟା ସାପ କାମୁଡ଼ାରେ ମଲା ।

"ଯାହାକୁ ରଖିବେ ଅନନ୍ତ
କି କରିପାରେ ବଳବନ୍ତ ।"

———

## ୧୬—କୋକି ଓ ଢୋଲ

୧ । ଦିନେ ସକାଳେ ଗୋଟିଏ ଭୋକିଲା କୋକି ଆହାର ଖୋଜି ବୁଲୁଥିଲା । ସେ ଦେଖିଲା ଯେ ଗୋଟିଏ ଚୋଟ ପକ୍ଷୀ ତଳେ ବସିଅଛି ।

୨ । କୋକି ମନେ ମନେ ଭାବୁଥିଲା ଦୌଡ଼ିଯାଇଁ ତାକୁ ଧରି ପକାଇବ । ଏହି ସମୟରେ ସେ ଦୈବାତ୍ ଉପରକୁ ଚାହିଁ ଦେଖିଲା ଯେ ଗଛରେ ଗୋଟାଏ ଢୋଲ ଝୁଲୁଅଛି । କୌଣସି ଲୋକ ଗଛ ଉପରେ ଢୋଲଟି ଝୁଲାଇ ଦେଇ ଯାଇଥିଲା । କୋକି ଜୀବନରେ କେବେହେଁ ଢୋଲ ଦେଖି ନ ଥିଲା; ତେଣୁ ସେ ମନେ ମନେ ଭାବିଲା ତାହା ମାଉଁସିଆ ବଡ଼ ଜନ୍ତୁଟିଏ ହେବ ।

୩ । ସେ ତାହାକୁ ମାରି ଖାଇବ ବୋଲି ବିଚାର କଲା । ସେ କୁଦା ମାରି ଢୋଲକୁ ତଳେ ଖସାଇ ପକାଇଲା ଏବଂ ଚମଡ଼ାକୁ ଦାନ୍ତରେ କାଟି ପକାଇ ଦେଖିଲା ଯେ ଭିତରଟା ଫମ୍ପା ।

୪ । ଢୋଲଟା ତଳେ ପଡ଼ିଯିବାରୁ ଭାରି ଶବ୍ଦ ହେଲା । ତାହା ଶୁଣି ପକ୍ଷୀଟି ଉଡ଼ିଗଲା । ଯେବେ ଢୋଲ ତଳେ ପଡ଼ି ନ ଥାନ୍ତା, ତେବେ ପକ୍ଷୀଟି ସେହିଠାରେ ବସିଥାନ୍ତା ଏବଂ କୋକି ତାକୁ ଖାଇଥାନ୍ତା ।

୫ । ତେତେବେଳେ କୋକି ମନେ ମନେ ଭାବିଲା "ମୁଁ ତ ବଡ଼ ମୂର୍ଖ; ଅତି ଲୋଭ କଲି ଯେ ଏ କୂଳ ହେଲି ନାହିଁ କି ସେ କୂଳ ହେଲି ନାହିଁ । ଫମ୍ପା ଢୋଲଟାକୁ ଲୋଭ ନ କରି ଛୋଟ ଚଢ଼େଇଟିକି ଧରି ଖାଇଥିଲେ ଭଲ ହୋଇଥାନ୍ତା ।"

---

## ୧୩—ଭଲ୍ଲୁକ ଓ ପଥିକ

୧ । ଭଲ୍ଲୁକ ଗୋଟିଏ ବନ୍ୟ ଜନ୍ତୁ । ସେ ବଣରେ ଥାଏ, ଫଳମୂଳ ଖାଏ । ମନୁଷ୍ୟ ପାଇଲେ ମାରେ; କିନ୍ତୁ ମଲା ମଣିଷକୁ ଛୁଏଁ ନାହିଁ ।

୨ । ଦିନେ ରାମ ଶ୍ୟାମ ଦୁହେଁ ସଙ୍ଗୀ ହୋଇ ବନ ମଧ୍ୟରେ ଯାଉଥିଲେ ।

୩ । ଶ୍ୟାମ କହିଲା, "ମୋତେ ଡର ମାଡ଼ୁଛି । ବାଘ କି ଭାଲୁଟାଏ ବାହାରିଲେ କଅଣ କରିବା ?" ରାମ କହିଲା, "କିଛି ଚିନ୍ତା କରନାହିଁ, ମୁଁ ଅଛି । ମୋତେ ବିଶ୍ୱାସ କର । ମୁଁ କାହାରିକି ଭୟ କରେ ନାହିଁ ।"

୪ । ରାମ ଏହା କହୁଅଛି, ଏମନ୍ତ ସମୟରେ ବଣ ଭିତରୁ ଭାଲୁଟାଏ ବାହାରି ପଡ଼ିଲା । ତାହା ଦେଖି ରାମ ଡରି ଡରି ହୋଇ ଗଛ ଉପରକୁ ଚଢ଼ିଯାଇ ଡାଳପତ୍ର ଭିତରେ ଲୁଚି ରହିଲା । ଶ୍ୟାମ ମଲା ମନୁଷ୍ୟ ପରି ତଳେ ପଡ଼ିଗଲା । ତାହାକୁ ଜଣାଥିଲା ଯେ ଭାଲୁମାନେ ମଲା ମନୁଷ୍ୟକୁ ଛୁଅନ୍ତି ନାହିଁ ।

୫ । ଭାଲୁ ଆସି ଶ୍ୟାମର ମୁହଁ କାନ ଶୁଙ୍ଘିଲା । ଶ୍ୟାମ ସ୍ଥିର ହୋଇ ପଡ଼ିଥାଏ, ହଲଚଲ ହେଉ ନ ଥାଏ । ଗୋଟାଏ ମଲା ମନୁଷ୍ୟ ପଡ଼ିଅଛି ଭାବି ଭାଲୁ ତାକୁ ଛାଡ଼ି ଚାଲିଗଲା । ରାମ ଗଛଡାଳରେ ଲୁଚିଥିବାରୁ ଭାଲୁ ତାକୁ ଦେଖିପାରିଲା ନାହିଁ ।

୬ । ଭାଲୁ ବାହାରି ଯିବାରୁ ରାମ ଧୀରେ ଧୀରେ ଗଛରୁ ଓହ୍ଲାଇ ଆସିଲା ଏବଂ ଶ୍ୟାମ ଉଠି ବସିଲା । ରାମ ତା'ର ସଙ୍ଗୀକୁ କହିଲା, "ମୁଁ ଦେଖିଛି ଭାଲୁ ତୁମର କାନ ପାଖରେ ମୁହଁ ଲଗାଇଥିଲା । ସେ ତୁମକୁ କଅଣ କହୁଥିଲା କି ?"

୭ । ଶ୍ୟାମ ଉତ୍ତର ଦେଲା, "ଖାଲି ମୋତେ କହିଗଲା ଯେଉଁ ଲୋକ ପୂର୍ବରୁ ସାହସ ଦେଇ, ବିପଦ ପଡ଼ିବା ମାତ୍ରେ ଛାଡ଼ି ପଳାଏ, ସେପରି ଲୋକକୁ ଆଉ ବିଶ୍ୱାସ କରିବ ନାହିଁ ।

ଯେଉଁ ଲୋକ ବହୁତ କହେ, ସେ ଅଳ୍ପ କାର୍ଯ୍ୟ କରେ ।

---

## ୧୪—କୋକି ଓ ବକ

୧ । ଗୋଟିଏ ଖେଳାଳି କୋକି ଦିନେ ଗୋଟିଏ ବକ ଦେଖି ତାକୁ ତାହା ସହିତ ଖାଇବାକୁ ଡାକିଲା । ବକ କୋକିର କଥାରେ ଖୁସି ହୋଇ କହିଲା, "ତୁମ୍ଭ ସଙ୍ଗରେ ଭୋଜନ କରିବ, ମୋର ବହୁ ଭାଗ୍ୟ ।"

୨ । କୋକି ଯେଉଁ ଦିନରେ ଭୋଜନ କରିବାକୁ ଡାକିଥିଲା, ବକ ସଫା ସୁତୁରା ହୋଇ ସେହିଦିନ କୋକିର ଗାତରେ ଯାଇ ପହଞ୍ଚିଲା । ଆଗରୁ ରନ୍ଧା ସରିଥିଲା, ବକ ପହଞ୍ଚିବା ମାତ୍ରେ ବଢ଼ାଗଲା । ଝୋଳଟି ବଡ଼ ଭଲ ହୋଇଥିଲା ଏବଂ ତାହାର ବାସନାରେ ବକକୁ ଦ୍ୱିଗୁଣ ଭୋକ ଲାଗିଲା । କୋକି ଝୋଳକୁ ଏତେ ବଡ଼ ଫର୍ଚା ଥାଳୀରେ ବାଢ଼ିଥିଲା ଯେ ତହିଁରେ ବକର ଥଣ୍ଟ ନାମ ମାତ୍ର ବୁଡ଼ୁଥାଏ, ତେଣୁ ଟୋପାଏ କି ଦୁଇଟୋପା ମାତ୍ର ଭିତରକୁ ଆସୁଥାଏ ।

୩ । ଏହା ଦେଖି କୋକିର ବଡ଼ ଆନନ୍ଦ । ସେ ତରବର ହୋଇ ଝୋଳତକ ଚାଟିବାରେ ଲାଗିଥାଏ, ଏବଂ ଖାଉଥିବା ବେଳେ ଥରେ ଥରେ ବକକୁ ପଚାରୁଥାଏ "କିପରି ଲାଗୁଛି ? ତୁମ୍ଭଙ୍କୁ ଭୋକ କଲା ପରି ତ ବୋଧ ହେଉନାହିଁ । ଝୋଳଟା ଭଲ ଲାଗୁଛି ବୋଲି କହୁଛ, ମାତ୍ର କଅଣ ଟିକିଏ କରି ଖାଉଛ, ଏଥିରୁ ଝୋଳ ଭଲ ହୋଇଅଛି ବୋଲି ମୋର ବିଶ୍ୱାସ ହେଉନାହିଁ ।"

୪ । ବକ ଦେଖିଲା ଯେ କୋକି ତାକୁ ଥଟ୍ଟା କରିବାରେ ଲାଗିଅଛି । ସେ ଏତିକି ମାତ୍ର କହିଲା, "ଝୋଳଟା ବଡ଼ ଭଲ ହୋଇଅଛି ।" ସେ କୋକିକୁ ତହିଁ ଆରଦିନ ନିମନ୍ତ୍ରଣ କଲା । ସେ ତାକୁ ଏତେ ବଳାଇଲା ଯେ କୋକି ତାହାର କଥା ଭାଙ୍ଗି ପାରିଲା ନାହିଁ । ବକ କୋକିକୁ ଧନ୍ୟବାଦ ଦେଇ ଫେରିଆସି ଆପଣା ଘରେ ଭୋଜନ କଲା ।

୫ । ତହିଁ ଆରଦିନ କୋକି ବକ ଘରେ ନିମନ୍ତ୍ରଣ ରକ୍ଷା କରିବାକୁ ଗଲା । ସେ ଆପେ ଆପଣାକୁ କହୁଥାଏ, "ବକଟି ବଡ଼ ଶାନ୍ତ ତାହା ସଙ୍ଗରେ ମେ ନେତେ ଲଗାଉ

ପଚ୍ଛକେ, ସେ ସବୁ ସହେ । ସେ ଆଗରୁ ଭଲ ଭଲ ପଦାର୍ଥର ଆୟୋଜନ କରିଥିବ, ନୋହିଲେ ସେ ମୋତେ ନିମନ୍ତ୍ରଣ କରନ୍ତା ନାହିଁ । କୁଣ୍ଡା ବକର ଘରକୁ ଗଲେ ଭଲ ପଦାର୍ଥ ଖାଇବାକୁ ମିଳିବ ।'' ଏହିପରି ଭାବୁ ଭାବୁ କୋକର ବିଶେଷ କ୍ଷୁଧା ହେଲା ।

୬ । ବକର ଥଣ୍ଟ ସରୁ, ତେଣୁ ତାହାର ଖାଦ୍ୟ ପଦାର୍ଥ ସରୁ ସରୁ ହୋଇ କଟା ହୁଏ । ଏପରି ଗୋଟିଏ ଲମ୍ବା ସରୁ ମୁହଁା ନଳିଆ ପାତ୍ରରେ ଖାଦ୍ୟ ବଢ଼ାଗଲା ଯେ ତହିଁ ଭିତରେ କୋକର ମୁହଁ ନାକ ପଶି ପାରିଲା ନାହିଁ । ବକ କହିଲା, "ଲାଜ ଲାଜ କାହିଁକି କରୁଛ ? ଏ କଣ ତୁମ୍ଭର ଘର ନୁହେଁ ? ତୁମ୍ଭଙ୍କୁ ମୋ ଘର ଖାଦ୍ୟ ଅବଶ୍ୟ ଭଲ ଲାଗିବ । ଭଲକରି ଖାଅ ।''

୭ । ଏହା କହି ବକ ପାତ୍ରର ମୁହଁରେ ଥଣ୍ଟ ପୂରାଇ ଖାଇବାକୁ ଆରମ୍ଭ କଲା । କୋକ ବୋକା ପରି ଚାହିଁଥାଏ, ପାତ୍ରର ଚାରିପାଖ ଚାଟୁଥାଏ ।

୮ । ବକ ମୁରୁକି ହସା ଦେଇ କହିଲା, "ମୋତେ ବଡ଼ ଖୁସି ଲାଗୁଛି । ତୁମ୍ଭଙ୍କୁ ଯେ ଏଡ଼େ କ୍ଷୁଧା ହେଉଅଛି ସେଥିରେ ମୋର ବଡ଼ ଆନନ୍ଦ । କାଲି ତୁମ୍ଭ ଘରେ ମୁଁ ଯେପରି ଆନନ୍ଦରେ ଖାଇଥିଲି, ଆଜି ତୁମ୍ଭେ ମୋ ଘରେ ସେହିପରି ଖାଇଲ ।"

୯ । ଭୋକ ହେଲାବେଳେ କୋକମାନେ ବଡ଼ ରାଗନ୍ତି । ତେଣୁ କୋକଟି ରାଗରେ ଜର୍ଜର ହୋଇ କହିଲା, "ବେଳ ପଡ଼ିଲେ ଥରେ ମୁଁ ବୁଝିନେବି ।"

୧୦ । ବକ କହିଲା "କାଲି ଖାଇଲାବେଳେ ମୋ ପ୍ରତି ଯେପରି ବ୍ୟବହାର କରିଥିଲ, ତାହା ମନେ ପକାଅ । ସେତେବେଳେ ମୁଁ ମନେ କଲି ଦିନଟାଏ ଖାଇବାର ନ ହେଲା ତ ନାହିଁ, ରାଗିଲେ ଲାଭ କଅଣ ? ଯେ ଥଟ୍ଟା ନ ସହେ ତାହାର ଥଟ୍ଟା କରିବା ଉଚିତ ନୁହେଁ ।"

———

## ୧୫—ମୟୂର ଓ ମଣି

୧ । ଗୋଟିଏ ଦେଉଳର ହତା ଭିତରେ ବହୁତ ପଡ଼ିଆ ଜମି ଥିଲା । ତହିଁରେ ଯୋଡ଼ିଏ ମୟୂର ବାସ କରୁଥିଲେ । ତୁମ୍ଭେ ତ ଦେଖିଥିବ ମୟୂର କେଡ଼େ ସୁନ୍ଦର ।

୨ । ମୟୂର ଯୋଡ଼ିକ ପଡ଼ିଆଯାକ ବୁଲନ୍ତି, ଏବଂ ଯେଉଁଠାରେ ଯାହା ପାଆନ୍ତି, ତାହା ଖାଆନ୍ତି; ରାତି ହେଲେ ସେ ଦୁହେଁ ଉଡ଼ିଯାଇ ଅଶ୍ୱତ୍ଥ ଗଛ ଉପରେ ବସନ୍ତି ।

୩ । ମୟୂର ମୟୂରୀକୁ ବଡ଼ ଭଲ ପାଉଥାଏ । ସେ ଚରିଲାବେଳେ ଯେବେ କୌଣସି ଭଲ ପଦାର୍ଥ ପାଏ , ତେବେ ସେ ତାହା ଆଣି ମୟୂରୀକି ଦିଏ । ମୟୂରୀ ପାଇଁ ଆହାର ଖୋଜି ଖୋଜି ମୟୂରକୁ ବହୁତ ସମୟ ଲାଗେ ।

୪ । ମୟୂରୀ ମଧ୍ୟ ମୟୂରକୁ ବଡ଼ ଆଦର କରୁଥାଏ । ମୟୂରୀର ବିଶ୍ୱାସ ଯେ ତାହାର ମୟୂର ପରି ଚତୁର ପକ୍ଷୀ ସଂସାରରେ ଆଉ ନାହିଁ ।

୫ । ଦିନେ ମୟୂର ଆହାର ଖୋଜୁଥିଲା ଏବଂ ଆପଣାର ପଞ୍ଝାରେ ଭୂମି ଖୋଳି ଏଣେ ତେଣେ ବୁଲୁଥିଲା, ଏହି ସମୟରେ ସେ ଅତି ସୁନ୍ଦର ପଦାର୍ଥଟିଏ ଦେଖିଲା । ତାହା ଗୋଟିଏ ଅମୂଲ୍ୟ ମଣି, ତାହାର ମୂଲ୍ୟ ଲକ୍ଷେ ଟଙ୍କା ହେବ ।

୬ । ମୟୂରଟି ପଞ୍ଝାରେ ତାହାକୁ ଓଲଟ ପାଲଟ କରି ପରୀକ୍ଷା କଲା । ମାଡ଼ ତହିଁରେ ତାହାର ଥଣ୍ଡା ଜନ୍ମିଲା । ସେ ମୟୂରୀକୁ କହିଲା "ମୁଁ ମନେ କରିଥିଲି କି ମୋତେ ଗୋଟିଏ ସୁନ୍ଦର ଗହମ ଦାନା ମିଳିଲା ; କିନ୍ତୁ ପରୀକ୍ଷା କରି ଦେଖିଲି, ଏହା ଖଣ୍ଡେ ଅକାମିକା ପଥର ।"

୭ । ମୟୂରୀ କହିଲା, "ଠିକ୍ କହିଲ । ଗୋଟିଏ ଗୁଜିଲା କି ଗହମର ଦାନା ଏଭଳି ପଥରଠାରୁ ଲକ୍ଷ ଗୁଣେ ଭଲ ।"

ଗୁଣ ଚହ୍ନେ ଗୁଣିଆ : ସୁନା ଚହ୍ନେ ବଣିଆ ।

---

## ୧୬—ବାଳକ ଓ ବେଙ୍ଗମାନଙ୍କ କଥା

୧ । ଗୋଟିଏ ଗ୍ରାମରେ ଗୋଟିଏ ଚଟଶାଳୀ ଥିଲା । ଦିନେ ଏତେ ପାଣି ବର୍ଷିଲା ଯେ କୂଅ ପୋଖରୀମାନ ପାଣିରେ ପୂର୍ଣ୍ଣ ହୋଇଗଲା । ଚଟଶାଳୀର ଗୋଟିଏ ପାଖରେ ଖଣ୍ଡିଏ ଖାଲ ଥିଲା । ତହିଁରେ ପାଣି ଭର୍ତ୍ତି ହୋଇଗଲା । ଗ୍ରୋଟ ଗ୍ରୋଟ ପିଲା ପାଣିରେ ପଶିବାକୁ ଭୟ କରି ପାଠଶାଳାକୁ ନ ଆସି ଘରକୁ ଫେରିଗଲେ ।

୨ । ପାଣି ବର୍ଷିବାରୁ ବେଙ୍ଗମାନେ ଆନନ୍ଦରେ ରାବିଲେ । ଚଟଶାଳୀ ପାଖରେ ଗୋଟିଏ ବଡ଼ ପୋଖରୀ ଥିଲା । ବେଙ୍ଗ ବୋବାଇବା ଶୁଣି ପିଲାମାନେ ସେଠାରେ ଯାଇ ଜୁଣ୍ଟ ହେଲେ ।

୩ । ବେଙ୍ଗମାନେ ଫକ୍ ଫକ୍ ଡେଉଁଥିବାର ଦେଖି କେତେଗୁଡ଼ିଏ ପିଲା ସେମାନଙ୍କୁ ଟେକା ଫୋପାଡ଼ିଲେ । ଏଥିରେ ବେଙ୍ଗମାନେ ଅଧିକ ଡେଇଁଲେ । ପିଲାମାନଙ୍କୁ

ବଡ଼ ଖୁସି ଲାଗିଲା । ସେମାନେ ଅନ୍ଧର ଢେକା ଫିଙ୍ଗିଲେ । ଏପରି କରିବାରୁ କେତେଗୁଡ଼ିଏ ବେଙ୍ଗ ମରିଗଲେ, ଅନ୍ୟ ବେଙ୍ଗମାନଙ୍କ ଦେହରେ ଆଘାତ ଲାଗିଲା ।

୪ । ଶେଷରେ ଗୋଟିଏ ବୁଢ଼ା ବେଙ୍ଗ ଖଣ୍ଡିଏ ପଥର ଉପରକୁ ଉଠି ଆସି ଗୋଟିଏ ପିଲାକୁ ପଚାରିଲା, "ଭାଇ ! ଆମ୍ଭେମାନେ ତୁମ୍ଭର କି ଅନିଷ୍ଟ କରିଅଛୁଁ ଯେ ଆମ୍ଭମାନଙ୍କୁ ଢେକା ଫୋପାଡ଼ି ମାରୁଅଛ ?" ପିଲାଟି ଉତ୍ତର ଦେଲା, "ଆମ୍ଭେମାନେ ତ ଖାଲି ଖେଳୁଛୁଁ । ଏ ଆମର ଗୋଟିଏ ଖେଳ ।"

୫ । ବୁଢ଼ା ବେଙ୍ଗଟି କହିଲା "ଭାଇ ! ତୁମ୍ଭମାନଙ୍କୁ ଖେଳ ଲାଗିଛି, ମାତ୍ର ଆମ୍ଭେ ଗରିବମାନେ ତୁମ୍ଭ ଖେଳରେ ଯେ ମଲୁ ।" ଏହା କହି ସେ ପାଣି ଭିତରକୁ ଡେଇଁ ପଡ଼ିଲା ।

୬ । ବାଳକଟି ବଡ଼ ଦୟାଳୁ । ସେ ଅନ୍ୟ ପିଲାମାନଙ୍କୁ କହିଲା, ଭାଇ ! ଆଉ ଢେକା ଫୋପାଡ଼ ନାହିଁ । ଖେଳ କୌତୁକରେ ସୁଦ୍ଧା କାହାରିକୁ ମାରିବା ବା ଆଘାତ କରିବା ଉଚିତ ନୁହେଁ ।"

———

## ୧୭—ବଣିକ ଓ ମର୍କଟମାନଙ୍କ କଥା

ଅନୁକରଣ କରିବା ମର୍କଟର ସ୍ୱଭାବ ଅଟେ । ଅନ୍ୟ କେହି ତାହା ଆଗରେ ଯାହା କରେ, ତାହା ଅନୁକରଣ କରିବାରେ ମର୍କଟର ବଡ଼ ଶ୍ରଦ୍ଧା ଦେଖାଯାଏ ।

ଦିନକରେ ଜଣେ ବଣିକ ନାନାପ୍ରକାରର ପଦାର୍ଥ ଘେନି ବିକ୍ରୟ କରିବା ନିମିତ୍ତ ଯାଉଥିଲା । ତନ୍ମଧ୍ୟରେ କେତେଗୁଡ଼ିଏ ଲାଲ ରଙ୍ଗର ଟୋପି ଥିଲା । ସେ ନିଜେ ଗୋଟିଏ ଲାଲ ଟୋପି ପିନ୍ଧିଥିଲା ।

ଦ୍ୱିପ୍ରହର ଉତ୍ତାପରେ ଅତିଶୟ ଝାନ୍ତ ହେବାରୁ ବାଟ ପାଖରେ ଗୋଟିଏ ବୃକ୍ଷ-ମୂଳରେ ସେ ବିଶ୍ରାମ କଲା । ସେ ପଦାର୍ଥମାନ ଏକ ପାଖରେ ରଖି ସେହି ପାଖକୁ ମୁଣ୍ଡକରି ସେଠାରେ ଶୟନ କଲା । ଲାଲ ଟୋପିଗୁଡ଼ିକ ଅନ୍ୟ ପଦାର୍ଥମାନଙ୍କ ଉପରେ ଥୁଆ ହୋଇଥିଲା । ଆପଣା ଟୋପିଟି ସେ ମୁଣ୍ଡରେ ପିନ୍ଧି ଶୋଇଲା ।

ଯେତେବେଳେ ତାହାର ନିଦ୍ରାଭଙ୍ଗ ହେଲା, ସେ ଦେଖିଲା ଯେ ଟୋପି-ଗୁଡ଼ିକ ସେଠାରେ ନାହିଁ । ସେ ଚଉଆଡ଼କୁ ଚାହିଁ ଶେଷରେ ଦେଖିଲା ଯେ, ବୃକ୍ଷ-ଶାଖାରେ ଅନେକ ମର୍କଟ ବସିଅଛନ୍ତି ଏବଂ ସେମାନଙ୍କ ମୁଣ୍ଡରେ ଗୋଟିଏ ଗୋଟିଏ

ଟୋପି ଅଛୁ । ମର୍କଟମାନେ ବଣିକର ଟୋପି ପିନ୍ଧିବା ଦେଖିଥିଲେ । ତାହାକୁ ଯେତେବେଳେ ନିଦ ଲାଗିଗଲା, ସେମାନେ ବୃକ୍ଷଶାଖାରୁ ଓହ୍ଲାଇ ଆସି ପ୍ରତ୍ୟେକେ ଗୋଟିଏ ଗୋଟିଏ ଟୋପି ପିନ୍ଧି ପୁନର୍ବାର ବୃକ୍ଷଶାଖାରେ ବସିଥିଲେ ।

ବଣିକ ବହୁତ ଯତ୍ନ କରି ମର୍କଟମାନଙ୍କଠାରୁ ଟୋପିଗୁଡ଼ିକ ନ ପାଇବାରୁ ବିରକ୍ତ ହୋଇ ଆପଣାର ମୁଣ୍ଡରୁ ଟୋପିଟି ବାହାର କରି ତଳେ ଫିଙ୍ଗି ଦେଇ କହିଲା—"ରେ ଦୁଷ୍ଟ ମର୍କଟମାନେ ! ତୁମ୍ଭେମାନେ ମୋହର ସମସ୍ତ ଟୋପି ଅପହରଣ କଲ ; ଏହି ଟୋପିଟି ମଧ୍ୟ ନିଅ ।"

ମର୍କଟମାନେ ଏହା ଦେଖି ଆପଣା ଆପଣା ମୁଣ୍ଡରୁ ଟୋପି ବାହାର କରି ସେହିପରି ଫିଙ୍ଗିଦେଲେ । ବଣିକ ଆନନ୍ଦିତ ହୋଇ ଟୋପିଗୁଡ଼ିକ ଗୋଟାଇ ଆଣି ସେଠାରୁ ପ୍ରସ୍ଥାନ କଲା ।

———

## ୧୮—ରାଜା ଓ ଶୁକପକ୍ଷୀ କଥା

ଜଣେ ଲୋକର ଗୋଟିଏ ଶୁକପକ୍ଷୀ ଥିଲା । ସେ ବହୁ ଯତ୍ନ କରି ତାହାକୁ କଥା ଶିଖାଇଲା । ଶୁକ କେତେଗୋଟି ସରଳ କଥା କହି ଶିଖିଲା ଉତ୍ତାରୁ, "ଏଥିରେ ସନ୍ଦେହ ନାହିଁ" ଏହି କଥାଟି ସେ ତାହାକୁ ଶିଖାଇଲା । କେହି ସେହି ପକ୍ଷୀକୁ କୌଣସି ପ୍ରଶ୍ନ କଲେ ସେ ବିଜ୍ଞ ବ୍ୟକ୍ତି ପରି ମୁଣ୍ଡଟି ଅଳ୍ପ ପରିମାଣରେ ତଳକୁ କରି ଗମ୍ଭୀର ଭାବରେ ଉତ୍ତର ଦେଉଥିଲା, "ଏଥିରେ ସନ୍ଦେହ ନାହିଁ ।"

ଦିନକରେ ଶୁକ ପକ୍ଷୀଟିକୁ ବିକ୍ରୟ କରିବା ପାଇଁ ତାହାର ପାଳକ ତାକୁ ବଜାରକୁ ନେଇ ଗଲା । ପକ୍ଷୀଟିର ମୂଲ୍ୟ ଶହେ ଟଙ୍କା ବୋଲି ସେ କହିବାରୁ ଲୋକେ ଉପହାସ କରି କହିଲେ, "ଶୁକପକ୍ଷୀ ଗୋଟାକର ମୂଲ୍ୟ ଶହେ ଟଙ୍କା ହେବ ! ଆମ୍ଭମାନେ ଏହାକୁ କିଣିବାକୁ ଚାହୁଁ ନା ।" ଏହି ସମୟରେ ଜଣେ ରାଜା ଆସି ସେଠାରେ ଉପସ୍ଥିତ ହୋଇ ବିକ୍ରେତାକୁ ପକ୍ଷୀଟିର ମୂଲ୍ୟ ପଚାରିଲେ । ସେ ପୂର୍ବବତ୍ ଶହେ ଟଙ୍କା କହିବାରୁ ରାଜା ବିସ୍ମିତ ହୋଇ ପ୍ରଶ୍ନ କଲେ, "ଏ ପକ୍ଷୀଟିର ଏପରି କି ଅଦ୍ଭୁତ ଗୁଣ ଅଛି ? ତୁମ୍ଭେ କି ହେତୁରୁ ଏହାର ମୂଲ୍ୟ ଏତେଗୁଡ଼ାଏ କହୁଅଛ ? ଏ କି ଶହେ ଟଙ୍କାର ଯୋଗ୍ୟ ? ପକ୍ଷୀର ପାଳକ କହିଲା, "ପ୍ରଭୁ ! ଏ ପ୍ରଶ୍ନ ଏ ପକ୍ଷୀକୁ ପଚାରିବା ହେଉ ।"

ରାଜା ତଦନୁସାରେ ସେହି ଶୁକକୁ ପଚାରିଲେ, "ତୋହର ମୂଲ୍ୟ କି ଶଏ ଟଙ୍କା ?" ଶୁକ ଉତ୍ତର ଦେଲା, ଏଥିରେ ସନ୍ଦେହ ନାହିଁ ।" ଏହା ଶୁଣି ରାଜା ଅତିଶୟ ପ୍ରୀତ ହୋଇ ବିକ୍ରେତାକୁ ଶଏ ଟଙ୍କା ଦେଇ ତାହାଠାରୁ ସେ ପକ୍ଷୀଟିକୁ ଗ୍ରହଣ କଲେ ।

ତତ୍ପରଦିନ ରାଜା ଅତି ଆଗ୍ରହରେ ଶୁକ ସହିତ କଥା କହିବାକୁ ଲାଗିଲେ । ରାଜାଙ୍କର ପ୍ରତ୍ୟେକ କଥାରେ ଶୁକ "ଏଥିରେ ସନ୍ଦେହ ନାହିଁ", କେବଳ ଏହା ହିଁ କହିଲା । ତଦ୍‌ଭିନ୍ନ ଅନ୍ୟ କୌଣସି କଥା ଶୁକ ମୁଖରୁ ଶୁଣାଗଲା ନାହିଁ । ଏହା ଶୁଣିଶୁଣି ରାଜା ନିତାନ୍ତ ବିରକ୍ତ ହେଲେ । ଶେଷରେ ସେ କହିଲେ, "ମୋପରି ଓଲୁ ତ ଆଉ କେହି ନ ଥିବ ଯେ, ମୁଁ ଏହି ପକ୍ଷୀଟିକୁ ଶଏ ଟଙ୍କା ଦେଇ କିଣିଲି ।" ଶୁକ ପୂର୍ବବତ୍ କହିଲା, "ଏଥିରେ ସନ୍ଦେହ ନାହିଁ ।" ମାତ୍ର ପକ୍ଷୀଟିର ଏଥର ଉତ୍ତର ଯେ ସଙ୍ଗତ ହେଲା, ଏଥିରେ ସନ୍ଦେହ ନାହିଁ ।

---

## ୧୯—ଗୋପାଳ ଓ ଗୋବିନ୍ଦର କଥୋପକଥନ

ଗୋପାଳ—ଗୋବିନ୍ଦ ! ତୁମ୍ଭେ ମୋହି ସଙ୍ଗରେ ବଜାରକୁ ଯିବ କି ? ମୁଁ କିଛି ମିଷ୍ଟାନ୍ନ କିଣିବାକୁ ଯାଉଅଛି । ତୁମ୍ଭେ ମୋ ସଙ୍ଗରେ ଗଲେ ମୁଁ ତୁମ୍ଭଙ୍କୁ କିଛି ଦେବି ।

ଗୋବିନ୍ଦ—ହଁ, ମୁଁ ଯିବି । ମିଷ୍ଟାନ୍ନ କିଣିବା ପାଇଁ ତୁମ୍ଭେ କେତେ ପଇସା ଆଣିଅଛ ?

ଗୋପାଳ—ମୁଁ ଦୁଇଅଣା ପଇସା ଆଣିଅଛି ।

ଗୋବିନ୍ଦ—ତୁମ୍ଭେ ଏତେ ପଇସା କେଉଁଠାରୁ ପାଇଲ ?

ଗୋପାଳ—ବଣିଆଙ୍କର ପୁଅ ରଘୁନାଥ ଆମ୍ଭମାନଙ୍କର ଏହି ବିଦ୍ୟାଳୟରେ ପଢ଼େ, ଜାଣ ? ମୁଁ ତାହାକୁ ମୋହର ଗୁଡ଼ିଟି ଦୁଇ ଅଣାକୁ ବିକ୍ରୟ କରିଅଛି ।

ଗୋବିନ୍ଦ—ରଘୁନାଥ ଗୁଡ଼ିଟି ନେଇ ତୁମ୍ଭଙ୍କୁ ଦୁଇଅଣା ପଇସା ଦେଲା ? ତୁମ୍ଭେ ତ ସେହି ଗୁଡ଼ିଟି ଅଣାକୁ କିଣିଥିଲ । ରଘୁନାଥ ଦୁଇ ଅଣାକୁ ଯୋଡ଼ିଏ ନୂଆ ଗୁଡ଼ି ପାଇଥାନ୍ତା ।

ଗୋପାଳ—ହଁ, ସେ ଯୋଡ଼ିଏ ଗୁଡ଼ି ପାଇଥାନ୍ତା । ମାତ୍ର ସେ ନିତାନ୍ତ ସାନ ବାଳକ । ସେ କୌଣସି ପଦାର୍ଥର ମୂଲ୍ୟ ଜାଣେ ନାହିଁ । ମୁଁ କହିଲି ମୁଁ ଗ୍ରହ ଅଣାକୁ ଗୁଡ଼ିଟି କିଣିଅଛି, ଅଧା ମୂଲ୍ୟରେ ତାହାକୁ ବିକ୍ରୟ କରିବି । ସେ ଆନନ୍ଦିତ ହୋଇ ମୋତେ ଦୁଇଅଣା ଦେଇ ସେ ଗୁଡ଼ିଟି ନେଲା ।

ଗୋବିନ୍ଦ—ସେ ସାନ ବାଳକଟି ତୁମ୍ଭ କଥାରେ ବିଶ୍ୱାସ କରେ ବୋଲି ତୁମ୍ଭେ ମିଥ୍ୟା କଥା କହି, ତାହାକୁ ଅଣାଏ ଠକିଲ ? ତୁମ୍ଭ ବିବେଚନାରେ ଏହି ବ୍ୟବହାର ଲାଭଜନକ । ମାତ୍ର, ତୁମ୍ଭର ଏମନ୍ତ ଆଚରଣରେ ମୋହର ଲଜ୍ଜା ଓ ଘୃଣା ଜନ୍ମିଅଛି । ମିଥ୍ୟାବାଦୀ ଓ ପ୍ରତାରକ ବାଳକର ସଙ୍ଗୀ ହେବାପାଇଁ ମୋହର ଇଚ୍ଛା ନାହିଁ । ମୁଁ ତୁମ୍ଭ ସହିତ ଆଉ କଥା କହିବି ନାହିଁ । ତୁମ୍ଭେ ଯେ ରଘୁନାଥକୁ ଠକିଅଛ, ମୁଁ ତାହାକୁ କହିଦେବି । ତାହାହେଲେ ସେ ତୁମ୍ଭକୁ ଆଉ କେବେହେଁ ବିଶ୍ୱାସ କରିବ ନାହିଁ ।

ଗୋପାଳ—ଗୋବିନ୍ଦ ! ତୁମ୍ଭେ ମୋତେ ଆଉ ଅଧିକ ଲଜ୍ଜା ଦିଅ ନାହିଁ । ମୁଁ ସ୍ୱୟଂ ରଘୁନାଥକୁ ସମସ୍ତ କଥା କହି ତାହାକୁ ଅଣାଏ ପଇସା ଫେରାଇ ଦେବି । ମିଥ୍ୟାକଥା କହି ମୁଁ ଅତିଶୟ ଅନୁତପ୍ତ ହେଲିଣି ।

ଗୋବିନ୍ଦ—ତୁମ୍ଭର ଏହି ପ୍ରସ୍ତାବରେ ମୁଁ ଆନନ୍ଦିତ ହେଲି । ମୁଁ ପୂର୍ବପରି ତୁମ୍ଭର ସଙ୍ଗୀ ହେବି । ତୁମ୍ଭେ ଏହିକ୍ଷଣି ରଘୁନାଥ ନିକଟକୁ ଯାଇ ତୁମ୍ଭେ ଦୋଷ ସ୍ୱୀକାର କର । ଆପଣାର ଅନୁତାପ ତାହାକୁ ଜଣାଅ ଏବଂ ତାହାକୁ ଅଣାଏ ପଇସା ଫେରାଇଦିଅ । ଗୋପାଳ ! ତୁମ୍ଭେମାନେ ରଖିଥିବ ଯେ, ସତ୍ୟବାଦୀ ଲୋକକୁ ସମସ୍ତେ ସ୍ନେହ ଓ ଆଦର କରନ୍ତି, ଏବଂ ମିଥ୍ୟାବାଦୀ ଲୋକକୁ କେହି ବିଶ୍ୱାସ କରନ୍ତି ନାହିଁ । ଥରେ ଦୁଇ ଥର ମିଥ୍ୟାକହି ତୁମ୍ଭେ ଲାଭ କରିପାର ; ମାତ୍ର ତୁମ୍ଭେ ମିଥ୍ୟା କହ ବୋଲି ଲୋକେ ଜାଣିଲା ମାତ୍ରକେ, ତୁମ୍ଭେ ସତ୍ୟ କହିଲେ ସୁଦ୍ଧା ତୁମ୍ଭକୁ ଆଉ କେହି ବିଶ୍ୱାସ କରିବେ ନାହିଁ ।

## ୨୦—କାକ-ବୁଦ୍ଧି

ଦିନକରେ ମଧ୍ୟାହ୍ନ ସମୟରେ ଅତିଶୟ ଗ୍ରୀଷ୍ମ ହେବାରୁ ଗୋଟିଏ କାକ ପିପାସାରେ ବ୍ୟାକୁଳ ହୋଇ ଜଳ ଅନ୍ୱେଷଣ କଲା, ମାତ୍ର ଜଳ ପ୍ରାପ୍ତ ହେଲା ନାହିଁ । ସେ ବହୁତ ଭିନ୍ନଭିନ୍ନ ନାନା ସ୍ଥାନରେ ଉଡ଼ି ବୁଲିଲା, ନାନା ବୃକ୍ଷରେ ବସିଲା, ମାତ୍ର କୌଣସିଠାରେ ତାହାକୁ ଜଳ ମିଳିଲା ନାହିଁ । ଅବଶେଷରେ ସେ ଗୋଟିଏ ଉଦ୍ୟାନରେ ଉପସ୍ଥିତ ହେଲା ।

ସେଠାରେ ସେ ଗୋଟିଏ କ୍ଷୁଦ୍ର ମାଠିଆ ଦେଖି ଭାବିଲା, "ସେଥିରେ ନିଶ୍ଚୟ ଜଳ ଥିବ । ମୁଁ ତାହା ପାନ କରି ତୃଷାନିବାରଣ କରି ପାରିବି । ଏହା ଭାବି ସେ ଆନନ୍ଦରେ ବୃକ୍ଷ ଶାଖାରୁ ଉଡ଼ି ଆସି ସେହି ମାଠିଆ ଉପରେ ବସିଲା । ମାତ୍ର ତଳକୁ ଚାହିଁ ଦେଖିଲା ଯେ, ଅଳ୍ପ ପରିମାଣ ନିର୍ମଳ ଜଳ ସେଥିରେ ଅଛି ଏବଂ ଥଣ୍ଟ ବଢ଼ାଇଲେ ଜଳଠାରେ ପହଞ୍ଚିବ ନାହିଁ ।"

ଏହା ଦେଖି କାକଟି ମାଠିଆକୁ ଗଡ଼ାଇବା ପାଇଁ ବହୁତ ଯତ୍ନ କଲା, ମାତ୍ର ତାହାର ସମସ୍ତ ଯତ୍ନ ବିଫଳ ହେଲା । ଏଥିରେ ହତାଶ ହୋଇ ସେ ପୁଣି ନାନା ପ୍ରକାରେ ଭାବିଲା । ଅବଶେଷରେ ତାହାକୁ ଗୋଟିଏ ବୁଦ୍ଧି ଦିଶିଲା । ତେତେବେଳେ ସେ ଆନନ୍ଦିତ ହୋଇ ମନେ କଲା, "ମୁଁ ଜଳ ନିକଟକୁ ଓହ୍ଲାଇ ନ ପାରିଲେ ହେଁ ମୋହ ନିକଟକୁ ଜଳକୁ ଓଟାରି ଆଣିବି ।"

ଅନନ୍ତର କାକଟି ଇତସ୍ତତଃ ବୁଲି ବୁଲି ଗୋଟିଏ ଗୋଟିଏ ଗୋଡ଼ି ଥଣ୍ଟରେ ଉଠାଇଆଣି ମାଠିଆ ମଧ୍ୟରେ ନିକ୍ଷେପ କଲା । ଗୋଡ଼ିଗୁଡ଼ିକ ତଳେ ବସିଯିବାରୁ ଜଳ କ୍ରମେ ଉପରକୁ ଉଠିଲା । ଶେଷରେ ତାହା ମାଠିଆର ସ୍କନ୍ଧ ପର୍ଯ୍ୟନ୍ତ ଆସିବାରୁ କାକ ହୃଷ୍ଟ ଚିତ୍ତରେ ଚଞ୍ଚୁ ବଢ଼ାଇ, ଜଳ ପାନ କରି ପିପାସା ନିବାରଣ କଲା ।

ବଳେ ଯହିଁ କାର୍ଯ୍ୟସିଦ୍ଧି ନ ହୁଅଇ ଭଲେ,<br>
ଜାଣିଥାଅ ସିଦ୍ଧି ତହିଁ ହୁଅଇ କୌଶଳେ ।<br>
କୌଶଳ ପ୍ରୟୋଗ କରେ ଯେହୁ ଧୈର୍ଯ୍ୟ ଧରି,<br>
ପରିଣାମେ ସୁଖୀ ହୁଏ କାର୍ଯ୍ୟ ସିଦ୍ଧି କରି ।

---

## ୨୧—ବ୍ରାହ୍ମଣ ଓ ସାନ୍ତାଳ କଥା

ପୂର୍ବକାଳରେ ଅନାର୍ଯ୍ୟ ବଣୁଆ ଲୋକମାନେ ନିତାନ୍ତ ଅଜ୍ଞ ଥିଲେ । ମୋଗଲବନ୍ଦିରୁ ଜଣେ ବ୍ରାହ୍ମଣ ଉଠିଯାଇ ମୟୂରଭଞ୍ଜର ଗୋଟିଏ ଗ୍ରାମରେ ଘର କରି ରହିଲେ । ସେହି ଗ୍ରାମର ନିକଟରେ ଗୋଟିଏ ସାନ୍ତାଳ-ବସତି ଥିଲା । ଦିନକରେ ସେହି ବ୍ରାହ୍ମଣ ଅରଣ୍ୟ ଭିତରକୁ ଯାଇଥିଲେ । ସେଠାରେ ତାହାଙ୍କର କଣ୍ଟୁରି ଆବଶ୍ୟକ ହେଲା । ସେ ଖଣ୍ଡିଏ କ୍ଷୁଦ୍ର ଚିକ୍କଣ ପ୍ରସ୍ତର ଉପରେ ଖଣ୍ଡିଏ କୋଇଲାରେ କଣ୍ଟୁରି ପଠାଇ ଦେବା ପାଇଁ ଆପଣାର ଜ୍ୟେଷ୍ଠ ପୁତ୍ରକୁ ଲେଖିଲେ । ସମୀପବର୍ତ୍ତୀ ଜଣେ ସାନ୍ତାଳକୁ ଡାକି ତାହା ହାତରେ ସେହି ପ୍ରସ୍ତର ଖଣ୍ଡିକ ଜ୍ୟେଷ୍ଠ ପୁତ୍ର ନିକଟକୁ ପଠାଇ ଦେଲେ ।

ଚାଣ୍ଡାଳ ସେହି ପ୍ରସ୍ତର ଖଣ୍ଡିକ ଧରି ପଚାରିଲା, "ଗୋସାଇଁ ! ଆପଣଙ୍କ ପୁଅକୁ ମୁଁ କଅଣ କହିବି ?" ବ୍ରାହ୍ମଣ କହିଲେ, "ତୋତେ କିଛି କହିବାକୁ ହେବ ନାହିଁ । ଯାହା କହିବାକୁ ହେବ, ତାହା ଏହି ପଥର କହିବ ।" ଚାଣ୍ଡାଳ ପୁଣି ପ୍ରଶ୍ନ କଲା, "ପଥର ଖଣ୍ଡିକ କଥା କହି ପାରିବ କି ?" ବ୍ରାହ୍ମଣ କହିଲେ, "ହଁ କହିପାରିବ ।"

ଚାଣ୍ଡାଳ ପ୍ରସ୍ତର ଖଣ୍ଡିକ ନେଇ ବ୍ରାହ୍ମଣର ଗୃହକୁ ଯାଇ ତାହାଙ୍କ ଜ୍ୟେଷ୍ଠ ପୁତ୍ରକୁ ସେ ଖଣ୍ଡିକ ଦେଲା । ଉକ୍ତ ପୁତ୍ର ଗୃହମଧ୍ୟରୁ କଣ୍ଟୁରୀ ଖଣ୍ଡିକ ଆଣି ପିତାଙ୍କୁ ଦେବାପାଇଁ ଚାଣ୍ଡାଳ ହାତରେ ଦେଲା । ଏହା ଦେଖି ଚାଣ୍ଡାଳ ବିସ୍ମିତ ହୋଇ ପ୍ରଶ୍ନ କଲା, "ଗୋସାଇଁ କଣ୍ଟୁରୀ ମାଗିଅଛନ୍ତି ବୋଲି ତୁମ୍ଭେ କିପରି ଜାଣିଲ ? ବ୍ରାହ୍ମଣର ପୁତ୍ର ଉତ୍ତର ଦେଲା, "ଏହି ପଥର ମୋତେ କହିଲା ।"

ଚାଣ୍ଡାଳଟି ଆପଣା ପଲ୍ଲୀର ଅନ୍ୟ ଚାଣ୍ଡାଳମାନଙ୍କ ନିକଟକୁ ଦୌଡ଼ି ଯାଇ କହିଲା , "ଭାଇମାନେ ! ଏ ଗୋସାଇଁଙ୍କର କି ଅଦ୍ଭୁତ ଶକ୍ତି । ଦେଖ ! ଏ ପଥରକୁ ମଧ୍ୟ କଥା କୁହାଇ ପାରନ୍ତି ।" ସେହି ଦିନଠାରୁ ଚାଣ୍ଡାଳମାନେ ସେହି ବ୍ରାହ୍ମଣଙ୍କୁ ଦେବତା ତୁଲ୍ୟ ପୂଜା କରିବାକୁ ଲାଗିଲେ ।



## ୨୨—ଲାଙ୍ଗୁଳହୀନ ଶୃଗାଳ

ଦିନକରେ ଗୋଟିଏ ଶୃଗାଳର ଲାଙ୍ଗୁଳ ଗୋଟିଏ ବ୍ୟାଧର ଯନ୍ତ୍ରରେ କବଳିତ ହେଲା । ବ୍ୟାଧ ଆସି ଦେଖିଲେ ତାହାର ପ୍ରାଣନାଶ କରିବ, ଏହା ଆଶଙ୍କା କରି ଶୃଗାଳଟି ଆପଣାର ଲାଙ୍ଗୁଳଟି ଯନ୍ତ୍ରରୁ ମୁକ୍ତ କରିବା ପାଇଁ ନାନା ଚେଷ୍ଟା କରୁଁ କରୁଁ, ଅବଶେଷରେ ଲାଙ୍ଗୁଳଟି କଟିଗଲା ।

ସେଠାରୁ ପଳାଇ ଆସି ଶୃଗାଳ ମନେ ମନେ ଭାବିଲା, "ଏ ଅବସ୍ଥାରେ ମୁଁ ଶୃଗାଳ-ସମାଜରେ ମୁଖ ଦେଖାଇବି କିପରି ?" ଅନେକ କ୍ଷଣ ଚିନ୍ତା କରି ସେ ଗୋଟିଏ କୌଶଳ ଉଦ୍ଭାବନ କଲା । ଅପର ଶୃଗାଳମାନଙ୍କଠାରେ ଉପସ୍ଥିତ ହୋଇ ସେମାନଙ୍କୁ ସମ୍ବୋଧନ କରି ସେ କହିଲା, "ଭାଇମାନେ ! ଲାଙ୍ଗୁଳଟା ଏଡ଼େ ଅସୁନ୍ଦର ଓ ଏଥିରେ ଏତେ ଅସୁବିଧା ହୁଏ ବୋଲି ମୁଁ ଆଜଯାଏ ଜାଣି ନ ଥିଲି । ସ୍ୱୟଂ ପରୀକ୍ଷା କରି ଦେଖି ନ ଥିଲେ ଅନ୍ୟର କଥାରେ ମୁଁ କେବେ ହେଁ ବିଶ୍ୱାସ କରନ୍ତି ନାହିଁ । ମାତ୍ର ମୁଁ ନିଜେ ପରୀକ୍ଷା କରି ବର୍ତ୍ତମାନ ଯେଉଁ ସୁଖ ଓ ସୁବିଧା ଭୋଗ କରୁଅଛି, ମୋହର ଇଚ୍ଛା ଯେ, ମୋହର ଭାଇମାନେ ତାହା ଭୋଗ

କରନ୍ତୁ । ଅତଏବ ମୁଁ ପ୍ରସ୍ତାବ କରୁଅଛି ଯେ, "ତୁମ୍ଭେମାନେ ଆପଣା ଆପଣାର ଲାଙ୍ଗୁଳ ପରିତ୍ୟାଗ କର ।"

ଏହା ଶୁଣି ଗୋଟିଏ ବୃଦ୍ଧ ଚତୁର ଶୃଗାଳ କହିଲା, "ଆପଣାର ଲାଙ୍ଗୁଳ ପୁନର୍ବାର ପାଇବାର ସମ୍ଭାବନା ଥିଲେ ତୁମ୍ଭେ କେବେହେଁ ଆମ୍ଭମାନଙ୍କୁ ଲାଙ୍ଗୁଳ ତ୍ୟାଗ କରିବାର ପରାମର୍ଶ ଦିଅନ୍ତ ନାହିଁ ।"

ଏଥିରେ ଅପର ଶୃଗାଳମାନେ ହାସ୍ୟ ସମ୍ବରଣ କରି ନ ପାରି ଲାଙ୍ଗୁଳହୀନ ଶୃଗାଳକୁ ପରିତ୍ୟାଗ କରି ଯେ ଯାହା ସ୍ଥାନକୁ ପ୍ରସ୍ଥାନ କଲେ ।

## ୨୩—ଅପର ନିମନ୍ତେ ବୃକ୍ଷରୋପଣ

ଦିନକରେ ଜଣେ ରାଜା କେତେଗୁଡ଼ିଏ ଲୋକ ସଙ୍ଗରେ ନେଇ ମୃଗୟା ନିମନ୍ତେ ବାହାରି ଗଲେ । ଫେରି ଆସିବାବେଳେ ସେ ପଥ ମଧ୍ୟରେ ଦେଖିଲେ ଯେ ଜଣେ ବୃଦ୍ଧ ଲୋକ ଗୋଟିଏ ଫଳବୃକ୍ଷ ରୋପଣ କରୁଅଛି । ରାଜାଙ୍କ ସଙ୍ଗରେ ଯେଉଁ ଲୋକମାନେ ଥିଲେ ସେମାନଙ୍କୁ ରାଜା ହସି କହିଲେ, "ଏ ଲୋକଟା ଏଡ଼େ ଓଲୁ । ଏ ଯେଉଁ ବୃକ୍ଷ ଆଜି ରୋପଣ କରୁଅଛି, ତାହାର ଫଳ ଭୋଗ କରିବା ପାଇଁ ଏହାର ଆୟୁ କି ଥିବ ?"

ରାଜାଙ୍କର ସଙ୍ଗୀମାନେ ମଧ୍ୟ ସେହି ଘଟନା ଦେଖି ହସିଲେ । ଅନନ୍ତର ରାଜା ସେହି ବୃଦ୍ଧ ଲୋକକୁ ଡାକି ପଚାରିଲେ, "ତୁମ୍ଭଙ୍କୁ କେତେ ବୟସ ହେଲାଣି ?"

ବୃଦ୍ଧବ୍ୟକ୍ତି ଉତ୍ତର ଦେଲା, "ମହିମା ! ମୋତେ ଚାରିକୋଡ଼ି ବୟସ ହେଲାଣି । ମାତ୍ର ବର୍ତ୍ତମାନ ସୁଦ୍ଧା ମୋହର ଦେହରେ ବଳ ଅଛି ।" ରାଜା ପୁନର୍ବାର ପ୍ରଶ୍ନକଲେ "ତୁମ୍ଭେ ଆଉ କେତେକାଳ ବଞ୍ଚିବ ବୋଲି ମନେ କରୁଅଛ ? ତୁମ୍ଭେ କଷ୍ଟ-ସ୍ୱୀକାର କରି କି ନିମନ୍ତେ ଏହି ବୃକ୍ଷ ରୋପଣ କରୁଅଛ ? ତୁମ୍ଭେ ତ ଏହାର ଫଳ ଭୋଗ କରିବା ପାଇଁ ନ ଥିବ ।"

ବୃଦ୍ଧ କହିଲା, "ମହିମା ! ଯାହା କହିଲେ ତାହା ସତ୍ୟ । ମୁଁ ଜାଣି ପାରୁଛି ଏହି ବୃକ୍ଷର ଫଳ ଭୋଗ କରିବାପାଇଁ ମୁଁ ନ ଥିବି । ତାହା ହେଲେ ସୁଦ୍ଧା, ପୂର୍ବ-ପୁରୁଷମାନେ ଯାହା କରିଯାଇଅଛନ୍ତି, ତାହା କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ ଅଟେ । ସେମାନେ ଯେଉଁ ବୃକ୍ଷ ଲଗାଇଥିଲେ, ଆମ୍ଭେମାନେ ବର୍ତ୍ତମାନ ତାହାର ଫଳ ଭୋଗ କରୁଅଛୁଁ । ମୁଁ ଆଜି ଯେଉଁ ବୃକ୍ଷ ଲଗାଉ ଅଛି, ମୋହର ପିଲାମାନେ ଓ ସେମାନଙ୍କର ପିଲାମାନେ ତାହାର ଫଳ ଭୋଗ କରିବେ ।"

ରାଜା ବୃଦ୍ଧବ୍ୟକ୍ତିର ଏହି କଥାଗୁଡ଼ିକ ଶୁଣି ମୋହିତ ହୋଇ ତାହାକୁ ଦଶଟଙ୍କା ପୁରସ୍କାର ଦେଲେ ।

---

## ୨୪—ସମ୍ପତ୍ ଓ ବିପତ୍

ରାମ ଓ ଶ୍ୟାମ ନାମରେ ଦୁଇ ମିତ୍ର ଦିନକରେ ଆପଣା ଗ୍ରାମରୁ ଅନ୍ୟ ଗ୍ରାମକୁ ଯାଉଥିଲେ । ସେ ଦୁହେଁ ଏକ ସଙ୍ଗରେ ଯାଉଁ ଯାଉଁ ବାଟରେ ଗୋଟିଏ କ୍ଷୁଦ୍ର ଥଳି ଦେଖିଲେ । ଉଭୟେ ସେହି ଥଳି ନିକଟକୁ ଦୌଡ଼ିଗଲେ, ମାତ୍ର ଶ୍ୟାମ ତାହାକୁ ଉଠାଇ ନେଇ ଦେଖିଲା ଯେ, ସେଥିରେ ଥଳିଏ ଟଙ୍କା ଅଛି । ସେ ଆହ୍ଲାଦରେ କହିଲା, "ଆଜି ମୋହର କି ଶୁଭ ଦିନ ! ମୁଁ ଏଥିପୂର୍ବେ ଗୋଟିଏ ପଇସା ସୁଦ୍ଧା ବାଟରୁ ପାଇ ନ ଥିଲି, ଆଜି ଈଶ୍ୱରଙ୍କ କୃପାରୁ ମୁଁ ଧନୀ ହେଲି ।"

ରାମ କହିଲା, "ଆମ୍ଭମାନଙ୍କର ଶୁଭଦିନ ବୋଲି ନ କହି ମୋହର ଶୁଭଦିନ ବୋଲି କହୁଅଛ ? ମୋତେ କଣ ଏଥିରୁ ଭାଗ ମିଳିବ ନାହିଁ ? ଆମ୍ଭେ ଦୁହେଁ କି ଏହି ଟଙ୍କା ବାଟରୁ ପାଇନାହୁଁ ?"

ଶ୍ୟାମ କହିଲା, "ନାହିଁ ନାହିଁ, ମୁଁ ଏହା ପାଇଅଛି । ଏ ଟଙ୍କା ମୋହର, ତୁମ୍ଭର ଏଥିରେ ଭାଗ ନାହିଁ ।" ଏହା ଶୁଣି ରାମ ତୁନି ହୋଇ ରହିଲା ।

କିଛିକ୍ଷଣ ପରେ ଗୋଟିଏ ଲୋକ ଘୋଡ଼ାରେ ଚଢ଼ି ପଛରୁ ଅତି ବେଗରେ ଆସିଲା । ସେ ଶ୍ୟାମ ହାତରେ ଟଙ୍କା ଥଳିଟି ଦେଖି ତାହାକୁ ଧରି କହିଲା, "ରେ ଚୋର ! ତୁ ଥାନାକୁ ଆ ! ମୁଁ ଟଙ୍କା ଥଳିଟି ତଳେ ଥୋଇ ଘୋଡ଼ାକୁ ଜଳ ପିଆଇବା ପାଇଁ ପୁଷ୍କରିଣୀକୁ ନେଇଗଲି; ଏଥି ମଧ୍ୟରେ ତୁ ମୋହର ଟଙ୍କା ଅପହରଣ କରି ପଳାଉଅଛୁ ?"

ଶ୍ୟାମ ହତବୁଦ୍ଧି ହୋଇ ରାମ ଆଡ଼କୁ ଚାହିଁ କହିଲା, "ଭାଇ ! ଆଜି ଆମ୍ଭମାନଙ୍କର କି ଦୁର୍ଭାଗ୍ୟ ! କି ଉପାୟ କରିବୁଁ ? ପ୍ରଭୁ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।"

ରାମ କହିଲା, "ଆମ୍ଭମାନଙ୍କର କଅଣ ? ତୁମ୍ଭେ ତ ଟଙ୍କା ଥଳିଟି ନେଇ ମୋହର ସେଥିରେ ଭାଗ ନାହିଁ ବୋଲି କହିଲ, ଏତେବେଳକୁ ଆମ୍ଭମାନଙ୍କର ବୋଲି କହୁଅଛ କାହିଁକି ?"

ଯେ ସମ୍ପଦରେ ଅନ୍ୟକୁ ଭାଗୀ ନ କରେ, ବିପଦରେ କେହି ତାହାର ସହାୟ ହୁଅନ୍ତି ନାହିଁ ।

---

# ୨୫—ଗୋଟିଏ ବୁଢ଼ିଆଣୀ କପର ରାଜପୁତ୍ରଙ୍କର ପ୍ରାଣ ରକ୍ଷାକଲା

ରାଜପୁତାନାର ଗୋଟିଏ କ୍ଷୁଦ୍ର ରାଜ୍ୟରେ ଭୀମସିଂହ ନାମରେ ଜଣେ ରାଜକୁମାର ଥିଲେ । ଏକ ସମୟରେ ଶତ୍ରୁମାନେ ତାହାଙ୍କର ପିତାଙ୍କର ରାଜ୍ୟ ଆକ୍ରମଣ କଲେ । ରାଜପୁତ ସୈନ୍ୟମାନେ ଅତି ସାହସରେ ଯୁଦ୍ଧକଲେ ହେଁ ପରାସ୍ତ ହୋଇଗଲେ । ରାଜା ଏବଂ ତାହାଙ୍କର ପ୍ରଧାନ ପ୍ରଧାନ ସୈନିକ କର୍ମଚାରୀ ସେହି ଯୁଦ୍ଧରେ ହତ ହେଲେ ।

ଭୀମସିଂହ ରାତ୍ରିକାଳରେ ବନକୁ ପଳାଇ ଯାଇ ତହିଁ ମଧ୍ୟରେ ଲୁଚି ରହିଲେ । ଶତ୍ରୁମାନେ ନଗର ମଧ୍ୟରେ ତାହାଙ୍କୁ ଖୋଜି ନ ପାଇବାରୁ ବନରେ ପ୍ରବେଶ କରି ତାହାଙ୍କୁ ଅନ୍ୱେଷଣ କଲେ । ସେମାନେ ନାନା ସ୍ଥାନରେ ଅନ୍ୱେଷଣ କରି କ୍ଳାନ୍ତ ହୋଇ କହିଲେ, "ଏ ଅନ୍ଧକାରରେ ରାଜକୁମାରଙ୍କୁ ପାଇବା କଠିନ ହେବ; ଚାଲ ବର୍ତ୍ତମାନ ଫେରିଯିବା, ପ୍ରଭାତ ହେଲେ ଆସି ଅନ୍ୱେଷଣ କରିବା ।" ଏହା କହି ସେମାନେ ବନରୁ ଫେରିଗଲେ ।

ଭୀମସିଂହ ଗୋଟିଏ ବୃକ୍ଷରେ ଆରୋହଣ କରି ଲୁଚିଥିଲେ । ସେ ଶତ୍ରୁମାନଙ୍କର ଏହି କଥା ଶୁଣି ପ୍ରାଣରକ୍ଷା ପାଇଁ ମନେ ମନେ ଈଶ୍ୱରଙ୍କୁ ଡାକିଲେ । ଶତ୍ରୁମାନେ ବନରୁ ଲେଉଟି ଗଲାରୁ ସେ ବୃକ୍ଷରୁ ଓହ୍ଲାଇ ଗୋଟିଏ ପର୍ବତ ଉପରକୁ ଗଲେ । ସେଠାରେ ସେ ଗୋଟିଏ ଗହ୍ୱର ଦେଖି ତାହା ମଧ୍ୟରେ ପ୍ରବେଶ କଲେ । ସେ ଅତିଶୟ କ୍ଳାନ୍ତ ହୋଇଥିବାରୁ ଅଳ୍ପକ୍ଷଣ ମଧ୍ୟରେ ସେଠାରେ ଶୋଇପଡ଼ିଲେ ।

ପ୍ରଭାତ ହେଲାରୁ ଶତ୍ରୁମାନେ ପୁନର୍ବାର ତାହାଙ୍କୁ ଅନ୍ୱେଷଣ କରୁ କରୁ ସେହି ଗହ୍ୱର ନିକଟରେ ଉପସ୍ଥିତ ହେଲେ । ରାତ୍ରିକାଳରେ ଗୋଟିଏ ବୁଢ଼ିଆଣୀ ଗହ୍ୱର ମୁଖରେ ଜାଲ ବୁଣିଥିଲା । ଜଣେ ଶତ୍ରୁସୈନ୍ୟ ଗୁମ୍ଫାଟି ଦେଖି ତାହା ମଧ୍ୟରେ ପଶି ଅନ୍ୱେଷଣ କରିବ ବୋଲି ବାହାରିଲା । ମାତ୍ର ତାହାର ମୁଖରେ ବୁଢ଼ିଆଣୀ-ବସା ଦେଖି କହିଲା, "ଏହା ମଧ୍ୟରେ ରାଜକୁମାର ପ୍ରବେଶ କରିଥିଲେ ବୁଢ଼ିଆଣୀ ଜାଲ ତ ଛିଣ୍ଡି ଯାଇଥାନ୍ତା ।" ଏହା କହି ସେ ସେଠାରୁ ପ୍ରସ୍ଥାନ କଲା ।

ଶତ୍ରୁମାନେ ସେହି ବନ ଓ ପର୍ବତରେ ନାନା ସ୍ଥାନରେ ଅନ୍ୱେଷଣ କରି ରାଜକୁମାରଙ୍କୁ ନ ପାଇବାରୁ ତାହା ପରିତ୍ୟାଗ କରି ପ୍ରସ୍ଥାନ କଲେ । ସେତେବେଳେ ଭୀମସିଂହ ଆଶ୍ଚର୍ଯ୍ୟ ହୋଇ କହିଲେ, "ଈଶ୍ୱର ମୋହର ପ୍ରାଣରକ୍ଷା ନିମନ୍ତେ ଏହି

ବୁଢ଼ିଆଣୀକୁ ପଠାଇଥିଲେ ।” ସେ ସେହି ଗୁମ୍ଫାରେ ଦିନଯାକ ରହି ରାତିକାଳରେ ତହିଁରୁ ବାହାରି ନିକଟବର୍ତ୍ତୀ ଆଉ ଗୋଟିଏ ରାଜ୍ୟରେ ନରପତି ହୋଇ ରହିଲେ ।

———

## ୨୭—ଅହଙ୍କାରୀ କାକ କଥା

ମୟୂରଭଞ୍ଜରେ ଗୋଟିଏ ଗ୍ରାମରେ ଜଣେ ଧନୀ ଲୋକ ଗୋଟିଏ ମୟୂର-ଶାବକ ପୋଷିଥିଲେ । ଶାବକଟି ବଢ଼ି ଗୋଟିଏ ମୟୂର ହେଲା । ମୟୂରଟି ସେହି ଲୋକର ଅଗଣାରେ, ବାହାରେ ଓ ନାନା ସ୍ଥାନରେ ବୁଲୁଥାଏ ଏବଂ କେତେବେଳେ ବୃକ୍ଷର ଡାଳରେ, କେତେବେଳେ ବା ଘରର ଛାତ ଉପରେ ବସୁଥାଏ ।

ମୟୂରଟି ଯେତେବେଳେ ଚାଲି ବୁଲୁଥାଏ ତେତେବେଳେ ତାହାର ଲମ୍ବ ପୁଚ୍ଛ ଭୂମିରେ ଲୋଟୁଥାଏ । ସେ ପୁଚ୍ଛକୁ ଉପରକୁ ଟେକି ମେଲାଇ ଦେଲେ ତାହା ଅତି ମନୋହର ଦିଶେ ଏବଂ ସେଥିରେ ଚନ୍ଦ୍ରକାଗୁଡ଼ିକ ରତ୍ନପରି ଝଟକୁଥାଏ । ତେତେବେଳେ ଗ୍ରାମବାସୀ ଓ ପଥିକମାନେ ତାହାର ଶୋଭା ଦେଖି କହୁଥାନ୍ତି, “ଆହା ! କେଡ଼େ ସୁନ୍ଦର ଦିଶୁଛି ! ଏତ ପକ୍ଷୀମାନଙ୍କର ରାଜା ।”

ଗୋଟିଏ କାକ ଦିନେ ଗୋଟିଏ ବୃକ୍ଷର ଡାଳରେ ବସି ମୟୂରର ପେଖନା ଦେଖିଲା ଓ ଲୋକମାନଙ୍କ ମୁଖରୁ ତାହାର ପ୍ରଶଂସା ଶୁଣିଲା । ସେ ମନେ ମନେ ଭାବିଲା, “ସମସ୍ତେ ଏହି ମୟୂରକୁ ପ୍ରଶଂସା କରୁଅଛନ୍ତି, ମୋତେ କେହି ପ୍ରଶଂସା କରୁ ନାହିଁ ।” ଅନେକ ବେଳଯାଏ ଭାବି ଭାବି ସ୍ଥିର କଲା, “ହଁ, ଏତେବେଳେ ମୁଁ ଜାଣିଲି, ମୟୂର-ପୁଚ୍ଛରେ ଏଡ଼େ ସୁନ୍ଦର ଚନ୍ଦ୍ରକାଗୁଡ଼ିଏ ଥିବାରୁ ଲୋକେ ତାହାକୁ ପ୍ରଶଂସା କରୁଅଛନ୍ତି । ମୋହର ଯଦି ଏହିପରି ସୁନ୍ଦର ପୁଚ୍ଛ ଥାନ୍ତା, ତେବେ ଲୋକେ ମୋତେ ମଧ୍ୟ ପ୍ରଶଂସା କରନ୍ତେ ।”

ତହିଁ ପରଦିନ କାକଟି ନାନା ସ୍ଥାନରେ ବୁଲି ବୁଲି ଧନୀ ଲୋକର ଅଗଣାରେ ଗୋଟିଏ ପଞ୍ଜୁରୀ ଦେଖିପାରି ତାହାକୁ ଥଣ୍ଟରେ ଟାଣି ଆଣିଲା । ଏହି ପଞ୍ଜୁରୀରେ ମୟୂର ପୁଚ୍ଛଗୁଡ଼ିଏ ଖଞ୍ଜା ହୋଇଥିଲା । ସେଥିରୁ ଥଣ୍ଟରେ ପୁଚ୍ଛଗୁଡ଼ିକ ବାହାରକରି ସେ ଆପଣା ଡେଣାରେ ଖଞ୍ଜିଲା, ଏବଂ ମନେ ମନେ ଭାବିଲା, “ବର୍ତ୍ତମାନ ମୁଁ ତ ଗୋଟିଏ ମୟୂର ହୋଇଗଲି ।”

କାକ ଉଡ଼ିଯାଇ ମୟୂର ନିକଟରେ ବସି ତାହାକୁ ଭାଇ ବୋଲି ସମ୍ବୋଧନ କଲା । ଏଥିରେ ମୟୂରଟି କୁପିତ ହୋଇ ତାହାକୁ ଥଣ୍ଟରେ ଖୁମ୍ପି ଅର୍ଦ୍ଧପ୍ରାଣ କଲା । ଏହି ଘଟଣା ଦେଖି ଅନ୍ୟ କାକମାନେ ଆସି ସେହି କାକକୁ ଖୁମ୍ପିବାକୁ ଲାଗିଲେ ।

ସେହି କାକଟି ମୃତପ୍ରାୟ ହୋଇ କୌଣସି ପ୍ରକାରେ ପ୍ରାଣ ନେଇ ଅରଣ୍ୟକୁ ପଳାଇଲା, ଏବଂ ସେହିଠାରେ ଜୀବନର ଅବଶିଷ୍ଟ ଅଂଶ ଯାପନ କଲା ।

ଛଦ୍ମବେଶରେ ଆତ୍ମଗୋପନ କରିବା ସୁବୁଦ୍ଧିର କାର୍ଯ୍ୟ ନୁହେଁ ।

---

## ୨୬ ମନ୍ତ୍ରୀର ବୁଦ୍ଧି

ବିଜୟନଗରରେ ମୋହନ ଶେଠ ନାମରେ ଜଣେ ଶିକ୍ଷକ ବାସ କରୁଥିଲେ । ତାଙ୍କର ତିନିଗୋଟି ପୁତ୍ର ଥିଲେ । ମୃତ୍ୟୁ ସମୟ ନିକଟବର୍ତ୍ତୀ ହେବାରୁ ସେ ଆପଣାର ସମ୍ପତ୍ତି ପୁତ୍ରମାନଙ୍କ ମଧ୍ୟରେ ବାଣ୍ଟିଦେବା ନିମନ୍ତେ ସେମାନଙ୍କୁ ଡାକଲେ ।

ସେ ସେମାନଙ୍କୁ କହିଲେ, "ତୁମ୍ଭେ ଜାଣ ମୁଁ ଜଣେ ଧନୀ ଲୋକ । ବର୍ତ୍ତମାନ ମୋହର ଶେଷ ସମୟ ଉପସ୍ଥିତ ହେଲା । ମୋ ସଙ୍ଗରେ ସମ୍ପତ୍ତି ଯିବ ନାହିଁ; ଯାହା ଅଛି ତାହା ତୁମ୍ଭେମାନେ ଭୋଗ କରିବ । ଅନେକ ଟଙ୍କା, ମଣି, ମୁକ୍ତା, ଘୋଡ଼ା, ଗାଈ, ଘର ଓ ଅନ୍ୟାନ୍ୟ ପଦାର୍ଥ ଅଛି । ଏଗୁଡ଼ିକ ତୁମ୍ଭେମାନେ ସମାନ କରି ବାଣ୍ଟିନେବ । ମାତ୍ର ହାତୀଗୁଡ଼ିକ ସମାନ ହୋଇ ବଣ୍ଟା ହେବ ନାହିଁ । ମୋର ସତରଗୋଟି ଯାକ ହାତୀ ବଡ଼ ଶୁଲକ୍ଷଣ । ସେମାନଙ୍କୁ ବିକ୍ରୟ କରିବ ନାହିଁ । ଏହି ହାତୀମାନଙ୍କ ମଧ୍ୟରୁ ଅଧେ ଜ୍ୟେଷ୍ଠପୁତ୍ରକୁ, ଏକତୃତୀୟାଂଶ ମଧ୍ୟମକୁ ଏବଂ ନବମାଂଶ କନିଷ୍ଠକୁ ଦେଲି । ତୁମ୍ଭେମାନେ ଯେ ଯାହାର ହାତୀ ନେଇ ଯତ୍ନରେ ରଖିବ ।" ଏହା କହି ଶେଠ ମରିଗଲେ ।

ପୁତ୍ରମାନେ ପିତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ଉତ୍ତମରୂପେ ନିର୍ବାହ କଲେ । ସେମାନେ ଅନେକ ଲୋକଙ୍କୁ ଖୁଆଇଲେ ଏବଂ ଦରିଦ୍ରମାନଙ୍କୁ ବହୁତ ଧନ ଦେଲେ । ସେହି କ୍ରିୟା ଶେଷ ହେଲାରୁ ପୁତ୍ରମାନେ ପିତାଙ୍କ ସମ୍ପତ୍ତିକୁ ତାହାଙ୍କ ଆଦେଶ ଅନୁସାରେ ଭାଗ କରିନେଲେ ।

କିନ୍ତୁ ଯେତେବେଳେ ସେମାନେ ହାତୀଗୁଡ଼ିକ ବାଣ୍ଟିବା ପାଇଁ ବସିଲେ ସେତେବେଳେ ସେମାନଙ୍କୁ ବୁଦ୍ଧି ଦିଶିଲା ନାହିଁ । ଅବଶେଷରେ ଜ୍ୟେଷ୍ଠପୁତ୍ର କହିଲା, "ଚାଲ ମନ୍ତ୍ରୀଙ୍କ ନିକଟକୁ ଯିବା । ସେ ଜଣେ ଜ୍ଞାନୀ ଲୋକ । ସେ ବାଣ୍ଟିଲେ ବାଣ୍ଟି ପାରିବେ; ନୋହିଲେ ଆଉ କେହି ବାଣ୍ଟିପାରିବେ ନାହିଁ ।"

ସେମାନେ ଅନେକ ଭେଟି ନେଇ ମନ୍ତ୍ରୀଙ୍କ ନିକଟକୁ ଗଲେ, ଏବଂ ଦଣ୍ଡବତ ହୋଇ ସମସ୍ତ ବିଷୟ ଜଣାଇଲେ । ମନ୍ତ୍ରୀ ସମସ୍ତ ଶୁଣି କହିଲେ, "ତୁମ୍ଭେମାନେ

ଘରକୁ ନେଉଛି ଯାଅ; କାଲି ସକାଳେ ଆମ୍ଭେ ତୁମ୍ଭଘରଠାକୁ ଯିବୁଁ; ଏବଂ ସେଠାରେ ତୁମ୍ଭ ପିତାଙ୍କ ଇଚ୍ଛା ଅନୁସାରେ ହାତୀଗୁଡ଼ିକ ବାଣ୍ଟିଦେବୁଁ ।"

ପରଦିନ ସକାଳେ ମନ୍ତ୍ରୀ ନିଜ ହାତୀରେ ଚଢ଼ି ସେମାନଙ୍କ ଘରକୁ ଗଲେ । ସେମାନେ ତାଙ୍କୁ ଅତି ସମ୍ମାନ କଲେ ଏବଂ ବସିବାପାଇଁ ଉପଯୁକ୍ତ ଆସନ ଦେଲେ । ମନ୍ତ୍ରୀ କହିଲେ, "ସତରଟିଯାକ ହାତୀ ଆଣ ଏବଂ ସେମାନଙ୍କୁ ଧାଡ଼ିକରି ଆମ୍ଭ ଆଗରେ ଠିଆକର । ସେହି ହାତୀମାନଙ୍କ ସଙ୍ଗରେ ଆମ୍ଭର ହାତୀଟି ରଖି ଭାଗ ବସାଅ । ଏହାଶୁଣି ବଣିକଙ୍କର ପୁଅମାନେ ମନେ ମନେ ଅତି ଆନନ୍ଦିତ ହେଲେ । ସେମାନେ ମନେ କରିଥିଲେ ଯେ ସେମାନଙ୍କୁ ଆଉ ଗୋଟିଏ ହାତୀ ମିଳିଲା । ତାହାପରେ ସେମାନେ ଭାଗ ବାଣ୍ଟିନେଲେ । ଜ୍ୟେଷ୍ଠପୁତ୍ର ନଅଟି ନେଲା, ମଧ୍ୟମ ଛଅଗୋଟି ଏବଂ କନିଷ୍ଠ ଦୁଇଗୋଟି ନେଲା ।

ମନ୍ତ୍ରୀ ପଚାରିଲେ, "ତୁମ୍ଭେମାନେ ଯେ ଯାହାର ଭାଗ ପାଇଲ ?" ସେମାନେ ଉତ୍ତର ଦେଲେ, "ଆଜ୍ଞା, ହଁ ।" ମନ୍ତ୍ରୀ କହିଲେ, "ତେବେ ଆମ୍ଭ ହାତୀଟି ଆମ୍ଭଙ୍କୁ ଫେରାଇଦିଅ ।" ଏହା କହି ସେ ନିଜ ହାତୀ ଉପରେ ଚଢ଼ି ଘରକୁ ବାହୁଡ଼ିଗଲେ ।

ମନ୍ତ୍ରୀଙ୍କ ବିଚାରରେ ଅପର ଲୋକେ ଯେପରି ଆନନ୍ଦିତ ହେଲେ, ବଣିକଙ୍କ ପୁତ୍ରମାନେ ମଧ୍ୟ ସେହିପରି ଆନନ୍ଦିତ ହେଲେ । ବିନା ବିବାଦରେ ପିତାଙ୍କ ଇଚ୍ଛା ଅନୁସାରେ ସେମାନଙ୍କ ମଧ୍ୟରେ ସମ୍ପତ୍ତି ବଣ୍ଟା ହୋଇଗଲା ।

---

## ୨୮—ଆ ଓ ଯା

ଦକ୍ଷିଣ ଅଞ୍ଚଳରେ ମହୀସୁର ରାଜ୍ୟର ଗୋଟିଏ ଗ୍ରାମରେ ଜଣେ ଜମିଦାର ବାସକରନ୍ତି । ତାଙ୍କ ନାମ ଶଙ୍କର ରାଓ । ତାଙ୍କ ପିତା ରାଜକାର୍ଯ୍ୟ ଭଲରୂପେ କରିଥିବାରୁ ରାଜା ତାଙ୍କୁ ଖଣ୍ଡିଏ ନିଷ୍କର ଜମି ଦେଇଥିଲେ । ସେଥିରୁ ତାହାଙ୍କର ବାର୍ଷିକ ଏକ ହଜାର ଟଙ୍କା ଆୟ ହେଉଥିଲା ।

ଶଙ୍କର ରାଓ ଏହି ଭୂସମ୍ପତ୍ତି ପାଇଁ ଗର୍ବୀ ଓ ଅସାବଧାନ ହେଲେ । ସେ ଆପଣାର କୃଷିକାର୍ଯ୍ୟରେ ମଜୁରି ଦେଇ ଲୋକ ଲଗାଇଲେ ; ମାତ୍ର କାର୍ଯ୍ୟ ଦେଖିବା ପାଇଁ ସ୍ୱୟଂ ଗଲେନାହିଁ । ଏହିପରି କରିବାରୁ ଚାରିବର୍ଷ ମଧ୍ୟରେ ତାଙ୍କର ଅନେକ ଋଣ ହୋଇଗଲା । ମହାଜନ ତାଙ୍କୁ ଏତେ ପୀଡ଼ା ଦେଲା ଯେ, ସେ ଅଧେ ଜମି ବିକ୍ରିକରି ଋଣ ପରିଶୋଧ କଲେ । ବାକି ଅଧିକ ସେ ଶିବଅପ୍ପା ନାମରେ ଜଣେ ରୟତକୁ ଲଗାଇଦେଲେ ; କାରଣ ସେ ଦେଖିଲେ ଯେ, ନିଜ ଚାଷରେ ତାଙ୍କୁ ସେହି

ଜମିରୁ କିଛିଲାଭ ମିଳିଲା ନାହିଁ । ଶିବଅପ୍‌ପା ବଡ଼ ପରିଶ୍ରମୀ । ସେ ଗୋଟିଏ ଚାକର ରଖି ଜମି ଚାଷ କରେ । ନିଜେ ପ୍ରତିଦିନ ବିଲକୁ ଯାଏ । ଜମିରେ ଭଲ ଖତ ଲଗାଏ । ସେ ସେହି ଜମି ସକାଶେ ଯେତେ ଖଜଣା ଦେଲା ତାହାର ଚାରିଗୁଣ ମୂଲ୍ୟର ଫସଲ ଅମଳ କଲା । ସେ ଲାଭ ଟଙ୍କାରୁ ଅଳ୍ପମାତ୍ର ବ୍ୟୟ କରି ଅଧିକାଂଶ ସଞ୍ଚୟ କଲା । ପାଞ୍ଚବର୍ଷ ମଧ୍ୟରେ ଅନେକ ଟଙ୍କା ଜମାହେଲା । ତିନେ ସେ ଜମିଦାରଙ୍କ ଘରକୁ ଖଜଣା ଦେବା ନିମନ୍ତେ ଯାଇଥିଲା । ସେ କହିଲା, "ମହାଶୟ ! ଆପଣ ଯେଉଁ ଜମି ମୋତେ ଲଗାଇଦେଇ ଅଛନ୍ତି, ତାଙ୍କୁ ବିକ୍ରୟ କରିବେ ବୋଲି ମୁଁ ଶୁଣୁଅଛି । ଅନ୍ୟ ଲୋକ ସେ ଜମିର ଯେଉଁ ମୂଲ୍ୟ ଦେବ ମୁଁ ତାହା ଦେବାକୁ ପ୍ରସ୍ତୁତ ଅଛି । ସେ ଜମି ଆଉ କାହାକୁ ବିକ୍ରୟ ନ କରି ମୋତେ ଦିଅନ୍ତୁ ।"

ଶଙ୍କର ରାଓ୍ୱ ଏହା ଶୁଣି ଅତି ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲେ, "ତୁମ୍ଭେ ଯେତେ ଜମି ମୋଠାରୁ ଖଜଣାରେ ନେଇଅଛ, ତାହାର ଦୁଇଗୁଣ ମୋ ହାତରେ ଥିଲା । ମୋତେ ଖଜଣା ଦେବାକୁ ପଡ଼େ ନାହିଁ । ତଥାପି ମୋର ଋଣ ହେଲା ଏବଂ ମୁଁ ଅଧେ ଜମି ହରାଇଲି । ଏହିକ୍ଷଣି ତୁମ୍ଭ ହାତରେ ମୋ ଜମିର ଅଧେ ଅଛି । ତୁମ୍ଭେ ମୋତେ ଖଜଣା ଦେଉଅଛ । ଏହି ପାଞ୍ଚବର୍ଷ ମଧ୍ୟରେ ତୁମ୍ଭେ ଏତେ ସଞ୍ଚୟ କଲଣି ଯେ, ତୁମ୍ଭେ ଏହି ଜମିକୁ କିଣିବାକୁ ବସିଅଛ । ଏହା କିପରି ହେଲା ?"

ଶିବଅପ୍‌ପା କହିଲା, "ମହାଶୟ ! ଏହାର କାରଣ ଯଦି ପଚାରୁଅଛନ୍ତି, ମୁଁ ଗୋଟିଏ କଥାରେ କହିବି । ଆପଣ କହୁଥିଲେ 'ଯା' ମୁଁ କହିଲି 'ଆ' ।'

ଶଙ୍କର ରାଓ୍ୱ ପଚାରିଲେ, "ଏହାର ଅର୍ଥ କ'ଣ ? ମୁଁ କାହାକୁ କହିଲି 'ଯା' ତୁମ୍ଭେ କାହାକୁ କହିଲ 'ଆ' ?"

ଶିବଅପ୍‌ପା କହିଲା, "ମହାଶୟ ! ଆପଣ ଚାକରମାନଙ୍କୁ କହିଲେ 'ଯା, ଜମି ଚଷ ।" ଆପଣ ନିଜେ ଗଲେ ନାହିଁ । ସେମାନେ ଯେତେବେଳେ ଦେଖିଲେ ଯେ, କେହି ସେମାନଙ୍କ କାର୍ଯ୍ୟ ଦେଖିବାକୁ ନାହିଁ, ସେତେବେଳେ ସେମାନେ ଅଧା କାମ କଲେ । ଆପଣ ଘରେ ବସି କିଛି ବୁଝନ୍ତି ନାହିଁ । ସେମାନେ ଦିନକର କାର୍ଯ୍ୟ ଦୁଇଦିନରେ କରନ୍ତି । ମୁଁ ପ୍ରତ୍ୟୁଷରେ ଉଠେଁ, ଚାକରକୁ କହେଁ ମୋ ସାଙ୍ଗରେ 'ଆ' । ମୁଁ ଆଗେ ଯାଏଁ, ସେ ମୋ ପଛରେ ଯାଏ । ମୁଁ ତାହାର ସଙ୍ଗରେ ରହି କାର୍ଯ୍ୟ କରେ । ଦୁହେଁ ମିଳି ଦିନଯାକ କାମ କରୁଁ । ଏହି କାରଣରୁ ମୁଁ ଲାଭ ପାଉଅଛି, ଆପଣ କିଛି ପାଉ ନ ଥିଲେ ।

———

## ୨୯—ଧୋବା ଓ କୁମ୍ଭୀର କଥା

ମହୀସୁର ରାଜ୍ୟରେ ଗୋଟିଏ ଗ୍ରାମ ଅଛି । ସେହି ଗ୍ରାମର ପାଖରେ ଗୋଟିଏ ବଡ଼ ନଦୀ ବହି ଯାଉଅଛି । ସେଠାରେ ଗଣ୍ଡ ଅଛି । ସେଥିରେ ଗ୍ରୀଷ୍ମକାଳରେ ମୁଦ୍ଧା ବହୁତ ଜଳ ଥାଏ । ଅନେକ କୁମ୍ଭୀର ସେହି ନଦୀରେ ବାସ କରୁଥିଲେ ।

ସେହି ଗ୍ରାମରେ ଗୋଟିଏ ଧୋବା ଥିଲା । ସେ ନଦୀରେ ଲୁଗା କାଚେ । ଦିନେ ସେ ଲୁଗା କାଚସାରି କୂଳରେ ଶୁଖାଇ ଦେଇ ପାଣି ଭିତରେ ଗୋଟିଏ ପଥର ଉପରେ ନିଶ୍ଚିନ୍ତ ହୋଇ ବସିଥିଲା ।

କୌତୁକ ଦେଖିବା ସକାଶେ ସେ ଉଚ୍ଚସ୍ୱରରେ ଡାକ ପକାଇଲା, "କୁମ୍ଭୀର ମୋତେ ଧରିଲା ହୋ, ଦୌଡ଼ିଆସ, ଦୌଡ଼ି ଆସ ।" ଗ୍ରାମବାସୀମାନେ ଏହାଶୁଣି ଠେଙ୍ଗା ବାଡ଼ି ନେଇ ତାକୁ ସାହାଯ୍ୟ କରିବା ନିମନ୍ତେ ଦୌଡ଼ିଆସିଲେ । ତାହା ଦେଖି ଧୋବା ତାଳିମାରି ହସିଲା । ଏଥିରେ ଗ୍ରାମବାସୀମାନେ ତାହା ଉପରେ କୁପିତ ହୋଇ ଫେରିଗଲେ ।

ତହିଁଆରଦିନ ଧୋବା ପାଣିରେ ଠିଆ ହୋଇ ଲୁଗା କାଚୁଅଛି, ଏମନ୍ତ ସମୟରେ କୁମ୍ଭୀରଟିଏ ତାହା ପଛରୁ ବାହାରିଲା । କୁମ୍ଭୀର ତାହାକୁ ଧରି ନଦୀ ଭିତରକୁ ଟିକି ନେବାରୁ ସେ ଆକୁଳ ହୋଇ ଡାକ ପକାଇଲା, "ମୋତେ କୁମ୍ଭୀର ଧରିଲା, ମୋତେ କୁମ୍ଭୀର ଧରିଲା, ଦୌଡ଼ିଆସ ହୋ, ଦୌଡ଼ିଆସ ।" କିନ୍ତୁ ଗ୍ରାମବାସୀମାନେ ଭାବିଲେ ଯେ, ସେ ସେମାନଙ୍କ ସଙ୍ଗରେ କୌତୁକ ଖେଳୁଅଛି । ସେଥିପାଇଁ କେହି ଗୋଟିଏ ତାହାକୁ ସାହାଯ୍ୟ କରିବାକୁ ବାହାରିଲେ ନାହିଁ ।

କୁମ୍ଭୀର ଧୋବାକୁ ଗୋଡ଼ଆଡ଼ୁ ଧରି ପାଣି ଭିତରେ ବୁଡ଼ାଇ ଦେଲା ଏବଂ ଆନନ୍ଦରେ ଖାଇଲା ।

କୌତୁକରେ ମୁଦ୍ଧା ମିଛ କହିଲେ ବିପଦ ଅଛି ।

---

## ୩୦—ଚୋରି କରନାହିଁ (୧)

ଦାକ୍ଷିଣାତ୍ୟର ପଶ୍ଚିମ ଭାଗରେ କାନଡ଼ା (କନ୍ନଡ଼) ନାମରେ ଗୋଟିଏ ଦେଶ ଅଛି । ତହିଁରେ ରାମ ଓ ଗୋବିନ୍ଦ ନାମରେ ଦୁଇଗୋଟି ବାଳକ ଥିଲେ । ସେ ଦୁହେଁ ଏକ ବିଦ୍ୟାଳୟରେ ପଢ଼ୁଥିଲେ ।

ଏବେ ସେମାନେ ବିଦ୍ୟାଳୟରୁ ଘରକୁ ଆସୁ ଅଛନ୍ତି, ଏହି ସମୟରେ ବାଟ ପାଖରେ ଗୋଟିଏ ବଗିଚାରେ ବୁଲିବାକୁ ଗଲେ । ସେହି ବଗିଚାରେ ଗୋଟିଏ ଆମ୍ବଗଛ ଫଳରେ ପୂର୍ଣ୍ଣ ହୋଇଥିଲା । ତାହାର ପ୍ରତି ଡାଳରେ ବଡ଼ ବଡ଼ ସୁରଙ୍ଗ ପାଚିଲା ଆମ୍ବ ଝୁଲୁଥିଲା ।

ଗଛର ନିକଟରେ ପହଞ୍ଚିଲାରୁ ଗୋବିନ୍ଦ ଟିକିଏ ଠିଆ ହୋଇ ପାଚିଲା ଆମ୍ବ-ଗୁଡ଼ିକୁ ଚାହିଁଲା । ରାମ ଏହା ଦେଖି କହିଲା, "ଆସ ଯିବା, ବିଳମ୍ବ ହେଲାଣି ।"

ଗୋବିନ୍ଦ କହିଲା, "ରାମ ! ଉପରକୁ ଚାହିଁଲ, କେଡ଼େ ସୁନ୍ଦର ଆମ୍ବ । ସେଗୁଡ଼ିକ ଭଲ ପାଚିଅଛି । ତାକୁ ଦେଖି ମୋ ପାଟିରୁ ଲାଳ ବହୁଛି । ଗୋଡ଼ ଚଳୁ ନାହିଁ । ଚାଲ ଦୁଇ ଗୋଟି ଆମ୍ବ ତୋଳିବା; ତୁମ୍ଭ ପାଇଁ ଗୋଟିଏ, ମୋ ପାଇଁ ଗୋଟିଏ ।"

ରାମ—ଗୋବିନ୍ଦ ! ତୁମ୍ଭେ କଅଣ କହୁଛ ? ସେ ଗଛ ଆମ୍ଭର ନୁହେଁ । ତୁମ୍ଭେ ତ ଭଲ କରି ଜାଣ, ଯାହା ଆମ୍ଭର ନୁହେଁ, ତାହା ନେବା ଉଚିତ ନୁହେଁ ।

ଗୋବିନ୍ଦ—କଅଣ କହୁଛ ? ଗଛରେ ଆମ୍ବ ପୂରି ରହିଛି ; ଡାଳ ଯାକ ଭାଙ୍ଗି ପଡ଼ୁ-ଅଛି । ଗୋଟିଏ ଯୋଡ଼ିଏ ଆମ୍ବ ନେଇଗଲେ ବଗିଚା-ମାଲିକର କଅଣ କ୍ଷତି ହୋଇଯିବ ?

ରାମ—ସେପରି କ୍ଷତି ହେବ ନାହିଁ ସତ୍ୟ ; କିନ୍ତୁ ତୁମ୍ଭର ଯାହା ନୁହେଁ, ତାହା ନେଲେ ତୁମ୍ଭେ ଚୋର ହେବ ଯେ ।

ଗୋବିନ୍ଦ—ମୁଁ ଚୋର ହେବି ? କଣ ? ମୁଁ ଟଙ୍କା-କଉଡ଼ି ନେଇ ଯାଉଛି ? ଗଛ ଗୋଟାକରୁ ଗୋଟିଏ କି ଯୋଡ଼ିଏ ଆମ୍ବ ନେଲେ ତୁମ୍ଭେ କ'ଣ ମୋତେ ଚୋର ବୋଲି କହିବ ?

ରାମ—ଗୋବିନ୍ଦ ! ଏପରି କଥା କହ ନାହିଁ । ଯାହା ଆପଣାର ନୁହେଁ, ତାହା ଯେ ନିଏ ସେ ଚୋର । କଉଡ଼ି କଡ଼ାଏ ହେଲେ କଅଣ, ସୁନା ମୁଣ୍ଡାଏ ହେଲେ କଅଣ ?

ଗୋବିନ୍ଦ—ତୁମେ କ'ଣ କହୁଛ, କଉଡ଼ି କଡ଼ାଏ ଯାହା ସୁନା ମୁଣ୍ଡାଏ ତାହା ?

ରାମ—ଦୁହେଁ ସମାନ ବୋଲି ମୁଁ କହୁ ନାହିଁ । କଉଡ଼ି କଡ଼ାଏ ନେବା ଯେପରି ଚୋରି, ସୁନା ମୁଣ୍ଡାଏ ନେବା ସେହିପରି ଚୋରି । ଶିକ୍ଷକ ମହାଶୟ ଏକଥା ଆମ୍ଭମାନଙ୍କୁ ବାରମ୍ବାର କହିଅଛନ୍ତି । ମୁଁ ଏହା ଯେପରି ଜାଣେ ତୁମ୍ଭେ ସେହିପରି ଜାଣ । ଆସ ଗୋବିନ୍ଦ ! ଘରକୁ ଯିବା, ଆଉ ସେ ଆମ୍ବକୁ ଚାହିଁ ନାହିଁ ।

ରାମ ଏହା କହିବାରୁ ଗୋବିନ୍ଦ ତାହାର କଥା ମାନିଲା, ଏବଂ ଦୁହେଁ ଘରକୁ ଗଲେ ।

———

## ୩୧—ରାମଚନ୍ଦ୍ର ଓ ଗୁଣ୍ଡିଚ ମୂଷା

ଅତି ପୂର୍ବକାଳରେ ଅଯୋଧ୍ୟା-ଦେଶରେ ଦଶରଥ ନାମରେ ଜଣେ ରାଜା ଥିଲେ । କୌଶଲ୍ୟା, କୈକେୟୀ ଓ ସୁମିତ୍ରା ନାମରେ ତାହାଙ୍କର ତିନି ରାଣୀ ଥିଲେ । କୌଶଲ୍ୟାଙ୍କ ଗର୍ଭରୁ ରାମଚନ୍ଦ୍ର, କୈକେୟୀଙ୍କ ଗର୍ଭରୁ ଭରତ, ଏବଂ ସୁମିତ୍ରାଙ୍କ ଗର୍ଭରୁ ଲକ୍ଷ୍ମଣ ଓ ଶତ୍ରୁଘ୍ନ ଜନ୍ମିଲେ ।

ରାମଚନ୍ଦ୍ର ଜନକ ରାଜାଙ୍କର କନ୍ୟା ସୀତାଙ୍କୁ ବିବାହ କଲେ । ଏହା ଉତ୍ତାରେ ସେ ପିତୃ-ସତ୍ୟ ପାଳନ କରି, ବନକୁ ଗିବାରୁ ଲକ୍ଷ୍ମଣ ଓ ସୀତା ମଧ୍ୟ ତାହାଙ୍କ ସଙ୍ଗରେ ଗମନ କଲେ ।

ନାନା ସ୍ଥାନରେ ଭ୍ରମଣ କରି ସେମାନେ ଦଣ୍ଡକାରଣ୍ୟରେ ଗୋଟିଏ କୁଟୀର ନିର୍ମାଣ କରି ତହିଁରେ ବାସ କରୁଥିଲେ । ଏହି ସମୟରେ ଦିନକରେ ରାମଚନ୍ଦ୍ର ଓ ଲକ୍ଷ୍ମଣ ଅରଣ୍ୟ ଭିତରକୁ ବାହାରିଗଲେ । କୁଟୀର ମଧ୍ୟରେ ସୀତା ଏକାକୀ ଥିଲେ । ଲଙ୍କାର ରାଜା ରାବଣ ସେଠାରେ ଉପସ୍ଥିତ ହୋଇ ସୀତାଙ୍କୁ ଅପହରଣ କରି, ଆପଣା ରାଜ୍ୟକୁ ନେଇଗଲେ ।

ରାମଚନ୍ଦ୍ର ନାନା ସ୍ଥାନରେ ଅନ୍ୱେଷଣ କରି ଶେଷରେ ସମ୍ବାଦ ପାଇଲେ ଯେ ରାବଣ ସୀତାଙ୍କୁ ଅପହରଣ କରି ଲଙ୍କାରେ ରଖିଅଛି । ଲଙ୍କା ଗୋଟିଏ ଦ୍ୱୀପ । ତାହାର ଚାରିଆଡ଼େ ସମୁଦ୍ର ରହିଅଛି । ସେଠାକୁ ଯାଇ ସୀତାଙ୍କୁ ଉଦ୍ଧାର କରିବେ ବୋଲି ରାମଚନ୍ଦ୍ର ଲଙ୍କା ପର୍ଯ୍ୟନ୍ତ ଗୋଟିଏ ସେତୁ ବାନ୍ଧିଲେ ।

ରାମଚନ୍ଦ୍ର ଅତିଶୟ ସାଧୁ । ସେଥିପାଇଁ ପଶୁପକ୍ଷୀମାନେ ସୁଦ୍ଧା ତାହାଙ୍କ ଦୁଃଖରେ ଦୁଃଖିତ ହୋଇଥିଲେ, ଏବଂ ଯେ ଯାହାର ଶକ୍ତି ଅନୁସାରେ ସେ ସମୟରେ ତାହାଙ୍କୁ ସାହାଯ୍ୟ କରୁଥିଲେ । ଗୋଟିଏ ଗୁଣ୍ଡୁଚି ମୂଷା ଧୂଳିରେ ଗଡ଼ାଇ ହୋଇ ସେତୁ ଉପରେ ଧୂଳିଗୁଡ଼ିକ ଝାଡ଼ି ଦେଉଥିଲା । ରାମଚନ୍ଦ୍ର ତାହାର ଏହି ବ୍ୟବହାର ଦେଖି ଅତି ସ୍ନେହରେ ଆପଣାର ଆଙ୍ଗୁଳି ଦ୍ୱାରା ତାହାର ଦେହ ଆଉଁସି ଦେଲେ । ସେହି ଦିନଠାରୁ ଗୁଣ୍ଡୁଚିମୂଷା ଦେହରେ ତାହାର ଚିହ୍ନ ରହିଅଛି ।

---

## ୩୨—ଚୋରି କରନାହିଁ (୨)

ତୁମ୍ଭମାନଙ୍କର ମନେ ଥିବ ରାମ କିପରି ଗୋବିନ୍ଦକୁ ଆମ୍ବ ଚୋରି କରିବାକୁ କହୁଥିଲା । ଗୋବିନ୍ଦ ରାମର ବାଧା ମାନିଗଲା, ମାତ୍ର ଆମ୍ବକଥା ଭୁଲି ପାରିଲା ନାହିଁ । ସେ ରାତ୍ରିରେ ଶୋଇଲାରୁ ପାଚିଲା ଆମ୍ବର ସ୍ୱପ୍ନ ଦେଖିଲା ।

ତହିଁ ଆରଦିନ ବିଦ୍ୟାଳୟ ଛୁଟି ହେଲାରୁ ଗୋବିନ୍ଦ ରାମ ସଙ୍ଗରେ ଘରକୁ ଗଲା ନାହିଁ, ପଛରେ ଲୁଚି ରହିଗଲା । ରାମ ବାହାରିଗଲାରୁ ସେ ଏକାକୀ ଆମ୍ବ-ବଗିଚା ଭିତରେ ପଶିଲା । ସେତେବେଳେ ବଗିଚାରେ କୌଣସି ଲୋକ ନ ଥିଲେ । ସେ ବଗିଚା ଯେଉଁ ବ୍ୟକ୍ତିର, ତାହାର ଧାରଣା ଥିଲା ଯେ, ଗ୍ରାମବାସୀମାନେ ସାଧୁ ଲୋକ । ସେହି କାରଣରୁ ସେ ଆମ୍ବ ଜଗୁ ନ ଥିଲା । ବଗିଚାରେ ଅନ୍ୟ କୌଣସି ବ୍ୟକ୍ତି ନାହିଁ ଦେଖି ଗୋବିନ୍ଦ ଯୋଡ଼ିଏ ଆମ୍ବ ତୋଳିଲା । ବଗିଚାର ଗୋଟିଏ କୋଣକୁ ଯାଇ ସେ ଯୋଡ଼ିକଯାକ ଆମ୍ବ ଖାଇଲା ; କିନ୍ତୁ ତାହାର ମନରେ ହେଉଥାଏ ଯେ ସେ ଅନ୍ୟାୟ କାର୍ଯ୍ୟ କରୁଅଛି । ତାହାର ଚୋରି ଧରିବାପାଇଁ ସେଠାରେ କେହି ନ ଥିବାରୁ ସେଦିନ ତାହାର କୌଣସି ଅନିଷ୍ଟ ହେଲା ନାହିଁ ।

ଏହା ଉତ୍ତାରେ ଗୋବିନ୍ଦ ଅନେକ ଥର ବଗିଚାକୁ ଯାଇ ସେହିପରି ଆମ୍ବ ଚୋରିକରି ଖାଇଲା । ଚୋରି କରିବାର ଅଭ୍ୟାସ ବଳିବାରୁ ତାହାର ଭୟ କିମ୍ବା ଲଜ୍ଜା ରହିଲା ନାହିଁ । ତହିଁ ଉତ୍ତାରୁ ସେ ଫଳମାନଙ୍କର କଲମ ପ୍ରଭୃତି ଚୋରି କଲା ।

ଦିନେ ଜଣେ ପଥିକ ନଦୀ କୂଳରେ ଗୋଟିଏ ବୃକ୍ଷ ଉପରେ ଆପଣାର କୁର୍ତ୍ତା ଓ ତାହା ତଳେ ପିନ୍ଧିବା ଲୁଗା ରଖି ଘାଟରେ ସ୍ନାନ କରୁଥିଲେ । ତାହାଙ୍କ କୁର୍ତ୍ତାରେ ଗୋଟିଏ ସୁନାର ଘଣ୍ଟା ଥିଲା । ଏହି ସମୟରେ ଗୋବିନ୍ଦ ସେଠାରେ ଉପସ୍ଥିତ ହୋଇ ଘଣ୍ଟାଟି ଅପହରଣ କରି ଧୀରେ ଧୀରେ ଚାଲିଗଲା ।

ସେହି ଭଦ୍ର ଲୋକଟିର ଭୃତ୍ୟ ପଛରେ ଆସୁଥିଲା । ସେ ଏହା ଦେଖିପାରି ଗୋବିନ୍ଦକୁ ଗୋଡ଼ାଇଲା । ଗୋବିନ୍ଦ ତାକୁ ଦେଖି ଦୌଡ଼ି ପଳାଇଲେ ହେଁ ଶେଷରେ ଧରା ପଡ଼ିଲା । ବିଚାରରେ ତାହାକୁ କଠିନ ଦଣ୍ଡ ହେଲା ।

ସେହି ଦିନଠାରୁ ସମସ୍ତେ ଗୋବିନ୍ଦକୁ ଚୋର ବୋଲି ଘୃଣା କଲେ । ଗୋବିନ୍ଦ ସେତେବେଳେ ମନେ ମନେ ଭାବିଲା, "ରାମର ଉପଦେଶ ମାନି ମୁଁ ମୂଳରୁ ଚୋରି କରିବାର ଅଭ୍ୟାସ ଛାଡ଼ିଥିଲେ, ଏହି ଦଣ୍ଡ ଓ ଘୃଣା ମୋତେ କେବେହେଁ ଭୋଗ କରିବାକୁ ହୁଅନ୍ତା ନାହିଁ ।"

---

## ୩୩—ବଜ୍ଜି ବିଚାରକ କଥା

ପଶ୍ଚିମ ଦେଶରେ ଅନେକ ବର୍ଷ ତଳେ ଜଣେ ରାଜା ଥିଲେ । ସେ ବିଜ୍ଞ ଓ ଦୟାଳୁ ଥିଲେ, ଏବଂ ପ୍ରଜାମାନଙ୍କୁ ଆପଣାର ସନ୍ତାନ ପରି ମଣୁଥିଲେ । ସେମାନଙ୍କର ଗୁହାରି ସେ ସ୍ୱୟଂ ଶୁଣୁଥିଲେ ।

ଦିନକରେ ଦୁଇ ଜଣ ସ୍ତ୍ରୀଲୋକ ରାଜାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ତନ୍ମଧ୍ୟରୁ ଜଣେ ଆପଣା ହସ୍ତରେ ଗୋଟିଏ ଶିଶୁ ଧରିଥିଲା । ସେମାନଙ୍କୁ ଦେଖି ରାଜା ପଚାରିଲେ, "ତୁମ୍ଭେମାନେ କିଏ ? କି ନିମନ୍ତେ ଏଠାକୁ ଆସିଅଛ ?" ଜଣେ ସ୍ତ୍ରୀଲୋକ କହିଲା, "ମହାରାଜ ! ଅମ୍ଭେମାନେ ଶ୍ରୀମୁଖଙ୍କର ପ୍ରଜା । ଏହି ସ୍ତ୍ରୀଲୋକ ଏବଂ ମୁଁ ଏକା ଘରେ ବାସ କରୁଁ । ଆମ୍ଭେ ଦୁହେଁ ଏକ ଜାତି । ତିନିମାସ ପୂର୍ବେ ଏହାର ଗୋଟିଏ ସନ୍ତାନ ଜନ୍ମିଲା, ଏବଂ ମୋର ମଧ୍ୟ ଗୋଟିଏ ସନ୍ତାନ ଜନ୍ମିଲା । ଆମ୍ଭ ଦୁହିଙ୍କର ସ୍ୱାମୀ ଏକାଦିନରେ ପ୍ରାଣତ୍ୟାଗ କଲେ । ଅମ୍ଭେ ଦୁହେଁ ପୂର୍ବପରି ଏକତ୍ର ବାସ କରୁଅଛୁଁ । ଆମ୍ଭମାନଙ୍କ ସଙ୍ଗରେ ଆଉ କେହି ନାହିଁ ।

"ଗତ ରାତିରେ ଦୁହେଁ ଶିଶୁ ଦିଓଟିକି ନେଇ ପାଖେ ପାଖେ ଶୋଇଥିଲୁଁ । ଏ ଗାଢ଼ ନିଦ୍ରାରେ ଗଡ଼ିଯାଇ ଦେବାରୁ ଆପଣାର ଶିଶୁ ଉପରେ ମାଡ଼ିଯିବାରୁ ତାହାର ଶିଶୁର ପ୍ରାଣ ବାହାରିଗଲା । ଏ ପ୍ରତ୍ୟୁଷରେ ତାହା ଦେଖି ମୃତ ଶିଶୁଟି ମୋହର ଶେଯରେ ଥୋଇ ଦେଇ, ମୋହର ଶିଶୁଟିକୁ ଆପଣାର ଶେଯକୁ ନେଲା । ମୁଁ ନିଦ୍ରିତ ଥିବାରୁ ଏହା ଜାଣିପାରିଲି ନାହିଁ ।

"ମୋହର ନିଦ୍ରାଭଙ୍ଗ ହେବାରୁ ମୁଁ ଏହା ଜାଣିପାରିଲି । କିନ୍ତୁ ଏ କହେ "ମୁଁ ମୋହର ଶିଶୁର ପ୍ରାଣ ନାଶ କରିଅଛୁ, ଏବଂ ତତ୍ପରବର୍ତ୍ତିରେ ତାହାର ଶିଶୁକୁ ନେଇଅଛୁ । ମୁଁ ଏହାକୁ ଯେତେ ବୁଝାଇଲେ ହେଁ ଏ ମୋହ କଥାରେ କର୍ଣ୍ଣପାତ କରୁନାହିଁ । ଏ ଯେଉଁ ଶିଶୁକୁ ଧରିଅଛୁ, ସେ ମୋହର, ତାହାର ନୁହେଁ । ମୁଁ କି ମୋହର ଶିଶୁକୁ ଚିହ୍ନି ନାହିଁ ? ମହାରାଜ ! ଶ୍ରୀମୁଖରୁ ସୁବିଚାର ହେଉ । ମୋହର ସନ୍ତାନ ମୋତେ ଫେରାଇ ଦେବା ପାଇଁ ଆଦେଶ ହେଉ ।"

ଏହା ଶୁଣି ରାଜା ଅପର ସ୍ତ୍ରୀ ଲୋକକୁ ପଚାରିଲେ, "ତୁମ୍ଭେ କଅଣ କହୁଅଛ ?" ସେ ସ୍ତ୍ରୀ ଲୋକଟି ଉତ୍ତର ଦେଲା,"ମହାରାଜ ! ସେ ମିଥ୍ୟା କହୁଅଛୁ । ସେ ମୋହର ସନ୍ତାନକୁ ନେବାକୁ ଚାହେଁ । ମୃତ ଶିଶୁ ତାହାର ସନ୍ତାନ ଅଟେ ; ଜୀବିତ ଶିଶୁଟି ମୋହର ।"

ରାଜା କିଛିକାଳ ମନେ ମନେ ଭାବିଲେ । ତହିଁ ଉତ୍ତାରୁ ସେ କହିଲେ, "ଏହି ଶିଶୁଟିକୁ ମୋହର ସମ୍ମୁଖରେ ତଳେ ଥୋଇ ଦିଅ ।" ଅନନ୍ତର ସମୀପବର୍ତ୍ତୀ ଭୃତ୍ୟକୁ ରାଜା ଆଦେଶ ଦେଲେ, "ଖୋଲରୁ ତୁମ୍ଭର ତରବାରି ବାହାର କରି ଏହି ଶିଶୁକୁ ଦୁଇଖଣ୍ଡ କରି କାଟ, ଏବଂ ଏ ଦୁହିଙ୍କୁ ଖଣ୍ଡିଏ ଖଣ୍ଡିଏ ବାଣ୍ଟିଦିଅ ।"

ଭୃତ୍ୟ ରାଜାଜ୍ଞାରେ ତରବାରି ବାହାର କରି ଶିଶୁକୁ କାଟିବାକୁ ଉଦ୍ୟତ ହୁଅନ୍ତେ, ଯେଉଁ ସ୍ତ୍ରୀ ଲୋକଟି ଶିଶୁକୁ ଜନ୍ମ କରିଥିଲା, ସେ ଚିତ୍କାର କରି କହିଲା, "ରହ ରହ, ଶିଶୁଟିର ପ୍ରାଣ ନାଶ କର ନାହିଁ । ସେ ଏହି ଶିଶୁକୁ ନେଉ । ଶିଶୁଟି

ବଞ୍ଚିଥିଲେ ତାହା ହିଁ ମୋ ପକ୍ଷରେ ବହୁତ ।" ଅପର ସ୍ତ୍ରୀ ଲୋକଟି ନୀରବରେ ଦଣ୍ଡାୟମାନ ହୋଇ ରହିଲା ।

ଏହା ଦେଖି ରାଜା ଆଦେଶ ଦେଲେ, "ପ୍ରଥମ ସ୍ତ୍ରୀଲୋକଟିକୁ ଏହି ଶିଶୁଟି ଦିଅ । ସେହି ସ୍ତ୍ରୀ ଲୋକ ହିଁ ଏହି ଶିଶୁର ମାତା, ସେଥିପାଇଁ ଏହା ପ୍ରତି ତାହାର ଏତେ ସ୍ନେହ ।" ଏହା ଉତ୍ତାରୁ ରାଜା ଅପର ସ୍ତ୍ରୀ ଲୋକକୁ ଗୃହିଁ କ୍ରୋଧରେ କହିଲେ, "ସତ୍ୟକଥା ସ୍ୱୀକାର କର । ନୋହିଲେ ଦଣ୍ଡ ପାଇବ ।" ଦ୍ୱିତୀୟ ସ୍ତ୍ରୀଲୋକଟି ଭୀତ ହୋଇ କହିଲା, "ମହାରାଜ ! ତୁମ୍ଭେ ଅତି ବିଜ୍ଞ । ଏ ସଂସାରରେ କିଏ ତୁମକୁ ଭୁଲାଇ ପାରିବ ? ଶିଶୁଟି ତାହାର, ମୋହର ନୁହେଁ ।"

---

## ୩୪—ହୀରା ହାତୀ କଥା

ଜଣେ ରାଜାଙ୍କର ହୀରା ନାମରେ ଗୋଟିଏ ହାତୀ ଥିଲା । ହୀରା ସାହସୀ ଓ ଧୀର-ସ୍ୱଭାବ ଥିଲା ଏବଂ କଥା ମାନୁଥିଲା । ପୁଣି ସେ ଦେଶରେ ତାହାପରି ସୁନ୍ଦର ହାତୀ ଆଉ ନ ଥିଲା । ଏଥିନିମନ୍ତେ ରାଜା ତାହାକୁ ବଡ଼ ଭଲ ପାଉଥିଲେ । ହୀରା ରାଜାଙ୍କର ପାଟହାତୀ । ରାଜା କୌଣସି ସ୍ଥାନକୁ ବିଜେ କଲେ ହୀରା ପିଠିରେ ବସି ଯାଉଥିଲେ, ଏବଂ ଯୁଦ୍ଧକୁ ଗଲେ ରାଜାଙ୍କର ପତାକା ହୀରା ଉପରେ ଯାଉଥିଲା । ହୀରା ଉପରେ ଯେଉଁ ହାଉଦା ପଡ଼ୁଥିଲା, ତାହା ଅତି ସୁନ୍ଦର । ସେଥିରେ ତିନିଗ୍ରୀ ଜଣ ବସି ପାରୁଥିଲେ ।

ହୀରାର ମାହୁନ୍ତ ତାହା ପ୍ରତି କେବେହେଁ ମନ୍ଦ ବ୍ୟବହାର କରୁ ନ ଥିଲା । ତାହାର ପୁତ୍ରକନ୍ୟାମାନେ ଆଦୌ ଭୀତ ନ ହୋଇ ତାହା ସହିତ ଖେଳୁଥିଲେ । ହୀରା ମାହୁନ୍ତ ଓ ତାହାର ପିଲାମାନଙ୍କୁ ଅତିଶୟ ଭଲ ପାଉଥିଲା, ଏବଂ ଆନନ୍ଦରେ ସେମାନଙ୍କ ଆଦେଶ ପାଳନ କରୁଥିଲା ।

ଗୋଟିଏ ଯୁଦ୍ଧରେ ହଠାତ୍ ମାହୁନ୍ତର ଦେହରେ ଶତ୍ରୁ ପକ୍ଷର ଗୋଟିଏ ତୀର ବାଜିବାରୁ ତାହାର ପ୍ରାଣ ବାହାରି ଗଲା ଏବଂ ସେ ତଳେ ପଡ଼ିଗଲା । ହାଉଦାରେ ଅପର ଯେଉଁମାନେ ବସିଥିଲେ, ସେମାନେ ମଧ୍ୟ ହତ ହେଲେ । ଏହି ସମୟରେ ରାଜାଙ୍କ ସୈନ୍ୟମାନେ ଭଙ୍ଗ ଦେଲେ । ଯୁଦ୍ଧକ୍ଷେତ୍ରରେ ଜୀବିତ ଥିଲାବେଳେ ହୀରାର ମାହୁନ୍ତ ତାହାକୁ ସ୍ୱସ୍ଥାନ ଛାଡ଼ିଯିବାକୁ ନିଷେଧ କରିଥିଲା ।

ମାହୁନ୍ତ ତଳେ ପଡ଼ି ଯେ ପ୍ରାଣ ହରାଇଅଛି, ତାହା ହୀରାକୁ ଜଣା ନ ଥିଲା । ସୁତରାଂ ଆପଣା ମାହୁନ୍ତଠାରୁ ଅନ୍ୟ ଆଦେଶ ନ ପାଇ ସେ ସେହିଠାରେ ଠିଆ

ହୋଇ ରହିଲା । କିଛିକ୍ଷଣ ପରେ ଗୋଟିଏ ଶର ଆସି ଘୋଡ଼ାର ଦେହରେ ବିଦ୍ଧ ହେଲା; ତଥାପି ରାଜାଙ୍କର ପତାକା ବହନ କରି ସେ ଅଟଳ ହୋଇ ରହିଲା ।

ରାଜାଙ୍କର ସୈନ୍ୟମାନେ ଦୂରରୁ ଦେଖିଲେ ଯୁଦ୍ଧ କ୍ଷେତ୍ରରେ ତାହାଙ୍କର ପତାକା ସେ ପର୍ଯ୍ୟନ୍ତ ଉଡ଼ୁଅଛି । ଏହା ଦେଖି ସେମାନେ ଉତ୍ସାହିତ ହୋଇ ଅଧିକ ସାହସରେ ଶତ୍ରୁ ସୈନ୍ୟମାନଙ୍କୁ ପୁନର୍ବାର ଆକ୍ରମଣ କଲେ । ଏହି ଆକ୍ରମଣରେ ଶତ୍ରୁ ସୈନ୍ୟମାନେ ଭୀତ ହୋଇ ପଳାୟନ କଲେ ।

ଘୋଡ଼ା ପୂର୍ବବତ୍ ଆପଣା ସ୍ଥାନରେ ଠିଆ ହୋଇ ରହିଲା । କାହାରି କଥାରେ ସେ ସେଠାରୁ ଟଳିଲା ନାହିଁ । ରାଜାଙ୍କର ଜଣେ ପାଇକ କହିଲା, "ମାହୁନ୍ତ ପୁତ୍ରକୁ ଘେନିଆସ । ବୋଧହୁଏ ଘୋଡ଼ା ତାହା କଥା ମାନିବ ।" ରାଜାଙ୍କର ସୈନ୍ୟମାନେ ସେହି ପୁତ୍ରକୁ ସେଠାକୁ ଘେନି ଆସିଲେ ।

ମାହୁନ୍ତପୁତ୍ର ସେଠାରେ ଉପସ୍ଥିତ ହୋଇ ଆଣ୍ଠୁମାଡ଼ି ବସିବାକୁ ଘୋଡ଼ାକୁ ଆଦେଶ ଦେଲା । ଏହି ପୁତ୍ରର ବୟସ ଅଳ୍ପ ହେଲେହେଁ ଘୋଡ଼ା ତାହାର ଆଦେଶରେ ଆଣ୍ଠୁମାଡ଼ି ବସିଲା । ଅନନ୍ତର ମାହୁନ୍ତ-ପୁତ୍ରଟି ତାହା ପିଠିରେ ବସି ଯୁଦ୍ଧ-କ୍ଷେତ୍ରରୁ ତାହାକୁ ରାଜାଙ୍କ ନଅରକୁ ଘେନିଗଲା ।

ଘୋଡ଼ା ପଶୁ ହେଲେ ହେଁ ତାହାର ବୁଦ୍ଧି ଥିଲା । ତାହାର ବୁଦ୍ଧି ଓ ସାହସ ହେତୁରୁ ରାଜାଙ୍କ ସୈନ୍ୟମାନେ ଯୁଦ୍ଧରେ ଜୟଲାଭ କଲେ ।

---

## ୩୫—ମନୁଷ୍ୟର ଦଶଭୃତ୍ୟ

ରସାନନ୍ଦ ଓ ଦୀନବନ୍ଧୁ ନାମରେ ଦୁଇଟି ବାଳକ ଏକ ବିଦ୍ୟାଳୟରେ ପଢ଼ୁଥିଲେ । ରସାନନ୍ଦ ଧନୀ ବ୍ୟକ୍ତିର ପୁତ୍ର, ଏବଂ ବଡ଼ କୋଠାଘରେ ବାସ କରୁଥିଲା । ଦୀନବନ୍ଧୁ ଦରିଦ୍ର ଲୋକର ପୁତ୍ର, ସାମାନ୍ୟ କୁଟୀରରେ ବାସ କରୁଥିଲା, ଏବଂ ତାହାର ମା କିମ୍ବା ଭଉଣୀ ନ ଥିବାରୁ ପିତା ଓ ଆପଣା ନିମନ୍ତେ ସ୍ୱହସ୍ତରେ ପାକ କରୁଥିଲା । ଦିନକରେ ବିଦ୍ୟାଳୟ ଛୁଟି ହେବାରୁ ରସାନନ୍ଦ ଓ ଦୀନବନ୍ଧୁ ଏକତ୍ର ହୋଇ ଘରକୁ ନେଉଟିଲାବେଳେ ରସାନନ୍ଦ ଦୀନବନ୍ଧୁକୁ କହିଲା, "ମୋହର ପିତା ଯେପରି ଧନୀ, ତୁମର ପିତା ସେହିପରି ଧନୀ ହୋଇପାରିଥାନ୍ତେ କି, ତୁମ୍ଭର ଏପରି ଇଚ୍ଛା ହୁଏ ନାହିଁ କି ? ଆମ୍ଭର ସୁନ୍ଦର କୋଠାଘର । ମୋହର ପିତା ମୋହ ପାଇଁ ତିନୋଟି ଚାକର ରଖି ଦେଇଅଛନ୍ତି । ମୁଁ ସେମାନଙ୍କୁ ଯାହା କହେ, ସେମାନେ ତାହା କରନ୍ତି ।"

ଦୀନବନ୍ଧୁ କହିଲା, "ମୋହର ଦଶଟି ଚାକର ଅଛନ୍ତି । ମୁଁ ସେମାନଙ୍କୁ ଯେତେବେଳେ ଯାହା କରିବାକୁ କହେ, ସେମାନେ ତତ୍‌କ୍ଷଣାତ୍ ତାହା କରନ୍ତି ।"

ରସାନନ୍ଦ କହିଲା, "କଣ ! ତୁମ୍ଭର ଦଶଟି ଚାକର ଅଛନ୍ତି—ତୁମ୍ଭେ କହୁଅଛ ? କି ଘୋର ମିଥ୍ୟା କଥା ! ମୋହର ବିଶ୍ୱାସ ଥିଲା ତୁମ୍ଭେ ସତ୍ୟବାଦୀ ଅଟ । ସମସ୍ତେ ଜାଣନ୍ତି ଯେ ତୁମ୍ଭ ଘରେ ଜଣେ ସୁଦ୍ଧା ଚାକର ନାହିଁ ।"

ବିଦ୍ୟାଳୟର ଶିକ୍ଷକ ସେମାନଙ୍କ ଆଗେ ଆଗେ ଯାଉଥିଲେ । ସେ ଦୁହିଙ୍କର ପରସ୍ପର ସହିତ କଥା ଶୁଣି ସେ ଠିଆ ହୋଇ ପଛକୁ ଫେରିପଡ଼ିଲେ । ଦୀନବନ୍ଧୁ ସାଧୁ ଅଟେ । ସେ କେବେହେଁ ମିଥ୍ୟା କଥା କହେ ନାହିଁ ବୋଲି ତାହାଙ୍କର ଧାରଣା ଥିଲା । ସେ ସ୍ନେହ-ଦୃଷ୍ଟିରେ ଦୁହିଙ୍କୁ ଚାହିଁ ଦୀନବନ୍ଧୁଙ୍କୁ କହିଲେ, "ଦୀନବନ୍ଧୁ ! ତୁମ୍ଭେ କଅଣ କହୁଅଛ ? କୌଣସି ବ୍ୟକ୍ତି ତୁମ୍ଭ ପିତାଙ୍କୁ ବହୁତ ଟଙ୍କା ଦେଇଅଛନ୍ତି, ଏବଂ ତଦ୍‌ଦ୍ୱାରା ତୁମ୍ଭ ପିତାଙ୍କର ସମ୍ପତ୍ତି ରସାନନ୍ଦ ପିତାଙ୍କର ସମ୍ପତ୍ତିଠାରୁ ଅଧିକ ହୋଇଅଛି କି ? ନୋହିଲେ ତୁମ୍ଭ ଘରେ ଦଶଜଣ ଚାକର କିପରି ରହିଲେ ? ଅଥବା ତୁମ୍ଭେ କୌତୁକରେ ଏପରି କହୁଅଛ ।"

ଦୀନବନ୍ଧୁ ଅଳ୍ପ ହସି କହିଲା, "ଆଜ୍ଞା, ମୁଁ ସତ୍ୟ କଥା କହୁଅଛି । ମୋହର କଥା ମାନିବା ପାଇଁ ଦଶଟି ଚାକର ଅଛନ୍ତି । ରସାନନ୍ଦଙ୍କ ଚାକରମାନେ କେତେ-ବେଳେ ଅବା ତାଙ୍କ କଥା ମାନିବାରେ ଅବହେଳା କରିପାରନ୍ତି, ସେମାନେ ଅଳସୁଆପଣ କରି କାର୍ଯ୍ୟରେ ତ୍ରୁଟି କରିପାରନ୍ତି; ମାତ୍ର ମୋହର ଚାକରମାନେ ସେପରି ନୁହନ୍ତି । ମୁଁ ଯେତେବେଳେ ଯାହା କହେଁ ସେମାନେ ତତ୍‌କ୍ଷଣାତ୍ ତାହା କରିବା ପାଇଁ ସର୍ବଦା ପ୍ରସ୍ତୁତ ଥାନ୍ତି । ମୋହର କୌଣସି ଚାକର କେବେ ହେଁ ମୋହର ଆଦେଶ ପାଳନ କରିବାରେ ଅବହେଳା ବା ତ୍ରୁଟି କରନାହିଁ ।" ଶିକ୍ଷକ କହିଲେ, "ଏ ତ ବଡ଼ ବିଚିତ୍ର କଥା ! ଆଚ୍ଛା, ତୁମ୍ଭ ଚାକରମାନଙ୍କର ନାମ କହିବ କି ।"

ରସାନନ୍ଦ କହିଲା, "ହଁ, ସେମାନଙ୍କ ନାମ କହିବ ।" ଦୀନବନ୍ଧୁ କହିଲା, "ମୋହର ଦଶଗୋଟି ଚାକର ମଧ୍ୟରୁ ଯୋଡ଼ିଏ ଦୁଇପାଦ, ଯୋଡ଼ିଏ ଦୁଇହାତ, ଯୋଡ଼ିଏ ଦୁଇକାନ ଏବଂ ଯୋଡ଼ିଏ ଦୁଇଚକ୍ଷୁ । ଏ ହେଲା ଆଠ, ପୁଣି ଗୋଟିଏ ନାକ ଓ ଗୋଟିଏ ମୁଖ ଅଛି । ମୋତେ କୌଣସି ସ୍ଥାନକୁ ଯିବାକୁ ହେଲେ ମୋହର ଦୁଇ ପାଦକୁ ମୁଁ କହେଁ, ମୋତେ ନେଇ ଚାଲ ; ସେ ଦୁହେଁ ତତ୍‌କ୍ଷଣାତ୍ ମୋତେ ନେଇଯାନ୍ତି । କୌଣସି ପଦାର୍ଥ ମୋହ ନିକଟକୁ ଆଣିବାର ପ୍ରୟୋଜନ ହେଲେ ମୁଁ ଦୁଇ ହାତକୁ କହେଁ, ସେ ପଦାର୍ଥଟି ମୋତେ ଦିଅ । ଦୁଇ ହାତ ଅବିଳମ୍ବେ ତାହା ଆଣନ୍ତି । ମୋହର କ୍ଷୁଧା ହେଲେ ହାତ ଖାଦ୍ୟ ପଦାର୍ଥ ଆଣି ମୁଖରେ ଲଗାଏ, ଏବଂ

ମୁଖ ସେହିକ୍ଷଣି ତାହା ଗ୍ରହଣ କରି ପେଟ ଭିତରକୁ ଦିଏ । ମୋହର କୌଣସି ବସ୍ତୁ ଦେଖିବାର ପ୍ରୟୋଜନ ହେଲେ ଚକ୍ଷୁ ଯୋଡ଼ିକ ସେହି ମୁହୂର୍ତ୍ତରେ ମୋତେ ତାହା ଦେଖାଇ ଦିଅନ୍ତି । କୌଣସି ପଦାର୍ଥ ଆଘ୍ରାଣ କରିବାର ଇଚ୍ଛା ହେଲେ ମୋହର ନାସିକା ତାହାର ଗନ୍ଧ ମୋତେ ଦିଏ । ଏ ଦଶଟି ଚାକର ମୋହର ଆଦେଶ ପାଳନ କରିବା ପାଇଁ ସଦାସର୍ବଦା ପ୍ରସ୍ତୁତ ଅଛନ୍ତି । କୌଣସି କାର୍ଯ୍ୟ କରିବା ପାଇଁ ଥରକରୁ ଦୁଇଥର ମୋତେ କହିବାକୁ ହୁଏ ନାହିଁ । ରାମାନନ୍ଦଙ୍କ ଘରେ ଯେଉଁ ଚାକରମାନେ ଅଛନ୍ତି । ସେମାନେ ତାଙ୍କର ଯେଉଁ ଯେଉଁ କାର୍ଯ୍ୟ କରନ୍ତି, ମୋହର ଚାକରମାନେ ମଧ୍ୟ ମୋର ସେହି ସେହି କାର୍ଯ୍ୟ କରନ୍ତି ।''

ଶିକ୍ଷକ ଦୀନବନ୍ଧୁର କଥା ଶୁଣି ଅତିଶୟ ପ୍ରୀତ ହୋଇ କହିଲେ,"ତୁମ୍ଭେ ଯାହା କହିଲ ତାହା ଯଥାର୍ଥ । ତୁମ୍ଭର ଚାକରଗୁଡ଼ିକ ଏ ସଂସାରରେ ସବୁଠାରୁ ଭଲ ଚାକର ଅଟନ୍ତି । ଯେ ସେମାନଙ୍କ ଉପରେ ନିର୍ଭର କରି ଚଳେ ସେ ସୁଖୀ ହୁଏ; ଅନ୍ୟ ଉପରେ ନିର୍ଭର କଲେ ସେ ସୁଖ ମିଳେ ନାହିଁ ।"



## ୩୭—ସିଂହର ମୃତ୍ୟୁରେ ହସ୍ତୀ କିପରି ପଶୁମାନଙ୍କର ରାଜା ହେଲା

କୌଣସି ଅରଣ୍ୟରେ ପଶୁରାଜ ସିଂହର ମୃତ୍ୟୁ ହେଲା । ସେହି ଅରଣ୍ୟରେ ଯେତେ ପଶୁ ଥିଲେ ସେମାନେ ସମସ୍ତେ ସିଂହର ଶାବକଠାରେ ଉପସ୍ଥିତ ହୋଇ ତାହାକୁ ପ୍ରଣାମ କଲେ, ଏବଂ କିଏ ପଶୁମାନଙ୍କର ରାଜା ହେବ, ତାହା ବିଚାର କରିବାକୁ ଲାଗିଲେ ।

ସେ ନିତାନ୍ତ ଶିଶୁ ବୋଲି ସେମାନେ ତାହାକୁ ରାଜା କଲେ ନାହିଁ ।

ବ୍ୟାଘ୍ର କହିଲା, "ଆମ୍ଭେ ରାଜା ହେବାକୁ ଯୋଗ୍ୟ, କାରଣ ଆମ୍ଭେ ଅନେକ ବିଷୟରେ ସିଂହପରି ଅଟୁ ।'' ଭଲ୍ଲୁକ କହିଲା, ''ଆମ୍ଭେ ବ୍ୟାଘ୍ର ପରି ବଳବାନ୍ ଓ ଭୀଷଣ ଅଟୁଁ । ଆମ୍ଭେ ବୃକ୍ଷରେ ଆରୋହଣ କରିପାରୁଁ, ମାତ୍ର ବ୍ୟାଘ୍ର ପାରେ ନାହିଁ ।"

ଘୋଟକ କହିଲା, ''ଆମ୍ଭେ ଅତିଶୀଘ୍ର ଦୌଡ଼ି ପାରୁଁ ଏବଂ ପଶୁମାନଙ୍କ ମଧ୍ୟରେ ସଦା ସର୍ବାପେକ୍ଷା ଅଧିକ ସୁନ୍ଦର ଅଟୁ ।'' ତାହା ଶୁଣି ହରିଣ କହିଲା, "ଆମ୍ଭେ ଘୋଟକ ଅପେକ୍ଷା ଅଧିକ ବେଗରେ ଦୌଡ଼ିପାରୁଁ ।''

ଶୃଗାଳ କହିଲା, "ଆମ୍ଭେ ଅତିଶୟ ଧୂର୍ତ୍ତ ଅଛୁ ।" ବାନର କହିଲା, "ଆମ୍ଭେ ଅତିଶୟ ଚତୁର ଅଛୁଁ, ବୃକ୍ଷରେ ଆରୋହଣ କରିପାରୁଁ ଏବଂ ଆମ୍ଭେ ଯେ ପରିମାଣରେ ମନୁଷ୍ୟ ସଦୃଶ ଅଛୁଁ, ତୁମ୍ଭମାନଙ୍କ ମଧ୍ୟରେ କେହି ସେପରି ନୁହେଁ ।"

ବାନରର ଏହି କଥା ଶୁଣି ଅନ୍ୟ ସମସ୍ତ ପଶୁ ହସି ଉଠିଲେ ।

ଏହା ଉତ୍ତାରୁ ସେମାନେ ସମସ୍ତେ ଏକମତ ହୋଇ ହସ୍ତୀକୁ ରାଜା କଲେ, କାରଣ ହସ୍ତୀ ପଶୁମାନଙ୍କ ମଧ୍ୟରେ ସର୍ବାପେକ୍ଷା ବୃହତ୍, ବଳବାନ୍ ଓ ବୁଦ୍ଧିମାନ୍ ।

———

## ୩୭—ରାଜା ଓ ଗୋପାଳ-ବାଳକ କଥା

ପୂର୍ବ କାଳରେ ଓଡ଼ିଶାରେ ଜଣେ ରାଜା ଥିଲେ । ତାହାଙ୍କର ସ୍ୱଭାବ ଓ ବିଚାର ଅତି ଉତ୍ତମ ଥିବାରୁ ପ୍ରଜାମାନେ ତାହାଙ୍କୁ ଭଲ ପାଉଥିଲେ । ନାନା ସ୍ଥାନରେ ତାହାଙ୍କର ଯେଉଁ କର୍ମଚାରୀମାନେ ଥିଲେ ସେମାନେ ପ୍ରଜାମାନଙ୍କ ପ୍ରତି ସୁବିଚାର କରୁଅଛନ୍ତି କି ନାହିଁ, ଏବଂ ପ୍ରଜାମାନେ କୁଶଳରେ ଅଛନ୍ତି କି ନାହିଁ, ଏହା ସ୍ୱୟଂ ଜାଣିବେ ବୋଲି ଦିନକରେ ସେ ଦରିଦ୍ର ଲୋକପରି ବସ୍ତ୍ର ପିନ୍ଧି ଏବଂ ଆପଣାର ମୁଖ ଓ ଦେହର ବର୍ଣ୍ଣ ମଳିନ କରି, ଗୋପନରେ ଏକାକୀ ନଅରରୁ ବାହାରିଲେ ।

ସେ ଯାଉଁ ଯାଉଁ ବାଟରେ ଗୋଟିଏ ବାଳକକୁ ଭେଟିଲେ । ସେ ବାଳକଟି ଗୋଟିଏ ଗାଈକୁ ବାନ୍ଧି ରାଜାଙ୍କ ନଅରକୁ ନେଉଥିଲା । ଗାଈଟିର ଦେହରେ ବହୁତ ବଳ ଥିବାରୁ ତାହାକୁ ଓଟାରି ନେବା ପାଇଁ ବାଳକକୁ ଅତିଶୟ କଷ୍ଟ ହେଉଥିଲା । ରାଜା ତାହାର ନିକଟବର୍ତ୍ତୀ ହୁଅନ୍ତେ ସେ ତାହାଙ୍କୁ ନ ଚିହ୍ନି, ଇତର ଲୋକ ମନେ କରି କହିଲା, "ମୋହର ପ୍ରଭୁ କାଲି ଏହି ଗାଈଟିକୁ ରାଜାଙ୍କୁ ବନ୍ଦିସ୍ତ କରିଅଛନ୍ତି । ମୁଁ ଏକାକୀ ଏହାକୁ ନଅରକୁ ଯେନି ନେବା ପାଇଁ ଅସମର୍ଥ ହେଉଅଛି । ତୁମ୍ଭେ ସାହାଯ୍ୟ କଲେ ମୁଁ ଏହାକୁ ସେଠାକୁ ନେଇଯାନ୍ତି । ରାଜାଙ୍କ ନଅରର ଲୋକେ ବଡ଼ ଦୟାଳୁ । ସେଠାକୁ କୌଣସି ବ୍ୟକ୍ତି କିଛି ନେଇଗଲେ ସେମାନେ ତାହାକୁ ପୁରସ୍କାର ଦିଅନ୍ତି ।"

ଛଦ୍ମବେଶୀ ରାଜା କହିଲେ, "ମୁଁ ତୁମ୍ଭଙ୍କୁ ସାହାଯ୍ୟ କଲେ ମୋତେ କଅଣ ମିଳିବ ?" ଗୋପାଳ-ବାଳକ କହିଲା, "ମୁଁ ଯାହା ପାଇବି ସେଥିରୁ ଅଧେ ତୁମ୍ଭଙ୍କୁ ଦେବି ।"

ସେମାନେ ନଅରର ନିକଟବର୍ତ୍ତୀ ହୁଅନ୍ତେ ରାଜା ଗୋପାଳ-ବାଳକକୁ ନଅର ଦେଖାଇ ଦେଇ ତାହାଠାରୁ ଅନ୍ତର ହେଲେ, ଏବଂ ଗୋପନରେ ନଅର ମଧ୍ୟରେ ପ୍ରବେଶ କରି ଆପଣାର ବସ୍ତ୍ର ପରିଧାନ କଲେ । ତହିଁ ଉତ୍ତାରୁ ସେ ଜଣେ

ଭୃତ୍ୟକୁ ଡାକି, ତାହା ହସ୍ତରେ ପାଞ୍ଚଟଙ୍କା ଦେଇ କହିଲେ, "କାଲି ଆମେ ଯେଉଁ ଗାଈଟି କ୍ରୟ କରିଥିଲୁଁ, ଆଜି ସେହି ଗାଈଟିକୁ ଯେଉଁ ବ୍ୟକ୍ତି ନଅରକୁ ନେଇ ଆସିଛି, ତାହାକୁ ଏହି ପାଞ୍ଚଟଙ୍କା ପୁରସ୍କାର ସ୍ୱରୂପ ଦେବ।" ଏହା ଉତ୍ତାରୁ ରାଜା ଛଦ୍ମବେଶରେ ପୁଣି ନଅରରୁ ବାହାରି ଗୋପାଳ-ବାଳକର ଅପେକ୍ଷାରେ ପଥରେ ଦଣ୍ଡାୟମାନ ହୋଇ ରହିଲେ।

ଗୋପାଳ-ବାଳକ ନଅରରୁ ଫେରିଆସି ତାହାକୁ କହିଲା, "ରାଜାଙ୍କ ନଅରରେ ମୋତେ ଆଠଅଣା ପୁରସ୍କାର ମିଳିଲା, ତୁମ୍ଭର ଭାଗ ଚାରିଅଣା ନିଅ।" ରାଜା କହିଲେ, "ତୁମ୍ଭଙ୍କୁ ଆଠଅଣା ମାତ୍ର ମିଳିଲା ? ଏ ପୁରସ୍କାର ନିତାନ୍ତ ଅଳ୍ପ ଓ ରାଜାଙ୍କର ଅଯୋଗ୍ୟ। ଏଥିରୁ ଅଧିକ କିଛି ମିଳିଲା ନାହିଁ ?"

ଗୋପାଳ-ବାଳକ କହିଲା, "ମୋତେ ଆଠଅଣା ମାତ୍ର ମିଳିଅଛି ; ଏହା ମୋହ ପକ୍ଷରେ ଯଥେଷ୍ଟ ଅଟେ। ତୁମ୍ଭେ କି ମନେ କରିଅଛ ଏଥିରୁ ଅଧିକ ମିଳନ୍ତା ?" ରାଜା କହିଲେ, "ହଁ, ଏଥିରୁ ଅଧିକ ମିଳିବା ଉଚିତ। ମୋହ ସଙ୍ଗରେ ଫେରିଆସ ; ମୁଁ ତୁମ୍ଭଙ୍କୁ ଅଧିକ ପୁରସ୍କାର କରାଇ ଦେବି।"

ରାଜା ଏବଂ ଗୋପାଳ-ବାଳକ ଆସି ନଅରର ସିଂହଦ୍ୱାରଠାରେ ଉପସ୍ଥିତ ହେଲେ। ଗୋପାଳ-ବାଳକଟି ସେହି ଦ୍ୱାର ଅତିକ୍ରମ କରି ଭିତରକୁ ଯିବାପାଇଁ ଭୀତ ହୋଇ କହିଲା, "ଏ ରାଜାଙ୍କ ନଅର ; ସିଂହଦ୍ୱାର ଡେଇଁ ଭିତରକୁ ଯିବା ଉଚିତ ନୁହେଁ।" ଛଦ୍ମବେଶୀ ରାଜା କହିଲେ, "ଭୟ କରନାହିଁ। ରାଜା ମୋତେ ଉତ୍ତମରୂପେ ଜାଣନ୍ତି। ମୋତେ ଦେଖିଲେ ସେ ତୁମ୍ଭ ଉପରେ ବିରକ୍ତ ହେବେନାହିଁ।"

ରାଜା ନଅରରେ ପ୍ରବେଶ କରି ସମସ୍ତ ଭୃତ୍ୟଙ୍କୁ ତାହାଙ୍କ ସମ୍ମୁଖରେ ଉପସ୍ଥିତ ହେବାପାଇଁ ଆଦେଶ ଦେଲେ। ସମସ୍ତେ ଉପସ୍ଥିତ ହେଲାରୁ ସେ ଗୋପାଳ-ବାଳକକୁ କହିଲେ, "ଏମାନଙ୍କ ମଧ୍ୟରୁ କେଉଁ ବ୍ୟକ୍ତି ତୁମ୍ଭଙ୍କୁ ଆଠଅଣା ଦେଇଅଛି, ଚିହ୍ନାଇ ଦିଅ।" ଏ ସମସ୍ତ ଦେଖି ଗୋପାଳ-ବାଳକଟି ଭୟରେ କମ୍ପିତ ହୋଇ, ଯେଉଁ ବ୍ୟକ୍ତି ତାହାକୁ ଆଠଅଣା ଦେଇଥିଲା, ତାହାକୁ ଚିହ୍ନାଇ ଦେଲା।

ସେହି ଭୃତ୍ୟଟି ତତ୍କ୍ଷଣାତ୍ ସାଷ୍ଟାଙ୍ଗ ଦଣ୍ଡବତ ହୋଇ ଆପଣାର ଅପରାଧ ସ୍ୱୀକାର କଲା। ରାଜା ସେହିକ୍ଷଣି ତାହାକୁ କାର୍ଯ୍ୟଚ୍ୟୁତ କଲେ, ଏବଂ ଗୋପାଳ-ବାଳକକୁ ଦଶ ଗୋଟି ଟଙ୍କା ଦେଇ କହିଲେ, "ଆମ୍ଭେ ତୁମ୍ଭ ନିମନ୍ତେ ପାଞ୍ଚଟଙ୍କା ପୁରସ୍କାର ଦେଇଥିଲୁଁ। ବର୍ତ୍ତମାନ ସେହି ପାଞ୍ଚଟଙ୍କା ଏବଂ ତୁମ୍ଭର ସାଧୁତା ନିମନ୍ତେ ଅଧିକା ପାଞ୍ଚଟଙ୍କା ତୁମ୍ଭଙ୍କୁ ଦିଆଗଲା।"

# ୩୮—ବୈଷ୍ଣବ ବିରାଡ଼

ଗୋଟିଏ ବିରାଡ଼ ଅତି ବୃଦ୍ଧ ଓ ଦୁର୍ବଳ ହେବାରୁ ମୂଷା ଧରିବାକୁ ଅସମର୍ଥ ହେଲା । ଦିନକରେ ସେ କ୍ଷୁଧାରେ ଅକୁଳ ହୋଇ ଭଣ୍ଡାରଘର ମଧ୍ୟରେ ପ୍ରବେଶ କଲା ଏବଂ ଚକ୍ଷୁ ମୁଦ୍ରିତ କରି ସେଠାରେ ପଡ଼ିରହିଲା । ଏହି ଘଟଣା ଦେଖି ମୂଷା-ମାନଙ୍କର ସାହସ କ୍ରମେ ବଢ଼ିଲା ଓ ସେମାନେ ବିରାଡ଼ର ଚାରିଆଡ଼େ ବୁଲି ସମସ୍ତ ସମୟରେ ତାହାର ପିଠିରେ ଚଢ଼ି ଗମନାଗମନ କଲେ । ବିରାଡ଼ ତଥାପି ସେହିପରି ପଡ଼ିରହିଲା ।

ଦିନକରେ ଗୋଟିଏ ମୂଷା-ଛୁଆ ବିରାଡ଼କୁ କହିଲା, "ତୁମ୍ଭେ ପୂର୍ବେ ଆମ୍ଭମାନଙ୍କୁ ଧରି ମାରି ଖାଉଥିଲ; ଏବେ ତୁମ୍ଭେ ତ ଆମ୍ଭମାନଙ୍କର ଅନିଷ୍ଟ କରୁନାହଁ । ଏହାର କାରଣ କଅଣ ?"

ବୃଦ୍ଧ ବିରାଡ଼ଟି ଧୀରେ ଆଖି ମିଟିକାଇ ଉତ୍ତର ଦେଲା, "ମୁଁ ଏଥିପୂର୍ବେ ଅନେକ ମୂଷାର ପ୍ରାଣ ନାଶ କରି ବହୁତ ପାପ କରିଅଛି, ସେଥିପାଇଁ ଏବେ ମୋହର ମନରେ ବଡ଼ ଅନୁତାପ ହେଉଅଛି । ବର୍ତ୍ତମାନ ବୃଦ୍ଧ ହେବାରୁ ଏହି ପାପରୁ ମୁକ୍ତ ହେବାର ଇଚ୍ଛା ମୋହର ଜନ୍ମି ଅଛି । ମୁଁ ପ୍ରତିଜ୍ଞା କରିଅଛି ଆଉ କେବେହେଁ ମୂଷା ହତ୍ୟା କରିବି ନାହିଁ । କାଲି ପ୍ରାତଃକାଳରେ ମୁଁ ସନ୍ନ୍ୟାସୀ ହୋଇ କାଶୀତୀର୍ଥକୁ ଯିବି ଏବଂ ସେଠାରେ ଗଙ୍ଗାସ୍ନାନ କରିବି । ଏହା କଲେ ବୋଧହୁଏ ମୁଁ ପାପରୁ ମୁକ୍ତ ହୋଇ ପାରିବି ।"

ଏହା ଶୁଣି ମୂଷାମାନେ କହିଲେ, "ହେ ସନ୍ନ୍ୟାସୀ ! ଆମ୍ଭମାନଙ୍କୁ ତୁମ୍ଭ ସଙ୍ଗରେ ନେଇଯାଅ । ଆମ୍ଭେମାନେ ଶୁଣିଅଛୁଁ, କାଶୀକ୍ଷେତ୍ରକୁ ଅନେକ ସନ୍ନ୍ୟାସୀ ଓ ଅପର ଯାତ୍ରୀ ଆସନ୍ତି ଏବଂ ସେଠାରେ ବହୁତ ଧାନ ଚାଉଳ ଥାଏ । ଏଠାରେ ଚଳିବା ପାଇଁ ଆମ୍ଭମାନଙ୍କୁ କଷ୍ଟ ହେଉଅଛି । ସେ ସ୍ଥାନକୁ ଗଲେ ଆମ୍ଭମାନଙ୍କୁ ବହୁତ ଖାଦ୍ୟ ମିଳିପାରିବ ।"

ଧୂର୍ତ୍ତ ବିରାଡ଼ଟି ପଥ ପ୍ରଦର୍ଶନ କରି ମୂଷାମାନଙ୍କୁ କାଶୀକୁ ନେବା ପାଇଁ ସମ୍ମତ ହେଲା । ସେମାନେ ସମସ୍ତେ ପ୍ରାତଃକାଳରେ ସେ ସ୍ଥାନରୁ ବାହାରିଲେ । ବିରାଡ଼ଟି ସନ୍ନ୍ୟାସୀମାନଙ୍କ ପରି ଖଣ୍ଡିଏ ବାଡ଼ି ଓ ଗୋଟିଏ ଭିକ୍ଷାପାତ୍ର ଧରି ଏବଂ ଗଳାରେ ରୁଦ୍ରାକ୍ଷମାଳା ଲମ୍ବାଇ ଚାଲିଲା । ରାତ୍ରି ହେବାରୁ ସେମାନେ ଗୋଟିଏ ପଡ଼ିଆରେ ବିଶ୍ରାମ କଲେ । ବିରାଡ଼ମାନେ ଅନ୍ଧକାରରେ ସୁଦ୍ଧା ଦେଖିପାରନ୍ତି । ବୃଦ୍ଧ ବିରାଡ଼ଟି ଯୋଡ଼ିଏ ତିନୋଟି ମୂଷା ଧରି ସେହି ରାତ୍ରିରେ ଭୋଜନ କଲା ।

ଏହି ପ୍ରକାରେ ଏକ ସପ୍ତାହ ଅତୀତ ହେଲା । ଗୋଟିଏ ବୃଦ୍ଧ ମୂଷା ଦେଖିଲା ଯେ, ସେମାନଙ୍କର ସଂଖ୍ୟା କ୍ରମେ କ୍ରମେ ଊଣା ହେଉଅଛି ଏବଂ ପ୍ରତିଦିନ ରାତ୍ରିରେ ଏକାଧିକ ମୂଷାର ଆର୍ତ୍ତନାଦ ଶୁଭୁଅଛି । ସେ ଜୀବିତ ମୂଷାମାନଙ୍କୁ କହିଲା, ଆମ୍ଭ-ମାନଙ୍କର କାର୍ଣ୍ଣା ଯିବା ନ ହେଉ । ଏହି ବିଗ୍‌ଭଡ଼୍ଟା ପ୍ରତାରକ ଅଟେ । ଚାଲ, ଏହା ନିକଟରୁ ପଳାଇଯିବା ।" ମୂଷାମାନେ ଅରଣ୍ୟ ମଧ୍ୟରେ ବିଲମାନଙ୍କରେ ପ୍ରବେଶ କଲେ ।

କୌଣସି କାଳରେ ଭକ୍ଷକଙ୍କୁ ବିଶ୍ୱାସ କରିବା ଉଚିତ ନୁହେଁ ।

———

## ୩୯—ଦୁଇ ଶୁକପକ୍ଷୀ କଥା

ବିନ୍ଧ୍ୟ ମଣ୍ଡଳରେ ଗୋଟିଏ ବଟବୃକ୍ଷରେ ଯୋଡ଼ିଏ ଶୁକପକ୍ଷୀ ବହୁକାଳରୁ ବାସ କରୁଥିଲେ । ସେ ଦୁହିଁଙ୍କର ଦୁଇଗୋଟି ଶାବକ ଜନ୍ମିଲା । ତନ୍ମଧ୍ୟରୁ ଗୋଟିକର ନାମ ରାମ ଓ ଅପରଟିର ନାମ ଲକ୍ଷ୍ମଣ ହେଲା । ଶାବକ ଦୁଇଟିର ପିତା ଖାଦ୍ୟ ଆଣିବା ପାଇଁ ଗଲେ । ମାତା ସେ ଦୁହିଙ୍କୁ କଥା କହିବାକୁ ଶିଖାଉଥିଲା । ଦିନକରେ ଯେତେବେଳେ ପିତା ଓ ମାତା ଉଭୟେ ନ ଥିଲେ, ସେହି ସମୟରେ ଜଣେ ବ୍ୟାଧ ଆସି ସେଠାରେ ପହଞ୍ଚିଲା । ସେ ଜାଲ ବସାଇ ଶାବକ ଦୁଇଟି ଧରି ନେଇଗଲା ।

ବ୍ୟାଧ ନଗରକୁ ଯାଇ ସେ ଦୁହିଁଙ୍କୁ ବିକ୍ରୟ କଲା । ରାମକୁ ଜଣେ ଧାର୍ମିକ ଧନୀ ବ୍ରାହ୍ମଣ କିଣି ନେଲେ । ସେହି ବ୍ରାହ୍ମଣଟି ଅତିଥିମାନଙ୍କୁ ଦୁଧ, ମିଷ୍ଟାନ୍ନ ପ୍ରଭୃତି ସୁଖାଦ୍ୟ ଦେଇ ସେମାନଙ୍କ ପ୍ରତି ସଦୟ ବ୍ୟବହାର କରୁଥିଲେ । ଲକ୍ଷ୍ମଣକୁ ଯେଉଁ ଲୋକ କିଣି ନେଲା, ସେ ଅତ୍ୟନ୍ତ ଦୁଷ୍ଟ ଓ ନିଷ୍ଠୁର । ଦରିଦ୍ର ଭିକ୍ଷୁକମାନେ ଭିକ୍ଷା କରିବାପାଇଁ ତାହା ଘରକୁ ଆସିଲେ ସେ ସେମାନଙ୍କୁ ଗାଳିଦେଇ ଓ ପ୍ରହାର କରି ବାହାର କରିଦେଉଥିଲା ।

ଶାବକ ଦୁହିଙ୍କର ପିତାମାତା ବସାକୁ ଫେରି ଆସି ଶାବକ ଦୁଇଟିଙ୍କୁ ନ ଦେଖି ଅତି ବ୍ୟାକୁଳ ହେଲେ । ସେମାନେ ନାନା ସ୍ଥାନରେ ଉଡ଼ି ସେ ଦୁହିଙ୍କୁ ଅନ୍ୱେଷଣ କରିବାକୁ ଲାଗିଲେ । ଶେଷରେ ନଗରକୁ ଆସି ଦେଖିଲେ ଯେ, ରାମ ବ୍ରାହ୍ମଣ ଘରେ ଗୋଟିଏ ପଞ୍ଜୁରୀରେ, ଏବଂ ଲକ୍ଷ୍ମଣ ସେହି ଦୁଷ୍ଟଲୋକର ଘରେ ଗୋଟିଏ ପଞ୍ଜୁରୀରେ ରହିଅଛି । ଯେତେବେଳେ ନିକଟରେ କୌଣସି ମନୁଷ୍ୟ ନ ଥିଲା, ସେହି ସୁଯୋଗରେ ପିତା ଗୋଟିଏ ପଞ୍ଜୁରୀର ଏବଂ ମାତା ଅନ୍ୟ ପଞ୍ଜୁରୀର ଦ୍ୱାର ଚଞ୍ଚୁରେ ଫିଟାଇ ଦେବାରୁ ଶାବକ ଦୁଇଟି ପଞ୍ଜୁରୀରୁ ବାହାରି ଆସିଲେ ।

ଅନନ୍ତର ସେ ଗୃହଗୋଟି ଶୁକ ଉଡ଼ିଯାଇ କାଶୀରେ ଉପସ୍ଥିତ ହେଲେ ଏବଂ ସେଠାରେ କିଛିକାଳ ବାସ କଲେ । ପିତାମାତା ବୃଦ୍ଧ ହୋଇ ଶେଷରେ ପ୍ରାଣତ୍ୟାଗ କଲେ । ତେତେବେଳେ ଅପର ଦୁଇଟି ଶୁକ ସେ ବସା ତ୍ୟାଗକରି ପରସ୍ପରଠାରୁ ପୃଥକ୍ ହେଲେ । ରାମ ଅରଣ୍ୟ ମଧ୍ୟରେ ଗୋଟିଏ ଅମ୍ବ-ବୃକ୍ଷରେ, ଏବଂ ଲକ୍ଷ୍ମଣ ସେଠାରୁ କିଛି ଦୂରରେ ନଦୀକୂଳରେ ଗୋଟିଏ ଶିମୁଳୀ ଗଛରେ ବସା ବାନ୍ଧି ରହିଲା ।

ଦିନକରେ ଜଣେ ଲୋକ ବହୁତ ଭ୍ରମଣ କରି କ୍ଳାନ୍ତ ହୋଇ ସ୍ନାନ କରିବାକୁ ନଦୀକୁ ଓହ୍ଲାଇଲା । ଲକ୍ଷ୍ମଣ ତାହାକୁ ଚାହିଁପାରି ଚିତ୍କାର କରି କହିଲା, "ତାକୁ ମାର, ତାକୁ ଠେଲିଦିଅ, ତାକୁ ଧର, ତାହାର ଗଳା ଚିପିଦିଅ ।" ସେହିପରି ଆହୁରି ଅନେକଗୁଡ଼ାଏ ମନ୍ଦ କଥା କହିଲା । ସେହି ଦୁଷ୍ଟଲୋକ ଘରେ ପଞ୍ଜୁରୀରେ ରହି ଯେଉଁ ଯେଉଁ କଥା ଶିଖିଥିଲା, ଲକ୍ଷ୍ମଣ ସେହିଗୁଡ଼ାକ ଉଚ୍ଚାରଣ କଲା । ସେହି ଲୋକଟି ଭୀତ ହୋଇ ସେ ସ୍ଥାନ ପରିତ୍ୟାଗ କରି ଅରଣ୍ୟ ଭିତରକୁ ଗଲା ।

ରାମ ଯେଉଁ ବୃକ୍ଷରେ ବସା କରିଥିଲା ସେ ଲୋକଟି ଦୈବାତ୍ ତାହାର ତଳେ ପହଞ୍ଚିଲା । ରାମ ମନୁଷ୍ୟଟିଏ ଦେଖି କହିଲା, "ଈଶ୍ୱର ତୁମର ମଙ୍ଗଳ କରନ୍ତୁ । ଆସ ଆସ, ଏଠାରେ ବସ । ରେ ! ଲକ୍ଷ୍ମଣ, ଦୁଧ ଆଣ, ଅତିଥିଙ୍କୁ ଦିଅ ।" ଏହାଶୁଣି ସେ ଲୋକଟି ଆନନ୍ଦିତ ହୋଇ କହିଲା, "ଏହି ପକ୍ଷୀଟି ଭଲ ଜାତି ଅଟେ । ଏ ଭଦ୍ର ବ୍ୟବହାର ଶିଖି ଅଛି । ମୁଁ ଏହି ବୃକ୍ଷର ଛାୟାରେ ଶୟନ କରି ବିଶ୍ରାମ କରିବି ।"

ପକ୍ଷୀ ଦୁଇଟି ମଧ୍ୟରୁ ଯେ ବାଲ୍ୟକାଳରେ ଯାହା ଶିଖିଥିଲା, ସେ ତାହା ହିଁ ଉଚ୍ଚାରଣ କଲା । ରାମ ସାଧୁ ଲୋକର ଗୃହରେ ରହି ଭଲ କଥା ଓ ଭଦ୍ର ବ୍ୟବହାର ଶିକ୍ଷା କରିଥିଲା । ଲକ୍ଷ୍ମଣ ଦୁଷ୍ଟ ଲୋକର ଗୃହରେ ରହି ମନ୍ଦ କଥା ଓ ମନ୍ଦ ବ୍ୟବହାର ଶିକ୍ଷା କରିଥିଲା ।

ମନୁଷ୍ୟ ଓ ଅପର ପ୍ରାଣୀ ସାଧୁ ସଙ୍ଗରେ ସାଧୁ ଓ ଅସାଧୁ ସଙ୍ଗରେ ଅସାଧୁ ହୁଅନ୍ତି ।

---

## ୪୦—ଦୁଇ କୃପଣ କଥା

ପଶ୍ଚିମ ଦେଶରେ କୁଫା ନଗରରେ ଗଫୁର୍ ନାମରେ ଜଣେ ଅତିଶୟ କୃପଣ ବ୍ୟକ୍ତି ବାସ କରୁଥିଲେ । ତାହାଙ୍କର ଖ୍ୟାତି ଶୁଣି ବସୋରା-ନିବାସୀ ହାମିଦ୍ ନାମକ ଆଉ ଜଣେ କୃପଣ ଲୋକ କୃପଣତାର କୌଶଳ ଶିକ୍ଷା କରିବା ନିମନ୍ତେ କୁଫା ନଗରକୁ ଗମନ କଲା ।

ସେହି ନଗରରେ ସେ ଗଙ୍ଗୁର ଗୃହରେ ଉପସ୍ଥିତ ହୋଇ କହିଲା, "ମହାଶୟ ! ମୁଁ ଆପଣଙ୍କର ଖ୍ୟାତି ଶୁଣି ଆପଣଙ୍କଠାରୁ କିଛି ଶିକ୍ଷା କରିବାପାଇଁ ବହୁଦୂରରୁ ଆସିଅଛି । ଆପଣ ମୋହର ଗୁରୁ ଏବଂ ମୁଁ ଆପଣଙ୍କର ଶିଷ୍ୟ ।" କୁଙ୍ଗାନବାସୀ କୃପଣ ଲୋକ କହିଲା, "ଆଜ୍ଞା, ହେଉ ଆଜି ଦିନର ଖାଦ୍ୟ ସାମଗ୍ରୀ କିଣିବା ପାଇଁ ବଜାରକୁ ଯିବା ଚାଲ । ମନୋଯୋଗୀ ହେଲେ କୃପଣତାର କୌଶଳ ଶିକ୍ଷା କରିପାରିବ ।"

ଅନନ୍ତର ସେ ଦୁଇ କୃପଣ ଲୋକ ବଜାରକୁ ଯାଇ ପ୍ରଥମେ ଗୋଟିଏ ରୋଟି ଦୋକାନରେ ଉପସ୍ଥିତ ହେଲେ । କୃପଣଗୁରୁ ଦୋକାନୀକୁ ପଚାରିଲା, "ତୁମ୍ଭ ଦୋକାନରେ ଭଲ ରୋଟି ଅଛି କି ?" ଦୋକାନୀ କହିଲା, ଆଜ୍ଞା, ଅତି ଉତ୍କୃଷ୍ଟ ରୋଟି ମୋ ଦୋକାନରେ ଅଛି । ମୋହର ରୋଟି ନହୁଣୀ ପରି ଧଳା ଓ କୋମଳ ।" କୁଙ୍ଗାବାସୀ କୃପଣ ତାହାର ଶିଷ୍ୟକୁ କହିଲା, "ଶୁଣିଲ ତ ? ଏ ଦୋକାନୀ କହୁଅଛି ତାହାର ରୋଟି ନହୁଣୀ ପରି । ତାହା ହେଲେ ରୋଟି ନ କିଣି ନହୁଣୀ କିଣିବା ଭଲ ।"

ସେଠାରୁ ସେ ଦୁହେଁ ନହୁଣୀ ଦୋକାନକୁ ଗଲେ । ଗୁରୁ ଦୋକାନୀକୁ ପଚାରିଲେ, "ତୁମ୍ଭ ଦୋକାନରେ ଭଲ ନହୁଣୀ ଅଛି କି ?" ଦୋକାନୀ କହିଲା, "ଆଜ୍ଞା ଅଛି । ମୋହର ନହୁଣୀ ତେଲ ପରି ଚିକ୍କଣ ।" ଗୁରୁ ଶିଷ୍ୟକୁ କହିଲେ, "ଶୁଣିଲ ତ ? ସେ କହୁଅଛି, ତାହାର ନହୁଣୀ ତେଲ ପରି ।" ତେବେ ତେଲ ଓ ନହୁଣୀ ସମାନ । ଅତଏବ ଚାଲ ତେଲ କିଣିବା ।"

ସେଠାରୁ ଦୁଇ କୃପଣ ତେଲ-ଦୋକାନକୁ ଗଲେ । ସେମାନେ ଦୋକାନୀକୁ ପଚାରିଲେ, "ତୁମ୍ଭ ଦୋକାନରେ ଭଲ ତେଲ ଅଛି କି ?" ଦୋକାନୀ କହିଲା, "ଆଜ୍ଞା, ମୋହର ଦୋକାନରେ ଯେଉଁ ତେଲ ଅଛି, ଏ ନଗରରେ ଅନ୍ୟ କାହାର ଦୋକାନରେ ସେ ତେଲ ନାହିଁ । ମୋହର ତେଲ ଜଳପରି ନିର୍ମଳ ।" ଗୁରୁ ଶିଷ୍ୟକୁ କହିଲେ, "ବୁଝିଲ ତ ? ତେଲ ଓ ଜଳ ଯେ ସମାନ, ଏଥିରେ ଆଉ ସନ୍ଦେହ ହୋଇ ନ ପାରେ । ଚାଲ, ଘରକୁ ଫେରିଯିବା । ଈଶ୍ୱରଙ୍କ କୃପାରୁ ଆମ୍ଭ ଘରେ ସୁନ୍ଦର ନିର୍ମଳ ଜଳ ଗଚ୍ଛିଏ ଅଛି ।" ଏହା କହି ଗୁରୁ ଅଗ୍ରସର ହେଲେ ଏବଂ ଶିଷ୍ୟ ତାହାଙ୍କର ଅନୁସରଣ କଲେ ।

ଗୃହରେ ଉପସ୍ଥିତ ହୋଇ କୁଙ୍ଗାନବାସୀ କୃପଣ ବସୋରାବାସୀ କୃପଣକୁ ଗୋଟିଏ ଗିଲାସରେ ଗିଲାସେ ପାଣି ପିଇବାକୁ ଦେଇ କହିଲେ, "ଶିଷ୍ୟ ! କିଛି ଶିକ୍ଷା ହେଲା କି ?" ଶିଷ୍ୟ ଉତ୍ତର କଲା, "ମୋହର ଆଗମନ ସଫଳ ହୋଇନାହିଁ । ଆପଣଙ୍କଠାରୁ ମୁଁ ଯଥେଷ୍ଟ ଶିକ୍ଷା ପାଇଲି । ଆପଣ ବିଜ୍ଞ ଓ ଉପଯୁକ୍ତ ଗୁରୁ ଅଟନ୍ତି ।" ଏହା କହି ସେ ବସୋରା ନଗରକୁ ପ୍ରତ୍ୟାଗମନ କଲା ।

# ୪୧—ଯତ୍ନଶୀଳ ବାଳକ କଥା

ଗୋଟିଏ ନଗରରେ ଜଣେ ଦରିଦ୍ର ବାଳକ ଅତିଶୟ ମନୋଯୋଗୀ ହୋଇ ବିଦ୍ୟାଳୟରେ ଅଧ୍ୟୟନ କରୁଥିଲା । ବିଦ୍ୟାଳୟରେ ଅଧ୍ୟୟନ ଶେଷ ହେଲାରୁ ସେ କିଛି ଉପାର୍ଜ୍ଜନ କରିବା ପାଇଁ କାର୍ଯ୍ୟ ଅନ୍ୱେଷଣ କଲା । ସେ ଶୁଣିପାରିଲା ଯେ ଜଣେ ଧନୀ ମହାଜନଙ୍କର ଜଣେ କିରାଣି ଆବଶ୍ୟକ ହୋଇଅଛି ।

ସେ ମହାଜନ ନିକଟରେ ଉପସ୍ଥିତ ହୋଇ ବିନୀତଭାବରେ ନମସ୍କାର କରି ସେହି କିରାଣି କାର୍ଯ୍ୟରେ ରହିବା ପାଇଁ ପ୍ରାର୍ଥନା କଲା । ମହାଜନ ତାହାକୁ ପଚାରିଲେ, ସେ ଏଥିପୂର୍ବେ କୌଣସିଠାରେ କିରାଣିକାର୍ଯ୍ୟ କରିଥିଲା କି ନାହିଁ । ବାଳକ ଉତ୍ତର ଦେଲା, "ମହାଶୟ ! ମୁଁ ଏଥିପୂର୍ବେ କୌଣସିଠାରେ କିରାଣି କାର୍ଯ୍ୟ କରିନାହିଁ । ମୁଁ ବିଦ୍ୟାଳୟରେ ପଢୁଥିଲି । ସେଠାରେ ପଢ଼ାଶେଷ ହେବାରୁ ଆପଣଙ୍କଠାକୁ ଆସିଅଛି ।" ମହାଜନ କହିଲେ, "ଏପରି ଲୋକଦ୍ୱାରା ଆମ୍ଭର କାର୍ଯ୍ୟ ଚଳିବ ନାହିଁ । ତୁମ୍ଭେ ଅନ୍ୟତ୍ର କାର୍ଯ୍ୟ ଦେଖ ।"

ବାଳକଟି ପୁନର୍ବାର ନମସ୍କାର କରି ଦୁଃଖିତ ହୋଇ ତାହାଙ୍କଠାରୁ ବିଦାୟ ନେଲା । ସେ ଫେରିପଡ଼ି ଦେଖିଲା ଦାଣ୍ଡରେ ଗୋଟିଏ ଲୁହାକଣ୍ଟା ପଡ଼ିଅଛି । ସେ ତାକୁ ଯତ୍ନରେ ଉଠାଇନେଇ ହାତରେ ଧରିଲା । ସେ ତେତେବେଳେ ଜାଣି ନ ଥିଲା ଯେ ଏହି ଘଟନାରୁ ଭବିଷ୍ୟତରେ ତାହାର ଭାଗ୍ୟର ପରିବର୍ତ୍ତନ ହେବ ।

ମହାଜନ ଗୃହ ମଧ୍ୟରେ ଥାଇ ଏହା ଦେଖିଲେ । ତାଙ୍କର ସ୍ୱଭାବ ଏପରି ଥିଲା ଯେ, ଅତି ତୁଚ୍ଛ ବିଷୟକୁ ସୁଦ୍ଧା ସେ ଉପେକ୍ଷା କରୁ ନ ଥିଲେ । ସେ ଉକ୍ତ ଘଟନା ଦେଖି ମନେ ମନେ ବିଚାର କଲେ, "ଏ ବାଳକଟି ତ ଅତି ସାବଧାନ । ତାହାର ବ୍ୟବହାର ଓ କଥା କହିବାର ରୀତି ମଧ୍ୟ ଉତ୍ତମ । ଯେ ଗୋଟିଏ ଲୁହା-କଣ୍ଟାକୁ ମଧ୍ୟ ଉପେକ୍ଷା କରୁନାହିଁ, ସେ କେବେ ହେଁ କୌଣସି ପଦାର୍ଥ ନଷ୍ଟ କରିବ ନାହିଁ । ଏପରି ବାଳକ କିରାଣି କାର୍ଯ୍ୟ ଉତ୍ତମ ରୂପେ କରି ପାରିବ ବୋଲି ମୋତେ ବୋଧ ହେଉଅଛି ।"

ମହାଜନ ବାଳକଟିକୁ ଡକାଇ ନେଇ ଆପଣା ସେରସ୍ତାରେ ଖଣ୍ଡିଏ କିରାଣି-କାର୍ଯ୍ୟ ଦେଲେ । ବାଳକଟି ଆପଣାର କାର୍ଯ୍ୟ ଦକ୍ଷତା ଓ ଭଲ ଆଚରଣରୁ ସେହି ସେରସ୍ତାରେ କ୍ରମେ ସର୍ବାପେକ୍ଷା ବଡ଼ କାର୍ଯ୍ୟ ପାଇଲା । ମହାଜନ ତାହାର କାର୍ଯ୍ୟରେ ଅତିଶୟ ସନ୍ତୁଷ୍ଟ ହୋଇ ତାହା ଉପରେ ସମ୍ପୂର୍ଣ୍ଣରୂପେ ନିର୍ଭର କଲେ । ସେ ତାହାକୁ କିରାଣିକାର୍ଯ୍ୟରେ ଆଉ ନ ରଖି ବ୍ୟବସାୟର ସମସ୍ତ ଭାର ତାହା ଉପରେ ଅର୍ପଣ କଲେ ।

ବାଳକଟିର ବୟସ କ୍ରମେ ଅଧିକ ହେଲା । ମହାଜନଙ୍କ ଅନ୍ତେ ସେ ସ୍ୱୟଂ ବ୍ୟବସାୟ କରି ସେହି ନଗରରେ ସର୍ବାପେକ୍ଷା ଧନୀ ବ୍ୟକ୍ତି ହେଲା ।

---

## ୪୨—ଗୋଟିଏ ମୁକ୍ତା କଥା

ଦିନେ ଆକାଶ ମେଘରେ ଆଚ୍ଛନ୍ନ ଥିଲା । ବୃଷ୍ଟିବିନ୍ଦୁଟିଏ ସେହି ମେଘରୁ ସମୁଦ୍ରରେ ପଡ଼ିଲା । ପଡ଼ିଲାବେଳେ ସେ ବିନ୍ଦୁଟି ଭାବିଲା "ମୁଁ ତ ଅତି କ୍ଷୁଦ୍ର ଜଳବିନ୍ଦୁଟିଏ । ମୋହର କୌଣସି ମୂଲ୍ୟ ନାହିଁ । ମୁଁ ତୁଚ୍ଛ ବସ୍ତୁ ଅଟେ । ସଂସାରରେ କେହି ମୋତେ ଦେଖିବ ନାହିଁ କି ମୋ କଥା କେହି କାହାକୁ ପଚାରିବ ନାହିଁ ।" ଜଳବିନ୍ଦୁଟି ସମୁଦ୍ରରେ ପଡ଼ିଲା । ସେହି ସମୟରେ ସେଠାରେ ଗୋଟିଏ ଶାମୁକ ମୁହଁ ମେଲା କରିଥିଲା । ଜଳବିନ୍ଦୁଟି ଏହି ଶାମୁକ ମଧ୍ୟରେ ପ୍ରବେଶ କଲା । ଜଳବିନ୍ଦୁ ପ୍ରବେଶ କଲାରୁ ଶାମୁକ ମୁହଁଟି ବନ୍ଦ ହୋଇଗଲା । ଶାମୁକ-ଗର୍ଭରେ ରହି ଜଳବିନ୍ଦୁଟି କେତେକ ବର୍ଷରେ ସୁନ୍ଦର ମୁକ୍ତାଟିଏ ହେଲା ।

ମୁକ୍ତା ଉତ୍ତୋଳନ କରିବା ନିମନ୍ତେ ଧୀବରମାନେ ସମୁଦ୍ରରେ ପ୍ରବେଶ କଲେ । ତନ୍ମଧ୍ୟରୁ ଜଣେ ଧୀବର ପୂର୍ବୋକ୍ତ ଶାମୁକଟି ପାଇଲା । ସେ ତାହାକୁ କୂଳକୁ ଆଣି ମେଲାଇ ଦେଖିଲା । ତନ୍ମଧ୍ୟରେ ସେହି ସୁନ୍ଦର ମୁକ୍ତାଟି ରହିଅଛି । ଧୀବର ଜଣେ ମଣିକାରକୁ ସେହି ମୁକ୍ତାଟି ଶହେ ଟଙ୍କାକୁ ବିକ୍ରୟ କଲା । ମଣିକାର କେତେଗୁଡ଼ିଏ ହୀରା ଓ ମାଣିକ୍ୟ ମଧ୍ୟରେ ସେହି ମୁକ୍ତାଟି ଥୋଇ ଗୋଟିଏ ହାର କଲା, ଏବଂ ହାରଟି ସେହି ଦେଶର ରାଜାକୁ ବିକ୍ରୟ କଲା । ରାଜା ସେହି ସୁନ୍ଦର ହାରଟି ତାହାଙ୍କ ରାଣୀଙ୍କୁ ଅର୍ପଣ କଲେ ।

ରାଣୀ ସେହି ହାରଟି ଆପଣାର ଗଳାରେ ପିନ୍ଧିଲେ । ସମସ୍ତେ ସେହି ହାରକୁ ଓ ତନ୍ମଧ୍ୟରେ ସେହି ମୁକ୍ତାଟିକୁ ପ୍ରଶଂସା କଲେ । ସାମାନ୍ୟ ଜଳବିନ୍ଦୁଟି ସୁନ୍ଦର ମୁକ୍ତାରେ ପରିଣତ ହୋଇ ଶେଷରେ ରାଣୀଙ୍କର ଅଳଙ୍କାର ମଧ୍ୟରେ ସ୍ଥାନ ପାଇଲା ।

ଈଶ୍ୱରଙ୍କର କୃପା ହେଲେ ଅତି ତୁଚ୍ଛ ପଦାର୍ଥ ଅମୂଲ୍ୟ ବସ୍ତୁରେ ପରିଣତ ହୁଏ ।

---

# ୪୩—ପକ୍ଷୀ ଓ କୃଷ୍ଣସର୍ପ କଥା

ଗୋଟିଏ ବୃକ୍ଷର ଶାଖାରେ ଗୋଟିଏ ମାଈ ପକ୍ଷୀ ଓ ଗୋଟିଏ ଅଣ୍ଡିରା ପକ୍ଷୀ ଏକତ୍ର ବାସ କରୁଥିଲେ । ସେହି ବୃକ୍ଷର କୋଟରରେ ଗୋଟିଏ କୃଷ୍ଣ ସର୍ପର ବାସ ଥିଲା । ଏହି କୃଷ୍ଣସର୍ପ ବୃକ୍ଷଶାଖାରେ ଚଢ଼ି ସମସ୍ତ ସମୟରେ ପକ୍ଷୀ-ଶାବକଗୁଡ଼ିକ ଭକ୍ଷଣ କରୁଥିଲା । ଏକଦା ମାଈପକ୍ଷୀଟି ପୁନର୍ବାର ଗର୍ଭବତୀ ହୋଇ ଅପର ପକ୍ଷୀଟିକୁ କହିଲା, "ଚାଲ ଏହି ବୃକ୍ଷ ଛାଡ଼ି ଅନ୍ୟ ବୃକ୍ଷକୁ ଯିବା । ସେହି କୃଷ୍ଣସର୍ପଟା ଏଠାରେ ଥିବା ଯାଏ ଆମ୍ଭମାନଙ୍କର ଶାବକମାନଙ୍କର ପ୍ରାଣ ରହିବ ନାହିଁ । ବିଜ୍ଞ ବ୍ୟକ୍ତିମାନେ କହିଅଛନ୍ତି—ଯେଉଁ ଗୃହରେ ବିଶ୍ୱାସଘାତକ ବନ୍ଧୁ ଅଥବା ଅବାଧ୍ୟ ଭୃତ୍ୟ ଥାଏ ସେ ଗୃହରେ ବାସ କରିବା ଉଚିତ ନୁହେଁ । ପୁଣି ଯେଉଁ ଗୃହରେ ସର୍ପ ବାସ କରେ, ପ୍ରାଣରକ୍ଷା ନିମନ୍ତେ ସେହି ଗୃହକୁ ତତ୍କ୍ଷଣାତ୍ ପରିତ୍ୟାଗ କରିବା ଉଚିତ ।"

ପୁରୁଷପକ୍ଷୀଟି କହିଲା, "ତୁମ୍ଭେ ଭୀତ ହୁଅ ନାହିଁ । ଏହି ସର୍ପଟା ବାରମ୍ବାର ଆମ୍ଭମାନଙ୍କର କ୍ଷତି କରୁଅଛି । ମୁଁ ବହୁତ ସହିଲିଣି । ବର୍ତ୍ତମାନ ମୁଁ ଏହାର ବିନାଶର ଉପାୟ କରିବି ।" ସ୍ତ୍ରୀପକ୍ଷୀଟି ପଚାରିଲା, ତୁମ୍ଭେ ଏଡ଼େ ଭୀଷଣ କୃଷ୍ଣ-ସର୍ପଟାକୁ କିପରି ମାରିବ ?" ପୁରୁଷପକ୍ଷୀ କହିଲା, "ତୁମ୍ଭେ ଚିନ୍ତାକର ନାହିଁ, ଯାହାର ବୁଦ୍ଧି ଅଛି ସେ ବଳୀୟାନ । ବୁଦ୍ଧି ଥିବାରୁ କ୍ଷୁଦ୍ର ଶଶକ ବୃହତ୍ ବ୍ୟାଘ୍ରକୁ ବଧ କଲା ।" ସ୍ତ୍ରୀପକ୍ଷୀ କହିଲା, "ମୁଁ ତାହା ଶୁଣିଅଛି, ତୁମ୍ଭେ ବର୍ତ୍ତମାନ କି ଉପାୟ ସ୍ଥିର କରିଅଛ ?" ପୁରୁଷପକ୍ଷୀ କହିଲା, "ମୁଁ ଯେଉଁ ଉପାୟ ସ୍ଥିର କରିଅଛି, ତାହା ଶୁଣ । ରାଜପୁତ୍ର ପ୍ରତିଦିନ ଏହି ନଦୀରେ ସ୍ନାନ କରିବାକୁ ଆସନ୍ତି । ସେ ଆପଣା ଦେହରୁ ସୁନାସୂତା ବାହାର କରି କୂଳରେ ରଖି ତଳକୁ ଓହ୍ଲାଇଲେ, ତୁମ୍ଭେ ଚଞ୍ଚୁରେ ସେହି ସୁନାସୂତାକୁ ଧରି ଉଡ଼ିଯାଇ ସେହି କୋଟରରେ ପକାଇ ଆସିବ ।"

ଦୁଇପକ୍ଷୀ ମଧ୍ୟରେ ଏହି ପ୍ରସ୍ତାବ ହେଲା । କିଛିକ୍ଷଣ ଉତ୍ତାରେ ରାଜକୁମାର ସ୍ନାନ କରିବାପାଇଁ ଆସିଲେ । ସେ ସୁନାସୂତା ବାହାର କରି ପାହାଚ ଉପରେ ରଖି ଜଳରେ ପ୍ରବେଶ କଲେ । ଏହି ସମୟରେ ସ୍ତ୍ରୀପକ୍ଷୀଟି ସେହି ସୂତାକୁ ନେଇ ଉଡ଼ିଯାଇ ବୃକ୍ଷର କୋଟରରେ ତାହା ପକାଇଦେଲା । ରାଜପୁତ୍ରଙ୍କର ଭୃତ୍ୟମାନେ ସେ ସ୍ଥାନ ଉପରେ ସୁନାସୂତା ନ ଦେଖି ନାନା ସ୍ଥାନରେ ଅନ୍ୱେଷଣ କଲେ ଏବଂ ଶେଷରେ ସେହି ବୃକ୍ଷମୂଳକୁ ଯାଇ ଦେଖିଲେ ଯେ କୋଟର ମଧ୍ୟରେ ସୂତା ପଡ଼ିଅଛି ଓ ତାହା ନିକଟରେ ଗୋଟିଏ କୃଷ୍ଣସର୍ପ ଅଛି । ସେମାନେ ସର୍ପଟାକୁ ମାରି ସେଠାରୁ ସୁନାସୂତା ନେଇ ଆସିଲେ ।

ବୁଦ୍ଧି ଥିବାରୁ ପକ୍ଷୀଟି ଏହିରୂପେ କୃଷ୍ଣସର୍ପର ପ୍ରାଣ ନାଶ କରି ସେହି ଦିନଠାରୁ ନିଶ୍ଚିନ୍ତ ହେଲା ।

———

# ୪୪- ରଜକ-ମନ୍ତ୍ରୀ କଥା

ପୂର୍ବକାଳରେ ଦକ୍ଷିଣ କଳିଙ୍ଗ ରାଜ୍ୟରେ ଜଣେ ରାଜା ଥିଲେ । ସେହି ରାଜାଙ୍କର ଧୋବା ତାହାଙ୍କର ବସ୍ତ୍ର ଅତି ଉତ୍ତମରୂପେ ପରିଷ୍କାର କରୁଥିବାରୁ ସେ ତାହା ପ୍ରତି ସନ୍ତୁଷ୍ଟ ଥିଲେ । ଦିନକରେ ରାଜା ଧୋବାକୁ କହିଲେ, "ଆମ୍ଭେ ତୋହର କାର୍ଯ୍ୟରେ ସନ୍ତୁଷ୍ଟ ହୋଇଅଛୁଁ । ତୋତେ କିଛି ପୁରସ୍କାର ଦେବାକୁ ଇଚ୍ଛା କରୁଁ । କେଉଁ ପୁରସ୍କାରରେ ତୋହର ଅଭିଳାଷ ଆମ୍ଭଙ୍କୁ କହି ।'' ଏହା ଶୁଣି ଅତିଶୟ ଆନନ୍ଦିତ ହୋଇ ଧୋବା କହିଲା, "ମହିମା ! ରାମୁଙ୍କର ମନ୍ତ୍ରୀ ହେବାରେ ମୋହର ଅଭିଳାଷ । ଯଦି ରାମୁଙ୍କର ସୁଇଚ୍ଛା ହେଲା, ତେବେ ସେହି କାର୍ଯ୍ୟ ଖଣ୍ଡିକ ମୋତେ ଦେବା ହେଉ ।"

ରାଜାମାନଙ୍କର ଶ୍ରୀମୁଖରୁ ଯାହା ବାହାରେ ତାହା ଆଉ ଫେରେ ନାହିଁ । ସେ ସତ୍ୟଭ୍ରଷ୍ଟ ନ ହୋଇ ପୁରାତନ ମନ୍ତ୍ରୀକୁ କାର୍ଯ୍ୟରୁ ଅବସର ଦେଲେ, ଏବଂ ତାହାଙ୍କ କାର୍ଯ୍ୟରେ ରଜକକୁ ନିଯୁକ୍ତ କଲେ । ଏହି ସମ୍ବାଦ ଚତୁର୍ଦ୍ଦିଗରେ ବ୍ୟାପି ଗଲା । ଅନ୍ୟ ଯେଉଁ ରାଜାମାନଙ୍କ ସହିତ ତାହାଙ୍କର ଶତ୍ରୁତା ଥିଲା, ସେମାନେ ଯେତେବେଳେ ଶୁଣିଲେ ରଜକ-ମନ୍ତ୍ରୀ ରାଜ୍ୟ-ଶାସନ କରୁଅଛି, ତେତେବେଳେ ସେମାନେ ଏହାକୁ ସୁଯୋଗ ଜାଣି ଅନେକଗୁଡ଼ିଏ ସୈନ୍ୟ ଘେନି ସେହି ରାଜ୍ୟ ଆକ୍ରମଣ କଲେ ।

ରାଜା ଯେତେବେଳେ ଶୁଣିଲେ ଶତ୍ରୁମାନେ ରାଜ୍ୟ ଆକ୍ରମଣ କରିବେ, ତେତେବେଳେ ସେ ରଜକମନ୍ତ୍ରୀକୁ ପଚାରିଲେ, "ବର୍ତ୍ତମାନ କଅଣ କର୍ତ୍ତବ୍ୟ ?" ସେହି ମନ୍ତ୍ରୀ ଉତ୍ତର କଲା "ମହିମାଙ୍କୁ କିଛି ଭାବିବାକୁ ହେବ ନାହିଁ, ଯେତେବେଳେ ଯାହା କର୍ତ୍ତବ୍ୟ ମୁଁ ସବୁ କରିବ । ମହିମା ନିଶ୍ଚିନ୍ତ ହୋଇ ବସିଥାନ୍ତୁ ।" ଶତ୍ରୁମାନେ ଯେତେବେଳେ ତାହାଙ୍କର ରାଜଧାନୀ ଘେରିଗଲେ ତେତେବେଳେ ରାଜା ପୁନର୍ବାର ସେହି ମନ୍ତ୍ରୀକୁ ପଚାରିଲେ, "ଶତ୍ରୁମାନେ ତ ରାଜଧାନୀ ଘେରିଗଲେ, ବର୍ତ୍ତମାନ କଅଣ କରାଯିବ ?" ଏଥିରେ ମନ୍ତ୍ରୀ ଉତ୍ତର ଦେଲା, ମହିମା ! ଈଶ୍ୱର ରାମୁଙ୍କର ଶତ୍ରୁମାନଙ୍କୁ ଆଣି ଏଠାରେ ପହଞ୍ଚାଇଅଛନ୍ତି । ସେଥିପାଇଁ ରାମୁଁ ଭାବୁଛନ୍ତି କାହିଁକି ? ସବୁ ବିଷୟରେ ଭାର ତ ମୋହି ଉପରେ ଅଛି । ମୋହର ପ୍ରସ୍ତାବଟି ଶୁଣିବା ହେଉ । ରାଜ୍ୟ ଶାସନ କରିବା ଆପଣଙ୍କୁ ଯେପରି, ମୋତେ ମଧ୍ୟ ସେହିପରି ଅଜ୍ଞୁଆ । ପୂର୍ବେ ମୁଁ ଶତାଧିକ ଘରେ ଲୁଗା କାଚି ମହାସୁଖରେ ଥିଲି । ରାମୁଙ୍କର ଶତ୍ରୁମାନେ ଏହି ରାଜଧାନୀ ନେବେ ତ ନିଅନ୍ତୁ । ମୁଁ ଯାଇ ମୋହର ପୂର୍ବକାର୍ଯ୍ୟ କରେଁ । ସେଥିରୁ ଯେଉଁ ଉପାର୍ଜ୍ଜନ ହେବ, ତହିଁରୁ ଅଧେ ରାମୁଙ୍କୁ ଦେବ । ଏହା କଲେ ରାଜ୍ୟ ନେଇ

ତ୍ରମୁକ୍ତ ଆଉ ମୋତେ କଷ୍ଟ ଭୋଗ କରିବାକୁ ହେବ ନାହିଁ । ଆମ୍ଭେ ଦୁହେଁ ଜୀବନର ଅବଶିଷ୍ଟାଂଶ ସୁଖରେ କଟାଇବା ।"

ଧୋବାକୁ ମନ୍ତ୍ରୀ କଲେ କି ଦଶା ଘଟେ ରାଜା ତାହା ଏତେବେଳେ ଜାଣି ପାରିଲେ । ମାତ୍ର ତାହାର ପ୍ରତିକାର କରିବାକୁ ରାଜାଙ୍କର ଆଉ ଅବସର ନ ଥିଲା ।

---

## ୪୫—କାରାଗାରରେ ସତ୍ୟବାଦିତାର ଫଳ

ଭଣ୍ଡଭୂମିର ରାଜା ଦିନେ କାରାଗାର ପରିଦର୍ଶନ ପାଇଁ ବିଜେ କଲେ । ସେ ପ୍ରବେଶ କରିବାବେଳେ ଦେଖିଲେ ଯେ ପ୍ରହରୀମାନଙ୍କ ଦ୍ୱାରା ବେଷ୍ଟିତ ହୋଇ କୋଡ଼ିଏ ଜଣ କଏଦୀ କାର୍ଯ୍ୟ କରିବା ନିମନ୍ତେ ବାହାରି ଅଛନ୍ତି । ଏମାନେ ଗୁରୁତର ଅପରାଧ କରିଥିବାରୁ କାରାଦଣ୍ଡ ପ୍ରାପ୍ତ ହୋଇଥିଲେ । ରାଜାଙ୍କର ଆଦେଶରେ ସେମାନେ ଏକ ପଙ୍‌କ୍ତିରେ ଦଣ୍ଡାୟମାନ ହେବାରୁ ରାଜା ପ୍ରତ୍ୟେକଙ୍କୁ ପ୍ରଶ୍ନ କଲେ କି ଅପରାଧରେ ସେ ଦଣ୍ଡପ୍ରାପ୍ତ ହୋଇଥିଲା ।

ପ୍ରଥମ ଜଣକ କହିଲା ସେ କୌଣସି ଅପରାଧ କରି ନାହିଁ । ମାତ୍ର ତାହାର ଜଣେ ଶତ୍ରୁ ଉତ୍କୋଚ ଦେବାରୁ ସାକ୍ଷୀମାନେ ସମସ୍ତେ ତାହା ବିପକ୍ଷରେ ମିଥ୍ୟା ସାକ୍ଷ୍ୟ ଦେଲେ । ଏହା ଶୁଣି ରାଜା ପୁଣି ପ୍ରଶ୍ନ କଲେ, "ତୁମ୍ଭେ ନିର୍ଦ୍ଦୋଷ ଏବଂ ସାକ୍ଷୀମାନେ ସମସ୍ତେ ମିଥ୍ୟା କହିଲେ ?" ବନ୍ଦୀ ଉତ୍ତର ଦେଲା, "ମହିମା ! ମୁଁ କୌଣସି ଅପରାଧ କରିନାହିଁ । ମୁଁ ଅତି ଦରିଦ୍ର ଲୋକ । ସାକ୍ଷୀମାନେ ସମସ୍ତେ ଅର୍ଥ-ଲୋଭରେ ମିଥ୍ୟା କହିଲେ ।"

ଦ୍ୱିତୀୟ ବନ୍ଦୀ କହିଲା, "ଆଜିକି ପନ୍ଦରବର୍ଷ ତଳେ ବିଚାରପତିଙ୍କର ଗୋରୁ ମୋର ବାଡ଼ିରେ ଗଛପତ୍ର ନଷ୍ଟ କରିବାରୁ ମୋର ଭଗିନୀ ସହିତ ତାହାଙ୍କ ସ୍ତ୍ରୀର କଳହ ହୋଇଥିଲା । ତେତେବେଳେ ବିଚାରପତି ଜଣେ ସାମାନ୍ୟ କର୍ମଚାରୀ ଥିଲେ । ସେ ସୁଯୋଗ ପାଇଲେ ମୋହର ଅନିଷ୍ଟ କରିବେ ବୋଲି ମୋତେ ଧମକାଇଥିଲେ । ସେହି ଆକ୍ରୋଶରେ ସେ ମୋତେ ଚୋରି ଅପରାଧରେ ଦୋଷୀ କରି କାରାଦଣ୍ଡ ଦେଇଅଛନ୍ତି ।

ତୃତୀୟ ବ୍ୟକ୍ତି କହିଲା, "ବ୍ୟବହାର-ଶାସ୍ତ୍ରରେ ବିଚାରପତିଙ୍କର ଜ୍ଞାନ ଅଳ୍ପ ଥିବାରୁ ବିନା ଅପରାଧରେ ସେ ମୋତେ ଏହି ଦଣ୍ଡ ଦେଇଅଛନ୍ତି ।"

ଚତୁର୍ଥବନ୍ଦୀ କହିଲା ଅନ୍ୟ ଏକ ବ୍ୟକ୍ତି ପ୍ରତି-ବେଶୀର ଗୃହରେ ଚୋରି କରିଥିଲା । ସେହି ବ୍ୟକ୍ତି ସହିତ ତାହାର ଆକୃତିର ସାଦୃଶ୍ୟ ଥିବାରୁ ଶାନ୍ତିରକ୍ଷକ

କର୍ମଚାରୀମାନେ ଭ୍ରମରେ ପଡ଼ି ତାହାକୁ ବନ୍ଦୀଶାଳାକୁ ପଠାଇବାରୁ ସେ କାରାଦଣ୍ଡରେ ଦଣ୍ଡିତ ହୋଇଅଛି ।

ଏହିପରି ଉଣେଇଶ ଜଣ ବନ୍ଦୀ ଆପଣା ଆପଣାକୁ ନିରପରାଧ ବୋଲି କହିଲେ । ଅବଶିଷ୍ଟ ଜଣକୁ ରାଜା ପ୍ରଶ୍ନ କଲେ, "ତୁମ୍ଭେ ମଧ୍ୟ ନିର୍ଦ୍ଦୋଷ ?" ଏହି ବ୍ୟକ୍ତି କୃତାଞ୍ଜଳି ପୂର୍ବକରେ କହିଲା ! "ମହିମା ! ମୁଁ ଅପରାଧୀ । ମୁଁ ଚୋରି କରିଥିବାରୁ ବିଚାରପତିଙ୍କର ନ୍ୟାୟ ବିଚାରରେ ଏହି ଦଣ୍ଡଭୋଗ କରୁଅଛି ।"

ଅନନ୍ତର ରାଜା କହିଲେ, "ଏହି ଜଣକ ଆପଣାକୁ ଅପରାଧୀ ବୋଲି ସ୍ୱୀକାର କରୁଅଛି । ଏତେଗୁଡ଼ିଏ ନିରପରାଧ ସାଧୁ ପୁରୁଷଙ୍କ ସଙ୍ଗରେ ଜଣେ ଅପରାଧୀର ଏକତ୍ର ଅବସ୍ଥାନ ଅସଙ୍ଗତ ଅଟେ ।" ରାଜା ପ୍ରହରୀମାନଙ୍କୁ କହିଲେ, "ଏହି ବ୍ୟକ୍ତି ମିଥ୍ୟାକଥନ ଦ୍ୱାରା ଆପଣାର ପାପସଂଖ୍ୟା ବଢ଼ାଇ ନାହିଁ । ସତ୍ୟ-ବାଦିତାର ପୁରସ୍କାର ଏହାର ପ୍ରାପ୍ୟ ହେଉଅଛି । ବନ୍ଧନ ମୋଚନ କରି ଏହାକୁ ଛାଡ଼ି ଦିଅ ।"

ମିଥ୍ୟା କଥା କହି ଅପରାଧ ଗୋପନ କରିବାକୁ ଯତ୍ନ କଲେ ପାପର ସଂଖ୍ୟା ହିଁ ବଢ଼େ । ମନୁଷ୍ୟଠାରୁ ଯାହା ଗୋପନ କରିବାକୁ ଯତ୍ନ କର, ତାହା ଅନ୍ତର୍ଯାମୀ ଈଶ୍ୱରଙ୍କଠାରୁ ଗୋପନ କରିପାରିବ ନାହିଁ । ଇହଲୋକରେ ହେଉ ବା ପରଲୋକରେ ହେଉ, ତାହାର ଫଳ ତୁମ୍ଭଙ୍କୁ ଭୋଗ କରିବାକୁ ହେବ ।

———

## ୪୭—ବଧିର ବନ୍ଧୁର ଉପାଖ୍ୟାନ

କନ୍ଦଲପୁର ଗ୍ରାମରେ ଜଣେ ମହାଜନର ବାସ ଥିଲା । ସେହି ମହାଜନଙ୍କର ଜଣେ ପ୍ରୀତିବନ୍ଧୁ ଥିଲେ । ବଡ଼ପାଟି କରି କଥା ନ କହିଲେ ତାଙ୍କୁ ଶୁଭେ ନାହିଁ । ଦିନକରେ ସେ ଶୁଣିଲେ ମହାଜନଙ୍କର ଦେହ ଅତି ଅସୁସ୍ଥ ହୋଇଅଛି । ଏ ଅବସ୍ଥାରେ ମହାଜନଙ୍କୁ ଦେଖିବାପାଇଁ ତାହାଙ୍କର ମନ ବ୍ୟାକୁଳ ହେବାରୁ ସେ ସତ୍ୱର ମହାଜନଙ୍କ ଘରକୁ ଚାଲିଲେ । ବାଟରେ ଯାଉଁ ଯାଉଁ ଭାବିଲେ "ବଡ଼ପାଟି କରି କଥା ନ କହିଲେ ମୋତେ ଶୁଭେ ନାହିଁ । ମହାଜନଙ୍କ ପାଖରେ ଯଦି ଆଉ କେହି ନ ଥିବେ ଏବଂ ଉଚ୍ଚୈଃସ୍ୱରରେ କଥା କହିବାପାଇଁ ଯଦି ତାହାଙ୍କର ବଳ ନ ଥିବ, ତେବେ ମୁଁ ତାହାଙ୍କର କଥା ବୁଝିବି କପରି ?" ପୁଣି କିଛିକ୍ଷଣ ଭାବି ସେ ସ୍ଥିର କଲେ । "ମୁଁ ଯାଇଁ ଧୀରେ ତାଙ୍କ ପାଖରେ ବସିବି । ମୁଁ ଯେତେବେଳେ ତାଙ୍କୁ

ପଚାରିବ ତୁମ୍ଭେ ଆଜି କପରି ଅଛ ? ସେ ସମ୍ଭବତଃ ଉତ୍ତର ଦେବେ, ମୁଁ ଆଜି ଟିକିଏ ଭଲ ଅଛି । ସେଠାରୁ ମୁଁ କହିବି ଈଶ୍ୱର ତୁମ୍ଭଙ୍କୁ ଏହିପରି ରଖିଥାନ୍ତୁ । କିଛିକ୍ଷଣ ପରେ ମୁଁ ପୁଣି ପ୍ରଶ୍ନ କରିବି ତୁମ୍ଭେ କି ପଥ୍ୟ ଖାଉଅଛ ? ସେ ଖଇମଣ୍ଡ ଖାଉଅଛନ୍ତି ବୋଲି କହିପାରନ୍ତି । ସେଠାରୁ ମୁଁ କହିବି ଏହି ପଥ୍ୟ ତୁମ୍ଭ ପକ୍ଷରେ ଉତ୍ତମ ଅଟେ । ମୁଁ ପୁନର୍ବାର ପଚାରିବି କିଏ ତୁମ୍ଭର ଚିକିତ୍ସା କରୁଅଛନ୍ତି ? ସେ ଅବଶ୍ୟ ଜଣେ ଭଲ ଚିକିତ୍ସକର ନାମ କହିବେ । ସେହି ବୈଦ୍ୟଙ୍କର ଚିକିତ୍ସାରେ ରହିବାପାଇଁ ତାଙ୍କୁ ପରାମର୍ଶ ଦେବି ।''

ଏହିପରି ଭାବୁଁ ଭାବୁଁ ଉକ୍ତ ବନ୍ଧୁଟି ମହାଜନଙ୍କ ଗୃହରେ ଉପସ୍ଥିତ ହେଲେ । ତେତେବେଳେ ରୋଗୀର ନିକଟରେ ଦୈବାତ୍ ଆଉ କେହି ନ ଥିବାରୁ ସେ ତାଙ୍କର ଶଯ୍ୟା-ପାର୍ଶ୍ୱରେ ଧୀରେ ବସି ପ୍ରଶ୍ନ କଲେ, ''ଆଜି ତୁମ୍ଭର ଦେହ କପରି ଅଛି ? ତୁରନ୍ତେ ମହାଜନ ଉତ୍ତର କଲେ "ଆଜି ଜ୍ୱରର ପ୍ରକୋପ ବଢ଼ିଅଛି ।" ବଧିର ବନ୍ଧୁଟି କହିଲେ "ଈଶ୍ୱର ତୁମ୍ଭଙ୍କୁ ଏହିପରି ରଖିଥାନ୍ତୁ ।" ଏହା ଶୁଣି ମହାଜନ ମନେ ମନେ ବିରକ୍ତ ହୋଇ କିଛି କହିଲେ ନାହିଁ । ବଧିର ବନ୍ଧୁ ପୁଣି ପ୍ରଶ୍ନ କଲେ, "ତୁମେ କି ପଥ୍ୟ ଖାଉଅଛ ?'' ମହାଜନ ବିରକ୍ତ ହୋଇ କହିଲେ ପାଉଁଶ ଖାଉଅଛି ।'' ବନ୍ଧୁଟି ତାହାଙ୍କର କଥା ବୁଝି ନ ପାରି କହିଲେ, "ତୁମ୍ଭର ଏହି ଅବସ୍ଥାରେ ତାହା ହିଁ ସୁପଥ୍ୟ ।'' ସେ ପୁଣି ପ୍ରଶ୍ନ କଲେ, ''କେଉଁ ବୈଦ୍ୟ ତୁମ୍ଭଙ୍କୁ ଦେଖୁଅଛନ୍ତି ?'' ମହାଜନ ଉତ୍ତର କଲେ, ''ଯମ ମୋତେ ଦେଖୁଅଛି ।'' ମହାଜନ କୌଣସି ଭଲ କବିରାଜଙ୍କ ନାମ ଉଚ୍ଚାରଣ କଲେ ବୋଲି ଅନୁମାନ କରି, ବଧିର ବନ୍ଧୁ କହିଲେ, "ହଁ, ସେ ତୁମ୍ଭଙ୍କୁ ଦେଖୁଥାନ୍ତୁ । ତାଙ୍କଠାରୁ ଭଲ ବୈଦ୍ୟ ଆଉ ନାହିଁ । ତୁମ୍ଭେ ତାଙ୍କର ଅଭିଜ୍ଞତା ଉପରେ ନିର୍ଭର କର ।'' ଏଥିରେ ମହାଜନ ଅତିଶୟ ବିରକ୍ତ ହୋଇ ତାହାଙ୍କ ଆଡ଼କୁ ପିଠି କରି ନୀରବ ହୋଇ ପଡ଼ିରହିଲେ ।

ବଧିର ବନ୍ଧୁ ତାହା ଦେଖି ଅନୁମାନ କଲେ ''ଜ୍ୱରର ଉପଶମ ହୋଇ ଆସିବାରୁ ମହାଜନଙ୍କୁ ତନ୍ଦ୍ରା ଲାଗୁଅଛି । ଏ ସମୟରେ ତାହାଙ୍କ ସହିତ ଅଧିକ କଥା କହିବା ଅନୁଚିତ ଅଟେ ।" ଏହା ଭାବି ସେ ସେଠାରୁ ଧୀରେ ପ୍ରସ୍ଥାନ କଲେ ।

---

## ୪୭ ଯୋଗ୍ୟତାର ନିଦର୍ଶନ

କଲିକତା ନଗରରେ ଜଣେ ଇଉରୋପୀୟ ମହାଜନଙ୍କର କାର୍ଯ୍ୟାଳୟରେ ଜଣେ କିରାଣି ଆବଶ୍ୟକ ହେଲା । ସାହେବ ମହୋଦୟ ସମ୍ବାଦପତ୍ରରେ ତାହାର ବିଜ୍ଞାପନ ଦେଲେ । କାର୍ଯ୍ୟପ୍ରାର୍ଥୀ ଦଶଜଣ ଯୁବକ ଯଥାସମୟରେ ସେଠାରେ

ଉପସ୍ଥିତ ହେଲେ । ତନ୍ମଧ୍ୟରେ ଜଣଙ୍କୁ ଛାଡ଼ି ଅନ୍ୟ ସମସ୍ତେ ଆପଣା ଆପଣାର ଯୋଗ୍ୟତାର ପ୍ରଶଂସାପତ୍ର ସଙ୍ଗରେ ଆଣିଥିଲେ । ଯେଉଁ ବାଳକର କୌଣସି ପ୍ରଶଂସାପତ୍ର ନ ଥିଲା, କାର୍ଯ୍ୟଗ୍ରାହୀ ସାହେବ ସେହି ବାଳକକୁ ହିଁ ଉକ୍ତକାର୍ଯ୍ୟରେ ନିଯୁକ୍ତ କଲେ । ଅପର ଜଣେ ଇଂରେଜୀୟ ଭଦ୍ରଲୋକ ସେହି ସମୟରେ ସେଠାରେ ଉପବିଷ୍ଟ ହୋଇଥିଲେ । ପ୍ରାର୍ଥୀମାନେ ସେ ସ୍ଥାନରୁ ପ୍ରସ୍ଥାନ କଲାଉତ୍ତାରୁ ସେ କାର୍ଯ୍ୟଗ୍ରାହୀ ସାହେବଙ୍କର ବିଚାରରେ ବିସ୍ମିତ ହୋଇ ପ୍ରଶ୍ନ କଲେ, "ଯେଉଁମାନେ ପ୍ରଶଂସାପତ୍ର ଆଣିଥିଲେ ସେମାନଙ୍କ ମଧ୍ୟରୁ କାହାରିକୁ କାର୍ଯ୍ୟରେ ନିଯୁକ୍ତ ନ କରି ପ୍ରଶଂସାପତ୍ର-ବିହୀନ ବାଳକକୁ କି ହେତୁରୁ ନିଯୁକ୍ତ କଲ ?" ପ୍ରଥମୋକ୍ତ ଇଂରେଜୀୟ ଭଦ୍ରଲୋକଟି କହିଲେ "ନିଯୁକ୍ତ ବାଳକଟି ଆପଣା ଗୁଣର ଯେଉଁ ନିଦର୍ଶନମାନ ଦେଖାଇଲା, ଅନ୍ୟ କେହି ସେ ନିଦର୍ଶନମାନ ଦେଖାଇ ପାରିଲେ ନାହିଁ । ଏହି ହେତୁରୁ ଆମ୍ଭେ ଉକ୍ତ ବାଳକଟିକୁ କାର୍ଯ୍ୟରେ ନିଯୁକ୍ତ କଲୁଁ ।" ଏଥିରେ ଅଧିକ ବିସ୍ମିତ ହୋଇ ଅପର ଇଂରେଜୀୟ ଭଦ୍ରଲୋକଟି କହିଲେ, "ଅମ୍ଭେ ତ ତାହାର କୌଣସି ପ୍ରଶଂସାପତ୍ର ଦେଖି ପାରିଲୁ ନାହିଁ । ତାହାର ପ୍ରଶଂସାପତ୍ର କାହିଁ ?"

କାର୍ଯ୍ୟଗ୍ରାହୀ ସାହେବ ଉତ୍ତର ଦେଲେ 'ତାହାର ଗୁଣର ନିଦର୍ଶନ ଆମ୍ଭେ ଦେଖାଉଅଛୁଁ । ଆକାରରୁ ସେହି ବାଳକଟି ଦରିଦ୍ର ବୋଲି ବୋଧ ହେଲେ ହେଁ ତାହାର ପରିଧେୟ ବସ୍ତ୍ର ଅତିଶୟ ପରିଷ୍କୃତ ହେଲା । ତାହାର ହସ୍ତ ଓ ନଖଗୁଡ଼ିକ ମଧ୍ୟ ନିର୍ମଳ ଦିଶୁଥିଲା । ଏହା ତାହାର ଗୁଣର ପ୍ରଥମ ନିଦର୍ଶନ । ବାଳକଟି ଅତି ବିନୀତ । ଏହି ଗୃହରେ ପ୍ରବେଶକଲା ମାତ୍ରେ ସେ ମସ୍ତକ ଅବନତ କରି ଧୀରେ ନମସ୍କାର କଲା । ସେ ଅନ୍ୟ ପ୍ରାର୍ଥୀମାନଙ୍କ ଠେଲି ସମ୍ମୁଖକୁ ନ ଆସି ସମସ୍ତଙ୍କ ପଶ୍ଚାଦ୍‌ଭାଗରେ ଆହ୍ୱାନ ଅପେକ୍ଷାରେ ଧୈର୍ଯ୍ୟଧରି ଦଣ୍ଡାୟମାନ ହୋଇ ରହିଲା । ଏହା ତାହାର ଗୁଣର ଦ୍ୱିତୀୟ ନିଦର୍ଶନ । ପ୍ରାର୍ଥୀମାନେ ଯେତେବେଳେ ଗୃହମଧ୍ୟରେ ପ୍ରବେଶକଲେ ତେତେବେଳେ ପବନ ବହିବାରୁ କେତେଗୁଡ଼ିଏ କାଗଜ ମେଜ ଉପରୁ ଉଡ଼ି ତଳେ ପଡ଼ିଗଲା । ବାଳକଟି ସେଗୁଡ଼ିକ ଉଠାଇ ମେଜ ଉପରେ ଯଥାସ୍ଥାନରେ ରଖିଲା । ଅନ୍ୟ କୌଣସି ପ୍ରାର୍ଥୀ ତାହା କଲେ ନାହିଁ । ଏହା ବାଳକଟିର ତୃତୀୟ ନିଦର୍ଶନ ଅଟେ । ଆମ୍ଭେ ଅନ୍ୟ ପ୍ରାର୍ଥୀମାନଙ୍କୁ ଗୋଟି ଗୋଟି କରି ଯେତେବେଳେ ପ୍ରଶ୍ନକଲୁଁ, ସେମାନେ କି କି କାର୍ଯ୍ୟ କରି ପାରନ୍ତି । ପ୍ରତ୍ୟେକ ଉତ୍ତର କଲେ, ଯେ କୌଣସି କାର୍ଯ୍ୟ ଦେଲେ ତାହା କରି ପାରିବେ । ମାତ୍ର ସେ ବାଳକଟି ଉତ୍ତର କଲା ଯେ ତାହାର ଜ୍ଞାନ ଓ ଶକ୍ତିରେ ଯାହା ସମ୍ଭବ ସେ ତାହା ହିଁ କରିବ । ବାଳକଟି ସତ୍ୟବାଦୀ ଓ ଆତ୍ମଶ୍ଲାଘାହୀନ । ଏହା ତାହାର ଗୁଣର ଚତୁର୍ଥ ନିଦର୍ଶନ । ଆମ୍ଭେ ତାହାର ଯୋଗ୍ୟତାର ଏହି ଚାରିଗୋଟି ନିଦର୍ଶନ ପ୍ରତ୍ୟକ୍ଷ କଲୁଁ ।"

———

# ୪୮—ସତ୍ୟ-ଲଙ୍ଘନ (୧)

ଗୋଟିଏ ଗ୍ରାମରେ ଅନେକଗୁଡ଼ିଏ ମୂଷା ଥିଲେ । ସେମାନେ ଧାନବିଲ ଓ ନିକଟବର୍ତ୍ତୀ ପଡ଼ିଆମାନଙ୍କରେ ବିଲ କରି ବାସ କରୁଥିଲେ । ଗୋଟିଏ ବର୍ଷ ବୃଷ୍ଟିର ଅଭାବରେ ଶସ୍ୟହାନି ହେବାରୁ ବିଲ ଓ ପଡ଼ିଆମାନଙ୍କରେ ସେମାନଙ୍କୁ ଖାଦ୍ୟପଦାର୍ଥ ମିଳିଲା ନାହିଁ । ଏହା ଦେଖି ମୂଷାମାନେ ଗ୍ରାମ ଭିତରକୁ ଆସି ନାନା ସ୍ଥାନରେ ବିଲ ରଚନା କଲେ ।

ସେମାନେ ଗ୍ରାମବାସୀ ମନୁଷ୍ୟମାନଙ୍କର ଖାଦ୍ୟଦ୍ରବ୍ୟ ଅପହରଣ କରି ପ୍ରାଣଧାରଣ କରିବାକୁ ଲାଗିଲେ । ମୂଷିକ-ସଂଖ୍ୟା ସହସ୍ର ସହସ୍ର ଥିବାରୁ ସେମାନେ କାହାରକୁ ଭୟ କଲେ ନାହିଁ । କୌଣସି ବ୍ୟକ୍ତି ଭୋଜନରେ ବସିଲେ ସେମାନେ ନିର୍ଭୀକଭାବେ ଉପସ୍ଥିତ ହୋଇ ତାହାର ଅନ୍ନଗୁଡ଼ିକ ଅପହରଣ କରି ପଳାଉଥିଲେ ।

ଗ୍ରାମବାସୀଲୋକେ ମୂଷିକମାନଙ୍କର ଦୌରାତ୍ମ୍ୟରେ ଅସ୍ଥିର ହେଲେ । ସେମାନେ କୌଣସି ପ୍ରକାରେ ମୂଷାମାନଙ୍କୁ ନିବାରଣ କରି ନ ପାରି ଗ୍ରାମର ପଧାନର ପରାମର୍ଶ ଲୋଡ଼ିଲେ । ପଧାନ ମଧ୍ୟ ମୂଷିକ-ଜ୍ୱାଳାରେ ବ୍ୟାକୁଳ । ସେ ଗ୍ରାମବାସୀମାନଙ୍କୁ କୌଣସି ପ୍ରକାରର ପରାମର୍ଶ ଦେଇ ପାରିଲାନାହିଁ । ସେମାନଙ୍କୁ ସର୍ବଦା ମୂଷିକଚିନ୍ତା ଲାଗିରହିଲା ।

ଦିନକରେ ଜଣେ ଭିକ୍ଷୁକ ଯୋଗୀ ସେହି ଗ୍ରାମରେ ଉପସ୍ଥିତ ହେଲା । ତାହାର କାନରେ କୁଣ୍ଡଳ ଏବଂ ହାତରେ ଗୋଟିଏ ସାରଙ୍ଗି । ସେ ସାରଙ୍ଗି ବଜାଇ ଦ୍ୱାରେ ଦ୍ୱାରେ ଭିକ୍ଷା ମାଗି ବୁଲୁଥାଏ । ଆତୁର ଗ୍ରାମବାସୀମାନେ ସେହି ଯୋଗୀକୁ ପଚାରିଲେ, "ନାଥ ! ତୁମ୍ଭେ କୌଣସି କୌଶଳରେ ଏହି ମୂଷାଗୁଡ଼ିକ ଗ୍ରାମରୁ ଅନ୍ୟତ୍ର ନେଇ ପାରିବ କି ?" ଯୋଗୀ ମୂଷାମାନଙ୍କର ଉପଦ୍ରବର ସମସ୍ତ ବିବରଣୀ ଶୁଣି କହିଲା "ମୋତେ ଶହେଟଙ୍କା ଦେଲେ ମୁଁ ମୁହୂର୍ତ୍ତିକ ମଧ୍ୟରେ ମୂଷାମାନଙ୍କୁ ଏଠାରୁ ନେଇଯିବି ।"

ପଧାନ ତତ୍‌କ୍ଷଣାତ୍ କହିଲା "ତୁମ୍ଭେ ମୂଷାମାନଙ୍କୁ ଏଠାରୁ ନେଇଗଲେ ମୁଁ ତୁମ୍ଭଙ୍କୁ ଦୁଇଶହଟଙ୍କା ଦେବି ।"

ଏହି କଥା ଶୁଣି ଯୋଗୀ ଆନନ୍ଦିତ ହୋଇ ସାରଙ୍ଗି ବଜାଇବାକୁ ଲାଗିଲା । ସେହି ଯନ୍ତ୍ରର ମଧୁର ଶବ୍ଦରେ ଆକୃଷ୍ଟ ହୋଇ ଗୋଟିଏ ମୂଷା ସେଠାରେ ଉପସ୍ଥିତ ହେଲା । ତତ୍ପରେ ଆଉ ଗୋଟିଏ ମୂଷା, ତତ୍ପରେ ଆଉ ଗୋଟିଏ । ଏହିପରି ଗ୍ରାମର ଯାବତୀୟ ମୂଷା ସାରଙ୍ଗି ଶୁଣିବା ପାଇଁ ସେଠାରେ ଜୁଣ୍ଡ ହେଲେ । ବାଟରେ ଏତେ

ମୂଷା ଏକାନ୍ତ ହେଲେ ସେ ମୂଠାଏ ସୋରିଷ ଫିଙ୍ଗିଦେଲେ ଗୋଟାଏ ସୁଦ୍ଧା ତଳେ ପଡ଼ନ୍ତା ନାହିଁ ।

ତଦନନ୍ତର ଯୋଗୀ ସାରଙ୍ଗି ବଜାଇ ବଜାଇ ସମୀପବର୍ତ୍ତୀ ନଦୀକୂଳକୁ ଗମନ କଲା । ମୂଷାମାନେ ତାହାର ଅନୁସରଣ କଲେ । ସେମାନେ ସାରଙ୍ଗି ଶବ୍ଦରେ ଏପରି ମୋହିତ ହେଲେ ଯେ, ଡେଇଁ ଡେଇଁ ଯିବାବେଳେ ସେମାନଙ୍କ ପାଦ କେଉଁଠାରେ ପଡ଼ୁଅଛି ତାହା ସେମାନଙ୍କୁ ଜଣାଯାଉ ନ ଥିଲା । ଯୋଗୀ ନଦୀକୂଳରେ ଓହ୍ଲାଇ ଆଣ୍ଠୁଆଣି ଜଳକୁ ଗଲା । ସଙ୍ଗୀତମୁଗ୍ଧ ମୂଷିକମାନେ ତାହା ପଛେ ପଛେ ଗୋଟି ଗୋଟି ହୋଇ ଜଳକୁ ଡେଇଁ ପଡ଼ି ସ୍ରୋତରେ ଭାସିଗଲେ ।

———

## ୪୯—ଆଜ୍ଞାନୁବର୍ତ୍ତୀ ବାଳକର ଉପାଖ୍ୟାନ

ଆଫ୍ରିକା ମହାଦେଶରେ ନୀଲନଦୀ ନାମରେ ଗୋଟିଏ ବଡ଼ ନଦୀ ଅଛି । ସେହି ନଦୀ ଉତ୍ତର ଦିଗକୁ ପ୍ରବାହିତ ହୋଇ ମିଶରଦେଶ ଦେଇ ଭୂମଧ୍ୟସାଗରରେ ପତିତ ହୋଇଅଛି । ଏକଶତ ବର୍ଷରୁ କିଛି ଅଧିକ କାଳ ହେବ, ସେହି ନଦୀର ମୁହାଣରେ ଇଂରେଜ ଓ ଫରାସୀମାନଙ୍କ ମଧ୍ୟରେ ଜଳଯୁଦ୍ଧ ହେଲା । ଏହି ଯୁଦ୍ଧ ବହୁକ୍ଷଣସ୍ଥାୟୀ ହେଲା ଏବଂ ଉଭୟ ପକ୍ଷରୁ କେତେଗୁଡ଼ିଏ ଜାହାଜ ଓ ଅନେକ ମନୁଷ୍ୟ ନଷ୍ଟ ହେଲେ । ଅବଶେଷରେ ଇଂରେଜମାନେ ଜୟୀ ହେଲେ ।

ଫରାସୀମାନଙ୍କର ସେନାପତି ସହିତ ତାହାଙ୍କର ଅଳ୍ପବୟସ୍କ ପୁତ୍ର ସେହି ଯୁଦ୍ଧକୁ ଯାଇଥିଲା । ଯୁଦ୍ଧାରମ୍ଭ ସମୟରେ ସେ ତାହାକୁ ଗୋଟିଏ ଜାହାଜର ଏକ ଅଂଶରେ ରଖି ଯୁଦ୍ଧ କରିବାକୁ ଗଲେ, ଏବଂ କହିଗଲେ ତାଙ୍କ ଆଦେଶ ବିନା ସେ ସେହି ସ୍ଥାନ ପରିତ୍ୟାଗ କରି ଯିବ ନାହିଁ ।

ଯୁଦ୍ଧରେ ସୈନିକ ଓ ନାବିକମାନଙ୍କୁ ସେନାପତିଙ୍କର ଆଦେଶ ଅତି ସାବଧାନ ହୋଇ ପାଳନ କରିବାକୁ ହୁଏ । କୌଣସି ଆଦେଶ କି ଉଦ୍ଦେଶ୍ୟରେ ଦିଆଗଲା, ତାହା ସେମାନେ ବୁଝିବାକୁ ଅସମର୍ଥ ହୋଇପାରନ୍ତି । ତାହା ବୋଲି ଆଦେଶ ଲଙ୍ଘନ କରିବା ବା ତାହା ପାଳନରେ ଅବହେଳା କରିବା ସେମାନଙ୍କର ଅକର୍ତ୍ତବ୍ୟ ଅଟେ, ବାଳକଟି ଏହା ଜାଣିଥିଲା । ତେଣୁ ପିତା ଯେଉଁ ସ୍ଥାନରେ ତାହାକୁ ରଖି ଯାଇଥିଲେ ସେ ସେହି ସ୍ଥାନ ପରିତ୍ୟାଗ କରି କୌଣସି ଆଡ଼େ ଗଲାନାହିଁ । ସେ ଯେଉଁ ଜାହାଜରେ ଥିଲା କିଛିକାଳ ପରେ ସେହି ଜାହାଜରେ ଅଗ୍ନି ଲାଗିଲା । ନାବିକମାନେ ନୌକା ଅବଲମ୍ବନ କରି ସେଠାରୁ ପଳାୟନ କଲେ ଏବଂ ସେମାନଙ୍କ

ସହିତ ଯିବା ପାଇଁ ବାଳକକୁ ବହୁ ଅନୁରୋଧ କଲେ । ମାତ୍ର ପିତାଙ୍କର ଅନୁମତି ପାଇ ନ ଥିବାରୁ ସେ ଟଳିଲା ନାହିଁ । ଦେଖୁଁ ଦେଖୁଁ ତାହାର ଚତୁର୍ଦ୍ଦିଗରେ ଅଗ୍ନି ପ୍ରଜ୍ୱଳିତ ହେଲା, ତଥାପି ସେ ଅଟଳ ରହିଲା ।

ଏହି ଘଟଣାର ପୂର୍ବେ ଗୋଳାର ଆଘାତରେ ତାହାର ପିତା ପ୍ରାଣତ୍ୟାଗ କରିଥିଲେ । ଏ ବିଷୟ ବାଳକକୁ ଜଣା ନ ଥିଲା । ଅଗ୍ନିଶିଖା ବାଳକକୁ ଚତୁର୍ଦ୍ଦିଗରେ ଘେରିଯିବାରୁ ସେ ବ୍ୟାକୁଳ ହୋଇ ଚିତ୍କାର କରି କହିଲା, "ବପା ! ମୁଁ ବର୍ତ୍ତମାନ ଏସ୍ଥାନ ପରିତ୍ୟାଗ କରି ଯାଇପାରେ କି ନାହିଁ, କୁହ ।" ମାତ୍ର ସେ କୌଣସି ଉତ୍ତର ପାଇଲା ନାହିଁ । ଅଗ୍ନି-ଶିଖା କ୍ରମେକ୍ରମେ ନିକଟବର୍ତ୍ତୀ ହୋଇ ତାହାର କେଶ ଓ ମସ୍ତକକୁ ସ୍ପର୍ଶ କଲା । ତଦନନ୍ତର ତାହାର ପରିଧେୟ ବସ୍ତ୍ରରେ ମଧ୍ୟ ଅଗ୍ନି ଲାଗିଲା । ତେତେବେଳେ ଯେ ଜାହାଜରେ ଆଉ କେହି ନ ଥିଲେ । ସେ ବାରମ୍ବାର ଚିତ୍କାର କରି ଅତି ବ୍ୟାକୁଳ ଭାବରେ କହିଲା "ବାପା ! ମୁଁ ଯାଇ ପାରେ କି ?" ତଥାପି କୌଣସି ଉତ୍ତର ନ ମିଳିବାରୁ ସେ ସେହିଠାରେ ପୂର୍ବବତ୍ ଅଟଳ ହୋଇ ରହିଲା ।

ବସ୍ତ୍ରରେ ଅଗ୍ନି ଲାଗିବାରୁ ସେ ଅସହ୍ୟ ଯନ୍ତ୍ରଣା ଅନୁଭବ କଲା, ତଥାପି ସେ ଅଟଳ ରହିଲା । ସେ ଯେଉଁ ସ୍ଥାନରେ ଦଣ୍ଡାୟମାନ ହୋଇଥିଲା, ତାହାତଳେ ଜାହାଜ ମଧ୍ୟରେ ବାରୁଦର ଭଣ୍ଡାର ଥିଲା । ଶେଷରେ ବାରୁଦରେ ଅଗ୍ନିସଂଯୋଗ ହେବାରୁ ଭୀଷଣ ଶବ୍ଦ କରି ଜାହାଜ ଏବଂ ତାହା ସହିତ ବାଳକର ଶରୀର ମଧ୍ୟ ଖଣ୍ଡ ଖଣ୍ଡ ହୋଇ ସମୁଦ୍ର ଜଳରେ ବିକ୍ଷିପ୍ତ ହେଲା ।

ଏହି ଅମର ବାଳକର ନାମ **କାସାବିଏଙ୍କା** ।

---

## ୫୦—ସତ୍ୟ-ଲଙ୍ଘନ (୨)

ଯାବତୀୟ ମୂଷିକ ନଦୀସ୍ରୋତରେ ଭାସି ଯିବାରୁ ଯୋଗୀ ସେହି ଗ୍ରାମକୁ ପ୍ରତ୍ୟାବର୍ତ୍ତନ କଲା । ମୂଷାମାନଙ୍କ ଉପଦ୍ରବରୁ ରକ୍ଷାପାଇ ଆନନ୍ଦରେ କୌଣସି ଗ୍ରାମବାସୀ ଭୋଜନ କରୁଥିଲା, କେହି ଆନନ୍ଦରେ ହସୁଥିଲା, କେହି ବା ଅପର ବ୍ୟକ୍ତି ସହିତ କଥୋପକଥନ କରୁଥିଲା । ପ୍ରଧାନ ସେତେବେଳେ ସ୍ୱଗୃହରେ ଥିଲା । ସେଠାରେ ଗ୍ରାମବାସୀ ଅପର କେତେଗୁଡ଼ିଏ ଲୋକ ମଧ୍ୟ ଥିଲେ ।

ଯୋଗୀ ପ୍ରଧାନ ନିକଟକୁ ଯାଇ କହିଲା "ମୂଷାଗୁଡ଼ିକ ସମସ୍ତେ ମଲେ ; ବର୍ତ୍ତମାନ ଅଙ୍ଗୀକୃତ ହଜାରେ ଟଙ୍କା ମୋତେ ଦିଅ ।"

ପଧାନ ସମ୍ପତ୍ତିଶାଳୀ ବ୍ୟକ୍ତି । ଗ୍ରାମରେ ଆହୁରି ଅନେକ ଧନୀଲୋକ ମଧ୍ଯ ଥିଲେ । ଯୋଗୀ ଟଙ୍କା ମାଗିବାରୁ ସେମାନେ ପରସ୍ପର ମୁଖକୁ ଅନାଇ ରହିଲେ । କେହି କୌଣସି ଉତ୍ତର ଦେଲେ ନାହିଁ ।

ଅବଶେଷରେ ପଧାନ କହିଲା, "ନାଥ ! ଏ ଗ୍ରାମରେ ସମସ୍ତେ ଦରିଦ୍ର, ଦୁଇଶତ ଟଙ୍କା କିଏ ଦେବ ? ଆମ୍ଭେମାନେ ପରିହାସରେ ସେପରି କହିଥିଲୁ ସିନା ; ମୁଁ ପାଞ୍ଚଟଙ୍କା ଦେଇପାରେ । ତୁମ୍ଭେ ଏତକ ନେଇ ଚାଲିଯାଅ ।"

ଯୋଗୀ ଅସନ୍ତୁଷ୍ଟ ହୋଇ କହିଲା "ତୁମ୍ଭେ ଦୁଇଶ ଟଙ୍କା ଦେବା ପାଇଁ ଅଙ୍ଗୀକାର କରିଥିଲ ; ତୁମ୍ଭଙ୍କୁ ଦୁଇଶ ଟଙ୍କା ଦେବାକୁ ହେବ । ନ ଦେଲେ ତୁମ୍ଭ-ମାନଙ୍କୁ ଅନୁତାପ କରିବାକୁ ହେବ । ବେଳହୁଁ ସାବଧାନ ହୁଅ ।"

ଯୋଗୀର ଏହି କଥା ଶୁଣି ପଧାନ କୁପିତ ହୋଇ କହିଲା, "ଯାଅ ତୁମ୍ଭଙ୍କୁ କିଛି ଦିଆଯିବ ନାହିଁ । ତୁମ୍ଭେ ଏହିଠାରେ ଦିନରାତି ଠିଆ ହୋଇ ସାରଙ୍ଗି ବଜାଉ-ଥାଅ । ମୂଷାଗୁଡ଼ିକ ତ ମଲେଣି । ତୁମ୍ଭଙ୍କୁ ଓ ତୁମ୍ଭ ସାରଙ୍ଗିକୁ ଆଉ କିଏ ପଚାରୁଛି ।"

ଏହାଶୁଣି ଯୋଗୀ ନୀରବ ହୋଇ ରହିଲା । ଅନନ୍ତର ସେ ଦାଣ୍ଡକୁ ଯାଇ ଆଉ ଏକପ୍ରକାର ସ୍ୱରରେ ସାରଙ୍ଗି ବଜାଇଲା । ଏହି ସ୍ୱର ଶୁଣିବା ମାତ୍ରେ ଗୋଟିଏ ଗାଈ ସେଠାରେ ଉପସ୍ଥିତ ହେଲା । ତଦନନ୍ତର ଗ୍ରାମର ଯାବତୀୟ ଗାଈ ମଇଁଷି ଗୋଟି ଗୋଟି ହୋଇ ସେଠାରେ ଉପସ୍ଥିତ ହେଲେ ।

ଏହି ଘଟଣାଉତ୍ତାରେ ଯୋଗୀ ସାରଙ୍ଗି ବଜାଉ ବଜାଉ ପୂର୍ବବତ୍ ନଦୀ-କୂଳକୁ ଗମନ କଲା । ଗାଈ ମଇଁଷିଗୁଡ଼ିକ ସମସ୍ତେ ତାହାର ଅନୁସରଣ କଲେ । ସେ ପୂର୍ବବତ୍ ଜଳରେ ପ୍ରବେଶ କରିବାରୁ ପଶୁମାନେ ଗୋଟି ଗୋଟି ହୋଇ ନଦୀ-ସ୍ରୋତକୁ ଡେଇଁ ପଡ଼ିଲେ, ଏବଂ ତତ୍କ୍ଷଣାତ୍ ପୂର୍ବବର୍ତ୍ତୀ ମୂଷିକମାନଙ୍କ ଦଶାପ୍ରାପ୍ତ ହେଲେ । ତଦନନ୍ତର ଯୋଗୀ ସାରଙ୍ଗି ବଜାଉ ବଜାଉ ସେ ଗ୍ରାମ ପରିତ୍ୟାଗ କଲା ।

ସତ୍ୟଭ୍ରଷ୍ଟ ଗ୍ରାମବାସୀମାନେ ସେତେବେଳେ ଅନୁତାପ କରି ଯୋଗୀର ପ୍ରତିଜ୍ଞାର ସତ୍ୟତା ଅନୁଭବ କଲେ ।

———

## ୫୧—ବିବେକୀ ଛାଗଲ କଥା

କାଶ୍ମୀର ଦେଶର ଅଧିତ୍ୟକାରେ ଭ୍ରମଣ କରୁଁ କରୁଁ ଦୁଇଟି ଛାଗଲ ଭିନ୍ନ ଭିନ୍ନ ଦିଗରୁ ଆସି ଗୋଟିଏ ସ୍ଥାନରେ ପରସ୍ପରକୁ ଭେଟିଲେ । ସେଠାରେ ପଥର

ଏକଦିଗରେ ଅତ୍ୟୁଚ୍ଚ ପର୍ବତର କାନ୍ଥୀ ବିଦ୍ୟମାନ, ଅପର ଦିଗରେ ଅନ୍ଧକାରମୟ ଦ୍ରୋଣିର ଗର୍ଭରେ ଗିରିନର୍ଝର ପ୍ରବାହିତ । ପଥଟି ଏଡ଼େ ସଙ୍କୀର୍ଣ୍ଣ ଯେ ଏକାଧିକ ଛାଗଳର ଯୁଗପତ୍ ଯାତାୟାତ ଯେପରି ଅସମ୍ଭବ, କୌଣସି ଛାଗଳର ବିପରୀତ ମୁଖରେ ପ୍ରତ୍ୟାବର୍ତ୍ତନ ସେହିପରି ଅସମ୍ଭବ ।

ଏ ଅବସ୍ଥାରେ ପଶୁବୁଦ୍ଧିରୁ କି ଆଶା କରାଯାଇପାରେ ? ଉଭୟ ଛାଗଳ କିୟତ୍‌କାଳ ନୀରବ ଓ ନିଶ୍ଚଳ ହୋଇ ଦଣ୍ଡାୟମାନ ହେଲେ ଏବଂ ଦୁଇ ପାର୍ଶ୍ୱକୁ ଦୃଷ୍ଟି ନିକ୍ଷେପ କଲେ । ତଦନନ୍ତର ଗୋଟିଏ ଛାଗଳ ଧୀରେ ସେହି ସଙ୍କୀର୍ଣ୍ଣ ପଥରେ ବସିଯାଇ ପର୍ବତ-କାନ୍ଥୀରେ ଦେହକୁ ଭିଡ଼ିଗଲା । ତତ୍ପରେ ଅପର ଛାଗଳଟି ତାହା ଉପରେ ଅତି ସାବଧାନ ହୋଇ ପଦକ୍ଷେପ କରି ତାହାକୁ ଅତିକ୍ରମ କଲା । ଏହା ଉତ୍ତାରୁ ଶୟାନ ଛାଗଳଟି ଉତ୍ଥାନ କରି ଆନନ୍ଦରେ ଆପଣା ଦେହଟି ଝାଡ଼ି ଦେଲା । ତଦନନ୍ତର ସେମାନେ ଯେ ଯାହାର ଗନ୍ତବ୍ୟ ପଥରେ ଗମନ କଲେ ।



## ୫୨—ଦୁଇ ମୂଢ଼ ଛାଗଳ କଥା

ଦୁଇଗୋଟି ଛାଗଳ ପାର୍ବତ୍ୟ ପ୍ରଦେଶର ଉପତ୍ୟକାରେ ଚରୁ ଚରୁ ଦିନକରେ ପର୍ବତ ଉପରକୁ ଉଠିଲେ । ସେ ଦୁହେଁ ଭିନ୍ନ ଭିନ୍ନ ପଥ ଅବଲମ୍ବନ କରି ପର୍ବତରେ ଭ୍ରମଣ କଲେ ।

କିୟତ୍‌କାଳ ପରେ ପରସ୍ପର ସଙ୍ଗେ ସେମାନଙ୍କର ସାକ୍ଷାତ୍ ହେଲା । ତେତେବେଳେ ସେମାନେ ଦେଖିଲେ ଯେ ଦୁହିଙ୍କ ମଧ୍ୟରେ ଗୋଟିଏ ଗଭୀର ନାଳ ବ୍ୟବଧାନ ଅଛି, ଏବଂ ତହିଁରେ ଝରଣାର ଜଳ ପ୍ରବାହିତ ହେଉଅଛି । ସେହି ନାଳ ଉପରେ ଗମନାଗମନ ପାଇଁ କାଠଗଡ଼ ଖଣ୍ଡିଏ ପଡ଼ିଥିଲା । ସେହି ଗଡ଼ଖଣ୍ଡିକ ଏଡ଼େ ଅପ୍ରଶସ୍ତ ଯେ ଏକ ସମୟରେ ଗୋଟିଏ ମାତ୍ର ଛାଗଳ ତାହା ଉପରେ ଯାଇପାରନ୍ତା ।

ଛାଗଳ ଦିଓଟିଯାକ ଏଡ଼େ ମୂଢ଼ ଓ ଗର୍ବୀ ଯେ, କୌଣସି ଗୋଟିକ ଅପରଟିକୁ ବାଟ ଛାଡ଼ି ଦେବା ପାଇଁ କୁଣ୍ଠିତ । ଗୋଟିଏ ଅପରକୁ କହିଲା, "ଏହି ସେତୁରେ ଯିବାର ଅଧିକାର ତୁମ୍ଭର ଯେପରି ଅଛି, ମୋର ମଧ୍ୟ ସେହିପରି ଅଛି ।" ଅପରଟି କହିଲା, "ଏକା ତୁମ୍ଭର ପାଇଁ ଏ ସେତୁ ହୋଇ ନାହିଁ ।"

ଏହିରୂପେ ଦୁଇ ଛାଗଳ ମଧ୍ୟରେ ବିବାଦ ଆରବ୍ଧ ହେଲା । କିୟତ୍‌କାଳ ଅପେକ୍ଷା କରି ପ୍ରତ୍ୟେକେ ଗଡ଼ ଉପରେ ଯୁଗପତ୍ ପଦାର୍ପଣ କରି ଅଗ୍ରସର ହେଲେ ।

କ୍ରୋଧାନ୍ଧ ହୋଇ ପ୍ରତ୍ୟେକ ଛାଗଳ ମନେ ମନେ ପ୍ରତିଜ୍ଞା କଲା, "ମୁଁ ତ ତୋତେ ଠେଲି ଦେଇ ଯିବ ।" କେହି କାହାରିକୁ ବାଟ ନ ଛାଡ଼ିବାରୁ ଅବଶେଷରେ କାଠ ଗଡ଼ର ମଧ୍ୟସ୍ଥଳରେ ସେମାନଙ୍କର ଭେଟ ହେଲା ।

ଶୃଙ୍ଗରେ ଶୃଙ୍ଗ ଲଗାଇ ଛାଗଳ ଦିଓଟି ପରସ୍ପରକୁ ଠେଲିଲେ । ଏହିପରି ଯୁଦ୍ଧ କରୁଁ କରୁଁ ଉଭୟଙ୍କର ପଦ ସ୍ଖଳିତ ହେବାରୁ ଉଭୟେ ଝରର ଖର ସ୍ରୋତରେ ଅଧଃ-ପତିତ ହୋଇ ପ୍ରାଣ ହରାଇଲେ । ଦୁହିଁଙ୍କ ମଧ୍ୟରୁ ଗୋଟିଏ ବିବେକୀ ହୋଇଥିଲେ ଉଭୟଙ୍କର ପ୍ରାଣରକ୍ଷା ହୋଇଥାନ୍ତା ।

———

## ୫୩—ଇତର ପ୍ରାଣୀମାନଙ୍କ ମଧ୍ୟରେ ମିତ୍ରତା

ଓଡ଼ିଶା ପ୍ରଦେଶରେ ଜଣେ ଭଦ୍ର ଲୋକ ଗୋଟିଏ ବଣି ଚଢ଼େଇ ପୋଷିଥିଲେ । ପକ୍ଷୀଟି ଶୈଶବାବସ୍ଥା ଅତିକ୍ରମ କରି ଅଳ୍ପ ଅଳ୍ପ ଉଡ଼ି ଶିଖିଲା । ଭଦ୍ରଲୋକଟି ଏକ ସପ୍ତାହ ମାତ୍ର ନିରନ୍ତର ପଞ୍ଜୁରୀରେ ରଖି ତଦନନ୍ତର ଦିବାଭାଗରେ ତାହାକୁ ମୁକୁଳାଇ ଦେଉଥିଲେ, ପକ୍ଷୀଟି ଇତସ୍ତତଃ ବିଚରଣ କରି ବାରମ୍ବାର ତାହାଙ୍କଠାକୁ ପ୍ରତ୍ୟାଗମନ କରୁଥିଲା, ଏବଂ ଭଦ୍ର ଲୋକଙ୍କର ଭୋଜନ-ସମୟରେ ନିୟମିତରୂପେ ଉପସ୍ଥିତ ହେଉଥିଲା ।

କିୟତ୍‌କାଳ ପରେ ଗୋଟିଏ ମାର୍ଜାର ତାହାଙ୍କ ଘରେ ଆଶ୍ରୟ ଗ୍ରହଣ କଲା । ସେହି ମାର୍ଜାରର ଆକୃତି ଅପେକ୍ଷାକୃତ ବୃହତ୍ ଏବଂ ପ୍ରକୃତି ଉଗ୍ର ଥିଲା । ମାର୍ଜାରଟି ନାନା ଗୃହରେ ଓ ନାନା ସ୍ଥାନରେ ବିଚରଣ କଲେ ହେଁ ଭଦ୍ର ଲୋକଙ୍କର ଭୋଜନ-ସମୟରେ ପୂର୍ବୋକ୍ତ ପକ୍ଷୀବତ୍ ନିୟମିତରୂପେ ପହଞ୍ଚୁଥିଲା । ମାର୍ଜାର ଓ ପକ୍ଷୀ ପରସ୍ପରର ଅତି ସନ୍ନିହିତ ହୋଇ ଭୋଜନ କରୁଥିଲେ । କୌଣସି କୌଣସି ସମୟରେ ସେମାନଙ୍କର ପାଳକ ମାର୍ଜାରର ପୃଷ୍ଠୋପରି କିଞ୍ଚିତ୍ ଦୁଗ୍ଧ ମିଶ୍ରିତ ଅନ୍ନ ସ୍ଥାପନ କଲେ, ପକ୍ଷୀଟି ମାର୍ଜାରର ପୃଷ୍ଠ ଆରୋହଣ କରି ନିଃଶଙ୍କ ମନରେ ତାହା ଭୋଜନ କରୁଥିଲା । କୌଣସି କ୍ଷୁଦ୍ର ପାତ୍ରରେ ଅଳ୍ପ ପରିମାଣ ଦୁଗ୍ଧ ପ୍ରଦତ୍ତ ହେଲେ ମାର୍ଜାର ତାହା ପାନ କଲାବେଳେ ପକ୍ଷୀର ଚଞ୍ଚୁ ପାତ୍ର-ମଧ୍ୟରେ ଅବକାଶ ପ୍ରାପ୍ତ ହେଉ ନ ଥିଲା । ପକ୍ଷୀ ଅଧୀର ହୋଇ ମାର୍ଜାରର ମୁଖକୁ ଖୁମ୍ପିଲେ, ସେ ପାତ୍ର ମଧ୍ୟରୁ ସ୍ୱମୁଖ ଅନ୍ତର କରି ପକ୍ଷୀର ପାନ-ସମାପ୍ତି ପର୍ଯ୍ୟନ୍ତ ଅପେକ୍ଷା କରୁଥିଲା । ଏହି ଅସାଧାରଣ ଦୃଶ୍ୟ ଯେଉଁମାନେ ଦେଖୁଥିଲେ, ସେମାନେ ବିସ୍ମିତ ଓ ମୋହିତ ହେଉଥିଲେ ।

ପକ୍ଷୀ ଓ ମାର୍ଜ୍ଜାର ମଧ୍ୟରେ ଭକ୍ଷ୍ୟ-ଭକ୍ଷକ ସମ୍ବନ୍ଧ ଥିଲେ ହେଁ ଏକତ୍ର ଅବସ୍ଥାନ ଓ ଏକ ପାଳକର ସ୍ନେହ-ଭୋଗରୁ ମାର୍ଜ୍ଜାର ଓ ପକ୍ଷୀ ମଧ୍ୟରେ ମିତ୍ରତା ଓ ପ୍ରୀତି ଜନ୍ମିଲା । ସେମାନେ ସ୍ୱଭାବିକ ଶତ୍ରୁତା ବିସ୍ମୃତ ହୋଇ ସେହି ଭଦ୍ର ଲୋକଙ୍କ ଗୃହରେ ବାସ କରୁଥିଲେ ।

———

## ୫୪—ସିଂହ ଶଶକ କଥା

କୌଣସି ବନରେ ଭାସୁରକ-ନାମକ ଗୋଟିଏ ସିଂହ ବାସ କରୁଥିଲା । ସେ ପ୍ରତ୍ୟହ ସେହି ବନବାସୀ ବହୁ ମୃଗଶାବକ ବଧ କରି ଆହାରବୃତ୍ତି ନିର୍ବାହ କରୁଥିଲା । ଦିନେ ଅରଣ୍ୟବାସୀ ବରାହ, ମହିଷ, ଶଶକ ପ୍ରଭୃତି ପ୍ରାଣୀ ମିଳିତ ହୋଇ ତାହାକୁ କହିଲେ "ପ୍ରଭୋ ! ଗୋଟିଏ ପଶୁର ମାଂସରେ ଆପଣଙ୍କର ଦୈନିକ ଭୋଜନ ଚଳିପାରେ ; ତେବେ ବହୁ ପଶୁ ବଧର ପ୍ରୟୋଜନ କଅଣ ? ଆଜିଠାରୁ ଆମ୍ଭେମାନେ ଆପଣଙ୍କ ଭୋଜନ ନିମନ୍ତେ ପ୍ରତିଦିବସ ଏକ ଏକ ପଶୁ ପ୍ରେରଣ କରିବୁ ।" ଏଥିରେ ସିଂହ ସମ୍ମତ ହେବାରୁ ସେମାନେ ନିର୍ଚ୍ଚିନ୍ତ ମନରେ ସେହି ବନରେ ବିଚରଣ କଲେ । ସେହିଦିନଠାରୁ ପାଳି ଅନୁସାରେ ଅରଣ୍ୟବାସୀ ପଶୁ-ସମାଜ ସିଂହର ଭୋଜନ ନିମନ୍ତେ ପ୍ରତିଦିନ ମଧ୍ୟାହ୍ନ ସମୟରେ ଆପଣା ମଧ୍ୟରୁ ଗୋଟିଏ ଗୋଟିଏ ପଶୁ ପ୍ରେରଣ କଲେ । ଦିନେ ଗୋଟିଏ ବୃଦ୍ଧ ଶଶକର ପାଳି ପଡ଼ିଲା । ସେ ଯିବାରୁ ଅନିଚ୍ଛୁକ ହେଲେ ହେଁ ଅନ୍ୟ ପଶୁମାନେ ତାହାକୁ ବଳପୂର୍ବକ ପ୍ରେରଣ କଲେ । ସେ ମନେ ମନେ ସିଂହର ବଧୋପାୟ ଚିନ୍ତା କରି ଧୀରେ ଧୀରେ ଯାଇ ଦିନର ଶେଷ ଭାଗରେ ତାହା ନିକଟରେ ଉପସ୍ଥିତ ହେଲା । ବେଳ ଅତିକ୍ରାନ୍ତ ହେବାରୁ ସିଂହ କ୍ଷୁଧାରେ ଅଧୀର ହୋଇ କ୍ରୋଧରେ ଆପଣାର ଓଷ୍ଠପ୍ରାନ୍ତ ଲେହନ କରି ପ୍ରତିଜ୍ଞା କଲା "କାଲି ପ୍ରାତଃକାଳରେ ଏହି ବନକୁ ପଶୁଶୂନ୍ୟ କରିବି ।"

ଏହି ସମୟରେ ଶଶକ ଧୀରେ ଧୀରେ ତାହା ସମ୍ମୁଖରେ ଉପସ୍ଥିତ ହୋଇ ପ୍ରଣାମ କଲା । ସିଂହ ସେହି କ୍ଷୁଦ୍ରକାୟ ଶଶକକୁ ବିଳମ୍ବରେ ଆଗତ ଦେଖି କୋପାବିଷ୍ଟ ହୋଇ କହିଲା, "ରେ ଶଶକାଧମ ! ଏକେ ତ ତୁ କ୍ଷୁଦ୍ରକାୟ, ପୁଣି ବିଳମ୍ବରେ ଉପସ୍ଥିତ ହୋଇଅଛୁ ; ଏହି ଅପରାଧରେ ବର୍ତ୍ତମାନ ତୋତେ ବିନାଶ କରି ପ୍ରତ୍ୟୁଷରେ ଅପର ପଶୁମାନଙ୍କୁ ବିନାଶ କରିବି ।" ଏଥି ଉତ୍ତରରେ ଶଶକ ପ୍ରଣାମ କରି ବିନୀତ ଭାବରେ କହିଲା "ପ୍ରଭୋ ! ଏଥିରେ ମୋର କିମ୍ବା ଅପର ପଶୁମାନଙ୍କର ଦୋଷ ନାହିଁ । ବିଳମ୍ବର କାରଣ ଶୁଣିବା ହେଉ" । ଏହା ଶୁଣି ସିଂହ କହିଲା "ତୁ ମୋର ଗଳାଧଃକୃତ ହେବା ପୂର୍ବରୁ ଶୀଘ୍ର କହ ।"

ଶଶକ କହିଲା "ପ୍ରଭୋ ! ପଶୁମାନେ ଆଜି ମୋର ପାଳି ଜାଣି ମୋତେ ପଠାଇଅଛନ୍ତି । ଆଉ ମଧ୍ୟ ମୋତେ କ୍ଷୁଦ୍ରକାୟ ଦେଖି ଅପର ପାଞ୍ଚଗୋଟି ଶଶକ ମୋ ସହିତ ପଠାଇଥିଲେ । ଆମ୍ଭେମାନେ ପଥରେ ଆସୁଁ ଆସୁଁ ଅପର ଗୋଟିଏ ମହାବଳ ସିଂହ ଆମ୍ଭମାନଙ୍କୁ ଦେଖି କହିଲା, "ତୁମ୍ଭେମାନେ କେଉଁଠାକୁ ଯାଉଅଛ ?" ମୁଁ କହିଲି ଆମ୍ଭେମାନେ ଏହି ଅରଣ୍ୟର ଚକ୍ରବର୍ତ୍ତୀ ଭାସୁରକ ସିଂହର ଆହାର ନିମନ୍ତେ ତାହାଙ୍କ ସମୀପକୁ ଯାଉଅଛୁ ।"

ଏହା ଶୁଣି ସେ କହିଲା, "ଏ ବନଟି ମୋହର । ମୁଁ ଏ ବନଟିର ରାଜା । ସେହି ଭାସୁରକ ଚୌର ଅଟେ । ଯଦି ସେ ଏ ବନରେ ରାଜା, ତେବେ ପଞ୍ଚ ଶଶକଙ୍କୁ ଏଠାରେ ରଖି ତାହାକୁ ସଙ୍ଗରେ ନେଇ ଶୀଘ୍ର ଏଠାକୁ ପ୍ରତ୍ୟାଗମନ କର । ଆମ୍ଭ ଦୁହିଁଙ୍କ ମଧ୍ୟରେ ଯେ ଯୁଦ୍ଧରେ ଜୟୀ ହେବ ସେ ରାଜା ହୋଇ ସମସ୍ତ ପଶୁଙ୍କୁ ଭକ୍ଷଣ କରିବ ।' ଏହା ହିଁ ବିଳମ୍ବର କାରଣ । ଆପଣ ଏହାର ବିହିତ ପ୍ରତୀକାର କରନ୍ତୁ ।"

ଏହା ଶୁଣି ଭାସୁରକ କହିଲା, "ଭଦ୍ର ! ଯଦି ଏହା ସତ୍ୟ ହୋଇଥାଏ ତେବେ ମୋତେ ସେହି ଚୌର ସିଂହକୁ ଅବିଳମ୍ବେ ଦେଖାଅ ।" "ଭୋ ! ଆସିବା ହେଉ", ଏହା କହି ଶଶକ ଗନ୍ତବ୍ୟ ପଥରେ ଅଗ୍ରେ ଅଗ୍ରେ ପ୍ରସ୍ଥାନ କଲା । ତଦନନ୍ତର ଦୂରରୁ ଗୋଟିଏ କୂପ ଦେଖି ଭାସୁରକକୁ କହିଲା, "ପ୍ରଭୋ ! କିଏ ଆପଣଙ୍କର ପ୍ରତାପ ସହିବାକୁ ସମର୍ଥ ? ଦୂରରୁ ଆପଣଙ୍କର ଆଗମନ ଦେଖି ସେହି ଚୌର ସିଂହ ଆପଣାର ବିଳରେ ପ୍ରବେଶ କରିଅଛି । ଆସନ୍ତୁ, ତାହା ଦେଖାଇ ଦେବି ।"

ଏହା ଶୁଣି ଭାସୁରକ କହିଲା, "ହେ ଭଦ୍ର ! ଅତିଶୀଘ୍ର ମୋତେ ସେହି ବିଳ ଦେଖାଅ ।" ତତ୍ପରେ ଶଶକ ତାହାକୁ ସେହି କୂପଟି ଦେଖାଇ ଦେଲା । ସେହି ସେହି ମୂର୍ଖ ସିଂହ କୂପ ମଧ୍ୟରେ ଆପଣାର ପ୍ରତିବିମ୍ବ ଦର୍ଶନରେ ତାହାକୁ ଅପର ସିଂହ ମନେ କରି ଭୟଙ୍କର ଗର୍ଜ୍ଜନ କଲା । ତତ୍କ୍ଷଣାତ୍ ସେହି କୂପ ମଧ୍ୟରୁ ଦ୍ୱିଗୁଣିତ ପ୍ରତିଧ୍ୱନି ଉତ୍ଥିତ ହେଲା । ଭାସୁରକ ସେହି ପ୍ରତିଧ୍ୱନିକୁ କୂପ-ପ୍ରବିଷ୍ଟ ସିଂହର ଗର୍ଜ୍ଜନ ମନେକରି ତାହାକୁ ଆକ୍ରମଣ କରିବା ନିମନ୍ତେ କୂପର ଗର୍ଭକୁ ଡେଇଁ ପଡ଼ିଲା । ସେଠାରେ ତାହା ଦେହରୁ ପ୍ରାଣବାୟୁ ଅବିଳମ୍ବେ ବହିର୍ଗତ ହେଲା । ସେହି ଦିନଠାରୁ ପଶୁମାନେ ନିଃଶଙ୍କ ମନରେ ସେହି ଅରଣ୍ୟରେ ସୁଖରେ ବାସ କଲେ ।

ଶଶକ କ୍ଷୁଦ୍ର ପ୍ରାଣୀ ହେଲେ ହେଁ ବୁଦ୍ଧି-କୌଶଳରେ ମହାବଳ ସିଂହର ବିନାଶ ସାଧନ କଲା ।

———

# ୬୬—ରାଜା ଓ ସନ୍ନ୍ୟାସୀର କଥା

ବହୁକାଳ ପୂର୍ବେ ଜଣେ ସନ୍ନ୍ୟାସୀ ତୀର୍ଥାଟନ କରୁଁ କରୁଁ ଦିନେ ସନ୍ଧ୍ୟା-ସମୟରେ ଜଣେ ରାଜାଙ୍କ ନଅରରେ ଉପସ୍ଥିତ ହେଲେ । ସେ ମନେ କଲେ କୌଣସି ଧନୀ ବ୍ୟକ୍ତି ସେଠାରେ ପଥିକମାନଙ୍କ ନିମନ୍ତେ ଗୋଟିଏ ପ୍ରକାଣ୍ଡ ଧର୍ମଶାଳା ନିର୍ମାଣ କରିଅଛନ୍ତି । ସନ୍ନ୍ୟାସୀଙ୍କର ଆଗମନ ସମୟରେ ସିଂହଦ୍ୱାରେ ଦୈବାତ୍ କୌଣସି ପ୍ରହରୀ ନ ଥିଲେ । ସେ ପ୍ରବେଶ କରି ଗୋଟିଏ ପ୍ରଶସ୍ତ ବାରଣ୍ଡାରେ ଆପଣାର କମ୍ବଳ ଖଣ୍ଡିକ ପାରି ରୁଦ୍ରାକ୍ଷମାଳା ଜପିବାକୁ ଲାଗିଲେ ।

କିୟତ୍‌କ୍ଷଣ ପରେ ରାଜାଙ୍କର ଭୃତ୍ୟମାନେ ତାହାଙ୍କୁ ଦେଖି ବିସ୍ମିତ ହୋଇ କହିଲେ, ତୁମ୍ଭେ କି କ୍ଷିପ୍ତ ହୋଇଅଛ ? ତୁମ୍ଭେ କି ଜାଣ ନାହିଁ ଏ ରାଜାଙ୍କ ନଅର ଏବଂ ଯେ କୌଣସି ବ୍ୟକ୍ତିର ଏଠାରେ ପ୍ରବେଶ କରିବାର ଅଧିକାର ନାହିଁ ? ଏହା କହି ଭୃତ୍ୟମାନେ ତାହାଙ୍କୁ ଧକ୍‌କା ଦେବାକୁ ଉଦ୍ୟତ ହେଉଅଛନ୍ତି, ଏହି ସମୟରେ ରାଜା ଦୈବାତ୍ ସେହି ବାଟେ ବିଜେ କଲେ । ଏହି ଗୋଳମାଳ ତାହାଙ୍କର ଚିତ୍ତ ଆକର୍ଷଣ କରିବାରୁ ସେ ସେଠାରେ ଉପସ୍ଥିତ ହୋଇ ଗୋଳମାଳର କାରଣ ପଚାରିଲେ । ଭୃତ୍ୟମାନେ ତାହାଙ୍କୁ ବିନୀତ ଭାବରେ ସମସ୍ତ ନିବେଦନ କଲେ ।

ରାଜା ସମସ୍ତ ଶ୍ରବଣ କରି ଧୀର ଗମ୍ଭୀର ଭାବରେ ସନ୍ନ୍ୟାସୀଙ୍କୁ ପ୍ରଶ୍ନ କଲେ "ସ୍ୱାମି ! ଏହି ସ୍ଥାନ ଧର୍ମଶାଳା ବୋଲି ଆପଣଙ୍କର ଭ୍ରମ ହେଲା କିପରି ?" ସନ୍ନ୍ୟାସୀ କହିଲେ, "ଅନୁମତି ହେଲେ ମୁଁ ଗୋଟିଏ ଯୋଡ଼ିଏ ପ୍ରଶ୍ନ କରିବି ।" ରାଜା କହିଲେ, "ଆପଣ ନିସଙ୍କୋଚରେ ପ୍ରଶ୍ନ କରନ୍ତୁ ।"

ସନ୍ନ୍ୟାସୀ ପ୍ରଶ୍ନ କଲେ, କିଏ ଏହି ନଅର ତୋଳାଇଥିଲେ ? ରାଜା ଉତ୍ତର ଦେଲେ, "ଆମ୍ଭର ପିତାମହ ଏହି ନଅର ନିର୍ମାଣ କରାଇଥିଲେ ।" ସନ୍ନ୍ୟାସୀ ପୁନର୍ବାର ପ୍ରଶ୍ନ କଲେ, "ଆପଣଙ୍କ ପୂର୍ବେ ଏ ନଅରରେ କିଏ ବାସ କରିଥିଲେ ?" ରାଜା ଉତ୍ତର କଲେ, "ଆମ୍ଭର ପିତା" । ସନ୍ନ୍ୟାସୀ ପୁଣି ପ୍ରଶ୍ନ କଲେ "ବର୍ତ୍ତମାନ ଏଠାରେ କିଏ ବାସ କରୁଅଛନ୍ତି ?" ରାଜା ଉତ୍ତର କଲେ, "ଆମ୍ଭେ ବାସ କରୁଅଛୁଁ ।" ସନ୍ନ୍ୟାସୀ ପଚାରିଲେ, "ଆଚ୍ଛା, ଆପଣଙ୍କ ଅନ୍ତେ ଏଥିରେ କିଏ ବାସ କରିବ ?" ରାଜା କହିଲେ, "ଭଗବାନଙ୍କ କୃପା ହେଲେ ଆମ୍ଭର ପୁତ୍ର ଉତ୍ତରାଧିକାରୀ ହେବ ।"

ଏହା ଉତ୍ତରରେ ସନ୍ନ୍ୟାସୀ କହିଲେ, "ଯଦି ଏହି ନଅରରେ କୌଣସି ବ୍ୟକ୍ତି ଅନନ୍ତ କାଳ ବାସ କରୁନାହାନ୍ତି, ଯଦି ଏକ ବ୍ୟକ୍ତି ଏହା ପରିତ୍ୟାଗ କରିଗଲେ ଅପର ବ୍ୟକ୍ତି ଏଠାରେ ବାସ କରନ୍ତି, ତାହାହେଲେ ଏ ସ୍ଥାନ ଧର୍ମଶାଳା ପରି

ନୁହେଁ କି ? ରାଜନ୍ ! ଏ ସଂସାରରେ ସମସ୍ତେ ପାନ୍ଥ । ଆପଣ ଏହାକୁ ନଅର କହନ୍ତୁ । ପାନ୍ଥ ଯେପରି ଦିନେ ବା ଦୁଇଦିନ ଅବସ୍ଥାନ କରି ଧର୍ମଶାଳାକୁ ପରିତ୍ୟାଗ କରିଯାଏ, ଆପଣ ସେହିପରି ଏ ନଅରରେ କିଯ୍ତକାଳ ଅବସ୍ଥାନ କରି ଯଥା-ସମୟରେ ଏହା ପରିତ୍ୟାଗ କରିଯିବେ ।''

---

## ୫୭—ଶୃଗାଳର ଭେଦବୁଦ୍ଧି

କୌଣସି ବନରେ ବ୍ୟାଘ୍ର, ବୃକ, ମୂଷିକ, ନକୁଳ ଓ ଶୃଗାଳ ମିତ୍ରତା ସୂତ୍ରରେ ଆବଦ୍ଧ ହୋଇ ବାସ କରୁଥିଲେ । ଏକଦା ବିଚରଣ କରୁଁ କରୁଁ ସେମାନଙ୍କର ଦୃଷ୍ଟି ଗୋଟିଏ ସୁସ୍ଥକାୟ, ବଳବାନ୍ ଓ ଯୁବା ହରିଣ ପ୍ରତି ଆକୃଷ୍ଟ ହେଲା । ସେମାନେ ତାହାକୁ ଆକ୍ରମଣ କରିବା ପାଇଁ ବହୁ ଯତ୍ନ କରି ବିଫଳ ହେବାରୁ ଶୃଗାଳ କହିଲା, "ହେ ବ୍ୟାଘ୍ର ଏହି ହରିଣ ଯୁବା ଓ ବେଗବାନ୍ । ଏହାକୁ ଆକ୍ରମଣ କରିବା ଆମ୍ଭମାନଙ୍କର ଅସାଧ୍ୟ । କୌଶଳରେ ହିଁ ଏହାକୁ ବିନାଶ କରାଯାଇପାରେ । ଏ ଯେତେବେଳେ ଗାଢ଼ ନିଦ୍ରାରେ ଅଭିଭୂତ ହୋଇଥିବ, ମୂଷିକ ସେହି ସମୟରେ ଏହାର ପାଦଦ୍ୱୟ ବିକ୍ଷତ କଲେ ତୁମ୍ଭେ ଅଳ୍ପାୟାସରେ ଏହାର ପ୍ରାଣନାଶ କରିପାରିବ ।''

ଶୃଗାଳର ଏହି ପ୍ରସ୍ତାବରେ ସମସ୍ତେ ସମ୍ମତି ପ୍ରକାଶ କଲେ । ସେମାନେ ଗୂଢ଼ ଭାବରେ ହରିଣର ଗତି ଓ ଅବସ୍ଥିତି ପର୍ଯ୍ୟବେକ୍ଷଣ କରିବାକୁ ଲାଗିଲେ । ଅନନ୍ତର ହରିଣକୁ ନିଦ୍ରିତ ଦେଖି ପୂର୍ବ ପରାମର୍ଶ ଅନୁସାରେ ମୂଷିକ ଯେତେବେଳେ ତାହାର ପାଦଦ୍ୱୟ ବିକ୍ଷତ କଲା, ତେତେବେଳେ ବ୍ୟାଘ୍ର ସେଠାରେ ଉପସ୍ଥିତ ହୋଇ ହରିଣର ପ୍ରାଣନାଶ କଲା । ଭୂତଳରେ ହରିଣଦେହ ବିଚେଷ୍ଟମାନ ଦେଖି ଶୃଗାଳ ସେମାନଙ୍କୁ କହିଲା, "ତୁମ୍ଭେମାନେ ଯାଇ ନଦୀରେ ସ୍ନାନ କରି ଆସ ; ମୁଁ ଏହି ମାଂସ ଜଗି ବସିଅଛି ।''

ଶୃଗାଳର କଥାରେ ଅପର ସମସ୍ତେ ସ୍ନାନ କରିବା ପାଇଁ ନଦୀକୁ ଗମନ କଲେ । ଶୃଗାଳ ଚିନ୍ତାମଗ୍ନ ହୋଇ ମୃତ ହରିଣ ନିକଟରେ ଅବସ୍ଥାନ କଲା । ମହାବଳ ବ୍ୟାଘ୍ର ସ୍ନାନ କରି ସର୍ବାଗ୍ରେ ପ୍ରତ୍ୟାଗତ ହୋଇ ଶୃଗାଳର ମୁଖ ନିରୀକ୍ଷଣ କରି କହିଲା, "ସଖେ ! ଏ ଆନନ୍ଦ ସମୟରେ ତୁମ୍ଭେ ଚିନ୍ତାକୁଳ କାହିଁକି ?'' ଧୂର୍ତ୍ତ ଶୃଗାଳ କହିଲା, "ମୂଷିକର ଆସ୍ଫାଳନରେ ମୋର ହୃଦୟ ଅତିଶୟ ବ୍ୟଥିତ ହୋଇଅଛି । ତୁମ୍ଭେମାନେ ଆଗପଛ ହୋଇ ସ୍ନାନ କରିବାକୁ ଗଲାରୁ ସେ କହିଲା,

"ମୁଁ ଏହି ମୃଗକୁ ବଧ କରିଅଛୁ । ବ୍ୟାଘ୍ରର ବଳ-ବିକ୍ରମକୁ ଧିକ୍, ଆଜି ମୋହର ବଳ-କୌଶଳରେ ତୁମ୍ଭମାନଙ୍କର ରସନା ତର୍ପଣ ହେବ । ମୂଷିକର ଏହି ବାକ୍ୟ ଶୁଣିଲା ବେଳୁଁ ଏହି ହରିଣମାଂସର ଭକ୍ଷଣରେ ମୋର ସ୍ପୃହା ଆଦୌ ହେଉନାହିଁ ।

ଏହା ଶୁଣି ବ୍ୟାଘ୍ର କ୍ରୋଧଭରେ କହିଲା, "ମୂଷିକ ପରି ପ୍ରାଣୀର ଏ ଆସ୍ପର୍ଦ୍ଧା ! ତୁମ୍ଭେ ଯଥାସମୟରେ ଆମ୍ଭଙ୍କୁ ଜଣାଇ ପ୍ରକୃତ ମିତ୍ରତାର କାର୍ଯ୍ୟ କରିଅଛ । ଆମ୍ଭେ ଏହି ହରିଣର ମାଂସ ସ୍ପର୍ଶ କରିବୁ ନାହିଁ । ଆମ୍ଭେ ଆଜି ଏ ଅରଣ୍ୟର ଯାବତୀୟ ପ୍ରାଣୀ ବିନାଶ କରିବୁଁ । ତଦ୍ଦ୍ୱାରା ତୁମ୍ଭର ଆମ୍ଭର ଭୋଜନର ପର୍ଯ୍ୟାପ୍ତ ସଂସ୍ଥାନ ହେବ ।" ଏହା କହି ବ୍ୟାଘ୍ର ବିଦ୍ୟୁତ୍ତୁଲ୍ୟ ବେଗରେ ବନ ମଧ୍ୟରେ ପ୍ରବେଶ କଲା ।

କିୟତ୍କାଳପରେ ବୃକ ସ୍ନାନାନ୍ତର ସେଠାରେ ଉପସ୍ଥିତ ହେଲାରୁ ଶୃଗାଳ ତାହାକୁ କହିଲା, "ମିତ୍ର ! ମହାବଳ ବ୍ୟାଘ୍ର କୌଣସି ଅଜ୍ଞାତ କାରଣରୁ ତୁମ୍ଭ ଉପରେ କୁପିତ ହୋଇ ଆପଣାର ବାସସ୍ଥାନକୁ ପ୍ରସ୍ଥାନ କରିଅଛନ୍ତି । ଅବିଳମ୍ବେ ସପତ୍ନୀ ସଙ୍ଗରେ ଏଠାକୁ ପ୍ରତ୍ୟାଗମନ କରିବେ । ବର୍ତ୍ତମାନ ଯାହା କର୍ତ୍ତବ୍ୟ ମନେ କର, ତାହା ସମ୍ପାଦନ କର ।" ଏହା ଶୁଣି ବୃକ ତ୍ରସ୍ତ ହୋଇ ସେ ସ୍ଥାନ ପରିତ୍ୟାଗ କଲା ।

ସର୍ବଶେଷରେ କୃତ-ସ୍ନାନ ନକୁଳ ଉପସ୍ଥିତ ହେବାରୁ ଧୂର୍ତ୍ତ-ଶିରୋମଣି ଶୃଗାଳ ତାହାକୁ ସମ୍ବୋଧନ କରି ଆହ୍ଲାଦରେ କହିଲା, "ମୁଁ ଆପଣାର ବାହୁ-ବଳରେ ଅନ୍ୟ ସମସ୍ତଙ୍କୁ ପରାଜୟ କରିବାରୁ ସେମାନେ ଯେ ଯାହାର ଗନ୍ତବ୍ୟ ପଥ ଅନୁସରଣ କରିଅଛନ୍ତି । ବର୍ତ୍ତମାନ ମୋହି ସହିତ ବଳ ପରୀକ୍ଷା କରିବାକୁ ଇଚ୍ଛା ଥିଲେ ଆସ, ରଣାଙ୍ଗନରେ ଅବତୀର୍ଣ୍ଣ ହୁଅ । ଯଦି ଯୁଦ୍ଧରେ ଜୟ ଲାଭ କର, ତାହା ହେଲେ ଏହି ମୃଗ-ମାଂସ ଆସ୍ୱାଦନ କରିପାରିବ ।" ବ୍ୟାଘ୍ରାଦିର ପରାଭବ କଥା ଶୁଣି ନକୁଳ ନୀରବରେ ସେଠାରୁ ପଳାୟନ କଲା ।

ଏହି ପ୍ରକାରେ ଶୃଗାଳ ଭେଦ ବୁଦ୍ଧିରେ ସମସ୍ତଙ୍କୁ ଅନ୍ତର କରି ଏକାକୀ ଆନନ୍ଦରେ ସେହି ମୃଗ-ମାଂସ ଭକ୍ଷଣ କଲା ।

---

## ୫୭—ମୃଗ-କାକ-ଶୃଗାଳ କଥା

ମଗଧ ଦେଶରେ ଚମ୍ପକବତୀ ନାମରେ ଅରଣ୍ୟ ସ୍ଥଳୀ ଥିଲା । ସେହି ଅରଣ୍ୟରେ ପରସ୍ପର ସ୍ନେହରେ ଆବଦ୍ଧ ହୋଇ ଗୋଟିଏ ମୃଗ ଓ ଗୋଟିଏ କାକ

ବହୁ କାଳରୁ ବାସ କରୁଥିଲେ । ବ୍ୟାଘ୍ର ପ୍ରଭୃତି ଦୁଷ୍ଟ ଜୀବର ଆଗମନ ଦେଖିଲେ, କା କା ରବ କରି ମୃଗକୁ ସାବଧାନ କରି ଦେଉଥିଲି । ମୃଗ ନିଶ୍ଚିନ୍ତ ମନରେ ଭ୍ରମଣ କରି ପୁଷ୍ଟାଙ୍ଗ ହେଲି । ଏକଦା ଗୋଟିଏ ଶୃଗାଳ ତାହାକୁ ଦେଖି ଲୋଭାସକ୍ତ ହୋଇ ମନେ ମନେ ଭାବିଲି, "ଏହାର କୋମଳ ମାଂସ କି ଉପାୟରେ ଭକ୍ଷଣ କରିବି ? ଆଚ୍ଛା, ପ୍ରଥମେ ବିଶ୍ୱାସ ଜନ୍ମାଇ ଦେଖେଁ ।" ମନେ ମନେ ଏହିପରି ଆଲୋଚନା କରି ସେ ମୃଗକୁ କହିଲି, "ମିତ୍ର ! ତୁମ୍ଭର କୁଶଳ ତ ?" ମୃଗ ପଚାରିଲି, "ତୁମ୍ଭେ କିଏ ?" ଶୃଗାଳ ଉତ୍ତର ଦେଲି, "ମୁଁ ଜମ୍ବୁକ, ମୋହର ନାମ କ୍ଷୁଦ୍ର-ବୁଦ୍ଧି । ବନ୍ଧୁହୀନ ହୋଇ ଏହି ଅରଣ୍ୟରେ ଏକାକୀ ଜୀବନ୍ମୃତ ହୋଇ ବାସ କରୁଅଛି । ବର୍ତ୍ତମାନ ତୁମ୍ଭଙ୍କୁ ଦେଖି ଆଶ୍ୱସ୍ତ ହୋଇ ତୁମ୍ଭପରି ମିତ୍ର ସଙ୍ଗରେ କିଛିକାଳ ସୁଖରେ କଟାଇବି ବୋଲି ଭାବୁଅଛି ।" ମୃଗ କହିଲି, "ତଥାସ୍ତୁ" ।

ଅନନ୍ତର ସୂର୍ଯ୍ୟ ଅସ୍ତ ହୁଅନ୍ତେ ସେ ଦୁହେଁ ମୃଗର ବାସସ୍ଥାନକୁ ଗମନ କଲେ । ସେଠାରେ ଚମ୍ପକ ବୃକ୍ଷର ଶାଖାରେ ମୃଗର ବନ୍ଧୁ ସୁବୁଦ୍ଧି ନାମକ କାକ ବସିଥିଲି । ଏ ଦୁହିଙ୍କୁ ଦେଖି ସେ ମୃଗକୁ ପଚାରିଲି, "ସଖେ ମୃଗ ! ଏ ପୁଣି କିଏ ?" ମୃଗ କହିଲି "ଏ ଜମ୍ବୁକ । ଏହା ସହିତ ଆଜି ଦୈବାତ୍ ସାକ୍ଷାତ୍ ହେଲି । ଏ ଆମ୍ଭମାନଙ୍କ ସହିତ ମିତ୍ରତା ଇଚ୍ଛା କରି ଏଠାକୁ ଆସିଅଛି ।" କାକ କହିଲି, "ମିତ୍ର ! ଅପରିଚିତ ବ୍ୟକ୍ତି ସହିତ ହଠାତ୍ ମିତ୍ରତା କରିବା ଉଚିତ ନୁହେଁ ।"

କୁଳ-ଶୀଳ ଯାର ଜଣା ନାହିଁ, ତାକୁ
ବାସ ଦେବା ଅବିହିତ,
ମାର୍ଜାର-ଦୋଷରେ ଜରଦ୍‌ଗବ ଗୃଧ୍ର-
ବଧ କି ନୁହଁ ବିଦିତ ?

ମୃଗ ଶୃଗାଳ ଦୁହେଁ ସେହି ଉପାଖ୍ୟାନଟି ଶୁଣିବା ପାଇଁ ଆଗ୍ରହ ପ୍ରକାଶ କରିବାରୁ କାକ ତାହା ବର୍ଣ୍ଣନା କଲି । ତାହା ଶୁଣି ଶୃଗାଳ କୁପିତ ହୋଇ କହିଲି, "ମୃଗ ସହିତ ପ୍ରଥମ ସାକ୍ଷାତ୍ ସମୟରେ ତୁମ୍ଭେ ମଧ୍ୟ ଅଜ୍ଞାତକୁଳଶୀଳ ଥିଲି । ତେବେ ତୁମ୍ଭ ଦୁହିଁଙ୍କ ମଧ୍ୟରେ ମିତ୍ରତା ଓ ଉତ୍ତରୋତ୍ତର ସ୍ନେହବୃଦ୍ଧି କିପରି ହେଲି ?

ଆତ୍ମପର ଭେଦ କରେ ଯେହୁ ଲଘୁମନା ;
ମହାମତି ଜନ ମଣେ ସକଳେ ଆପଣା ।

ଏହି ମୃଗ ଯେପରି ମୋହର ବନ୍ଧୁ, ତୁମ୍ଭେ ମଧ୍ୟ ମୋହର ସେହିପରି ବନ୍ଧୁ ହେଲ ।" ମୃଗ କହିଲି, "ଅଧିକ ବାକ୍ୟ ବ୍ୟୟ କରିବାର ପ୍ରୟୋଜନ କଅଣ ? ସମସ୍ତେ ମିଳି ସୁଖରେ ଏହିଠାରେ ବାସ କରିବୁଁ ।" କାକ କହିଲି, "ହେଉ" ।

ପ୍ରାତଃକାଳ ହୁଅନ୍ତେ ସେମାନେ ପ୍ରୟୋଜନ ଅନୁସାରେ ଭିନ୍ନ ଭିନ୍ନ ସ୍ଥାନରେ ବିଚରଣ କରିବାକୁ ଲଗିଲେ ।

ଏହିପରି କିଛିକାଳ ଅତୀତ ହେଲାରୁ ଦିନେ ସନ୍ଧ୍ୟା ସମୟରେ ଶୃଗାଳ ନିକାଞ୍ଚନରେ ମୃଗକୁ କହିଲା, "ସଖେ ମୃଗ ! ଏହି ଅରଣ୍ୟ ମଧ୍ୟରେ ଗୋଟିଏ ସ୍ଥାନରେ ନବୀନ ଶସ୍ୟପୂର୍ଣ୍ଣ କ୍ଷେତ୍ର ଅଛି । ମୁଁ ତୁମ୍ଭଙ୍କୁ ସଙ୍ଗରେ ନେଇ ସେହି ସ୍ଥାନ ଦେଖାଇ ଦେବି ।" ଶୃଗାଳ ସେହି ସ୍ଥାନ ଦେଖାଇ ଦେବାରୁ ମୃଗ ପ୍ରତିଦିନ ପ୍ରତ୍ୟୁଷରେ ସେଠାକୁ ଯାଇ ଶସ୍ୟହାନି କରୁଥିଲା । କ୍ଷେତ୍ରପତି ଉତ୍ତରୋତ୍ତର ଶସ୍ୟହାନି ଦେଖି ଦିନକରେ ସେହି କ୍ଷେତ୍ରରେ ଫାଶ ବସାଇଲା । ତାହା ଦେଖି ଶୃଗାଳ ମନେ ମନେ ବଡ଼ ଆନନ୍ଦିତ ହୋଇ ଭାବିଲା, "କ୍ଷେତ୍ରପତି ମୃଗକୁ ଧରି ତାହାର ମାଂସ ଗ୍ରହଣ କରି ଅସ୍ଥିଗୁଡ଼ିକ ଫିଙ୍ଗି ଦେଲେ ତାହା ହିଁ ମୋହ ପକ୍ଷରେ ଯଥେଷ୍ଟ ହେବ ।" ଅନନ୍ତର ମୃଗ ଆସି ଶସ୍ୟ ଖାଉଁ ଖାଉଁ ଫାଶରେ ପଡ଼ି ବହୁତ ଯତ୍ନ କରି ସୁଦ୍ଧା, ଆପଣାକୁ ସେଥିରୁ ମୁକ୍ତ କରି ପାରିଲା ନାହିଁ । ତେତେବେଳେ ସେ ଭାବିଲା, "ମିତ୍ର ଭିନ୍ନ ଆଉ କିଏ ମୋତେ ଏ ଫାଶରୁ ମୁକ୍ତ କରିପାରିବେ ?" ଏହିପରି ଭାବୁଁ ଭାବୁଁ ଶୃଗାଳକୁ ନିକଟବର୍ତ୍ତୀ ଦେଖି କହିଲା, "ସଖେ ଜମ୍ବୁକ ! ଦନ୍ତରେ ଚୋବାଇ ଏହି ଫାଶ କର୍ତ୍ତନ କରି ମୋତେ ଏଥିରୁ ଉଦ୍ଧାର କର ।

"ସମ୍ପଦରେ ସଙ୍ଗୀ ପୁଣି ସହାୟତା କରେ
ବିପଦରେ ଯେହୁ, ସେହି ଗଣା ବାନ୍ଧବରେ ।"

ଶୃଗାଳ କହିଲା, "ଏହି ପାଶ ଚର୍ମ ନିର୍ମିତ ଅଟେ । ଆଜି ରବିବାରରେ ମୁଁ ଏହାକୁ କିପରି ଦନ୍ତରେ ସ୍ପର୍ଶ କରିବି ? ତୁମ୍ଭେ ଆଉ କିଛି ମନେ କରିବ ନାହିଁ । ରାତ୍ରି ଅତୀତ ହେଲେ ପ୍ରଭାତକାଳରେ ମୁଁ ତୁମ୍ଭଙ୍କୁ ଏଥିରୁ ମୁକ୍ତ କରିବି ।"

ମୃଗ ବନ୍ଧନରେ ରାତ୍ରି ଯାପନ କଲା । କାକ ସନ୍ଧ୍ୟାସମୟରେ ଆପଣାର ଆବାସକୁ ପ୍ରତ୍ୟାଗମନ କରି ମୃଗକୁ ନ ଦେଖି ଚିନ୍ତିତ ହେଲା । ପ୍ରତ୍ୟୁଷରେ ନାନା ସ୍ଥାନରେ ଉଡ଼ି ବିଚରଣ କରୁ କରୁଁ ଶସ୍ୟକ୍ଷେତ୍ରରେ ମୃଗକୁ ପାଶବଦ୍ଧ ଦେଖି କହିଲା, "ମିତ ! ଏ କଅଣ ?" ମୃଗ କହିଲା, "ବନ୍ଧୁବାକ୍ୟ ଅବହେଳା କରିବାର ଫଳ ମୁଁ ଭୋଗ କରୁଅଛି ।" କାକ ପଚାରିଲା, "ସେହି ପ୍ରବଞ୍ଚକ କାହିଁ ?" ମୃଗ କହିଲା, "ମିତ୍ର ! ମୋହର ମାଂସର ଲୋଭରେ ସେ ଏହିଠାରେ ଛକି ରହିଅଛି ।" କାକ କହିଲା, "ସଖେ ! ଚିନ୍ତାକରନାହିଁ । କ୍ଷେତ୍ରପତିକୁ ଦୂରରୁ ଦେଖିଲେ ମୁଁ ତୁମ୍ଭକୁ ସଙ୍କେତ କରିବି ।" ତୁମ୍ଭେ ନିଶ୍ୱାସ ରୋଧ କରି ପେଟ ଫୁଲାଇ ମୃତବତ୍ ନିଶ୍ଚେଷ୍ଟ ହୋଇ ରହିବ ; ମୁଁ ତୁମ୍ଭ ଉପରେ ବସି ତୁମ୍ଭଙ୍କୁ ଖୁମ୍ପୁଥିବି ।"

କିୟତ୍‌କ୍ଷଣପରେ କ୍ଷେତ୍ରପତିକୁ ଦୂରରୁ ଦେଖି କାକ ସଙ୍କେତ କଲା । ମୃଗ ପୂର୍ବ ପରାମର୍ଶ ଅନୁସାରେ ପେଟ ଫୁଲାଇ ମୃତବତ୍ ପଡ଼ିରହିଲା, ଏବଂ କାକ ତାହାଉପରେ ବସି ତାହାକୁ ଖୁମ୍ପିବାକୁ ଲାଗିଲା । କ୍ଷେତ୍ରପତି ଏହା ଦେଖି ମୃଗକୁ ମୃତ ମନେ କରି କହିଲା, "ପ୍ରତିଦିନ ଆସି ମୋର ଶସ୍ୟ ନଷ୍ଟ କରୁଥିଲା; ଆଜି ବନ୍ଧନରେ ପଡ଼ି ଆପେ ମରିଅଛି ।" ଏହା ଭାବି କ୍ଷେତ୍ରପତି ଫାଶ ଫିଟାଇ ଦିଅନ୍ତେ କାକର ସଙ୍କେତରେ ମୃଗଟି ଡେଇଁ ଡେଇଁ ପଳାୟନ କଲା । କ୍ଷେତ୍ରପତି ଠେଙ୍ଗା ଖଣ୍ଡିକ ଉଠାଇ ଫିଙ୍ଗି ମାରିବାରୁ ତାହା ପଳାୟମାନ ମୃଗ ଦେହରେ ନ ବାଜି, ଲୁକ୍କାୟିତ ଶୃଗାଳଦେହରେ ବାଜିଲା । ସେହି ଆଘାତରେ ଶୃଗାଳ ମୃତ୍ୟୁପ୍ରାପ୍ତ ହେଲା ।

ବାଳକ ବାଳିକା ମାନେ ! ଶୁଣ ସାବଧାନ,
ବିଶ୍ୱାସ ନ ଧର କେବେ ଯାହାକୁ ନ ଜାଣ ।
ଅଜ୍ଞାତ ଜନେ ଯେ କରେ ବିଶ୍ୱାସ ସ୍ଥାପନ,
ଅବିବେକୀ ମୃଗ ପ୍ରାୟ ହୁଅଇ ବିପନ୍ନ ।

———

## ୫୮—ଲୋଭୀ ଶୃଗାଳର ଉପାଖ୍ୟାନ

ଦାମୋଦର ନଦୀ କୂଳରେ ଜଣେ ବ୍ୟାଧ ବାସ କରୁଥିଲା । ଏକଦା ଧନୁର୍ବାଣ ଘେନି ମୃଗୟା କରିବା ପାଇଁ ସେ ଅରଣ୍ୟରେ ପ୍ରବେଶ କଲା । ତହିଁରେ ଭ୍ରମଣ କରୁଁ କରୁଁ ଗୋଟିଏ ହରିଣ କ୍ଷିପ୍ରଗତିରେ ପଳାୟନ କରୁଅଛି ଦେଖି, ସେ ତାହାକୁ ଲକ୍ଷ୍ୟ କରି ଶର ନିକ୍ଷେପ କଲା । ଅନନ୍ତର ଆହତ ମୃଗକୁ ସ୍କନ୍ଧରେ ସ୍ଥାପନ କରି ବ୍ୟାଧ ସ୍ୱଗୃହାଭିମୁଖରେ ପ୍ରସ୍ଥାନ କଲା ।

ପ୍ରତ୍ୟାଗମନ କାଳରେ ଗୋଟିଏ ଭୀଷଣ ଶୂକର ତାହାର ଦୃଷ୍ଟିଗୋଚର ହେଲା । ମୃଗକୁ ଭୂମିରେ ସ୍ଥାପନ କରି ବ୍ୟାଧ ଧନୁରେ ଶର ସନ୍ଧାନ କରି ଶୂକର ଉପରେ ତାହା ନିକ୍ଷେପ କଲା । ଶରର ଆଘାତରେ ଅତିଶୟ ବ୍ୟଥିତ ହୋଇ ଶୂକର ବ୍ୟାଧକୁ ଆକ୍ରମଣ କରି ତୀକ୍ଷ୍ଣ ଦନ୍ତରେ ତାହାର ଉଦର ବିଦାରଣ କଲା । ପରସ୍ପର ସହିତ ଯୁଦ୍ଧ କରି ଉଭୟେ ହତ ଓ ଭୂମିରେ ପତିତ ହେଲେ । ଏହି ଯୁଦ୍ଧରେ ତୃଣ ମଧ୍ୟବର୍ତ୍ତୀ ଗୋଟିଏ ସର୍ପ ମଧ୍ୟ ଆହତ ଓ ପଞ୍ଚତ୍ୱପ୍ରାପ୍ତ ହେଲା ।

ଅନନ୍ତର ଦୀର୍ଘରାବ ନାମକ ଶୃଗାଳ ଖାଦ୍ୟ ଅନ୍ୱେଷଣରେ ଭ୍ରମଣ କରୁଁ କରୁଁ ସେହି ମୃଗ, ବ୍ୟାଧ, ସର୍ପ ଓ ଶୂକରର ଶବ ଦେଖି ଆନନ୍ଦରେ ଅଧୀର ହୋଇ

ଭାବିଲା, "ଓହୋ, ମୋର କି ସୌଭାଗ୍ୟ ! ଆଜି ମହା ଭୋଜ୍ୟର ଆୟୋଜନ ହୋଇଅଛି । ଏତେଗୁଡ଼ିଏ ପ୍ରାଣୀର ମାଂସରେ ତିନିମାସ ମୋହର ଆହାର ସଂସ୍ଥାନ ହେବ । ଏହି ମନୁଷ୍ୟ, ମୃଗ ଓ ଶୂକରର ମାଂସରେ ଗୋଟିଏ ଗୋଟିଏ ମାସ ପୂର୍ଣ୍ଣଭୋଜନ ହେବ । ଏହି ସର୍ପଟି ଆହାର କରି ଗୋଟିଏ ଦିନ ପ୍ରାଣ ଧାରଣ କରି ପାରିବି । ଏଗୁଡ଼ିକ ପଛକୁ ଥାଉ । ଆଜି ଏ ଧନୁର୍ଗୁଣରେ ଜୀବନ-ଯାତ୍ରା ହେଉ । ଏହି ଶୁଷ୍କଚର୍ମ ରୁଚିକର ନ ହେଲେ ହେଁ ସଞ୍ଚିତ ବସ୍ତୁ ଶୀଘ୍ର ଶୀଘ୍ର ବ୍ୟୟ କରିବା ବିବେକୀ ବ୍ୟକ୍ତିର କର୍ତ୍ତବ୍ୟ ନୁହେ ।"

ଏହା ଭାବି ଶୃଗାଳ ଧନୁର୍‌ଗୁଣ ଚର୍ବଣ କରିବାକୁ ଲାଗିଲା । ସେହି ଚର୍ବଣରେ ଗୁଣ ଛିନ୍ନ ହୁଅନ୍ତେ ଧନୁର ଗୋଟିଏ କୋଟି ହଠାତ୍ ତାହାର ହୃଦୟ ଭେଦ କଲା । ସେହି ଆଘାତରେ ଦୀର୍ଘରାବ ଦୀର୍ଘରାବ କରି ପଞ୍ଚତ୍ୱପ୍ରାପ୍ତ ହେଲା । ଏହି ରୂପେ ଅତି ଲୋଭ ଶୃଗାଳର ମୃତ୍ୟୁର କାରଣ ହେଲା ।

---

## ୫୯—ସିଂହ ଓ ମୂଷିକ କଥା

ଗ୍ରୀଷ୍ମକାଳର ମଧ୍ୟଭାଗରେ ଦିନକରେ ଗୋଟିଏ ସିଂହ ଅରଣ୍ୟ ମଧ୍ୟରେ ଗୋଟିଏ ବଟବୃକ୍ଷର ଛାୟାରେ ଶୟନ କରିଥିଲା । ସେହି ବୃକ୍ଷ ମୂଳରେ ଗୋଟିଏ କ୍ଷୁଦ୍ର ମୂଷିକର ବିଲ ଥିଲା । ମୂଷିକଟି ବିଲରୁ ବାହାରି ସିଂହକୁ ନ ଚିହ୍ନି ତାହା ଉପରେ ଚଢ଼ି ଇତସ୍ତତଃ ବୁଲିଲା । ପୂର୍ବ ରାତ୍ରିରେ ବହୁତ ଭ୍ରମଣ କରି ଅତିଶୟ କ୍ଳାନ୍ତ ହୋଇଥିବାରୁ ସେ ଗାଢ଼ ନିଦ୍ରାରେ ଅଭିଭୂତ ଥିଲା । ତେଣୁ ସ୍ୱଦେହରେ ମୂଷିକର ଗତି ସେ ପ୍ରଥମେ ଜାଣିପାରିଲା ନାହିଁ ।

ନିଦ୍ରା ଶେଷରେ ତାହାକୁ ଜଣାଗଲା ତାହାର ମୁଖମଣ୍ଡଳରେ କଅଣ ଗୋଟାଏ ବୁଲୁଅଛି । ସେ ପଞ୍ଝା ଦ୍ୱାରା ଧରି ତାହାକୁ ଗିଳିବା ପାଇଁ ଉଦ୍ୟତ ହୁଅନ୍ତେ ମୂଷିକଟି କରୁଣ ସ୍ୱରରେ କହିଲା, "ହେ ପଶୁରାଜ ! ମୁଁ ଅଜ୍ଞତା ଦୋଷରୁ ଯେଉଁ ଅପରାଧ କରିଅଛି ତାହା କ୍ଷମା କରିବା ହେଉ, ଏଥିପାଇଁ ମୁଁ ଅତ୍ୟନ୍ତ ଅନୁତପ୍ତ ହେଲିଣି । ଏହି ଥରେ ମାତ୍ର ମୋତେ କ୍ଷମା କରିବା ହେଉ । ମୁଁ ଆପଣଙ୍କର ଏହି ଦୟା କେବେହେଁ ଭୁଲିବି ନାହିଁ । ମୁଁ ନିତାନ୍ତ କ୍ଷୁଦ୍ର ଜୀବ । ମୋତେ ଏଥର ଛାଡ଼ି ଦେଲେ, କେତେବେଳେ ହେଲେ ମୋ ଦ୍ୱାରା ଆପଣଙ୍କର କିଛି ଉପକାର ହୋଇପାରେ ।"

ପଶୁରାଜ ସିଂହ ମୂଷିକ-ତୁଣ୍ଡରୁ ଭାବୀ ଉପକାରର କଥା ଶୁଣି ହାସ୍ୟ କରି ତାହାକୁ ନିଷ୍କୃତି ଦେଲା । ମୂଷିକଟି ସେଠାରୁ ପ୍ରସ୍ଥାନ କରିବା ପୂର୍ବରୁ ନିବେଦନ

କଲା, "ମହାରାଜ ! ମୁଁ ଆପଣଙ୍କଠାରେ ଚିର କୃତଜ୍ଞ ହେଲି ; ଆପଣଙ୍କର ଏହି ଦୟା ମୁଁ କେବେ ହେଁ ଭୁଲିବ ନାହିଁ ।"

କିଛିକାଳ ପରେ ଏକଦା ଜ୍ୟୋତ୍ସ୍ନାମୟୀ ରଜନୀରେ ସିଂହଟି ସେହି ବଟବୃକ୍ଷ ମୂଳରେ ଯାଉଁ ଯାଉଁ ପାଶରେ ଆବଦ୍ଧ ହେଲା । ସେ ନାନା ପ୍ରକାର ଗର୍ଜନ କରି ବହୁ ଯତ୍ନ କଲେ ସୁଦ୍ଧା, ଆପଣାକୁ ସେଥିରୁ ମୁକ୍ତ କରିପାରିଲା ନାହିଁ । ବାଘୁଆମାନେ ବୃକ୍ଷ ମୂଳରେ ପାଶ ବସାଇ ତାହା ଶାଖାରେ ଲୁଚି ବସିଥିଲେ । ସିଂହ ପାଶରେ ପଡ଼ିଲା ଦେଖି ବାଘୁଆମାନେ ତରୁଶାଖାରୁ ଓହ୍ଲାଇ ପରାମର୍ଶ କଲେ , "ଏହି ସିଂହକୁ ଜୀବିତାବସ୍ଥାରେ ନେଇ ରାଜାଙ୍କୁ ଭେଟିବା ।" ସେମାନେ ବୃକ୍ଷ-ମୂଳରେ ତାହାର ପଦ ପ୍ରଭୃତି ରଜ୍ଜୁଦ୍ୱାରା ଦୃଢ଼ ଭାବରେ ବନ୍ଧନ କରି ଖଣ୍ଡିଏ ଶଗଡ଼ ଆଣିବା ପାଇଁ ଗ୍ରାମକୁ ଗଲେ ଯେ ସିଂହକୁ ତାହା ଉପରେ ଥୋଇ ରାଜାଙ୍କ ନଅରକୁ ଘେନି ଯିବେ ।

ପୂର୍ବୋକ୍ତ ମୂଷିକଟି ବିଲ ମଧ୍ୟରେ ଥାଇ ସମସ୍ତ ଦେଖୁଥିଲା । ବାଘୁଆମାନେ ସେଠାରୁ ପ୍ରସ୍ଥାନ କଲାରୁ ସେ ବିଲରୁ ବାହାରି ସିଂହ ଆଗରେ ଉପସ୍ଥିତ ହୋଇ କହିଲା, "ମୋତେ ଚିହ୍ନିପାରିଲେ କି ? ମୁଁ କହିଥିଲି ବେଳ ପଡ଼ିଲେ ମୁଁ ଯଥାଶକ୍ତି ତୁମ୍ଭର ଉପକାର କରିବି । ବର୍ତ୍ତମାନ ସେହି ସମୟ ଉପସ୍ଥିତ ହୋଇଅଛି । ମୋତେ ବିଶ୍ୱାସ କରି ତୁମ୍ଭେ ସ୍ଥିର ହୋଇ ରହ, ଅତି କ୍ଷୁଦ୍ର ପ୍ରାଣୀ ହେଲେ ହେଁ ମୁଁ [illegible] ତୁମ୍ଭଙ୍କୁ ବନ୍ଧନରୁ ମୁକ୍ତ କରିବି ।" ମୂଷିକ ଆପଣାର ତୀକ୍ଷ୍ଣ ଦନ୍ତଦ୍ୱାରା ବନ୍ଧନ-ରଜ୍ଜୁକୁ କ୍ଷଣକାଳ ମଧ୍ୟରେ ଖଣ୍ଡ ଖଣ୍ଡ କରି ପକାଇଲା । ବନ୍ଧନମୁକ୍ତ ସିଂହ ମୂଷିକକୁ କୃତଜ୍ଞତା ଜଣାଇ କ୍ଷିପ୍ର ଗତିରେ ସେଠାରୁ ପଳାୟନ କଲା ।

ସଂସାରରେ ସାନବଡ଼ ସମସ୍ତଙ୍କ ଦ୍ୱାରା ଉପକାର ହୋଇପାରେ ।

———

## ୭୦—କୁକୁରର ଘ୍ରାଣଶକ୍ତି

ପାଶ୍ଚାତ୍ୟ ଦେଶରେ ଜନପଦବାସୀ ଜଣେ ଭଦ୍ରଲୋକ ଅଶ୍ୱାରୋହଣ କରି ଗ୍ରାମାନ୍ତରବାସୀ ଜଣେ ମିତ୍ରଙ୍କ ସହିତ ସାକ୍ଷାତ୍ କରିବାକୁ ଗଲେ । ତାହାଙ୍କର ପକେଟରେ କେତେଗୁଡ଼ିଏ ସୁବର୍ଣ୍ଣ ମୋହର ଥିଲା । ତାହାଙ୍କ ଅଗୋଚରରେ ସେହି ପକେଟରେ ଗୋଟିଏ ଛିଦ୍ର ହୋଇଥିବାରୁ ଗମନ ସମୟରେ ସେହି ଛିଦ୍ର ବାଟେ ଗୋଟିଏ ଗୋଟିଏ ହୋଇ ମୋହରମାନଙ୍କରୁ ଅଧିକାଂଶ ତଳେ ପଡ଼ିଗଲା । ଅଶ୍ୱାରୋହୀ ଭଦ୍ରଲୋକଟି ଏହା ଆଦୌ ଜାଣିପାରିଲେ ନାହିଁ ।

ମିତ୍ରଙ୍କର ଗୃହରେ ସମାସୀନ ହୋଇ ତାହାଙ୍କ ସହିତ ସମ୍ଭାଷଣ କରୁଁ କରୁଁ ଯଦୃଚ୍ଛାକ୍ରମେ ପକେଟରେ ହସ୍ତ ପ୍ରବେଶ କରି ଜାଣିପାରିଲେ ଯେ ଅନେକଗୁଡ଼ିଏ ମୋହର ଛିଦ୍ରବାଟେ ସେଥିରୁ ସ୍ଖଳିତ ହୋଇଅଛି । ଏଥିରେ ସେ ଅତିଶୟ ବିଷଣ୍ଣ ହୋଇ ମିତ୍ରଙ୍କୁ ଘଟନାଟି ଜ୍ଞାପନ କଲେ । ମିତ୍ର ଜିଜ୍ଞାସା କଲେ "ମୋହରଗୁଡ଼ିକରୁ ଅବଶେଷ କିଛି ଅଛି କି ?" ଆଗନ୍ତୁକ ଭଦ୍ରବ୍ୟକ୍ତି ଅବଶିଷ୍ଟ ଦୁଇଗୋଟି ମୋହର ମିତ୍ରଙ୍କୁ ଦେଖାଇଲେ ।

ମିତ୍ର ସ୍ୱୀୟ କୁକୁରକୁ ଆହ୍ୱାନ କରି ଗୋଟିଏ ମୋହର ତାହାକୁ ଶୁଙ୍ଘାଇ ଦେଲେ । ତତ୍ପରେ ଆଗନ୍ତୁକ ଭଦ୍ରବ୍ୟକ୍ତିଙ୍କର ଆଗମନ-ମାର୍ଗ ନିର୍ଦ୍ଦେଶ କରି କୁକୁରକୁ କହିଲେ, "ଏହିପରି ମୋହର ବାଟରେ ଖସି ପଡ଼ିଅଛି । ଯା, ସେଗୁଡ଼ିକ ନେଇ ଆସିବୁ ।"

ପ୍ରଭୁଙ୍କର ଆଦେଶରେ କୁକୁର ନିର୍ଦ୍ଦିଷ୍ଟ ମାର୍ଗରେ ମୋହର ଅନୁସନ୍ଧାନରେ ପ୍ରବୃତ୍ତ ହେଲା । କିୟଦ୍ଦୂର ଗମନ କରି ଗୋଟିଏ ମୋହର ପ୍ରାପ୍ତ ହୋଇ ତାହା ଦାନ୍ତରେ କାମୁଡ଼ି ଧରି ପ୍ରଭୁଙ୍କ ନିକଟକୁ ନେଇ ଆସିଲା । ସେ ତାହା ଗ୍ରହଣ କରି କୁକୁରକୁ ଆଦେଶ ଦେଲେ, "ଆହୁରି ଅନେକଗୁଡ଼ିଏ ମୋହର ପଡ଼ିଯାଇଅଛି । ଯା, ସେଗୁଡ଼ିକ ନେଇ ଆସିବୁ ।" କୁକୁର ସ୍ୱପ୍ରଭୁଙ୍କ ଆଦେଶରେ ଥରକୁ ଥର ଯାଇ ଗୋଟିଏ ଗୋଟିଏ ମୋହର ଆଣି ଦେଲା ।

ପକେଟ-ଭ୍ରଷ୍ଟ ଯାବତୀୟ ମୋହର ପୁନଃପ୍ରାପ୍ତ ହେବାରୁ କୁକୁରର ସ୍ୱାମୀ ସେଗୁଡ଼ିକ ଆଗନ୍ତୁକ ଭଦ୍ରବ୍ୟକ୍ତିଙ୍କୁ ଅର୍ପଣ କରି କୁକୁରକୁ କହିଲେ, "ସମସ୍ତ ମୋହର ମିଳିଲା; ତୋତେ ଆଉ ଯିବାକୁ ହେବ ନାହିଁ ।"

ଆଗନ୍ତୁକ ଭଦ୍ରବ୍ୟକ୍ତି ଅତି ଆହ୍ଲାଦରେ କୁକ୍କୁରର ଗାତ୍ର ସ୍ୱହସ୍ତରେ ବାରମ୍ବାର ସ୍ପର୍ଶ କରି ତାହାର ପ୍ରଭୁଭକ୍ତି ଓ ଘ୍ରାଣଶକ୍ତିର ଭୂୟସୀ ପ୍ରଶଂସା କଲେ ।

---

## ୭୧—ବାତୁଲ ଏବଂ ପଶୁପକ୍ଷୀମାନଙ୍କ କଥା

ଏକଦା ପଶୁ ଓ ପକ୍ଷୀମାନଙ୍କ ମଧ୍ୟରେ ବହୁ ଦିନବ୍ୟାପୀ ଯୁଦ୍ଧ ଲାଗିଲା । ଉଭୟପକ୍ଷ ତୁଲ୍ୟ ବିକ୍ରମରେ ଯୁଦ୍ଧ କରିବାରୁ ଜୟ-ଲକ୍ଷ୍ମୀ କୌଣସି ଦିନ ଏକ ପକ୍ଷକୁ କୌଣସି ଦିନ ଅପର ପକ୍ଷକୁ ଚାଳିଲେ । ବାତୁଲ ଯେଉଁଦିନ ଯେଉଁ ପକ୍ଷର ଜୟର ସମ୍ଭାବନା ଦେଖେ, ସେ ଦିନ ସେ ସେହି ପକ୍ଷ ଅବଲମ୍ବନ କରେ । ଦିନେ ସେ ପଶୁ-ମାନଙ୍କର ଜୟ ସମ୍ଭାବନା କରି ସେମାନଙ୍କଠାରେ ଉପସ୍ଥିତ ହୋଇ କହିଲା, "ମୁଁ

କି ପଶୁ ନୁହେଁ ? କେଉଁ ପକ୍ଷୀର ମୋହପରି ଦୁଇପାଟିରେ ଦାନ୍ତ ଅଛି ? କେଉଁ ପକ୍ଷୀ ମୋ ପରି ଆପଣାର ଶାବକମାନଙ୍କୁ ସ୍ତନ୍ୟପାନ କରାଏ ?”

ଅନ୍ୟ ଏକ ଦିନରେ ପଶୁମାନଙ୍କର ପରାଜୟର ଲକ୍ଷଣ ଦେଖି ବାଦୁଡ଼ି ପକ୍ଷୀମାନଙ୍କ ନିକଟରେ ଉପସ୍ଥିତ ହୋଇ କହିଲା, “ହେ ପକ୍ଷୀମାନେ ! ମୁଁ କି ପକ୍ଷୀ ନୁହେଁ ? କେଉଁ ପଶୁ ମୋ ପରି ଆକାଶମାର୍ଗରେ ଗମନ କରିପାରେ ?”

କିଯ୍ଦତ୍‌କାଳ ପରେ ଯୁଦ୍ଧର ପୁନଃଶାନ୍ତି ହେଲା । ତେତେବେଳେ ପକ୍ଷୀମାନେ ଆପଣା ମଧ୍ୟରେ ଏବଂ ପଶୁମାନେ ସ୍ୱ-ସମାଜରେ ଭୋଜର ଅନୁଷ୍ଠାନ କଲେ,ଉଭୟତ୍ର, ପ୍ରଚୁର ଖାଦ୍ୟପେୟ ଓ ନାନା ପ୍ରମୋଦର ଆୟୋଜନ ହେଲା ।

ଏହି ସମ୍ବାଦ ପ୍ରାପ୍ତ ହୋଇ ବାଦୁଡ଼ି ପ୍ରଥମେ ପକ୍ଷୀମାନଙ୍କ ନିକଟରେ ଉପସ୍ଥିତ ହେଲା । ସେମାନେ କହିଲେ “ତୁମ୍ଭେ ତ କହୁଥିଲ ତୁମ୍ଭେ ପକ୍ଷୀ ନୁହ, ସ୍ତନ୍ୟପାୟୀ । ତୁମ୍ଭେ ଆମ୍ଭମାନଙ୍କର ଭୋଜରେ କିପରି ଉପସ୍ଥିତ ହେଲ ?” ଏହା କହି ସେମାନେ ତାହାକୁ ପ୍ରତ୍ୟାଖ୍ୟାନ କଲେ । ତଦନନ୍ତର ସେ ପଶୁମାନଙ୍କଠାରେ ଉପସ୍ଥିତ ହେଲା । ସେମାନେ କହିଲେ, “ତୁମ୍ଭେ ତ ଆମ୍ଭମାନଙ୍କର ପକ୍ଷ ଅବଲମ୍ବନ କରି ଯୁଦ୍ଧ କଲ ନାହିଁ । ବର୍ତ୍ତମାନ ଆମ୍ଭମାନଙ୍କ ସହିତ ପଙ୍‌କ୍ତି ଭୋଜନରେ ତୁମ୍ଭର ଅଧିକାର ନାହିଁ ।”

ଏହି ରୂପେ ପଶୁପକ୍ଷୀମାନଙ୍କ କର୍ତ୍ତୃକ ଉପେକ୍ଷିତ ଓ ଘୃଣିତ ହୋଇ ବାଦୁଡ଼ି ଅନ୍ଧକାରମୟ ସ୍ଥାନରେ ଲଜ୍ଜାରେ ଲୁଚି ରହିଲା ; ତେଣୁ ଦିବାଭାଗରେ ତାହାକୁ କେହି ଦେଖିପାରିଲେ ନାହିଁ । ବାଦୁଡ଼ି ଅଦ୍ୟାପି ଦିବସରେ ତରୁଶାଖା ପ୍ରଭୃତିର ଗୁମ୍ଫାରେ ଆଶ୍ରୟ ଗ୍ରହଣ କରେ, ଏବଂ ନିଶା-କାଳରେ ପଶୁ ଓ ପକ୍ଷୀମାନେ ସୁପ୍ତ ହେଲେ ଇତସ୍ତତଃ ଭ୍ରମଣ କରେ ।

ଏ ସଂସାରରେ ଯେଉଁମାନେ ସ୍ୱଜନର ବିଶ୍ୱାସଭାଜନ ନୁହନ୍ତି, ମାତ୍ର କ୍ଷଣିକ ଜୟ-ପରାଜୟର ସମ୍ଭାବନାରେ କେତେବେଳେ ଏକ ପକ୍ଷ କେତେବେଳେ ବା ଅପର ପକ୍ଷ ଅବଲମ୍ବନ କରନ୍ତି, ସେମାନଙ୍କର ଦଶା ବାଦୁଡ଼ିପରି ହୁଏ ।

---

## ୭୨—ବ୍ୟାଘ୍ର ଓ କଙ୍କଣ-ଲୋଭୀ ପଥିକର ଉପାଖ୍ୟାନ

ଦକ୍ଷିଣାରଣ୍ୟରେ ଗୋଟିଏ ସରୋବର କୂଳରେ ଏକଦା ଗୋଟିଏ ବୃଦ୍ଧ ବ୍ୟାଘ୍ର ସ୍ନାନ କରି ଓ ହସ୍ତରେ କୁଶ ଧାରଣ କରି ପଥଗାମୀ ମନୁଷ୍ୟମାନଙ୍କୁ ସମ୍ବୋଧନ କରି କହିଲା, “ହେ ପଥିକମାନେ ! ଏହି ସୁବର୍ଣ୍ଣ କଙ୍କଣ ଗ୍ରହଣ କର ।”

ଲୋଭାକ୍ରାନ୍ତ ଜଣେ ବୃଦ୍ଧ ପଥିକ ଏହା ଶୁଣି ମନେ ମନେ ଆଲୋଚନା କଲା "ଭାଗ୍ୟରେ ଥିଲେ ଏପରି ଦୁର୍ଲ୍ଲଭ ବସ୍ତୁ ମିଳେ । କିନ୍ତୁ ସୁବର୍ଣ୍ଣକଙ୍କଣ-ପ୍ରାପ୍ତି ନିମନ୍ତେ ହିଂସ୍ର ଜନ୍ତୁର ସମୀପସ୍ଥ ହେବା ଅବିଧେୟ ବୋଧ ହେଉଅଛି ।" ଅନନ୍ତର ବ୍ୟାଘ୍ରକୁ ସମ୍ବୋଧନ କରି ସେ କହିଲା, "ସୁବର୍ଣ୍ଣକଙ୍କଣ କାହିଁ ?" ବ୍ୟାଘ୍ର ହସ୍ତ ପ୍ରସାରଣ କରି ତାକୁ ସୁବର୍ଣ୍ଣକଙ୍କଣ ଦେଖାଇବାରୁ ସେ ପୁନର୍ବାର କହିଲା, "ତୁମ୍ଭେ ହିଂସ୍ରଜନ୍ତୁ ! ମୁଁ କିପରି ତୁମ୍ଭଙ୍କୁ ବିଶ୍ୱାସ କରିବି ?"

ବ୍ୟାଘ୍ର କହିଲା, "ହେ ପଥିକ ! ପୂର୍ବେ ଯୌବନକାଳରେ ମୁଁ ଅତି ଦୁର୍ବୃତ୍ତ ଥିଲି । ମୁଁ ଅନେକ ଗୋମନୁଷ୍ୟ ବଧ କରିବାରୁ ସେହି ପାପରେ ମୋହର ପୁତ୍ରକଳତ୍ର ଅକାଳେ ବିନାଶ-ପ୍ରାପ୍ତ ହେଲେ । ଏହି ବଂଶହାନିରେ ମୁଁ ଅତିଶୟ ଚିନ୍ତିତ ହେଲି । ଅନନ୍ତର ଜଣେ ଧାର୍ମିକ ପୁରୁଷ ଦାନାଦି ସତ୍କର୍ମର ଅନୁଷ୍ଠାନ କରିବା ପାଇଁ ମୋତେ ଉପଦେଶ ଦେଲେ । ଏହି ଉପଦେଶ ଗ୍ରହଣ କଲାଦିନଠାରୁ ମୁଁ ପ୍ରତିଦିନ ସ୍ନାନକରି ଦାନାଦି ସତ୍କାର୍ଯ୍ୟ କରୁଅଛି । ଏ ଅବସ୍ଥାରେ କି ତୁମ୍ଭର ଅବିଶ୍ୱାସ ଜନ୍ମୁଅଛି ? ମୁଁ ଏପରି ତ୍ୟାଗୀ ହୋଇଅଛି ଯେ ସ୍ୱହସ୍ତସ୍ଥିତ ସୁବର୍ଣ୍ଣକଙ୍କଣକୁ ଯେ କୌଣସି ବ୍ୟକ୍ତିକୁ ଦାନ କରିବାକୁ ଉଦ୍ୟତ ହେଉଅଛି । ତଥାପି ବ୍ୟାଘ୍ର ମନୁଷ୍ୟାଶୀ ବୋଲି ଯେଉଁ ଲୋକାପବାଦ ଅଛି, ତାହା ଦୁର୍ନିବାର । ମୁଁ ଧର୍ମଶାସ୍ତ୍ର ଅଧ୍ୟୟନ କରିଅଛି । ଧର୍ମଶାସ୍ତ୍ରମାନଙ୍କରେ ଦେଖାଯାଏ—

ମୋ ପ୍ରାଣ ଅଟଇ ପ୍ରିୟ ଯେସନ ମୋହର
ଆନେ ପ୍ରିୟ ତଥା ପ୍ରାଣ ଆନ ଜୀବଙ୍କର ।
ଅହରହ ତେଣୁ ସମଦର୍ଶୀ ସାଧୁଜନେ
ଚଳନ୍ତି ଅପର ମନ ଆପଣା ତୁଲନେ ।

ଭଗବାନ୍ ଅର୍ଜ୍ଜୁନଙ୍କୁ କହିଅଛନ୍ତି—

ଧନୀଙ୍କୁ ନ ଦିଅ ଧନ ଦରିଦ୍ରେ ବିତର ;
ଔଷଧ ରୋଗୀର ଲୋଡ଼ା, କିଞ୍ଚେଁ ନୀରୋଗର ।

ମୁଁ ଦେଖୁଅଛି ତୁମ୍ଭେ ଦରିଦ୍ର । ଏହି ହେତୁରୁ ତୁମ୍ଭଙ୍କୁ ଏହି କଙ୍କଣ ଦେବାପାଇଁ ମୋହର ଆଗ୍ରହ ଜନ୍ମିଅଛି । ଅତଏବ ଏହି ସରୋବରରେ ସ୍ନାନକରି ମୋଠାରୁ ଏହି ସୁବର୍ଣ୍ଣକଙ୍କଣ ଗ୍ରହଣ କର ।" ବ୍ୟାଘ୍ରର ଏହି କଥାରେ ବିଶ୍ୱାସ ସ୍ଥାପନ କରି ଲୋଭାକ୍ରାନ୍ତ ପଥିକ ସ୍ନାନକରିବା ନିମନ୍ତେ ସରୋବରରେ ପ୍ରବେଶ କଲାକ୍ଷଣି ମହାପଙ୍କରେ ନିମଗ୍ନ ଓ ପଳାଇବାକୁ ଅକ୍ଷମ ହେଲା ।

ତାହାର ଏହି ଅବସ୍ଥା ଦେଖି ବ୍ୟାଘ୍ର କୃତ୍ରିମ ସହାନୁଭୂତି ପ୍ରକାଶ କରି କହିଲା, ଆହା ! ତୁମ୍ଭେ ପଙ୍କରେ ପତିତ ହେଲ ! ଚିନ୍ତାକର ନାହିଁ; ମୁଁ ତୁମ୍ଭଙ୍କୁ

ଉଦ୍ଧାର କରୁଅଛୁ ।" ଏହା କହି ବ୍ୟାଘ୍ର ପଥିକକୁ ଧରିବାପାଇଁ ଧୀରେ ଧୀରେ ହସ୍ତ ପ୍ରସାରଣ କରନ୍ତେ ପଥିକ ତାହାର ଅଭିପ୍ରାୟ ବୁଝିପାରି ମନେ ମନେ ଭାବିଲା—

ଯେତେ ଶାସ୍ତ୍ର ଯେତେ ବେଦ ଅଧ୍ୟୟନ କଲେ
ସ୍ୱଭାବ ପ୍ରାଣୀଙ୍କୁ କେଭେଁ ନ ଛାଡ଼ଇ ଭଲେ ।
ସର୍ବାଙ୍ଗନ ଅଡନିମି ସେହୁ ଉର୍ଦ୍ଧ୍ୱେ ବସେ,
ସୁକ୍ଷେତ୍ରଜ ନିମ୍ବଫଳ ତିକ୍ତ ଯଥା ରସେ ।

ଘାତକର ପ୍ରତ୍ୟୟ ବାକ୍ୟରେ ଆକୃଷ୍ଟ ହୋଇ ମୁଁ ଅବିବେଚକର କାର୍ଯ୍ୟ କଲି । କବି ଓ ଶାସ୍ତ୍ରକାରମାନେ କହିଅଛନ୍ତି ପରିଣାମ ବିବେଚନା ନ କରି ସହସା କୌଣସି କାର୍ଯ୍ୟ କରିବା ଅବିଧେୟ । ଏହି ହିତୋପଦେଶ ଅବହେଳା କରି ମୁଁ ବର୍ତ୍ତମାନ ବିପନ୍ନ ହୋଇଅଛି ।"

ପଥିକ ଏହିପରି ଭାବୁଅଛି, ଏହି ସମୟରେ ବ୍ୟାଘ୍ର ତାହାକୁ ପଙ୍କରୁ ଆକର୍ଷଣ କରି ତାହାର ପ୍ରାଣନାଶ କଲା ଓ ତାକୁ ଭକ୍ଷଣ କଲା ।

---

## ୬୩—ଗୃଧ୍ର, ମାର୍ଜ୍ଜାର ଓ ପକ୍ଷୀମାନଙ୍କର ଉପାଖ୍ୟାନ

ଗଙ୍ଗାତଟରେ ଗୋଟିଏ ପ୍ରାଚୀନ ବିଶାଳ ଶାଳ୍ମଳୀବୃକ୍ଷ ଅଛି । ତାହାର କୋଟରରେ ଜରଦ୍‌ଗବନାମକ ଗୃଧ୍ର ବାସ କରୁଥିଲା । ବାର୍ଦ୍ଧକ୍ୟ ହେତୁରୁ ସେ ନାନା ସ୍ଥାନରେ ଉଡ଼ି ଆହାର ଅନ୍ୱେଷଣ କରିବାକୁ ଅସମର୍ଥ ହେବାରୁ ବୃକ୍ଷବାସୀ ପକ୍ଷୀମାନେ ଆପଣା ଆପଣା ଆହାରରୁ କିଛି କିଛି ଦେଇ ତାହାର ପ୍ରାଣରକ୍ଷା କରୁଥିଲେ । କୃତଜ୍ଞ ଗୃଧ୍ରଟି ପକ୍ଷୀମାନଙ୍କର ଅନୁପସ୍ଥିତ ସମୟରେ ସେମାନଙ୍କର ଶାବକମାନଙ୍କୁ ରକ୍ଷାକରୁଥିଲା ।

ଏପରି କେତେକାଳ ଗତ ହେଲାକୁ ଏକଦା ଦୀର୍ଘକର୍ଣ୍ଣନାମା ମାର୍ଜ୍ଜାର ପକ୍ଷୀଶାବକମାନଙ୍କୁ ଭକ୍ଷଣ କରିବା ନିମନ୍ତେ ସେଠାରେ ଉପସ୍ଥିତ ହେଲା । ତାହାକୁ ଦେଖି ଶାବକଗୁଡ଼ିକ ଭୟରେ କୋଳାହଳ କଲେ । ଏହି ସମୟରେ ବୃଦ୍ଧ ଜରଦ୍‌ଗବ କୋଟର ମଧ୍ୟରେ ଘୁମାଉଥିଲା । କୋଳାହଳରେ ତାହାର ତନ୍ଦ୍ରାଭଙ୍ଗ ହେବାରୁ ସେ ଉଚ୍ଚୈଃସ୍ୱରରେ କହିଲା "ତୁମ୍ଭେ କିଏ ? କିମ୍ପା ଏଠାକୁ ଆସିଅଛ ?" ଦୀର୍ଘକର୍ଣ୍ଣ ଗୃଧ୍ରକୁ ଦେଖି ଭୀତ ହୋଇ ଭାବିଲା "ମଲି ମଲି ଧରା ତ ପଡ଼ିଲି ! ବର୍ତ୍ତମାନ ପଳାୟନ ମଧ୍ୟ ଅସମ୍ଭବ । ତେବେ ବିଶ୍ୱାସ ଜନ୍ମାଇ ଏହା ସମୀପକୁ ଯାଏ । "ଏହା ଭାବି ଧୀରେ ଧୀରେ ଗୃଧ୍ର ସମୀପବର୍ତ୍ତୀ ହୋଇ କହିଲା "ପୂଜ୍ୟପାଦ ! ଆପଣଙ୍କୁ

ପ୍ରଣାମ କରୁଅଛୁ ।" ଗୃଧ୍ର ପଚାରିଲା "ତୁମ୍ଭେ କିଏ ?" ଦୀର୍ଘକର୍ଣ୍ଣ କହିଲା, ମୁଁ ମାର୍ଜାର ।" ଜରଦ୍‌ଗବ କହିଲା "ଏଠାରୁ ଶୀଘ୍ର ପଳାୟନ କର ; ନୋହିଲେ ତୁମ୍ଭର ବିନାଶ ଅବଶ୍ୟମ୍ଭାବୀ । ମାର୍ଜାର କହିଲା, "ମୋର କଥା ଶୁଣିବା ହେଉ । ଶୁଣିଲା ଉତ୍ତାରୁ ମୋତେ ବଧର ଯୋଗ୍ୟ ମନେକରନ୍ତି ତ ବଧ କରିବେ ।" ଗୃଧ୍ର କହିଲା "କି ନିମନ୍ତେ ଏଠାକୁ ଆସିଅଛ କହ ।"

ମାର୍ଜାର କହିଲା "ମୁଁ ଆମିଷାହାର ପରିତ୍ୟାଗ ପୂର୍ବକ ଗଙ୍ଗାଜଳରେ ପ୍ରତିଦିନ ସ୍ନାନକରି ଗଙ୍ଗାକୂଳରେ ବାସ କରୁଅଛୁ । ଆପଣ ଧର୍ମଜ୍ଞାନବାନ୍ ଏବଂ ଆପଣଙ୍କ ହୃଦୟ ସ୍ନେହ ଓ ବିଶ୍ୱାସରେ ପୂର୍ଣ୍ଣ ବୋଲି ପକ୍ଷୀମାନେ ସର୍ବଦା ମୋଠାରେ ଆପଣଙ୍କର ଗୁଣ କୀର୍ତ୍ତନ କରନ୍ତି । ଆପଣ ବିଦ୍ୱାନ୍ ଓ ବୃଦ୍ଧ । ଆପଣଙ୍କଠାରୁ ଧର୍ମ ବିଷୟରେ ଉପଦେଶ ଗ୍ରହଣ କରିବାପାଇଁ ମୁଁ ଆସିଅଛୁ ଓ ଆପଣଙ୍କର ଅତିଥି ଅଟେ । ଏଥିରେ ମୁଁ ବଧର ଯୋଗ୍ୟ ବୋଲି ଆପଣ ଯଦି ବିବେଚନା କରନ୍ତି ତେବେ ବଧ କରନ୍ତୁ ।" ଗୃଧ୍ର କହିଲା, "ମାର୍ଜାରମାନେ ମାଂସାଶୀ । ଏଠାରେ ପକ୍ଷୀଶାବକମାନେ ବାସକରୁଅଛନ୍ତି । ସେହି ହେତୁରୁ ମୁଁ ତୁମ୍ଭର ଆଗମନରେ ଆପତ୍ତି କରୁଅଛୁ ।" ଏହା ଶୁଣି ମାର୍ଜାର କର୍ଣ୍ଣରେ ଅାଙ୍ଗୁଳି ଦେଇ କହିଲା, "ଧର୍ମଶାସ୍ତ୍ର ଶୁଣି ଶୁଣି ବୈରାଗ୍ୟ ଜନ୍ମିବାରୁ ମୁଁ ଆମିଷ ଆହାର ପରିତ୍ୟାଗ କରିଅଛୁ । ମୁଁ ପୁଣି ପକ୍ଷିଶାବକ ଆହାର କରିବ ! ଅହିଂସା ପରମଧର୍ମ ବୋଲି ସକଳ ଧର୍ମଶାସ୍ତ୍ରରେ କଥିତ ହୋଇଅଛୁ ।" ଏହିପରି ବିଶ୍ୱାସ ଜନ୍ମାଇ ମାର୍ଜାର ସେହି ତରୁକୋଟରରେ ବାସ କଲା ।

ଦୀର୍ଘକର୍ଣ୍ଣ ନିଶ୍ଚିନ୍ତଭାବରେ ସେଠାରେ କିଛିଦିନ କଟାଇଲା । ତଦନନ୍ତର ଜରଦ୍‌ଗର ଅଗୋଚରରେ ପ୍ରତିଦିନ ତରୁଶାଖାରେ ଆରୋହଣ କରି କେତେକ ପକ୍ଷୀଶାବକ ଧରି ସେହି କୋଟରରେ ଭୋଜନ କରିବାକୁ ଲାଗିଲା । ଯେଉଁ ପକ୍ଷୀ-ମାନଙ୍କର ଶାବକ ନଷ୍ଟ ହେଲା, ସେମାନେ ଶୋକରେ ବିଳାପ କରୁଁ କରୁଁ ନାନା ସ୍ଥାନରେ ଜିଜ୍ଞାସା କଲେ । ମାର୍ଜାର ଏହା ଜାଣିପାରି କୋଟର ପରିତ୍ୟାଗ କରି ପଳାୟନ କଲା । ପକ୍ଷୀମାନେ ନାନାସ୍ଥାନରେ ଅନୁସନ୍ଧାନ କରି ଅବଶେଷରେ ସେହି ତରୁକୋଟରରେ ଶାବକମାନଙ୍କର ଅସ୍ଥି ଦର୍ଶନ କଲେ । ଜରଦ୍‌ଗବ ଶାବକମାନଙ୍କୁ ଭୋଜନ କରିଅଛୁ ବୋଲି ସ୍ଥିର କରି ପକ୍ଷୀମାନେ ସମସ୍ତେ ମିଳି ତାହାକୁ ବିନାଶକଲେ ।

ନ ଜାଣି ବିଶ୍ୱାସ ସ୍ଥାପନ କଲେ ଦୁର୍ଜ୍ଜନ ସଂସର୍ଗରେ ସାଧୁ ବ୍ୟକ୍ତିର ବିନାଶ ଘଟେ ।

———

# ୭୪—ଧନୀ କୃଷକର ଉଦାରତା

ଦୁଇ ସହସ୍ର ବର୍ଷ ପୂର୍ବେ ପଶ୍ଚିମ ଦେଶରେ ଜଣେ ଧନୀ କୃଷକ ବାସ କରୁଥିଲା । କୃଷକର ଦୁଇ ପୁତ୍ର । ଦୁହିଁଙ୍କ ପ୍ରତି ତାହାର ସମାନ ସ୍ନେହ ଥିଲା । କନିଷ୍ଠ ପୁତ୍ରଟି ଦିନକରେ ପିତାଙ୍କୁ କହିଲା, "ପିତଃ ! ସମ୍ପତ୍ତିର ଯେଉଁ ଅଂଶ ଭବିଷ୍ୟତରେ ମୋତେ ଦିଅନ୍ତ, ବର୍ତ୍ତମାନ ଦେଲେ ମୁଁ ତାହା ନେଇ ଦେଶାନ୍ତରକୁ ଯାଇ ସେଠାରେ ବାସକରନ୍ତି ।"

ଏହି ପ୍ରସ୍ତାବରେ ସମ୍ମତ ହୋଇ ପିତା ତାହାକୁ ତାହାର ଅଂଶ ତତ୍କ୍ଷଣାତ୍ ଦେଲେ । ସେ ତାହା ନେଇ ଦୂର ଦେଶରେ ବାସ କଲା । ଅପର ପୁତ୍ରଟି ପୂର୍ବବତ୍ ପିତାଳୟରେ ରହି କୃଷିକାର୍ଯ୍ୟରେ ତାହାଙ୍କୁ ପ୍ରଭୂତ ସାହାଯ୍ୟ କଲା ଏବଂ ସର୍ବଦା ତାହାଙ୍କର ଆଜ୍ଞାନୁବର୍ତ୍ତୀ ହୋଇ ଚଳିଲା ।

ଦେଶାନ୍ତରବାସୀ ପୁତ୍ରଟି ଭ୍ରମବିମୁଖ ହୋଇ ବିଳାସରେ ହିଁ ସମସ୍ତ ଅତିବାହିତ କଲା । ବହୁ ମୂଲ୍ୟ ବସ୍ତ୍ରପରିଧାନ ଓ ତଦନୁରୂପ ପାନଭୋଜନ କରି ନରପତିତୁଲ୍ୟ ଆଡ଼ମ୍ବରରେ ବାସ କରିବାରୁ ଅଳ୍ପକାଳରେ ତାହାର ସମ୍ପତ୍ତି ଶେଷ ହେଲା ।

ଏହି ସମୟରେ ସେ ଦେଶରେ ଦୁର୍ଭିକ୍ଷ ପଡ଼ିଲା । ଅନ୍ନାଭାବରେ ଯଥାଲବ୍ଧ ଫଳମୂଳ ଖାଇ ତାହାକୁ ପ୍ରାଣଧାରଣ କରିବାକୁ ହେଲା । ଏଥିରେ ତାହାର ଦେହ କ୍ଷୀଣ ଓ ଦୁର୍ବଳ ହେଲା । ତେତେବେଳେ ସେ ଭାବିଲା, ହାୟ ହାୟ, ମୁଁ କେଡ଼େ ମୂର୍ଖ ଓ ଅବିବେକୀ । ପିତାଙ୍କର ଭୃତ୍ୟମାନେ ସୁଦ୍ଧା ପ୍ରଚୁର ଖାଦ୍ୟ ପାଉଅଛନ୍ତି, ମାତ୍ର ଅନ୍ନାଭାବରେ ମୋହର ପ୍ରାଣ ନାଶାଗ୍ରବର୍ତ୍ତୀ । ପିତା ତ ମୋହର ପ୍ରାପ୍ୟ ଅଂଶ ମୋତେ ଦେଲେ । ବର୍ତ୍ତମାନ ମୁଁ ତାଙ୍କୁ ଆଉ ମାଗିବି କପରି ? ତେବେ ସେ ଦୟା କରି ମୋତେ ଯଦି ଭୃତ୍ୟରୂପେ ରଖନ୍ତି, ତାହା ହେଲେ ତାହାଙ୍କ କ୍ଷେତ୍ରରେ କୃଷି-କାର୍ଯ୍ୟ କରି ଭୃତ୍ୟବତ୍ ଜୀବିକା ନିର୍ବାହ କରିବି ।" ଏହା ଭାବି ସେ ପିତୃଗୃହ ଉଦ୍ଦେଶ୍ୟରେ ପ୍ରତ୍ୟାଗମନ କଲା । ତେତେବେଳେ ତାହାର ଶରୀର କ୍ଷୀଣ, ପରିଧେୟ ଜୀର୍ଣ୍ଣ ଏବଂ ଦଶା ଭିକ୍ଷୁକବତ୍ ହୋଇଥିଲା । ସେ ଅବସ୍ଥାରେ ସୁଦ୍ଧା ତାହାକୁ ବହୁ ଦୂରରୁ ଚିହ୍ନି ପାରି ପିତା ପାଛୋଟି ଆଣିବାକୁ ଗଲେ । ସାକ୍ଷାତ୍ ହେଲା ମାତ୍ରେ ପୁତ୍ର ସାଷ୍ଟାଙ୍ଗ ପ୍ରଣିପାତ କରି କହିଲା,"ପିତଃ ! ମୁଁ ଅପରାଧୀ, ତୁମ୍ଭର ପୁତ୍ର ବୋଲି ପରିଚିତ ହେବାକୁ ଅଯୋଗ୍ୟ । ତୁମ୍ଭେ ଦୟାକରି ମୋତେ ଯେଉଁ ସମ୍ପତ୍ତି ଦେଇଥିଲ, ସେ ସମସ୍ତ ମୁଁ ଅପବ୍ୟୟ କରିଅଛି । ମୋତେ ବର୍ତ୍ତମାନ ଭୃତ୍ୟ ଭାବରେ ଗ୍ରହଣ କର ।"

ପିତା ସାଶ୍ରୁନୟନରେ ତାହାକୁ ଉଠାଇ ତାହାର ମୁଖ ଚୁମ୍ବନ କଲେ । ସେ ଉଚ୍ଚୈଃ ସ୍ୱରରେ ଆପଣାର ସ୍ତ୍ରୀକୁ ପୁତ୍ରମୁଖ ନିରୀକ୍ଷଣ କରିବାକୁ ଆହ୍ୱାନ କଲେ ଏବଂ

ଭୃତ୍ୟମାନଙ୍କୁ ପୁତ୍ର ପାଇଁ ଉତ୍ତମ ବସ୍ତ୍ର ଆଣିବାକୁ ଓ ଖାଦ୍ୟପେୟ ପ୍ରସ୍ତୁତ କରିବାକୁ ଆଦେଶ ଦେଲେ । ସେ କହିଲେ, "ପ୍ରତିଦିନ ଆମ୍ଭେମାନେ ଯେପରି ପାନଭୋଜନ କରୁଁ ସେହିପରି ନୁହେଁ, ପୁତ୍ର ପାଇଁ ଭୋଜିଟିଏ କର ।"

ଅନନ୍ତର କୃଷକ ଗୃହରେ ଉତ୍ସବ ଲାଗିଲା । ପୁତ୍ର ଗୃହରେ ପ୍ରବିଷ୍ଟ ହୋଇ ସ୍ନାନକାଳରୁ ମାତା ପିନ୍ଧିବା ପାଇଁ ତାହାକୁ ସୁବସ୍ତ୍ର ଦେଲେ । ଏହା ଉତ୍ତାରୁ ସମସ୍ତେ ଉପାଦେୟ ପାନଭୋଜନରେ ଓ ସୁଗାୟକମାନଙ୍କ ଗୀତରେ ଆନନ୍ଦ ଅନୁଭବ କଲେ ।

ଜ୍ୟେଷ୍ଠ ପୁତ୍ର କୃଷିକ୍ଷେତ୍ରରେ କାର୍ଯ୍ୟ କରୁଥିଲା । ସେ ଏହି ସମୟରେ ଗୃହକୁ ପ୍ରତ୍ୟାଗମନ କରି ସଙ୍ଗୀତଶ୍ରବଣ ଓ ଜନତା-ଦର୍ଶନରେ ବିସ୍ମିତ ହେଲା । ସେ ଜିଜ୍ଞାସା କରନ୍ତେ ଜଣେ ଭୃତ୍ୟ ତାହାକୁ ଉତ୍ସବର କାରଣ ନିବେଦନ କଲା ।

ତାହା ଶୁଣି ସେ କୋପରେ ତତ୍କ୍ଷଣାତ୍ ଗୃହ ପରିତ୍ୟାଗ କରି ବହିର୍ଭାଗରେ ଦଣ୍ଡାୟମାନ ହେଲା । ସେ କୌଣସି ପଦାର୍ଥ ଭୋଜନ କଲା ନାହିଁ କିମ୍ବା ଅନ୍ୟମାନଙ୍କ ସହିତ ଉତ୍ସବରେ ଯୋଗ ଦେଲା ନାହିଁ । ଏହା ଅବଗତ ହୋଇ ପିତା ଗୃହଭିତରକୁ ଯିବାକୁ, କନିଷ୍ଠ ଭ୍ରାତା ସହିତ ସାଦର ସମ୍ଭାଷଣ କରିବାକୁ ଏବଂ ଉତ୍ସବର ସୁଖ ଅନୁଭବ କରିବାପାଇଁ ଜ୍ୟେଷ୍ଠପୁତ୍ରକୁ ଅନୁରୋଧ କଲେ । କିନ୍ତୁ ସେ ସେଥିରେ ଅସମ୍ମତ ହୋଇ କହିଲା "ମୁଁ ଚିରକାଳ ତୁମ୍ଭର ଆଜ୍ଞାନୁବର୍ତ୍ତୀ ହୋଇ ଗାଢ଼ ପରିଶ୍ରମ କରି ଆସୁଅଛି । ମୁଁ କେବେ ତୁମ୍ଭ ଶ୍ରୀଚରଣରେ ଦ୍ରୋହୀ ହୋଇନାହିଁ । ମୋହି ପାଇଁ ତ କେବେହେଁ ଭୋଜି ହୋଇନାହିଁ ; ମାତ୍ର ଏହି ନଷ୍ଟାମୀ ଅପଦାର୍ଥ ବାଳକ ଆପଣାର ସମସ୍ତ ସମ୍ପତ୍ତି ନଷ୍ଟ କରି ଗୃହକୁ ଫେରିବାରୁ ତାହା ପାଇଁ ଏହି ଭୋଜି କରୁଅଛ ।"

ପିତା ମୃଦୁସ୍ୱରରେ ପୁତ୍ରକୁ କହିଲେ "ପୁତ୍ର ! ତୁମ୍ଭେ ତ ସର୍ବଦା ମୋହି ପାଖରେ ଅଛ ; ମୋର ଯାହା କିଛି ସମ୍ପତ୍ତି ଅଛି ସେ ସମସ୍ତ ତୁମ୍ଭର । ତୁମ୍ଭର ସହୋଦର ଭ୍ରାତାକୁ ଦୟା କଲି ବୋଲି ତୁମ୍ଭେ କୁପିତ ହେଉ ଅଛ ? ମୁଁ ମନେ କରିଥିଲି ସେ ଆଉ ଜୀବଦଶାରେ ନ ଥିବ । ବର୍ତ୍ତମାନ ପ୍ରତ୍ୟାଗମନ କରିବାରୁ ସେ ପୁନର୍ଜନ୍ମ ଲାଭ କଲାପରି ମୋତେ ଲାଗୁଅଛି । ସେ ତୁମ୍ଭର ଭ୍ରାତା ନୁହେଁ କି ? ତାହାକୁ ପ୍ରତ୍ୟାଗତ ଦେଖି ଆଦର ପୂର୍ବକ ଗ୍ରହଣ କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ ଅଟେ ।

———

## ୭୫—ମର୍କଟର ଅନଧିକାର ଚର୍ଚ୍ଚାର ପରିଣାମ

ବିହାର ପ୍ରଦେଶରେ ଗୋଟିଏ ଗ୍ରାମରେ ଜଣେ ଧାର୍ମିକ ଧନୀ ବ୍ୟକ୍ତିଙ୍କର ବାସ ଥିଲା । ସେ ନିଃସନ୍ତାନ ଥିଲେ, ଏବଂ କେତେକ ବର୍ଷ ପୂର୍ବେ ତାହାଙ୍କର ସ୍ତ୍ରୀ ପ୍ରାଣ

ତ୍ୟାଗ କରିଥିଲେ । ଦିନକରେ ସେ ଭାବିଲେ ତାହାଙ୍କର ଅନେକ ସମ୍ପତ୍ତି; ମାତ୍ର ଭୋଗ କରିବାକୁ କେହି ନାହିଁ; ସେ ମରିଗଲେ ସମ୍ପତ୍ତି ତାହାଙ୍କ ସଙ୍ଗରେ ଯିବ ନାହିଁ । ସେହି ସମ୍ପତ୍ତିର କିୟଦଂଶ ବ୍ୟୟ କରି ଗୋଟିଏ ଦେଉଳ ତୋଳାଇବାପାଇଁ ତାହାଙ୍କର ଅଭିଳାଷ ଜନ୍ମିଲା । ଗ୍ରାମର ସମୀପବର୍ତ୍ତୀ ସୁନ୍ଦର ପଡ଼ିଆରେ ଦେଉଳ ତୋଳାଇବା ସ୍ଥିର ହେଲା ।

ଶୁଭଦିନ ଦେଖି ସେ ମନ୍ଦିରର ଭିତ୍ତି ଦେଲେ । ଅନେକଗୁଡ଼ିଏ ପଥୁରିଆ, ମିସ୍ତ୍ରୀ, ବଢ଼େଇ, କରତି ଓ ଅନ୍ୟ ଶିଳ୍ପୀ ନିର୍ମାଣ-କାର୍ଯ୍ୟରେ ନିଯୁକ୍ତ ହେଲେ । ସେମାନେ ପୂର୍ବାହ୍ଣ ଓ ଅପରାହ୍ଣରେ କାର୍ଯ୍ୟ କରୁଥିଲେ, ଏବଂ ମଧ୍ୟାହ୍ନ ସମୟରେ ଭୋଜନ କରିବାପାଇଁ ସ୍ୱ ସ୍ୱ ଗୃହକୁ ଯାଉଥିଲେ ।

ଦିନକରେ ଗ୍ରୀଷ୍ମକାଳର ମଧ୍ୟାହ୍ନ ସମୟରେ ଶିଳ୍ପୀମାନେ ଭୋଜନ କରିବା ପାଇଁ ଯାଇଅଛନ୍ତି, ଏବଂ ଜଗୁଆଳୀ ଲୋକେ ତନ୍ଦ୍ରାରେ ଆସକ୍ତ ହୋଇ ଛାୟାରେ ଶୋଇଅଛନ୍ତି । ଏହି ସମୟରେ ସମୀପବର୍ତ୍ତୀ ବଟବୃକ୍ଷରୁ ମର୍କଟଗୁଡ଼ିଏ ଓହ୍ଲାଇ ସେଠାରେ ଉପସ୍ଥିତ ହେଲେ । ଗୋଟିଏ ମର୍କଟ ଦୁଇ ହସ୍ତରେ ବାଲିଟିଏ ଧରି ତାହାକୁ ନିରୀକ୍ଷଣ କରିବାକୁ ଲାଗିଲା, ଅପର ଗୋଟିଏ ମର୍କଟ ହାତୁଡ଼ିଟିଏ ଆଘ୍ରାଣ କରି ତାହା ଖାଦ୍ୟ କି ଅଖାଦ୍ୟ, ନିର୍ଣ୍ଣୟ କରିବାକୁ ଲାଗିଲା ।

କରତିମାନେ ଗୋଟିଏ ବଡ଼ କାଠର ଗୋଟିଏ ଗାର ଅଧେ କରତି ସେଠାରେ ଗୋଟିଏ ପଟକୀଲା ଦେଇ ଯାଇଥିଲେ । ଗୋଟାଏ ବଡ଼ ମର୍କଟ ସେହି କାଠ ଉପରକୁ କୁଦିପଡ଼ି ଦୁଇ ହସ୍ତରେ ଦୃଢ଼ରୂପେ ପଟକୀଲାକୁ ଧରି ହଲାଇବାକୁ ଲାଗିଲା । ପଟକୀଲାଖଣ୍ଡି ଅଳ୍ପ ଆୟାସରେ ନ ଟଳିବାରୁ ମର୍କଟ ଅଧିକ ବଳ ପ୍ରୟୋଗ କରି ନିର୍ବନ୍ଧ ସହକାରେ ତାହାକୁ ହଲାଇଲା । ଏଥି ମଧ୍ୟରେ କରତି ଗାରର ଫାଙ୍କରେ ତାହାର ଲାଙ୍ଗୁଳ ପ୍ରବେଶ କରିଥିଲା । ବହୁବଳ ପ୍ରୟୋଗରେ ପଟକୀଲା ଖଣ୍ଡିକ ବାହାରି ଆସିବାରୁ ଲାଙ୍ଗୁଳଟି କାଠରେ ଚିପିହୋଇ ରହିଲା । ମର୍କଟ-ଦଳପତି ଆପଣାର କୃତକାର୍ଯ୍ୟରେ ଉତ୍ଫୁଲ୍ଲ ନ ହୋଇ ଯନ୍ତ୍ରଣାରେ ଚିତ୍କାର କରିବାକୁ ଲାଗିଲା । ଏହି ଚିତ୍କାରରେ ଜଗୁଆଳିମାନେ ଜାଗ୍ରତ ହୋଇ ବହୁଯତ୍ନରେ ମର୍କଟ ଲାଙ୍ଗୁଳକୁ ବନ୍ଧନରୁ ମୁକ୍ତ କଲେ । ତେତେବେଳେ ମର୍କଟରାଜ ପୁନର୍ବାର ବଟବୃକ୍ଷ ଆରୋହଣ କରି ସୁଦୀର୍ଘକାଳ ଯନ୍ତ୍ରଣାର ଅବଶେଷ ଅନୁଭବ କଲା । ଅନଧିକାର ଚର୍ଚ୍ଚା କଲେ ମନୁଷ୍ୟମାନଙ୍କୁ ଅନେକ ସମୟରେ ମର୍କଟବତ୍ ନିଗ୍ରହ ଅନୁଭବ କରିବାକୁ ହୁଏ ।

———

# ୬୬—ସଂହତର ଶକ୍ତି

ଜଣେ ଗୃହସ୍ଥର ତିନ ପୁତ୍ର ଥିଲେ । ବାଲ୍ୟକାଳରେ ବିଦ୍ୟାଳୟରେ ପଢ଼ିବା-ବେଳେ ସେମାନେ କୌଣସି କୌଣସି ସମୟରେ ପରସ୍ପର ସହିତ କଳହ କରୁଥିଲେ । ଯୌବନକାଳରେ ସେମାନଙ୍କ ମଧ୍ୟରେ ମେଳ ଓ ଶାନ୍ତି କ୍ୱଚିତ୍ ଦେଖାଯାଉଥିଲା । ସେମାନଙ୍କର ପିତା ସଂଯତ, ମିତାଚାରୀ ଓ ଶ୍ରମଶୀଳ ଥିବାରୁ ସଞ୍ଚିତ ଅର୍ଥରେ ଭୂମି କ୍ରୟକରି ପୈତୃକ ସମ୍ପତ୍ତିର ବୃଦ୍ଧି କଲେ । ପୁତ୍ରତ୍ରୟ ପିତାଙ୍କୁ ସାହାଯ୍ୟ ନକରି ପରସ୍ପର ବିବାଦରେ ବହୁ ସମୟ ଅପବ୍ୟୟ କରୁଥିଲେ । ସେମାନଙ୍କର ଏହି ନୀଚ ଆଦର୍ଶରେ ଭୃତ୍ୟମାନଙ୍କର ଆଚରଣ ମଧ୍ୟ କ୍ରମେ କଳୁଷିତ ହେଲା । ପିତା ବାର୍ଦ୍ଧକ୍ୟରେ ପଦାର୍ପଣ କରି ଭାବିଲେ ପୁତ୍ରମାନଙ୍କର ମତିଗତି ପରିବର୍ତ୍ତିତ ନ ହେଲେ ତାହାଙ୍କ ଅନ୍ତେ ସେମାନେ ଅଚିରେ ସର୍ବସ୍ୱାନ୍ତ ହେବେ ।

ସ୍ଥବିରତା ଓ ଦୁର୍ବଳତା ହେତୁରୁ ଗାତ୍ରୋତ୍ଥାନ କରିବାକୁ ସୁଦ୍ଧା ଅସମର୍ଥ ହୋଇ, ପିତା ଦିନେ ପ୍ରାତଃକାଳରେ ପୁତ୍ରମାନଙ୍କୁ ଆପଣା ନିକଟକୁ ଡକାଇ ନେଲେ । ତାହାଙ୍କର ଅଦୂରରେ ବିଡ଼ାଏ କାଠ ରଜ୍ଜୁରେ ଦୃଢ଼ରୂପେ ବନ୍ଧା ହୋଇ ଥୁଆ ହୋଇଥିଲା । ସେମାନଙ୍କୁ ସମ୍ବୋଧନ କରି କହିଲେ, "ପୁତ୍ରମାନେ ! ମୁଁ ଆଜି ଏପରି ଅସୁସ୍ଥ ଓ ଦୁର୍ବଳ ହୋଇଅଛି ଯେ ଶଯ୍ୟା ତ୍ୟାଗ କରି ଦଣ୍ଡାୟମାନ ହେବାପାଇଁ ମୋହର ଶକ୍ତି ନାହିଁ । ମୋହର ଅନ୍ତିମ ସମୟ ଆସନ୍ନ ବୋଲି ମୋତେ ବୋଧ ହେଉଅଛି । ମନୋମଧ୍ୟରେ ପରସ୍ପର ପ୍ରତି ଦୟା ଓ ପ୍ରୀତି ପୋଷଣ କରିବା ପାଇଁ ମୁଁ ତୁମ୍ଭମାନଙ୍କୁ ଚିରକାଳ ଉପଦେଶ ଦେଇଅଛି । ମୋହର ଅଭିଳାଷ ଏହି ଯେ ତୁମ୍ଭେମାନେ ଏକ ପରିବାର-ଭୁକ୍ତ ହୋଇ ସୌହାର୍ଦ୍ଦରେ ଜୀବନ ଯାପନ କର । ବର୍ତ୍ତମାନ ମୋହର ଗୋଟିଏ ଅନୁରୋଧ ଶୁଣ । ଏ କାଠ ବିଡ଼ାଟିକୁ ନ ଫିଟାଇ ମଝିରୁ ଭାଙ୍ଗି ଦୁଇଖଣ୍ଡ କର ।"

ପିତାଙ୍କର ଆଦେଶ ପ୍ରାପ୍ତ ହୋଇ ପ୍ରଥମେ କନିଷ୍ଠ ଓ ତତ୍ପରେ ମଧ୍ୟମ ପୁତ୍ର ସେ ବିଡ଼ାଟି ଭାଙ୍ଗି ଦୁଇଭାଗ କରିବା ପାଇଁ ଯଥୋପଯୋଗୀ ଯତ୍ନକଲେ । ମାତ୍ର ସେମାନଙ୍କ ଯତ୍ନ ଆଦୌ ସଫଳ ହେଲା ନାହିଁ । ଏହା ଉତ୍ତାରେ ଜ୍ୟେଷ୍ଠ ଓ ବଳିଷ୍ଠ ପୁତ୍ର ବିଡ଼ାଟି ଦୁଇହସ୍ତରେ ଉଠାଇ ମଧ୍ୟସ୍ଥଳରେ ପାଦ ଲଗାଇ ଭାଙ୍ଗିବାରେ ସମସ୍ତ ଶକ୍ତି ପ୍ରୟୋଗ କଲା । ତଥାପି ସେ ଅପର ଦୁଇ ଭ୍ରାତାପରି ଅକୃତୀ ହେଲା ।

ଏହା ଦେଖି ପୁନର୍ବାର ଯତ୍ନ କରିବା ପାଇଁ ପିତା ସେମାନଙ୍କୁ ଆଦେଶ ଦେଲେ । ଯୁବା ପୁତ୍ରମାନେ ପୂର୍ବବତ୍ ପ୍ରତ୍ୟେକ ଶକ୍ତି ପ୍ରୟୋଗ କରି ଦ୍ୱିତୀୟଥର ମଧ୍ୟ ବିଫଳଯତ୍ନ ହେଲେ ।

ତେତେବେଳେ ପିତା ଖଣ୍ଡିଏ ଛୁରୀ ବଢ଼ାଇ ଦେଇ ବନ୍ଧନରଜ୍ଜୁକୁ ତଦ୍ଦ୍ୱାରା କର୍ତ୍ତନ କରିବାକୁ କନିଷ୍ଠ ପୁତ୍ରକୁ ଆଦେଶ ଦେଲେ । ରଜ୍ଜୁ କର୍ତ୍ତିତ ହେଲାମାତ୍ରେ ବିଡ଼ାର କାଠଗୁଡ଼ିକ ପରସ୍ପରଠାରୁ ପୃଥକ ହୋଇ ପଡ଼ିଲା । ଅନନ୍ତର ପିତା ପ୍ରତ୍ୟେକ କାଷ୍ଠକୁ ଭାଙ୍ଗି ଦୁଇଖଣ୍ଡ କରିବାପାଇଁ ପୁତ୍ରମାନଙ୍କୁ ଆଦେଶ ଦେଲେ । ତଦନୁସାରେ ପ୍ରତ୍ୟେକ ଖଣ୍ଡିଏ ଖଣ୍ଡିଏ କାଷ୍ଠ ଧରି ସ୍ୱଳ୍ପ ଆୟାସରେ ତାହା ଭାଙ୍ଗି ପକାଇଲେ ।

ବୃଦ୍ଧ ପିତା କହିଲେ, "ହେ ପୁତ୍ରମାନେ ! ସଂହତିର ଶକ୍ତି ଦେଖିଲ ତ ? ଯେ ପର୍ଯ୍ୟନ୍ତ କାଷ୍ଠଗୁଡ଼ିକ ରଜ୍ଜୁଦ୍ୱାରା ଦୃଢ଼ରୂପେ ବଦ୍ଧ ହୋଇଥିଲା, ସେପର୍ଯ୍ୟନ୍ତ ତୁମ୍ଭେମାନେ ବହୁଆୟାସରେ ଖଣ୍ଡିଏ ସୁଦ୍ଧା ଭାଙ୍ଗିବାକୁ ସମର୍ଥ ହେଲନାହିଁ । ବନ୍ଧନ ବିଚ୍ଛିନ୍ନ ହୁଅନ୍ତେ ତୁମେ ପ୍ରତ୍ୟେକ ଅନାୟାସରେ କାଠଗୁଡ଼ିକ ଭାଙ୍ଗି ପାରିଲ । ତୁମ୍ଭେମାନେ ଯେପର୍ଯ୍ୟନ୍ତ ସୌହାର୍ଦ୍ଦ ବନ୍ଧନରେ ସଂହତ ହୋଇ ରହିବ ସେପର୍ଯ୍ୟନ୍ତ କେହି ତୁମ୍ଭମାନଙ୍କର ଅନିଷ୍ଟ କରିବାକୁ ସମର୍ଥ ହେବେନାହିଁ । ମାତ୍ର ତୁମ୍ଭେମାନେ ପରସ୍ପରରୁ ପୃଥକ୍ ହୋଇ ସ୍ୱେଚ୍ଛାନୁସାରୀ ହେଲେ ଶତ୍ରୁମାନେ ତୁମ୍ଭମାନଙ୍କର ଅନିଷ୍ଟ ସାଧନ କରି ଅନାୟାସରେ ଆପଣାର ଅଭୀଷ୍ଟ ସିଦ୍ଧି କରିପାରିବେ ।"

ପରିଦୃଷ୍ଟ ଦୃଷ୍ଟାନ୍ତ ପୁତ୍ରତ୍ରୟର ଚିତ୍ତକୁ ଏପରି ଆକର୍ଷଣ କଲା ଯେ ସେମାନେ ସେହିଦିନଠାରୁ ସମ୍ପୂର୍ଣ୍ଣରୂପେ ବିବାଦ ପରିତ୍ୟାଗ କରି, ଏକ ମେଳରେ ଆନନ୍ଦରେ ବାସ କଲେ । ବୃଦ୍ଧ ପିତା ତଦ୍ଦର୍ଶନରେ ଆଶ୍ୱସ୍ତ ହୋଇ ଜୀବନର ଅବଶିଷ୍ଟ ଅଂଶ ଆନନ୍ଦରେ ଓ ଅନ୍ତିମକାଳ ଶାନ୍ତିରେ ଯାପନ କଲେ ।

---

## ୭୭—ମିତ୍ରଲାଭ (୧)

ଗୋଦାବରୀ ନଦୀତୀରରେ ଗୋଟିଏ ବିଶାଳ ଶାଳ୍ମଳୀ ବୃକ୍ଷ ଅଛି । ଅନେକ ପକ୍ଷୀ ନାନା ସ୍ଥାନରୁ ଆସି ସେଥିରେ ରାତ୍ରି ଯାପନ କରୁଥିଲେ । ଏକଦା ରାତ୍ରି ଶେଷରେ ଚନ୍ଦ୍ର ଅସ୍ତାଚଳକୁ ଗମନ କରୁଅଛନ୍ତି, ଏହି ସମୟରେ ନିଦ୍ରାଭଙ୍ଗ ହେବାରୁ ଲଘୁପତନକ ନାମକ କାକ ଦେଖିଲା ଯମପରି ଭୀଷଣ ଜଣେ ବ୍ୟାଧ ହାତରେ ଖଣ୍ଡିଏ ଜାଲ ଧରି ବନଭିତରକୁ ଆସୁଅଛି । ତାହାକୁ ଦେଖି କାକ ମନେ ମନେ ବିଚାରିଲା "ସକାଳେ ନିଦ୍ରାରୁ ଉଠିବାମାତ୍ରେ ବ୍ୟାଧର ମୁହଁ ଚାହିଁଲି ; ନ ଜାଣେଁ ଆଜ କି ଅଶୁଭ ଘଟନା ହେବ ।" ଏହା ଭାବି କାକ ବ୍ୟାକୁଳ ହୋଇ ସେହି ବ୍ୟାଧର ପଛେ ପଛେ ଗମନକଲା ।

କେତେଦୂର ଗମନ କରି ବ୍ୟାଧ ଗୋଟିଏ ସ୍ଥାନରେ ଗୃଉଳଗୁଡ଼ିଏ ଛିଞ୍ଚାଡ଼ି ଦେଇ ତାହାଉପରେ ଜାଲଖଣ୍ଡିକ ବିସ୍ତାର କଲା ଏବଂ ସ୍ୱୟଂ ଅଲ୍ପଦୂରରେ ଲୁଚି ରହିଲା । ଏହି ସମୟରେ, ଚିତ୍ରଗ୍ରୀବ ନାମକ କପୋତରାଜ ଅନ୍ୟ କପୋତମାନଙ୍କ ସହିତ ଆକାଶରେ ଉଡ଼ି ଯାଉଁ ଯାଉଁ ଏହି ତଣ୍ଡୁଳଗୁଡ଼ିକ ଦେଖିଲା । ସେହି ଗୃଉଳ-ଗୁଡ଼ିକ ଦେଖି କପୋତମାନଙ୍କର ଲୋଭ ଜନ୍ମିବାରୁ କପୋତରାଜ ସେମାନଙ୍କୁ ସାବଧାନ କରି କହିଲା "ଏହି ନିର୍ଜନ ବନରେ ଗୃଉଳଗୁଡ଼ିକ କେଉଁଠାରୁ ଆସିଲା ? ମୋ ମନରେ ସନ୍ଦେହ ଓ ଭୀତି ହେଉଅଛି ।" ଗୋଟିଏ ଲୋଭୀ କପୋତ କପୋତରାଜର କଥାରେ ଅବହେଳା କରି କହିଲା, "ମୋତେ ତ ଭୟର କାରଣ କିଛି ଦିଶୁନାହିଁ, ପୁଣି ଆମ୍ଭେମାନେ ସମସ୍ତେ କ୍ଷୁଧାର୍ତ୍ତ ହୋଇଅଛୁଁ । ଗୃଉଳ ଖାଇବାବେଳେ ଯଦି କେହି ଆମ୍ଭମାନଙ୍କୁ ଧରିବାକୁ ଆସେ, ତାହାହେଲେ ଆମ୍ଭେମାନେ ଉଡ଼ି ପଳାଇଯାଇପାରୁଁ ।" ଏହି କଥାରେ ସମ୍ମତ ହୋଇ କପୋତ-ମାନେ ତଳକୁ ଆସି ଗୃଉଳଗୁଡ଼ିକ ଖୁଣ୍ଟି ଖାଇବାବେଳେ ଜାଲର ଫାଶରେ ସେମାନଙ୍କର ପାଦ ଛନ୍ଦିରହିଲା । ଯେଉଁ କପୋତର କଥାରେ ଭୁଲି ସମସ୍ତେ ଏହି ଦଶାରେ ପଡ଼ିଲେ, ତାହାକୁ ସମସ୍ତେ ଏତେବେଳେ ତିରସ୍କାର କରିବାକୁ ଲାଗିଲେ । କପୋତରାଜ କହିଲା "ତାହାର ଦୋଷ କଅଣ ? ତାହାକୁ ତିରସ୍କାର କଲେ ବର୍ତ୍ତମାନ ଆମ୍ଭମାନଙ୍କର କି ଲାଭ ହେବ ! ଏହି ତିରସ୍କାର ଛାଡ଼ି ବିପଦରୁ ଉଦ୍ଧାରର ଉପାୟ ଚିନ୍ତାକରିବା ଆମ୍ଭମାନଙ୍କର କର୍ତ୍ତବ୍ୟ । ଆଚ୍ଛା ଚାଲ ସମସ୍ତେ ଏକାବେଳକେ ଉଡ଼ି ଜାଲକୁ ଘେନି ପଳାଇଯିବା ।" କପୋତରାଜର ଏହି କଥାରେ ସମ୍ମତ ହୋଇ ସମସ୍ତେ ଜାଲ ଘେନି ଆକାଶକୁ ଉଡ଼ିଗଲେ ।

ଏହା ଦେଖି ବ୍ୟାଧ ବହୁଦୂର ପର୍ଯ୍ୟନ୍ତ ସେମାନଙ୍କର ଅନୁସରଣ କଲା, ମାତ୍ର କପୋତଗୁଡ଼ିକ କ୍ରମେ ତାହାର ଦୃଷ୍ଟିର ଅଗୋଚର ହେବାରୁ ସେ ହତାଶ ହୋଇ ଆପଣାର ଗୃହକୁ ନେଉଟିଗଲା । ବ୍ୟାଧ ନିବୃତ୍ତ ହେଲା ଦେଖି କପୋତମାନେ ଚିତ୍ରଗ୍ରୀବକୁ ପଚାରିଲେ, "ବର୍ତ୍ତମାନ କର୍ତ୍ତବ୍ୟ କଅଣ ? କପୋତରାଜ କହିଲା "ହିରଣ୍ୟକନାମକ ମୂଷିକରାଜ ଗଣ୍ଡୁକୀ ନଦୀ-ତୀରରେ ବାସ କରେ । ସେ ଆମ୍ଭର ମିତ୍ର । ସେଠାକୁ ଗଲେ ସେ ଆମ୍ଭମାନଙ୍କୁ ଏହି ବନ୍ଧନରୁ ମୁକ୍ତ କରିପାରିବ ।"

ଅନନ୍ତର କପୋତମାନେ ଉଡ଼ି ଉଡ଼ି ଗଣ୍ଡୁକୀ କୂଳରେ ଉପସ୍ଥିତ ହେଲେ । ଚିତ୍ରଗ୍ରୀବ ଉଚ୍ଚୈଃସ୍ୱରରେ କହିଲା "ସଖେ ହିରଣ୍ୟକ ! ଆଜି ଆମ୍ଭମାନଙ୍କ ସହିତ କଥା କହୁନାହିଁ କାହିଁକି ?" ହିରଣ୍ୟକ ଚିତ୍ରଗ୍ରୀବର କଣ୍ଠ ବାରି ପାରି ବିଲରୁ ବାହାରି ଆସି ବିସ୍ମୟରେ ପଚାରିଲା "ମିତ୍ର ଚିତ୍ରଗ୍ରୀବ ! ଏ କଅଣ ?" ଚିତ୍ରଗ୍ରୀବ କହିଲା "ସଖେ ! ଭଲମନ୍ଦ ବିବେଚନା ନ କରି କାର୍ଯ୍ୟ କରିବାରେ ଆମ୍ଭମାନଙ୍କର ଏହି ଦଶା ଘଟିଅଛି । ବର୍ତ୍ତମାନ ଦୟା କରି ଆମ୍ଭମାନଙ୍କୁ ବନ୍ଧନରୁ ମୁକ୍ତ କର ।" ଏହା

ଶୁଣି ମୂଷିକରାଜ ପ୍ରଥମେ ଚିତ୍ରଗ୍ରୀବର ବନ୍ଧନ ଛିଣ୍ଡାଇବାକୁ ଉଦ୍ୟତ ହେଲା । କପୋତରାଜ ତାହାକୁ ନିଷେଧ କରି କହିଲା "ମିତ୍ର ! ଆଗେ ଅନ୍ୟ କପୋତମାନଙ୍କର ବନ୍ଧନ ଛେଦନ କର ; ପଶ୍ଚାତ୍ ମୋତେ ମୁକ୍ତ କରିବ ।" ହିରଣ୍ୟକ ଏଥିରେ ଅତିଶୟ ପ୍ରୀତ ହୋଇ କପୋତରାଜକୁ ବହୁତ ପ୍ରଶଂସା କଲା । ଅନନ୍ତର ଗୋଟି ଗୋଟି କରି ଅନ୍ୟ କପୋତମାନଙ୍କୁ ବନ୍ଧନରୁ ମୁକ୍ତ କରି ପରିଶେଷରେ ଚିତ୍ରଗ୍ରୀବର ଫାଶ ଛେଦନ କଲା । କପୋତମାନେ ଏହି ରୂପେ ବନ୍ଧନରୁ ମୁକ୍ତ ହୋଇ ହିରଣ୍ୟକଠାରେ ଆପଣାର କୃତଜ୍ଞତା ଜଣାଇଲେ ଏବଂ ତାହାକୁ ବହୁତ ପ୍ରଶଂସା କରି ସ୍ୱସ୍ଥାନକୁ ପ୍ରତ୍ୟାଗମନ କଲେ ।

ତାହାପରେ ଏହି ସମସ୍ତ ଦେଖି ହିରଣ୍ୟକର ଗୁଣରେ ମୁଗ୍ଧ ହୋଇ କାକ କହିଲା "ହେ ମୂଷିକରାଜ ! ଈଶ୍ୱର ତୁମ୍ଭଙ୍କୁ ଦୀର୍ଘାୟୁ କରନ୍ତୁ । ତୁମ୍ଭେ ଅତିଶୟ ସାଧୁ ଓ ଦୟାଳୁ ଅଟ । ଏହି ସଂସାରରେ ତୁମ୍ଭପରି ମିତ୍ର ଦୁର୍ଲ୍ଲଭ । ମୁଁ ତୁମ୍ଭର ମିତ୍ରତା ଇଚ୍ଛା କରୁଅଛି ।" ହିରଣ୍ୟକ ପ୍ରଥମେ କାକର ପ୍ରସ୍ତାବରେ ଅସମ୍ମତ ହେଲା, ମାତ୍ର କାକ ନାନା ପ୍ରକାରରେ ତାହାଠାରେ ମିତ୍ରତା ନିମନ୍ତେ ଅଳି କରିବାରୁ ଶେଷରେ ସେ ତାହା କଥାରେ ସମ୍ମତ ହେଲା । ସେହି ଦିନଠାରୁ କାକ ଓ ମୂଷିକ ପରସ୍ପର ମିତ୍ର ହୋଇ ଏବଂ ବିପତ୍ତି ସମୟରେ ପରସ୍ପରର ସାହାଯ୍ୟ କରି ପରମସୁଖରେ ସେଠାରେ ବାସ କଲେ ।

---

## ୭୮—ମିତ୍ରଲାଭ (୨)

ମୂଷିକରାଜ ହିରଣ୍ୟକ ଓ ଲଘୁପତନକ ନାମକ କାକ ପରସ୍ପର ମିତ୍ର ହୋଇ ଏକତ୍ର ବାସ କଲେ । କାକଟି ବୃକ୍ଷଶାଖାରେ ଓ ମୂଷିକଟି ବୃକ୍ଷମୂଳସ୍ଥ ସ୍ୱ ବିଳରେ ରହିଲା । ପ୍ରତିଦିନ ପରସ୍ପର ସାକ୍ଷାତ ଏବଂ ମଧୁର ଆଳାପରେ ଦୁହିଁଙ୍କର ସମୟ ଅତିବାହିତ ହେଉଥିଲା ।

ଏକଦା ଲଘୁପତନକ ହିରଣ୍ୟକକୁ କହିଲା "ସଖେ ! ଏ ସ୍ଥାନରେ କାକର ଖାଦ୍ୟ ପଦାର୍ଥ ଅତି ଦୁର୍ଲ୍ଲଭ, ଅତଏବ ଏ ସ୍ଥାନ ପରିତ୍ୟାଗ କରି ସ୍ଥାନାନ୍ତରକୁ ଯିବାକୁ ଇଚ୍ଛା କରିଅଛି ।" ହିରଣ୍ୟକ କହିଲା, "ମିତ୍ର ! କେଉଁଠାକୁ ଯିବ ? ବିଜ୍ଞବ୍ୟକ୍ତି କେବେହେଁ ସ୍ୱସ୍ଥାନ ପରିତ୍ୟାଗ କରି ଯାନ୍ତିନାହିଁ ।" ଲଘୁପତନକ କହିଲା "ଏପରି ଉକ୍ତି କାପୁରୁଷ ତୁଣ୍ଡରେ ଶୋଭାପାଏ; ବୀରବ୍ୟକ୍ତି ଯେ କୌଣସି ସ୍ଥାନକୁ ସ୍ୱସ୍ଥାନରେ ପରିଣତ କରିପାରେ । ମୁଁ ଗୋଟିଏ ଉତ୍ତମ ସ୍ଥାନ ନିରୂପଣ କରିଅଛି ।"

ହିରଣ୍ୟକ ପ୍ରଶ୍ନ କଲା, "ମିତ୍ର ! ସେ କେଉଁ ସ୍ଥାନ !" କାକ କହିଲା "ଦଣ୍ଡକାରଣ୍ୟରେ କର୍ପୂର-ଗୌର ନାମକ ସରୋବର ଅଛି । ସେଠାରେ ମୋର ଚିରମିତ୍ର ମନ୍ଥର ନାମକ କୂର୍ମ ବାସ କରେ । ମନ୍ଥର ସ୍ୱଭାବତଃ ଧାର୍ମିକ । ମୁଁ ସେ ସ୍ଥାନକୁ ଗଲେ ସେ ପ୍ରଚୁର ସୁଭୋଜନ ଦ୍ୱାରା ମୋତେ ଆନନ୍ଦରେ ରଖିବ । ତାହା ଶୁଣି ହିରଣ୍ୟକ କହିଲା "ସଖେ ! ମୁଁ ବା ଏଠାରେ ଏକାକୀ କି ନିମନ୍ତେ ରହିବ ? ତୁମ୍ଭେ ଯଦି ଯିବ ତେବେ ମୋତେ ମଧ୍ୟ ସଙ୍ଗରେ ନେଇଯାଅ ।"

ଅନନ୍ତର ଲଘୁପତନକ ଓ ହିରଣ୍ୟକ ଦୁହେଁ ମାର୍ଗରେ ନାନାପ୍ରକାର ଆଳାପ କରୁଁ କରୁଁ ଅବଶେଷରେ ସେହି ସରୋବରର ସମୀପବର୍ତ୍ତୀ ହେଲେ । ମନ୍ଥର ଦୂରରୁ ଲଘୁପତନକକୁ ଚିହ୍ନିପାରି ତାହାର ଓ ତନ୍‌ମିତ୍ର ମୂଷିକର ଯଥୋଚିତ ଆତିଥ୍ୟ କଲା । ବାୟସ କହିଲା, "ମିତ୍ର ମନ୍ଥର ! ଏହାଙ୍କର ବିଶେଷ ଅଭ୍ୟର୍ଥନା କରିବା ହେଉ, ଏହି ମୂଷିକରାଜଙ୍କର ନାମ ହିରଣ୍ୟକ । ଏ ପୁଣ୍ୟାତ୍ମାମାନଙ୍କର ଅଗ୍ରଣୀ, ଏହାଙ୍କ ହୃଦୟ ଦୟାରେ ପୂର୍ଣ୍ଣ ଅଟେ । ବାସୁକି ହିଁ ସହସ୍ର ଜିହ୍ୱାରେ ଏହାଙ୍କର ଗୁଣାବଳୀ ବର୍ଣ୍ଣନ କରିବାକୁ ସମର୍ଥ ହେଲେ ହୋଇପାରନ୍ତି ।" ଏହା କହି ସେ ଚିତ୍ରଗ୍ରୀବର ଉପାଖ୍ୟାନ ବର୍ଣ୍ଣନ କଲା । ଅନନ୍ତର ମନ୍ଥର ଅତି ଆଦରରେ ହିରଣ୍ୟକର ଯଥୋଚିତ ଅଭ୍ୟର୍ଥନା କରି କହିଲା "ଭଦ୍ର ! କି ହେତୁରୁ ଏହି ଅରଣ୍ୟରେ ନିର୍ଜ୍ଜନ ବାସ ସ୍ୱୀକାର କରିଅଛନ୍ତି ତାହା କହିବା ହେଉ ।"

ହିରଣ୍ୟକ କହିଲା "ମୋତେ ଯେଉଁ ପ୍ରଶ୍ନ ହୋଇଅଛି, ମୁଁ ତାହାର ଉତ୍ତର ଦେଉଅଛି, ଶୁଣିବା ହେଉ । ଚମ୍ପକ ନଗରୀରେ ସନ୍ୟାସୀମାନଙ୍କର ଆଶ୍ରମ ଅଛି । ସେଠାରେ ଚୂଡ଼ାକର୍ଣ୍ଣନାମକ ସନ୍ୟାସୀ ବାସ କରନ୍ତି । ଭୋଜନ ଉତ୍ତାରୁ ଯେଉଁ ଅନ୍ନ ଅବଶିଷ୍ଟ ଥାଏ, ତାହାକୁ ଭିକ୍ଷା-ପାତ୍ରରେ ରଖି ସେହି ପାତ୍ରକୁ ଖିଲାରେ ଝୁଲାଇ ଦେଇ, ସେ ତାହା ନିକଟରେ ଶୟନ କରୁଥିଲେ । ସେ ନିଦ୍ରିତ ହେଲେ ସେଠାରେ ପ୍ରବେଶକରି ମୁଁ ସେହି ଅନ୍ନ ଭକ୍ଷଣ କରୁଥିଲି ।

ଏକଦା ତାହାଙ୍କର ମିତ୍ର ବୀଣାକର୍ଣ୍ଣ ନାମକ ଅପର ସନ୍ନ୍ୟାସୀ ସେହି ଆଶ୍ରମରେ ଉପସ୍ଥିତ ହେଲେ । ତାହାଙ୍କ ସହିତ କଥା କହୁଁ କହୁଁ ଚୂଡ଼ାକର୍ଣ୍ଣ ମୋତେ ନିବାରଣ କରିବା ପାଇଁ ଖଣ୍ଡିଏ ବଂଶ-ଦଣ୍ଡରେ ବାରମ୍ବାର ଭୂମିରେ ଆଘାତ କରୁଥିଲେ । ତାହା ଦେଖି ବୀଣାକର୍ଣ୍ଣ କହିଲେ "ତୁମ୍ଭଙ୍କୁ ଅନ୍ୟମନସ୍କ ଦେଖି ମୁଁ ଅନୁମାନ କରୁଅଛି ତୁମ୍ଭେ ମୋ କଥାରେ ବିରକ୍ତ ହେଉଅଛ ।" ଚୂଡ଼ାକର୍ଣ୍ଣ କହିଲେ, 'ମିତ୍ର ! ତାହା ନୁହେଁ, ଏହି ବିଲରେ ଯେଉଁ ମୂଷିକଟି ଅଛି ସେ ମୋର ନିଦ୍ରାବସରରେ ପ୍ରତିଦିନ ଆସି ପାତ୍ରସ୍ଥିତ ଭିକ୍ଷାନ୍ନ ଭକ୍ଷଣ କରୁଅଛି ।' ବୀଣାକର୍ଣ୍ଣ ଖିଲାକୁ ନିରୀକ୍ଷଣ କରି କହିଲେ 'ମୂଷିକଟିଏ ଏତେ ଉପରକୁ ଡେଉଁଅଛି, ଏ ବଡ଼

ଅସାଧାରଣ କଥା । ମୋତେ ବୋଧ ହେଉଅଛି ଏହି ମୂଷିକ ପ୍ରଚୁର ଧନ ସଞ୍ଚୟ କରିଅଛି । ସେହି ଧନବାହୁଲ୍ୟ ତାହାର ଦେହ ଓ ମନକୁ ଅତିଶୟ ବଳବାନ୍ କରିବାରୁ ସେ ଏହି ଅସାଧାରଣ କାର୍ଯ୍ୟ ସମ୍ପାଦନ କରୁଅଛି ।

ଯେହୁ ଧନୀ ସେହୁ ବଳୀ, ପ୍ରଭୁତ୍ୱ ସେ କରେ ;
ଧନ ବଳେ ସିନା ରାଜା ପ୍ରଭୁ ଜଗତରେ ।”

ତଦନନ୍ତର ସେ କ୍ଷଣକରେ ମୋର ବିଲ ଖୋଳି ଚିର-ସଞ୍ଚିତ ମୋହର ଶସ୍ୟଗୁଡ଼ିକ ସେଠାରୁ ବାହାରକରି ନେଲେ । ଏହି ଧନ-ହାନିରେ ମୁଁ ଦିନକୁ ଦିନ ଶକ୍ତିହୀନ ଓ ଉତ୍ସାହ-ରହିତ ହୋଇ ଭୟରେ ଓ ଅତି କଷ୍ଟରେ ନାନା ସ୍ଥାନରୁ ଖାଦ୍ୟ ଆହରଣ କରୁଁ କରୁଁ ଦିନକରେ ଚୂଡ଼ାକର୍ଣ୍ଣର କୋପଦୃଷ୍ଟିରେ ପଡ଼ିଲି । ସେ ବଂଶଖଣ୍ଡରେ ତାଡ଼ନା କରିବାରୁ ମୁଁ ତାହାଙ୍କର ଆଶ୍ରମ ପରିତ୍ୟାଗ କରି ସେହିଦିନ-ଠାରୁ ନିର୍ଜ୍ଜନବାସ କରିଅଛି । ସୌଭାଗ୍ୟକ୍ରମେ ଏହାଙ୍କ ସହିତ ସାକ୍ଷାତ ଓ ମିତ୍ରତା ହେବାରୁ ଏହାଙ୍କ ସ୍ନେହରେ ମୁଁ ସୁଖରେ ଦିନଯାପନ କରି ଆସୁଅଛି । ଆଜି ବହୁ ପୁଣ୍ୟବଳରୁ ତୁମ୍ଭ ସହିତ ମିତ୍ରତା ଜନ୍ମିବାରୁ ତୁମ୍ଭର ଆଶ୍ରୟକୁ ମୁଁ ସ୍ୱର୍ଗପରି ମଣୁଅଛି ।” ସେହି ଦିନଠାରୁ ସେହି ଚତୁର୍ମିତ୍ର ପରମ ସୁଖରେ ସେଠାରେ ବାସକରିବାକୁ ଲାଗିଲେ । ସେମାନେ ନାନା ସ୍ଥାନରେ ସ୍ୱେଚ୍ଛାବିହାର ପୂର୍ବକ ଉଦର ପୂରଣ କରି ବିଶ୍ରାମ ସମୟ ସ୍ନେହାଳାପରେ ଯାପନ କରୁଥିଲେ । ଏକଦା ଚିତ୍ରାଙ୍ଗନାମା ମୃଗ କୌଣସି ବ୍ୟକ୍ତି କର୍ତ୍ତୃକ ତାଡ଼ିତ ହୋଇ ସେହି ସ୍ଥାନ ଆଡ଼କୁ ଆଗମନ କଲା । ଦୂରରୁ ତାହାକୁ ଘାତକ ମନେ କରି ମନ୍ଥର ଶୀଘ୍ର ଜଳରେ ଓ ମୂଷିକ ବିଲରେ ପ୍ରବେଶକଲା ଏବଂ କାକ ଉଡ଼ି ବୃକ୍ଷାଗ୍ର ଆଶ୍ରୟ କଲା । ଲଘୁପତନକ ଚତୁର୍ଦ୍ଦିଗରେ ବହୁଦୂର ପର୍ଯ୍ୟନ୍ତ ନିରୀକ୍ଷଣ କରି କୌଣସି ଭୟର ହେତୁ ଦେଖି ନ ପାରି ପୁନର୍ବାର ବୃକ୍ଷମୂଳକୁ ଅବତରଣକଲା । ତାହା ବାକ୍ୟରେ ଆଶ୍ୱସ୍ତ ହୋଇ ସମସ୍ତେ ସେଠାରେ ପୂର୍ବବତ୍ ଉପବିଷ୍ଟ ହେଲେ । ମୃଗ ଉପସ୍ଥିତ ହେବାରୁ ମନ୍ଥର କହିଲା “ଭଦ୍ର ! ତୁମ୍ଭର କୁଶଳ ତ ? ନିଃଶଙ୍କମନରେ ଏଠାରେ ତୃଣଭକ୍ଷଣ ଓ ଜଳପାନ କରି ତୁମ୍ଭର ସହବାସରେ ଆମ୍ଭମାନଙ୍କୁ ସୁଖୀ କର, ଏବଂ ସ୍ଥାନକୁ ଆପଣାର ଗୃହସ୍ୱରୂପ ମଣ ।”

ଚିତ୍ରାଙ୍ଗ କହିଲା “ବ୍ୟାଧତ୍ରାସରେ ମୁଁ ଏଠାକୁ ଆଗମନ କରି ତୁମ୍ଭମାନଙ୍କ ସହିତ ମିତ୍ରତା ଅଭିଳାଷ କରୁଅଛି ।” ହିରଣ୍ୟକ କହିଲା, “ଆମ୍ଭମାନଙ୍କ ସହିତ ତୁମ୍ଭର ମିତ୍ରତା ଅନାୟାସଲଭ୍ୟ । ଏ ସ୍ଥାନକୁ ନିଜ ଗୃହ ମଣି ତୁମ୍ଭେ ଏଠାରେ ବାସକର ।” ଏହି ବାକ୍ୟରେ ଆଶ୍ୱସ୍ତ ହୋଇ ମୃଗ ତୃଣ-ଭୋଜନ ଓ ଜଳପାନ କରି ସରୋବର ସମୀପବର୍ତ୍ତୀ ବଟଚ୍ଛାୟାରେ ବିଶ୍ରାମକଲା ।

ତଦନନ୍ତର ମନ୍ଥର ପ୍ରଶ୍ନକଲା, "ସଖେ ମୃଗ ! ତୁମ୍ଭେ କାହା ତ୍ରାସରେ ଏଠାକୁ ପଳାଇ ଆସିଲ ? ଏହି ବିଜନ ବନରେ ବ୍ୟାଧମାନେ ବିଚରଣ କରନ୍ତି କି ?" ମୃଗ କହିଲା "ରୁକ୍ମାଙ୍ଗଦ କଳିଙ୍ଗରାଜ୍ୟର ରାଜା ଅଟନ୍ତି । ସେ ଦିଗ୍-ବିଜୟ କରୁଁ କରୁଁ ବର୍ତ୍ତମାନ ଚନ୍ଦ୍ରଭାଗା ନଦୀତୀରରେ ଛାଉଣି ପକାଇଅଛନ୍ତି । ବ୍ୟାଧ-ମାନଙ୍କର ପରସ୍ପର କଥାରୁ ଅବଗତ ହେଲି, କାଲି ପ୍ରାତଃକାଳରେ ଏ ପ୍ରଦେଶକୁ ଆସି ଏହି କର୍ପୂରସର କୂଳରେ ଅବସ୍ଥାନ କରିବେ । ଏପରି ଅବସ୍ଥାରେ କର୍ତ୍ତବ୍ୟ ଅବଧାରଣ କରି ତଦନୁସାରେ କାର୍ଯ୍ୟ କର ।" ଏହା ଶୁଣି କୂର୍ମ ଭୀତ ହୋଇ କହିଲା "ମିତ୍ର ! ଅନ୍ୟ ଜଳାଶୟକୁ ଗମନ କରିବା ଉଚିତ ।" କାକ ମୃଗ ଦୁହେଁ ଏହି ପ୍ରସ୍ତାବ ଅନୁମୋଦନକଲେ । ହିରଣ୍ୟକ ମନେ ମନେ ବିଚାର କରି କହିଲା "ଜଳାଶୟ ପୁଣି ପ୍ରାପ୍ତ ହେଲେ ମନ୍ଥରର ମଙ୍ଗଳ । ସ୍ଥଳରେ ଗମନକଲା ବେଳେ ଏହାର କି ଗତି ହେବ ।"

ହିରଣ୍ୟକର ଏହି ହିତବାକ୍ୟରେ ଅନାସ୍ଥା କରି ଭୟବିମୂଢ଼ ମନ୍ଥର କର୍ପୂରସର ପରିତ୍ୟାଗ କରି ଗମନ କଲା । ହିରଣ୍ୟକାଦି ସ୍ନେହବଶତଃ ଅନିଷ୍ଟ ଆଶଙ୍କାରେ ତାହାର ଅନୁଗମନ କଲେ । ଏହିପରି ଗମନ କରୁଁ କରୁଁ ମନ୍ଥର କାନନଗୃହସ୍ଥ ଜଣେ ବ୍ୟାଧର ଦୃଷ୍ଟିପଥରେ ପଡ଼ିଲା । ସେହି ବ୍ୟାଧ ତାହାକୁ ଉଠାଇ ଆପଣାର ଧନୁରେ ବାନ୍ଧି ସ୍ୱଗୃହାଭିମୁଖରେ ପ୍ରସ୍ଥାନ କଲା । ଏହି ଘଟନାରେ ଅତ୍ୟନ୍ତ ବିଷଣ୍ଣ ହୋଇ ମୃଗ-କାକ-ମୂଷିକ ବ୍ୟାଧର ପଶ୍ଚାତ୍ ପଶ୍ଚାତ୍ ଗମନକଲେ ।

ହିରଣ୍ୟକ ବହୁ ବିଳାପ କରି କହିଲା, "ହାୟହାୟ ଆମ୍ଭମାନଙ୍କ ମିତ୍ରର କି ଦୁର୍ଦ୍ଦଶା ହେଲା ! ବର୍ତ୍ତମାନ ଆମ୍ଭେମାନେ କି ଉପାୟ ଅବଲମ୍ବନ କରିବୁଁ ।" ତଦନନ୍ତର କିଛିକାଳ ବିବେଚନାକରି କହିଲା, ସଖେ ଲଘୁପତନକ ! ମିତ୍ର ଚିତ୍ରାଙ୍ଗ ! ଏହି ବ୍ୟାଧ ବନ ଅତିକ୍ରମ କରିବାପୂର୍ବରୁ ମନ୍ଥରର ଉଦ୍ଧାର ନିମନ୍ତେ କୌଣସି ଉପାୟ କରିବାକୁ ହେବ ।" ଚିତ୍ରାଙ୍ଗ ଓ ଲଘୁପତନକ ସତ୍ୱର ଉପାୟ ଉଦ୍ଭାବନ କରିବାପାଇଁ ତାହାକୁ ଅନୁରୋଧ କଲେ । ହିରଣ୍ୟକ କହିଲା, "ଚିତ୍ରାଙ୍ଗ ଅଗ୍ରସର ହୋଇ ଜଳାଶୟର କୂଳରେ ମୃତବତ୍ ନିଶ୍ଚେଷ୍ଟ ହୋଇ ପଡ଼ିରହୁ, ଲଘୁପତନକ ତାହାଉପରେ ବସି ଆପଣା ଥଣ୍ଟରେ ତାହାକୁ ଖୁମ୍ପୁଥାଉ । ମୃଗୟା-ମାଂସାର୍ଥୀ ବ୍ୟାଧ ଏହି ଦୃଶ୍ୟ ଦେଖିଲେ ନିଶ୍ଚୟ ମନ୍ଥରକୁ ପରିତ୍ୟାଗ କରି ସେହି ସ୍ଥାନକୁ ସତ୍ୱର ଗମନ କରିବ । ଏହି ଅବସରରେ ମୁଁ ଦନ୍ତରେ ରଜ୍ଜୁ କର୍ତ୍ତନ କରି ମନ୍ଥରର ବନ୍ଧନ ମୋଚନକରିବି; ବ୍ୟାଧ ତୁମ୍ଭଦୁହିଙ୍କର ସମୀପବର୍ତ୍ତୀ ହେଲେ ତୁମ୍ଭେମାନେ ସେଠାରୁ ପଳାୟନ କରିବ ।"

ହିରଣ୍ୟକ ପରାମର୍ଶ ଗ୍ରହଣ କରି, ଚିତ୍ରାଙ୍ଗ ଓ ଲଘୁପତନକ ଅଗ୍ରସର ହେଲେ, ଏବଂ କିୟଦ୍ଦୂରରେ ଗୋଟିଏ ଜଳାଶୟ ଦର୍ଶନକରି ଜଳର କୂଳରେ

ପରାମର୍ଶ ଅନୁଯାୟୀ କାର୍ଯ୍ୟ କଲେ । ଶ୍ରାନ୍ତ ଓ ତୃଷାତୁର ବ୍ୟାଧ ଜଳପାନ କରି ତରୁଚ୍ଛାୟାରେ ଉପବିଷ୍ଟ ହୋଇ ଏହି ଦୃଶ୍ୟ ଦେଖିଲା, ଏବଂ କଚ୍ଛପକୁ ଭୂମିରେ ସ୍ଥାପନ କରି ଅତି ଆନନ୍ଦରେ ମୃଗର ସମୀପବର୍ତ୍ତୀ ହେଲା । ଏଣେ ହିରଣ୍ୟକ ବନ୍ଧନରଜ୍ଜୁ କର୍ତ୍ତନ କରିବାରୁ ମନ୍ଥର ଅବିଳମ୍ବେ ଜଳାଶୟରେ ପ୍ରବେଶ କଲା, ବ୍ୟାଧକୁ ଆସନ୍ନ ଦେଖି ମୃଗ କ୍ଷିପ୍ରଗତିରେ ପଳାୟନକଲା । ତହୁଁ ଲୋଭୀ ବ୍ୟାଧ ନିରାଶହୋଇ ସ୍ୱଗୃହକୁ ପ୍ରତ୍ୟାଗମନ କଲା । ମନ୍ଥରାଦି ମିତ୍ରବନ୍ଧୁ ଏହିରୂପେ ଆପଦରୁ ମୁକ୍ତ ହୋଇ ପୂର୍ବବତ୍ତ୍ ମହାସୁଖରେ ସେହି ଅରଣ୍ୟରେ ବାସକଲେ ।

"ଧ୍ରୁବେ ତେଜି ଅଧ୍ରୁବରେ ଯେ ବଳାଏ ମତି,
ଧ୍ରୁବେ ସେ ହରାଏ, କାହିଁ ଅଧ୍ରୁବ ପ୍ରାପତି ?"

———

## ୭୯—ଯେଉଁ ବ୍ୟକ୍ତି ସମସ୍ତଙ୍କୁ ପ୍ରୀତ କରିବାକୁ ପ୍ରୟାସୀ ହୁଏ ସେ କାହାରି ପ୍ରୀତି ସମ୍ପାଦନ କରିପାରେ ନାହିଁ

ଗୋଟିଏ ଗ୍ରାମରେ ଜଣେ ବୃଦ୍ଧଲୋକର ଗୋଟିଏ ଗଧ ଥିଲା । ସେ ତାହାକୁ ବଜାରରେ ବିକ୍ରୟ କରିବା ନିମନ୍ତେ ତାହା ଉପରେ ଚଢ଼ି ଅଦୂରବର୍ତ୍ତୀ ନଗରକୁ ବାହାରିଲା । ବୃଦ୍ଧର ବାଳକ ପୁତ୍ର ପଶ୍ଚାତ୍ ପଶ୍ଚାତ୍ ଗମନ କଲା । ସ୍ୱଗ୍ରାମ ଅତିକ୍ରମ କରି ସେମାନେ ଅନ୍ୟ ଗୋଟିଏ ଗ୍ରାମ ମଧ୍ୟରେ ଯାଉଅଛନ୍ତି, ଏହି ସମୟରେ ମାର୍ଗ-ପାର୍ଶ୍ୱବର୍ତ୍ତିନୀ କେତେଗୁଡ଼ିଏ ବାଳିକା କହିଲେ "ଦେଖ ଦେଖ, ଏ ବାଳକଟି ଏଡ଼େ ଓଲୁ ଯେ ଗଧର ପିଠିରେ ନ ବସି ତାହା ପଛରେ ଚାଲି ଚାଲି ଯାଉଅଛି ।"

ଏହା ଶୁଣି ବୃଦ୍ଧ ପୁତ୍ରକୁ କହିଲା "ବାପା ! ଏମାନେ ଯାହା କହିଲେ ତାହା ସତ୍ୟ । ମୁଁ ଓହ୍ଲାଇ ଚାଲି ଚାଲି ଯାଉଅଛି, ତୁ ଏହା ଉପରେ ଚଢ଼ ।" ପିତା-ପୁତ୍ର କିଛିଦୂର ଅଗ୍ରସର ହେବାରୁ ପଥପାର୍ଶ୍ୱରେ ଉପବିଷ୍ଟ କତିପୟ ବୃଦ୍ଧଲୋକ ଏହି ଦୃଶ୍ୟ ଦେଖି ପରସ୍ପରକୁ କହିଲେ, "ଏ ଯୁଗର ଲକ୍ଷଣ ଦେଖିଲଣି, ବୁଢ଼ାମାନେ ଏବେ ଚାଲି ଚାଲି ଯିବେ, ପିଲାମାନେ ଯାନରେ ଚଢ଼ି ଯିବେ ।"

ବୃଦ୍ଧ ଲୋକମାନଙ୍କର ଏହି ମନ୍ତବ୍ୟ ଶୁଣି ପିତା ପୁତ୍ରକୁ କହିଲା, "ଶୀଘ୍ର ଓହ୍ଲାଇ ପଡ଼, ମୁଁ ଗଧ ପିଠିରେ ବସେ । ଏହି ବୁଢ଼ାମାନଙ୍କର ପରିହାସ ମୋତେ ବାଧୁଛି ।" ପିତାପୁତ୍ର ଆଉ କିଛିଦୂର ଅଗ୍ରସର ହୁଅନ୍ତେ ଜଣେ ପୌଢ଼ା ସ୍ତ୍ରୀଲୋକ ସେହି ବୃଦ୍ଧବ୍ୟକ୍ତିକୁ ସମ୍ବୋଧନ କରି କହିଲା "ହେ ବୁଢ଼ା ! ସ୍ୱୟଂ ଗଧ ଉପରେ ଚଢ଼ି

ବାଳକ ପୁତ୍ରକୁ ଚଲାଇ ଚଲାଇ ନେଉଅଛୁ ? ପିତାର ହୃଦୟ କି ଏଡ଼େ କଠୋର !"

ପୌଢ଼ାର ଏହି କଟୂକ୍ତି ଶୁଣି ପିତା ପୁତ୍ରକୁ କହିଲା "ବାପାରେ ! ତୁ ମୋ ପଛରେ ଏହି ଗଧ ଉପରେ ବସ ।" ପିତା-ପୁତ୍ର ଉଭୟେ ଗର୍ଦ୍ଦଭ ଆରୋହଣ କରି ନଗର-ପ୍ରାନ୍ତରେ ଉପସ୍ଥିତ ହେଲେ । ସେଠାରେ ଜଣେ ଯୁବା ପୁରୁଷ ଶ୍ଳେଷକଷାୟିତ କଟାକ୍ଷ ନିକ୍ଷେପ କରି କହିଲା "ତୁମ୍ଭମାନଙ୍କର ଏ କି ବ୍ୟବହାର, ଯୋଡ଼ାଏ ମନୁଷ୍ୟ ଗୋଟିଏ ଗଧ ଉପରେ ବସି ଯାଉଅଛ ?" ଏହା ଶୁଣି ବୃଦ୍ଧ କହିଲା, "ଆମ୍ଭେମାନେ ଏହାକୁ ବିକ୍ରୟ କରିବା ନିମନ୍ତେ ବଜାରକୁ ନେଉଅଛୁଁ ।" ଯୁବକ କହିଲା "ତୁମ୍ଭେମାନେ ଏ ପ୍ରାଣୀଟିକୁ ଏତେ ପୀଡ଼ା ଦେଲଣି; ବର୍ତ୍ତମାନ ତାହାକୁ ବହି ନେଇଯିବା ତୁମ୍ଭମାନଙ୍କର କର୍ତ୍ତବ୍ୟ ।"

ଯୁବକର ପ୍ରତିବାଦରେ ଆସ୍ଥା ପ୍ରଦର୍ଶନ କରି ପିତା-ପୁତ୍ର ଉଭୟେ ଗର୍ଦ୍ଦଭ ପୃଷ୍ଠରୁ ଅବତରଣ କଲେ । ପିତା ଖଣ୍ଡିଏ ସୁଦୃଢ଼ ବଂଶଦଣ୍ଡ ଓ ଦୁଇଖଣ୍ଡ ଦୃଢ଼ରଜ୍ଜୁ ସଂଗ୍ରହ କରି ରଜ୍ଜୁ ସାହାଯ୍ୟରେ ଗର୍ଦ୍ଦଭଟିକୁ ବଂଶ ଦଣ୍ଡରେ ଅତି ଦୃଢ଼ ରୂପେ ବନ୍ଧନ କଲା । ଅନନ୍ତର ପିତା ପୁତ୍ର ଦଣ୍ଡର ଗୋଟିଏ ଗୋଟିଏ ପ୍ରାନ୍ତ ଆପଣା ଆପଣା ସ୍କନ୍ଧରେ ସ୍ଥାପନ କରି ପଶୁଟିକୁ ଓହଳାଇ ବହନ କଲେ । କିୟତ୍ କ୍ଷଣପରେ ସେମାନେ ଗୋଟିଏ ସେତୁରେ ଉପସ୍ଥିତ ହେଲେ । ସେତୁଟି ସଂକୀର୍ଣ୍ଣ, ଦୁଇ ପାର୍ଶ୍ୱରେ ପକ୍କା ବାଡ଼ ଅଲୋଚ ଏବଂ ନିମ୍ନଦେଶରେ କ୍ଷୁଦ୍ରନଦୀଟିଏ ପ୍ରବାହିତ । ଗର୍ଦ୍ଦଭଭାର-ବାହୀ ପିତା-ପୁତ୍ର ସେତୁର ପ୍ରାୟ ମଧ୍ୟସ୍ଥଳରେ ପଦକ୍ଷେପ କରୁଅଛନ୍ତି ଏହି ସମୟରେ ବିପରୀତଗାମୀ ଖଣ୍ଡିଏ ଶକଟ ସହିତ ସେମାନଙ୍କର ଭେଟ ଓ ସଂଘର୍ଷ ହେଲା । ବୃଦ୍ଧ ଓ ତାହାର ପୁତ୍ର କଥଞ୍ଚିତ୍ ଆତ୍ମରକ୍ଷା କରିବାକୁ ସମର୍ଥ ହେଲେ । ମାତ୍ର ସେମାନଙ୍କର ଗର୍ଦ୍ଦଭଟି ସ୍ଖଳିତ ହୋଇ ନଦୀଗର୍ଭରେ ପତିତ ଓ ପଞ୍ଚତ୍ୱ-ପ୍ରାପ୍ତ ହେଲା ।

ବୃଦ୍ଧ କ୍ଷୁବ୍ଧ ଚିତ୍ତରେ କହିଲା, "ହାୟ ! ହାୟ ! ଯେଉଁ ବ୍ୟକ୍ତି ସଂସାରରେ ସମସ୍ତଙ୍କର ସନ୍ତୋଷ ବିଧାନରେ ପ୍ରୟାସୀ ହୁଏ ସେ କାହାର ମନରେ ସନ୍ତୋଷ ଜନ୍ମାଇ ପାରେ ନାହିଁ ; ପରନ୍ତୁ ସେ ପରିଣାମରେ କ୍ଷତିଗ୍ରସ୍ତ ହୁଏ ।"

---

## ୭୦—ଜତୁଗୃହ-ଦାହ

କୁରୁବଂଶୀୟ ରାଜା ବିଚିତ୍ରବୀର୍ଯ୍ୟଙ୍କର ଧୃତରାଷ୍ଟ୍ର ଓ ପାଣ୍ଡୁ ନାମରେ ଦୁଇ ତନୟ ଥିଲେ । ଜ୍ୟେଷ୍ଠ ଧୃତରାଷ୍ଟ୍ର ଜନ୍ମାନ୍ଧ ଥିବାରୁ ପିତାଙ୍କ ଅନ୍ତେ କନିଷ୍ଠ ପାଣ୍ଡୁ ସିଂହାସନ

ଆରୋହଣ କଲେ । ସାଧୁ ଓ ସର୍ବଜନପ୍ରିୟ ପାଣ୍ଡୁ କିଛୁକାଳ ରାଜ୍ୟ ଭୋଗକରି ରୁଗ୍ଣ ହୋଇ ଧୃତରାଷ୍ଟ୍ରଙ୍କ ଜୀବଦ୍ଦଶାରେ ପ୍ରାଣତ୍ୟାଗ କଲେ । ସେତେବେଳେ ତାହାଙ୍କର ଯୁଧିଷ୍ଠିରାଦି ପଞ୍ଚପୁତ୍ର ବୟଃପ୍ରାପ୍ତ ହୋଇ ନ ଥିବାରୁ ସେମାନେ ଜ୍ୟେଷ୍ଠତାତ ଧୃତରାଷ୍ଟ୍ରଙ୍କ ତତ୍ତ୍ୱାବଧାନରେ ରହିଲେ । ଧୃତରାଷ୍ଟ୍ର ଏମାନଙ୍କୁ ଓ ସ୍ୱପୁତ୍ର ଦୁର୍ଯୋଧନାଦିଙ୍କୁ ବାଲ୍ୟକାଳରେ ରାଜକୁଳୋଚିତ ଶିକ୍ଷା ଦେଲେ ।

ରାଜକୁମାରଙ୍କ ବୟସ କ୍ରମେ ଅଧିକ ହେଲା । ପାଣ୍ଡୁଙ୍କ ଜ୍ୟେଷ୍ଠପୁତ୍ର ଯୁଧିଷ୍ଠିର ବୟଃ-ପ୍ରାପ୍ତ ହେଲେ ରାଜ୍ୟର ଅଧିକାରୀ ହେବେ ଜାଣି, ଧୃତରାଷ୍ଟ୍ରଙ୍କ ଜ୍ୟେଷ୍ଠପୁତ୍ର ଦୁର୍ଯ୍ୟୋଧନ ଈର୍ଷାନ୍ୱିତ ହେଲା । ପାଣ୍ଡବମାନଙ୍କୁ ବିନାଶ କରି ପାରିଲେ ସ୍ୱୟଂ ରାଜ୍ୟ-ଲାଭ କରିପାରିବ, ଏଥିପାଇଁ ଦୁର୍ଯୋଧନ ସେମାନଙ୍କ ବିନାଶର ନାନା କୌଶଳ ଉଦ୍ଭାବନ କରିବାରେ ବ୍ରତୀ ହେଲା । ଖଳମତି ଏ ବିଷୟରେ ପିତା ଧୃତରାଷ୍ଟ୍ରଙ୍କୁ ନାନାପ୍ରକାର ଅନୁରୋଧ କଲେ ହେଁ ସେ ଦୁର୍ଯୋଧନର ପ୍ରସ୍ତାବ ଅନୁମୋଦନ କଲେ ନାହିଁ ।

ଦିନକରେ ଦୁର୍ଯ୍ୟୋଧନ ପିତାଙ୍କୁ କହିଲେ, "ଆପଣ କୌଣସି କୌଶଳରେ ପାଣ୍ଡବମାନଙ୍କୁ କିଛିକାଳ ନିମନ୍ତେ ବାରଣାବତ ନଗରକୁ ନିର୍ବାସନ କଲେ ଆମ୍ଭେମାନେ ରାଜ୍ୟର ଅମାତ୍ୟ, ସାମନ୍ତ ଓ ସେମାନଙ୍କୁ ଅର୍ଥଦାନ ପ୍ରଭୃତି ଦ୍ୱାରା ବଶୀଭୂତ କରି ପାଣ୍ଡବମାନଙ୍କୁ ଜୟ କରନ୍ତୁ ।" ଧୃତରାଷ୍ଟ୍ର ବିଜ୍ଞ ଓ ସଦାଶୟ ହେଲେ ହେଁ ପୁତ୍ରର ନିରନ୍ତର ଅନୁରୋଧରେ ଅବଶେଷରେ ଟଳିଗଲେ । ଦୁର୍ଯ୍ୟୋଧନର ପୂର୍ବ ପରାମର୍ଶ ଅନୁସାରେ ଦିନକରେ ରାଜସଭାରେ ଅନେକଗୁଡ଼ିଏ ସଭାସଦ୍ ବାରଣାବତ ନଗରର ବହୁ ପ୍ରଶଂସା କଲେ । ତାହା ଶୁଣି ମହାତ୍ମା ଯୁଧିଷ୍ଠିରଙ୍କର ମନରେ ସେହି ନଗର ଦର୍ଶନ କରିବାର ଅଭିଳାଷ ଜନ୍ମିଲା । ଏହି ସମୟରେ ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କୁ ସମ୍ବୋଧନ କରି କହିଲେ "ବତ୍ସ ! ବାରଣାବତନଗର ବହୁ ଜନାକୀର୍ଣ୍ଣ ପରମରମଣୀୟ । ଆମ୍ଭର ଇଚ୍ଛା, ତୁମ୍ଭେ ଜନନୀ ଓ ଭ୍ରାତାମାନଙ୍କୁ ସଙ୍ଗରେ ନେଇ ସେଠାରେ କିଛିକାଳ ବାସ କରି ଆନନ୍ଦ ଉପଭୋଗ କର ।" ବୁଦ୍ଧିମାନ୍ ଯୁଧିଷ୍ଠିର ଏହା ଶୁଣି ଖଳ ଦୁର୍ଯୋଧନରେ ଗୂଢ଼ ଅଭିସନ୍ଧି ଅନୁମାନ କରିପାରିଲେ । ମାତ୍ର, ଜ୍ୟେଷ୍ଠତାତଙ୍କର ଆଦେଶ-ପାଳନରେ ଅବହେଳା କରିବା ଅକର୍ତ୍ତବ୍ୟ ବୋଲି ଅଗତ୍ୟା ସେହି ପ୍ରସ୍ତାବରେ ସମ୍ମତ ହେଲେ ।

ପାଣ୍ଡବମାନଙ୍କର ବାରଣାବତଯାତ୍ରାର ଆୟୋଜନ ହେବାକୁ ଲାଗିଲା । ହସ୍ତିନାପୁରବାସୀ ଜନମାନେ ଦୁର୍ଯୋଧନର ଖଳ ଅଭିପ୍ରାୟ ବୁଝିପାରି ପାଣ୍ଡବମାନଙ୍କ ନିର୍ବାସନରେ ଗଭୀର ଦୁଃଖ ପ୍ରକାଶ କଲେ, ଏବଂ ଅନେକ ଭାବ ଗୋପନ କରି ନ ପାରି ଦୁର୍ଯୋଧନର ନିନ୍ଦାବାଦ କଲେ । ବିଜ୍ଞ, ବୁଦ୍ଧିମାନ ଓ ମହାମତି ବିଦୁର

ଦୁର୍ଯ୍ୟୋଧନର ଗୂଢ଼ ଚକ୍ରାନ୍ତର ଆଭାସ ସ୍ପଷ୍ଟରୂପେ ପାଇଥିଲେ । ନଗରବାସୀମାନେ ବହୁଦୂର ପର୍ଯ୍ୟନ୍ତ ପାଣ୍ଡବମାନଙ୍କ ସଙ୍ଗେ ସଙ୍ଗେ ଯାଇ ସେମାନଙ୍କୁ ବିଦାୟ ଦେଇ ବିଷଣ୍ଣ ମନରେ ବାହୁଡ଼ିଲାବେଳେ ସୁଚତୁର ବିଦୁର ଯୁଧିଷ୍ଠିରଙ୍କୁ ମ୍ଳେଚ୍ଛ ଭାଷାରେ ସଙ୍କେତ ଦ୍ୱାରା ଚକ୍ରାନ୍ତ ବିଷୟ କହିଲେ । ଯୁଧିଷ୍ଠିର ମଧ୍ୟ "ମୁଁ ବୁଝିଲି" ବୋଲି ସେହି ଭାଷାରେ ଉତ୍ତର ଦେଲେ । ବିଦୁର ସବୁ ଶେଷରେ ଯୁଧିଷ୍ଠିରଙ୍କୁ ଧୈର୍ଯ୍ୟଧାରଣ ଓ କେତେଗୁଡ଼ିଏ ଉପାୟ ଅବଲମ୍ବନ କରିବା ପାଇଁ ଉପଦେଶ ଦେଇ ହସ୍ତିନାକୁ ପ୍ରତ୍ୟାଗମନ କଲେ ।

ଦୁର୍ଯ୍ୟୋଧନ ତାହାର ଅନୁଗତ ପୁରୋଚନ-ନାମକ ଖଳ ଅମାତ୍ୟକୁ ବାରଣାବତକୁ ଅବିଳମ୍ବେ ପ୍ରେରଣ କରିଥିଲା । ପାଣ୍ଡବମାନଙ୍କର ସେହି ନଗରୀରେ ପ୍ରବେଶ ପୂର୍ବେ ସେ ସେଠାରେ ଉପସ୍ଥିତ ହୋଇ ଦୁର୍ଯ୍ୟୋଧନର ପରାମର୍ଶ ଅନୁସାରେ ସୁରମ୍ୟ ଅଟ୍ଟାଳିକାଟିଏ ଅତି ସତ୍ୱର ନିର୍ମାଣ କରାଇଲା । ଏହାର ଭିତ୍ତିରେ ସେ ଗୂଢ଼ କୌଶଳରେ ଘୃତ, ବସା, ଜତୁ ପ୍ରଭୃତି ଦାହ୍ୟ ବସ୍ତୁ ଲେପନ କରାଇଲା ।

ପାଣ୍ଡବମାନେ ବାରଣାବତରେ ପ୍ରବେଶ କରନ୍ତେ ନଗରବାସୀ ନାନା ଶ୍ରେଣୀର ସମ୍ଭ୍ରାନ୍ତ ଲୋକମାନେ ସେମାନଙ୍କୁ ପରମ ସମାଦରରେ ଗ୍ରହଣ କଲେ । ପାଣ୍ଡବମାନେ ଗୋଟିଏ ସୁରମ୍ୟ ହର୍ମ୍ମ୍ୟରେ ବାସକରି ବ୍ରାହ୍ମଣାଦି ପ୍ରଧାନ ନାଗରକ-ମାନଙ୍କର ଗୃହକୁ ଯାଇ ସେମାନଙ୍କ ସହିତ ଆଳାପ କଲେ, ଏବଂ ନଗରର ଶୋଭା ଦେଖି ମୋହିତ ହେଲେ । ପୁରୋଚନ ଜତୁଗୃହ ନିର୍ମ୍ମାଣ ଶେଷ କରି ତହିଁରେ ବାସ କରିବା ପାଇଁ ପାଣ୍ଡବମାନଙ୍କୁ ଆହ୍ୱାନ କଲା । ଯୁଧିଷ୍ଠିର ବିଦୁରଙ୍କ ସଙ୍କେତରୁ ଦୁର୍ଯ୍ୟୋଧନର ଚକ୍ରାନ୍ତ ଅବଗତ ହୋଇଥିଲେ ହେଁ କୌଣସି ଆପତ୍ତି ନ କରି ଜନନୀ ଓ ଭ୍ରାତାମାନଙ୍କ ସହିତ ପୁରୋଚନ-ନିର୍ଦ୍ଦିଷ୍ଟ ଗୃହରେ ବାସ କଲେ । ପାଣ୍ଡବମାନେ ମୃଗୟାଚ୍ଛଳରେ ନାନା ଅରଣ୍ୟାଦି ସ୍ଥାନରେ ଭ୍ରମଣ କରି ତତ୍‌ତତ୍ୟ ମାର୍ଗମାନଙ୍କରେ ଅଭିଜ୍ଞତା ଲାଭକଲେ ।

ପାଣ୍ଡବମାନେ ଜତୁଗୃହରେ କିଛିକାଳ ବାସକଲା ଉତ୍ତାରୁ ଜଣେ ଖନକ ମହାମତି ବିଦୁର କର୍ତ୍ତୃକ ପ୍ରେରିତ ହୋଇ ସେଠାରେ ଉପସ୍ଥିତ ହେଲା । ସେ ବିନୀତ ଭାବରେ ଯୁଧିଷ୍ଠିରଙ୍କୁ ପ୍ରଣାମ କରି ଆତ୍ମ ପରିଚୟ ଦେଇ ବିଦୁର-ନିର୍ଦ୍ଦିଷ୍ଟ ଉପାୟରେ ଯୁଧିଷ୍ଠିରଙ୍କର ପ୍ରତ୍ୟୟ ଜନ୍ମାଇଲା । ଅନନ୍ତର ବିଦୁରଙ୍କର ପରାମର୍ଶ ଓ ଯୁଧିଷ୍ଠିରଙ୍କ ଆଦେଶ ଅନୁସାରେ ସେ ଜତୁଗୃହର ମଧ୍ୟଭାଗରୁ ବହିର୍ଭୂତ ଦୂରବର୍ତ୍ତୀ ଗୋଟିଏ ସ୍ଥାନ ପର୍ଯ୍ୟନ୍ତ ସୁଦୃଢ଼ ଓ ପ୍ରଶସ୍ତ ସୁଡ଼ଙ୍ଗଟିଏ ଅତି ଗୋପନରେ ନିର୍ମାଣ କଲା । ଯୁଧିଷ୍ଠିର ଜତୁଗୃହ ମଧ୍ୟବର୍ତ୍ତୀ ସୁଡ଼ଙ୍ଗର ପ୍ରାନ୍ତକୁ ସୁକୌଶଳରେ ଆଚ୍ଛାଦନ କରି ରଖିଲେ । ପାଣ୍ଡବମାନେ ଦିବାଭାଗରେ ମୃଗୟାଚ୍ଛଳରେ ନାନା ସ୍ଥାନରେ ବିଚରଣ କରି ରାତିକାଳରେ ସୁଡ଼ଙ୍ଗ ମଧ୍ୟରେ ସାବଧାନ ହୋଇ ବାସ କରୁଥିଲେ ।

ପୁରୋଚନ ବସ୍ତ୍ରାନ୍ତେ କୃଷ୍ଣଚତୁର୍ଦ୍ଦଶୀ ନିଶୀଥରେ ଜତୁ-ଗୃହରେ ଅଗ୍ନିସଂଯୋଗ କରିବ, ବିଦୁର-ପ୍ରେରିତ ଏହି ସମ୍ବାଦ ଯୁଧିଷ୍ଠିରଙ୍କୁ ନିବେଦନ କରି ଖନକ ସେହି ବାରଣାବତ ନଗରୀରେ ଅବସ୍ଥାପନ କରିବାକୁ ଲାଗିଲା ।

ପୁରୋଚନ ଜତୁଗୃହର ସମୀପବର୍ତ୍ତୀ ଗୃହାନ୍ତରରେ ବାସ କରୁଥିଲା । ଏହି ଗୃହ ଦୁର୍ଯ୍ୟୋଧନର ଗୁପ୍ତ ଆୟୁଧାଗାର ଥିଲା । ପାଣ୍ଡବମାନେ ଜତୁଗୃହରେ ବାସ କରିବାକୁ ଅସମ୍ମତ ହେଲେ ଅଥବା ଜତୁଗୃହରେ ସେମାନଙ୍କ ପ୍ରାଣନାଶ ନ ହେଲେ ଅସ୍ତ୍ର ପ୍ରୟୋଗ କରି ସେମାନଙ୍କୁ ହତ୍ୟା କରିବା ପାଇଁ ପୁରୋଚନ ପ୍ରତି ଦୁର୍ଯ୍ୟୋଧନର ଗୁପ୍ତ ଆଦେଶ ଥିଲା । ପୁରୋଚନ ସୁଡ଼ଙ୍ଗ-ନିର୍ମାଣ ବିଷୟ ଆଦୌ ଜାଣିପାରିଲା ନାହିଁ । ସେ ପାଣ୍ଡବମାନଙ୍କୁ ଅତି ବିଶ୍ୱସ୍ତ ମନେ କରି ଅଗ୍ନିସଂଯୋଗ ପାଇଁ ନିର୍ଦ୍ଦିଷ୍ଟ କାଳର ଅପେକ୍ଷାରେ ଦିନଯାପନ କରିବାକୁ ଲାଗିଲା । ନିର୍ଦ୍ଦିଷ୍ଟ ଦିବସ ଉପସ୍ଥିତ ହେଲାରୁ କୁନ୍ତୀ ନଗରବାସୀ ଅନେକଗୁଡ଼ିଏ ବ୍ରାହ୍ମଣାଦି ପୁରୁଷ ଓ ସ୍ତ୍ରୀମାନଙ୍କୁ ନିମନ୍ତ୍ରଣ କରି ପ୍ରଚୁର ଖାଦ୍ୟପେୟ ଦ୍ୱାରା ସେମାନଙ୍କୁ ପରିତୃପ୍ତ କଲେ । ନଗରବାସୀମାନଙ୍କ ଭୋଜନାନ୍ତେ ଅପରିଚିତା ନିଷାଦୀଟିଏ ଆପଣାର ପଞ୍ଚପୁତ୍ର ସଙ୍ଗରେ ଘେନି ସେଠାରେ ଉପସ୍ଥିତ ହେଲା, ଏବଂ ସୁସ୍ୱାଦୁ ପଦାର୍ଥମାନ ଭୋଜନ କରି ଆପଣାର ଓ ପୁତ୍ରମାନଙ୍କର ଉଦର ପୂର୍ତ୍ତି କଲା । ସନ୍ଧ୍ୟା ଉତ୍ତାରେ ନିଷାଦୀ ଓ ତାହାର ପୁତ୍ରମାନେ ପ୍ରଚୁର ମଦ୍ୟପାନ କରି ଜତୁଗୃହ-ଭିତ୍ତିର ସମୀପରେ ଶୟନ କଲେ ।

କ୍ରମେ ନିଶୀଥକାଳ ସନ୍ନିହିତ ହେଲା । ପୁରୋଚନ ଦ୍ୱାରା ଜତୁଗୃହରେ ଅଗ୍ନି ସଂଯୋଗ ନ ହେଉଣୁ ଯୁଧିଷ୍ଠିରଙ୍କ ନିର୍ଦ୍ଦେଶ ଅନୁସାରେ ଭୀମ ଅଗ୍ରେ ପୁରୋଚନ ଗୃହର ଚତୁର୍ଦ୍ଦିଗରେ ସମ୍ୟକରୂପେ ଅଗ୍ନି ସଂଯୋଗ କରି ପଶ୍ଚାତ୍ ଜତୁଗୃହର ଚତୁର୍ଦ୍ଦିଗରେ ମଧ୍ୟ ଅଗ୍ନିପ୍ରୟୋଗ କଲେ । ଅନନ୍ତର ଜନନୀ ସହିତ ପାଣ୍ଡବମାନେ ଜତୁଗୃହର ଅଭ୍ୟନ୍ତରରେ ସୁଡ଼ଙ୍ଗରେ ପ୍ରବେଶ କରି ତାହାର ଅପର ପ୍ରାନ୍ତରେ ଗୁପ୍ତ ଭାବରେ ଉପସ୍ଥିତ ହେଲେ । କୃଷ୍ଣାଚତୁର୍ଦ୍ଦଶୀର ତାମସୀ ଛାୟାରେ ସେମାନେ ଅରଣ୍ୟମାର୍ଗରେ ଅଗ୍ରସର ହେବାକୁ ଲାଗିଲେ । ଜନନୀ ଓ ଭ୍ରାତାମାନଙ୍କୁ କ୍ଳାନ୍ତ ଓ ଅବସନ୍ନ ଦେଖି ମହାବଳ ଭୀମ ଜନନୀଙ୍କୁ ସ୍କନ୍ଧରେ ଓ ନକୁଳ ସହଦେବଙ୍କୁ ଦୁଇ କକ୍ଷରେ ସ୍ଥାପନ କରି ଏବଂ ଯୁଧିଷ୍ଠିର ଓ ଅର୍ଜ୍ଜୁନଙ୍କର ବାହୁ ଦୁଇ ହସ୍ତରେ ଧାରଣ କରି ବାୟୁବେଗରେ ବନଭୂମି ଅତିକ୍ରମ କରିବାକୁ ଲାଗିଲେ । ରଜନୀର ଶେଷ ଯାମରେ ସେମାନେ ଗଙ୍ଗାକୂଳରେ ଉପସ୍ଥିତ ହୋଇ କୌଶଳୀ ବିଦୁରଙ୍କ କର୍ତ୍ତୃକ ପ୍ରେରିତ କ୍ଷିପ୍ରଗତି ତରଣୀ ଆରୋହଣ କରି ନଦୀର ଅପର ତୀରରେ ଅବତୀର୍ଣ୍ଣ ହେଲେ । ତଦନନ୍ତର କୁନ୍ତୀ ଓ ପାଣ୍ଡବମାନେ ଛଦ୍ମବେଶରେ ଅଜ୍ଞାତ ଭାବରେ କିଛିକାଳ ଅରଣ୍ୟ ମଧ୍ୟରେ ବିଚରଣ କଲେ ।

ଜତୁଗୃହ ବହ୍ନିସଂଯୋଗରେ ପ୍ରଦୀପ୍ତ ହେଲାରୁ ନଗରବାସୀ ଲୋକମାନଙ୍କର ସେଠାରେ ମହତୀ ଜନତା ହେଲା । ପରଦିନ ପ୍ରାତଃକାଳରେ ଅଗ୍ନି ନିର୍ବାପନ ଉତ୍ତାରୁ ନିଷାଦୀ ଓ ତାହାର ପଞ୍ଚପୁତ୍ରର ଦଗ୍ଧ ଶରୀର ଦର୍ଶନ କରି ପୁରବାସୀମାନେ ସେଗୁଡ଼ିକ କୁନ୍ତୀ ଓ ପାଣ୍ଡବମାନଙ୍କର ଭସ୍ମୀଭୂତ ଶରୀର ବୋଲି ବିଚାର କରି ଅତିଶୟ ବିଳାପ କରିବାକୁ ଲଗିଲେ, ଏବଂ ଗୂଢ଼କର୍ମା ଖଳମତି ଦୁର୍ଯ୍ୟୋଧନର ଅଶେଷ ନିନ୍ଦାବାଦ କଲେ । ଜତୁଗୃହ ଦାହବୃତ୍ତାନ୍ତ କ୍ରମେ ହସ୍ତିନାପୁର ଓ ରାଜ୍ୟର ଅନ୍ୟାନ୍ୟ ସ୍ଥାନରେ ବ୍ୟାପିଗଲା, ଏବଂ ସର୍ବତ୍ର ଦୁର୍ଯ୍ୟୋଧନର ନିନ୍ଦା ବିଘୋଷିତ ହେଲା ।

———

## ୭୧—ଧର୍ମରାଜ ଯୁଧିଷ୍ଠିରଙ୍କର ମହାନୁଭବତା

ଶାନ୍ତନୁପୁତ୍ର ବିଚିତ୍ରବୀର୍ଯ୍ୟଙ୍କର ଧୃତରାଷ୍ଟ୍ର ଓ ପାଣ୍ଡୁ ଏହି ଦୁଇ ପୁତ୍ର ଥିଲେ । ଜ୍ୟେଷ୍ଠ ଧୃତରାଷ୍ଟ୍ର ଜନ୍ମାନ୍ଧ ଥିବାରୁ ପିତାଙ୍କର ପରଲୋକଗମନ ଉତ୍ତାରେ କନିଷ୍ଠ ପାଣ୍ଡୁ ହସ୍ତିନାର ସିଂହାସନ ଆରୋହଣ କଲେ । ଯୁଧିଷ୍ଠିର, ଭୀମ, ଅର୍ଜୁନ, ନକୁଳ, ସହଦେବ ପାଣ୍ଡୁଙ୍କର ଏହି ପାଞ୍ଚ ପୁତ୍ର ମଧ୍ୟରେ ଯୁଧିଷ୍ଠିର ଜ୍ୟେଷ୍ଠ ଥିଲେ । ସେ ଅତିଶୟ ସତ୍ୟବାଦୀ ଓ ନ୍ୟାୟପରାୟଣ ଥିବାରୁ ଲୋକେ ତାହାଙ୍କୁ ଧର୍ମରାଜ ଆଖ୍ୟା ପ୍ରଦାନ କରିଥିଲେ । ଧୃତରାଷ୍ଟ୍ରଙ୍କର ଦୁର୍ଯ୍ୟୋଧନ, ଦୁଃଶାସନ ପ୍ରଭୃତି ଶତପୁତ୍ର ଥିଲେ । ସେମାନଙ୍କ ମଧ୍ୟରେ ଦୁର୍ଯ୍ୟୋଧନ ଜ୍ୟେଷ୍ଠ । ସମସ୍ତେ କୁରୁବଂଶରେ ଜନ୍ମ ଗ୍ରହଣ କରିଥିଲେ ହେଁ ଯୁଧିଷ୍ଠିରାଦି ପଞ୍ଚଭ୍ରାତାଙ୍କୁ ପାଣ୍ଡବ ଏବଂ ଦୁର୍ଯ୍ୟୋଧନ ଓ ତାହାଙ୍କର ଅନେକତ ଭ୍ରାତାଙ୍କୁ କୌରବ ବୋଲାଯାଏ ।

ବାଲ୍ୟକାଳରେ ପାଣ୍ଡବ ଓ କୌରବମାନଙ୍କର ଶିକ୍ଷା ଏକତ୍ର ସମ୍ପାଦିତ ହୋଇଥିଲା । ଦ୍ରୋଣାଚାର୍ଯ୍ୟ ସେମାନଙ୍କର ସାଧାରଣ ଅସ୍ତ୍ର-ଗୁରୁ ଥିଲେ । ସମସ୍ତେ ସମରବିଦ୍ୟାରେ ନିପୁଣତା ଲାଭ କଲେ ହେଁ ଭୀମ ଗଦାଚାଳନାରେ ଓ ଅର୍ଜୁନ ଧନୁର୍ବିଦ୍ୟାରେ ସମ୍ୟକ୍ ପାରଦର୍ଶୀ ହେଲେ । କିୟତ୍‌କାଳ ପରେ ପାଣ୍ଡୁ ରୁଗ୍ଣ ହୋଇ ପ୍ରାଣତ୍ୟାଗ କରିବାରୁ ତାହାଙ୍କ ଜ୍ୟେଷ୍ଠପୁତ୍ର ଯୁଧିଷ୍ଠିର ସିଂହାସନ ଆରୋହଣ କଲେ । ଏଥିରେ ଦୁର୍ଯ୍ୟୋଧନଙ୍କର ଈର୍ଷାନଳ ପ୍ରଜ୍ଜ୍ୱଳିତ ହେଲା । ଧୃତରାଷ୍ଟ୍ର ଜ୍ୟେଷ୍ଠ ହେଲେ ହେଁ ଜନ୍ମାନ୍ଧ ବୋଲି ରାଜତ୍ୱରୁ ବଞ୍ଚିତ ହୋଇଥିଲେ । ମାତ୍ର ଦୁର୍ଯ୍ୟୋଧନ ଅନ୍ଧ ନ ଥିବାରୁ ପାଣ୍ଡୁଙ୍କ ଅନ୍ତେ ରାଜା ହେବାର ଅଭିଳାଷ ପୋଷଣ କରିଥିଲେ । ବର୍ତ୍ତମାନ ସେହି ଅଭିଳାଷ ପୂର୍ତ୍ତି ନ ହେବାରୁ ସେ

ପାଣ୍ଡବମାନଙ୍କର ପ୍ରାଣନାଶ କରିବାପାଇଁ ନାନା ଷଡ଼ଯନ୍ତ୍ର କଲେ । ସେଥିରେ ତାହାଙ୍କର ଯତ୍ନ ବିଫଳ ହେବାରୁ କପଟପାଶାରେ ଯୁଧିଷ୍ଠିରଙ୍କୁ ହରାଇ ତାଙ୍କଠାରୁ ରାଜ୍ୟ ଓ ସମସ୍ତ ସମ୍ପତ୍ତି ନେଲେ । ଶେଷଥର କ୍ରୀଡ଼ାରେ ହାରି ଯୁଧିଷ୍ଠିର ପଣ ଅନୁସାରେ ଦ୍ରୌପଦୀ ଓ ଭ୍ରାତାମାନଙ୍କ ସହିତ ବନବାସ କଲେ ।

ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କୁ ନାନାପ୍ରକାରେ ଅପମାନ ଓ ସେମାନଙ୍କ ପ୍ରତି ଅତ୍ୟାଚାର କଲେ ହେଁ ଯୁଧିଷ୍ଠିର ଧୈର୍ଯ୍ୟ ଧରି ସମସ୍ତ ସହ୍ୟକଲେ । ସେ କେବେହେଁ ପ୍ରତିହିଂସା ବା ଅନ୍ୟାୟ ଆଚରଣ କଲେ ନାହିଁ, କିମ୍ବା ସତ୍ୟରୁ ଭ୍ରଷ୍ଟ ହେଲେ ନାହିଁ ।

ଏକଦା ଦୁର୍ଯ୍ୟୋଧନଙ୍କର ଅନୁଗାମୀ ସୈନ୍ୟମାନେ ଗନ୍ଧର୍ବରାଜ ଚିତ୍ରସେନଙ୍କ ଦ୍ୱୈତବନ ନାମକ ସୁରକ୍ଷିତ ମନୋହର ଉଦ୍ୟାନର ବସ୍ତୁ କ୍ଷତ କରିବାରୁ ଗନ୍ଧର୍ବ-ରାଜ କୁପିତ ହୋଇ ଦୁର୍ଯ୍ୟୋଧନଙ୍କ ସହିତ ଯୁଦ୍ଧ କଲେ । ପରିଣାମରେ ଦୁର୍ଯ୍ୟୋଧନ ଭ୍ରାତାମାନଙ୍କ ସହିତ ପରାଜିତ ଓ ବନ୍ଦୀ ହେଲେ । ସେତେବେଳେ ବନବାସୀ ପାଣ୍ଡବମାନେ ଦ୍ରୋପଦୀଙ୍କ ସହିତ ସମୀପବର୍ତ୍ତୀ ଅରଣ୍ୟରେ ବାସ କରୁଥିଲେ । ଦୁର୍ଯ୍ୟୋଧନଙ୍କର ଅମାତ୍ୟମାନେ ବାଷ୍ପାକୁଳ ନେତ୍ରରେ ଯୁଧିଷ୍ଠିରଙ୍କ ଶରଣାପନ୍ନ ହୋଇ କୌରବ ମାନଙ୍କର ଉଦ୍ଧାର ପ୍ରାର୍ଥନା କଲେ ।

ଦୁର୍ଯ୍ୟୋଧନର ଦୁର୍ଦ୍ଦଶା ଶ୍ରବଣ କରି ଭୀମ ଆନନ୍ଦିତ ହୋଇ କହିଲେ, "ଖଳମତି ଦୁର୍ଯ୍ୟୋଧନ ସ୍ୱକର୍ମର ଉପଯୁକ୍ତ ଫଳ ପ୍ରାପ୍ତ ହୋଇଅଛି । କିଛିକାଳ ପରେ ଆମ୍ଭ-ମାନଙ୍କୁ ଯେଉଁ କାର୍ଯ୍ୟ କରିବାକୁ ହୁଅନ୍ତା, ଆଜି ଗନ୍ଧର୍ବରାଜ ଚିତ୍ରସେନ ସେହି କାର୍ଯ୍ୟ ସମ୍ପାଦନ କରି ଆମ୍ଭମାନଙ୍କର ପରିଶ୍ରମର ଲାଘବ କରିଅଛନ୍ତି । ଯେଉଁ ଦୁରାଚାର ଦ୍ରୌପଦୀଙ୍କୁ ଅପମାନ ଓ ଆମ୍ଭମାନଙ୍କୁ ନାନାପ୍ରକାର କଷ୍ଟ ଦେଇଅଛି, ତାହାକୁ ବିପଦରୁ ଉଦ୍ଧାର କରିବା ଉଚିତ କି ?"

ମହାମତି ଯୁଧିଷ୍ଠିର ଭୀମଙ୍କୁ ଶାସନକରି କହିଲେ "ଅନ୍ୟର ବିପଦରେ ଆନନ୍ଦିତ ହେବା କେବେ ହେଁ ଉଚିତ ନୁହେଁ । ଦୁର୍ଯ୍ୟୋଧନ ଆମ୍ଭମାନଙ୍କ ପ୍ରତି ମନ୍ଦ ବ୍ୟବହାର କଲେହେଁ ଆମ୍ଭମାନଙ୍କର ଆତ୍ମୀୟ ଅଟେ । ଗନ୍ଧର୍ବମାନେ ଆମ୍ଭମାନଙ୍କ ଆତ୍ମୀୟମାନଙ୍କର ଅନିଷ୍ଟ କରି ଆଜି ଆମ୍ଭମାନଙ୍କର ଶତ୍ରୁ । ଶତ୍ରୁ ହସ୍ତରୁ ଆତ୍ମୀୟ-ମାନଙ୍କୁ ରକ୍ଷାକରିବା ଆମ୍ଭମାନଙ୍କର କର୍ତ୍ତବ୍ୟ ଅଟେ । ଆମ୍ଭେ ଯଜ୍ଞକର୍ମରେ ବ୍ୟାପୃତ ନ ଥିଲେ ସ୍ୱୟଂ ଯାଇ ଏହିକାର୍ଯ୍ୟ ସାଧନ କରନ୍ତୁ ।"

ଯୁଧିଷ୍ଠିରଙ୍କର ସୁଯୁକ୍ତି ଶୁଣି ତାହାଙ୍କର ଆଦେଶ ପାଳନ କରିବାପାଇଁ ଅର୍ଜ୍ଜୁନ ଉଦ୍ୟତ ହେଲେ । ଏଥିରେ ଦୁର୍ଯ୍ୟୋଧନଙ୍କ ଅମାତ୍ୟମାନେ ଆଶ୍ୱସ୍ତ ହୋଇ ତାହାଙ୍କର ଅନୁଗମନ କଲେ । ଅର୍ଜ୍ଜୁନ ଯୁଦ୍ଧରେ ଗନ୍ଧର୍ବରାଜଙ୍କୁ ପରାସ୍ତ କରି ଦୁର୍ଯ୍ୟୋଧନ ଓ ତାହାଙ୍କ ସହୋଦରମାନଙ୍କୁ ଉଦ୍ଧାର କଲେ ।

ଦୁର୍ଯ୍ୟୋଧନ ଏବଂ ତାହାଙ୍କ ଭ୍ରାତାମାନେ ପାଣ୍ଡବମାନଙ୍କର ନାନାପ୍ରକାର ଅପମାନ ଓ ଅନିଷ୍ଟ କରିଥିଲେହେଁ ବିପଦ୍‌କାଳରେ ଯୁଧିଷ୍ଠିର ସେମାନଙ୍କର ସହାୟ ହୋଇ ସେମାନଙ୍କୁ ବିପଦରୁ ଉଦ୍ଧାର କଲେ । ଅପକାରୀର ଉପକାର କରି ଯୁଧିଷ୍ଠିର ଅସାଧାରଣ ମହାନୁଭବତାର ଆଦର୍ଶ ରଖିଯାଇଅଛନ୍ତି ।

———

## ୭୨—ହଂସକୂର୍ମ୍ମ ଉପାଖ୍ୟାନ

ମଗଧ ଦେଶରେ ଫୁଲ୍ଲୋତ୍ପଳ ନାମରେ ଗୋଟିଏ ପୁଷ୍କରଣୀ ଅଛି । ଯୋଡ଼ିଏ ରାଜହଂସ ବହୁକାଳରୁ ତହିଁରେ ବାସ କରୁଥିଲେ । ସେମାନଙ୍କର ମିତ୍ର କମ୍ବୁଗ୍ରୀବନାମକ କୂର୍ମ୍ମ ମଧ୍ୟ ସେହି ଜଳାଶୟରେ ବାସ କରୁଥିଲା । ଏକଦା ସନ୍ଧ୍ୟା ସମୟରେ କତିପୟ ଧୀବର ସେହି ପୁଷ୍କରଣୀ-କୂଳରେ ଉପସ୍ଥିତ ହୋଇ ପରାମର୍ଶ କରିବାକୁ ଲାଗିଲେ "ଆଜି ଏହିଠାରେ ରାତ୍ରିଯାପନ କରି ପ୍ରାତଃକାଳରେ ଏହି ଜଳାଶୟର ମତ୍ସ୍ୟକୂର୍ମ୍ମାଦି ଧରିବା ।"

ଧୀବରମାନଙ୍କର ଏହି ପରାମର୍ଶ ଶୁଣି କୂର୍ମ୍ମଟି ଅଶଙ୍କାକୁଳ ହେଲା ଏବଂ ଆପଣାର ମିତ୍ର ହଂସଦ୍ୱୟ ସମୀପରେ ଉପସ୍ଥିତ ହୋଇ ଏହି ବୃତ୍ତାନ୍ତ ସେମାନଙ୍କୁ ନିବେଦନ କରି ପଚାରିଲା "ମିତ୍ରମାନେ ! କି ଉପାୟରେ ବର୍ତ୍ତମାନ ମୁଁ ଆତ୍ମରକ୍ଷା କରିବି ?" ହଂସଦ୍ୱୟ କହିଲେ "ବିପଦ ଉପସ୍ଥିତ ହେଲେ ଶୀଘ୍ର ତାହାର ଉପାୟ ନିର୍ଦ୍ଧାରଣ କରିବାକୁ ହେବ ।"

ଏହାଶୁଣି କଚ୍ଛପ କହିଲା "ବିପଦ ଅନିବାର୍ଯ୍ୟ । ପୂର୍ବରୁ ଆତ୍ମରକ୍ଷା କରିବା କର୍ତ୍ତବ୍ୟ ଅଟେ । ବର୍ତ୍ତମାନ ମୁଁ ଅନ୍ୟ ଜଳାଶୟକୁ କପରି ପ୍ରସ୍ଥାନ କରିବି, ସେ ଉପାୟ କହିବାହେଉ ।" ହଂସଦ୍ୱୟ କହିଲେ ଅନ୍ୟ ଜଳାଶୟକୁ ଗଲେ ତୁମ୍ଭର ମଙ୍ଗଳ ହେବ, ଏଥିରେ ସନ୍ଦେହ ନାହିଁ । ମାତ୍ର ମଧ୍ୟରେ ଯେଉଁ ସ୍ଥଳବ୍ୟବଧାନ ଅଛି ତାହା ଅତିକ୍ରମ କରିବ କପରି ?" କୂର୍ମ୍ମ ପ୍ରଶ୍ନକଲା "ତୁମ୍ଭେମାନେ ମୋତେ ଆକାଶ ମାର୍ଗରେ ନେଇ ପାରିବ ନାହିଁ ? ହଂସଦ୍ୱୟ କହିଲେ "ଆକାଶ ମାର୍ଗରେ ତୁମ୍ଭକୁ କପରି ନେଇଯିବୁ ?"

କୂର୍ମ୍ମ କହିଲା "ହେ ମିତ୍ରମାନେ ! କୌଣସି ଉପାୟ ନାହିଁ କି ? ଆଚ୍ଛା, ତୁମ୍ଭେ ଦୁହେଁ ଖଣ୍ଡିଏ କାଷ୍ଠର ଦୁଇ ପ୍ରାନ୍ତକୁ ସ୍ୱ ସ୍ୱ ଚଞ୍ଚୁରେ ଯଦି ଧର, ମୁଁ ମଧ୍ୟ ଭାଗରେ ରହି ଆପଣା ମୁଖରେ ସେହି କାଷ୍ଠ ଖଣ୍ଡ ଅବଲମ୍ବନ କରିବି । ଏହି ଉପାୟରେ ତ ତୁମ୍ଭେମାନେ ମୋତେ ଆକାଶ ମାର୍ଗରେ ନେଇଯାଇ ପାରିବ ?"

ହଂସଦ୍ୱୟ କହିଲେ "ହଁ, ଏହା ସମ୍ଭବ ଅଟେ । ମାତ୍ର ଏଥିରେ ବିପଦ ଅଛି । ଆକାଶ ମାର୍ଗରେ ଯାଉଁ ଯାଉଁ କୌଣସି କାରଣରୁ ତୁମ୍ଭେ ଯଦି ମୁଖବ୍ୟାଦାନ କର, ତାହା ହେଲେ ତୁମ୍ଭର ଅଧଃପାତ ଓ ମୃତ୍ୟୁ ଅନିବାର୍ଯ୍ୟ ।"

କୂର୍ମ କହିଲା "ତୁମ୍ଭେମାନେ କି ମନେକରିଅଛ ମୁଁ ଏଡ଼େ ମୂର୍ଖ ଯେ ସେପରି ଅବସ୍ଥାରେ ମୁଖବ୍ୟାଦାନ କରିବି । ବର୍ତ୍ତମାନ କାଳ ବିଳମ୍ବ ନ କରି ଅନ୍ୟ ଗୋଟିଏ ବୃହତ୍ ଜଳାଶୟକୁ ମୋତେ ନେଇଯାଅ ।" ରାଜହଂସଦ୍ୱୟ କୂର୍ମର ଅନୁରୋଧରେ ତତ୍‌କର୍ତ୍ତୃକ ଉଦ୍ଭାବିତ ଉପାୟରେ ତାହାକୁ ଆକାଶ-ମାର୍ଗରେ ଘେନିଯିବାକୁ ଲାଗିଲେ । ଏହି ଅଭିନବ ଦୃଶ୍ୟ ଦେଖି ଗୋରକ୍ଷକମାନେ ସ୍ଥଳରେ ହଂସ-କୂର୍ମର ଅନୁଧାବନ କଲେ ।

ଜଣେ ରଖୁଆଳ କହିଲା "ଦେଖ ହୋ ହୋ ହୋ ! କୂର୍ମମାନେ ବି ଏବେ ଉଡ଼ିଲେଣି ।" ଆଉ ଜଣେ ରଖୁଆଳ କହିଲା "କୂର୍ମଟା ପଡ଼ିଯାନ୍ତା କି, ତାହାକୁ ଏହିଠାରେ ସିଝାଇ ଭୋଜନ କରନ୍ତୁ ।" ତୃତୀୟ ଗୋରକ୍ଷକ କହିଲା, "ଏହାକୁ ନେଲେ ଏଥିରେ ସୁଖାଦ୍ୟ ପ୍ରସ୍ତୁତ ହୋଇପାରିବ ।" ଅପର ଜଣେ କହିଲା "ଏହି-ଠାରେ ନିଆଁ କରି ଏହାକୁ ପୋଡ଼ି ଭୋଜନ କରିବା ।"

ଗୋରକ୍ଷକମାନଙ୍କ କଥୋପକଥନରେ କୂର୍ମଟି କ୍ରୋଧାନ୍ଧ ଏବଂ ପୂର୍ବ ସଂକଳ୍ପ ବିସ୍ମୃତ ହୋଇ ମୁଖ ବ୍ୟାଦାନପୂର୍ବକ କହିଲା "ରେ ମୂର୍ଖଗୁଡ଼ାକ ! ତୁମ୍ଭେମାନେ ମୋତେ ଖାଇବ ? ପାଉଁଶ ଖାଅ ।" ମୁଖବ୍ୟାଦାନ କରି ଏହି କଥା କହିଲା ମାତ୍ରେ କୂର୍ମଟି କାଷ୍ଠ ଖଣ୍ଡରୁ ଭୂତଳରେ ପତିତ ଏବଂ ଗୋରକ୍ଷକମାନଙ୍କ କର୍ତ୍ତୃକ ଧୃତ ହେଲା ।

---

## ୭୩—ବକ କୁଳୀରକ ଉପାଖ୍ୟାନ

ବିନ୍ଧ୍ୟାଚଳ ନିକଟରେ ଗୋଟିଏ ସୁବିସ୍ତୀର୍ଣ୍ଣ ସରୋବର ଅଛି । ସେଥିରେ ଗୋଟିଏ ବୃଦ୍ଧ ବକ ବାସ କରୁଥିଲା । ବାର୍ଦ୍ଧକ୍ୟ ବଶତଃ ମତ୍ସ୍ୟାଦି ଧରିବାକୁ ସାମର୍ଥ୍ୟ ଊଣା ହେବାରୁ ସେ ଦିନକରେ କ୍ଷୁତ୍‌ପୀଡ଼ିତ ହୋଇ ସରୋବର କୂଳରେ ରୋଦନ କରିବାକୁ ଲାଗିଲା । ବକର ଏହି ଦଶା ଦେଖି ଗୋଟିଏ କୁଳୀରକ ଏବଂ ଅନେକ ଗୁଡ଼ିଏ ଅପର ଜଳଚର ଜୀବ ତାହାର ସମୀପସ୍ଥ ହୋଇ ପଚାରିଲେ ମାତୁଳ ! ତୁମ୍ଭେ ଆହାର ପରିତ୍ୟାଗ କରି କି ହେତୁରୁ ଅଦ୍ୟ ଏପରି ରୋଦନ କରୁଅଛ ?"

ବୃଦ୍ଧ ବକ କହିଲା "ଯଥାର୍ଥ ଅନୁମାନ କରିଅଛ, ଆମ୍ଭେ ମତ୍ସ୍ୟାଶୀ, ବୈରାଗ୍ୟ ହେତୁରୁ ଅଧୁନା ଅନଶନ ବ୍ରତ ଅବଲମ୍ବନ କରିଅଛୁଁ । ସେଥିପାଇଁ ସମୀପବର୍ତ୍ତୀ

ମତ୍ସ୍ୟମାନଙ୍କୁ ସୁଦ୍ଧା ସ୍ପର୍ଶ କରୁନାହୁଁ ।" ଏହାଶୁଣି କୁଳୀରକ ବିସ୍ମିତ ହୋଇ ପଚାରିଲା, "ତୁମ୍ଭର ବୈରାଗ୍ୟର କାରଣ କଣ ?" ବକ କହିଲା, "ବନ୍ଧୁ ! ମୁଁ ଏହି ସରୋବରରେ ଜନ୍ମଲାଭ କରି ଏବେ ଆସି ବୃଦ୍ଧ ହେଲି, ସମ୍ପ୍ରତି ଦୈବଜ୍ଞଠାରୁ ଅବଗତ ହେଲି ଯେ ଏଠାରେ ଦ୍ୱାଦଶ ବର୍ଷ ବ୍ୟାପୀ ଅନାବୃଷ୍ଟି ହେବ । ଯେଉଁ-ମାନଙ୍କ ସହବାସରେ ଏହି ସରୋବରରେ ଏତେକାଳ କଟାଇ ଆସିଲି, ଜଳ ଶୁଷ୍କ ହେଲେ ସେମାନେ ପଞ୍ଚତ୍ୱପ୍ରାପ୍ତ ହେବେ, ଏହି ଚିନ୍ତା ମୋ ମନରେ ବୈରାଗ୍ୟ ଜନ୍ମାଇ ଅଛି । ମକର ଜଳହସ୍ତୀ ପ୍ରଭୃତି ପ୍ରାଣୀମାନେ ସ୍ୱୟଂ ସ୍ୱଜନସହ ବୃହତ୍ତର ଜଳାଶୟକୁ ପ୍ରସ୍ଥାନ କଲେଣି । କିନ୍ତୁ କି ମତ୍ସ୍ୟମାନେ ଅଦ୍ୟାପି ନିଶ୍ଚିନ୍ତ ହୋଇ ରହିଅଛନ୍ତି ।

ତଦନନ୍ତର କୁଳୀରକ ଅନ୍ୟ ଜଳଚରମାନଙ୍କୁ ଭାବୀ ଅନିଷ୍ଟପାତ ନିବେଦନ କଲା । ଏଥିରେ ମତ୍ସ୍ୟ, କଚ୍ଛପ ପ୍ରଭୃତି ଜଳଚରମାନେ ଭୟବ୍ୟାକୁଳ ହୋଇ ପ୍ରଶ୍ନ କଲେ "ମାତୁଳ ! ଆମ୍ଭମାନଙ୍କ ଉଦ୍ଧାରର କି କୌଣସି ଉପାୟ ନାହିଁ ?" ବକ ଉତ୍ତର କଲା "ଏହି ଜଳାଶୟର ଅନତି ଦୂରରେ ଅତି ବୃହତ୍ତର ଅପର ଜଳାଶୟ ବିଦ୍ୟମାନ । ଚତୁର୍ବିଂଶବର୍ଷ ଅନାବୃଷ୍ଟି ହେଲେ ସୁଦ୍ଧା ସେ ଜଳାଶୟ ଶୁଷ୍କ ହେବାର ଆଶଙ୍କା ନାହିଁ । ଯଦି କେହି ମୋର ପୃଷ୍ଠରେ ଆରୋହଣ କରେ ତେବେ ମୁଁ କ୍ଳେଶ ସ୍ୱୀକାର-ପୂର୍ବକ ତାହାକୁ ନେଇ ସେହି ଜଳାଶୟରେ ଛାଡ଼ିବ ।"

ଏହା ଶୁଣି ଆଶ୍ୱସ୍ତ ହୋଇ ଯାବତୀୟ ଜଳଚର ପ୍ରାଣୀ ବକକୁ ପରିବେଷ୍ଟନ କରି, ମୋତେ ଆଗେ ନିଅ, ମୋତେ ଆଗେ ନିଅ କହି ଉଦ୍‌ବେଗ ପ୍ରଦର୍ଶନ କଲେ । ଦୁରାଶୟ ବକ ସେମାନଙ୍କ ମଧ୍ୟରୁ ଗୋଟିଏ ଗୋଟିଏ ନେଇ ନାତିଦୂରବର୍ତ୍ତୀ ଶିଳାଖଣ୍ଡ ଉପରେ ନିକ୍ଷେପପୂର୍ବକ ପ୍ରାଣ ନାଶ କରି ସେମାନଙ୍କୁ ଭକ୍ଷଣ କରିବାକୁ ଲାଗିଲା ।

ଏହିରୂପେ ଜଳଚରମାନଙ୍କର ମନୋରଞ୍ଜନ କରି ଧୂର୍ତ୍ତବକ ଗୂଢ଼ କୌଶଳରେ ପ୍ରତିଦିନ ଆହାରବୃତ୍ତି ବିଧାନ କଲା । ତଦନନ୍ତର ଦିନକରେ କୁଳୀରକ କହିଲା, "ମାତୁଳ ! ମୋ ସହିତ ତୁମ୍ଭର ପ୍ରଥମ ସ୍ନେହସମ୍ଭାଷଣ ହେଲା, ମାତ୍ର ତୁମ୍ଭେ ମୋ କଥା ବିସ୍ମୃତ ହୋଇ ଅନ୍ୟ ଜଳଚରମାନଙ୍କୁ ନିରାପଦ କରି ରଖୁଅଛ । ଆଜି ମୋହର ପାଳି ପଡ଼ୁ ।" ଏହା ଶୁଣି ବକ ଭାବିଲା "ମତ୍ସ୍ୟ-ଭକ୍ଷଣରେ ଆମ୍ଭର ତୃପ୍ତି ଜନ୍ମିଲାଣି, ଅଦ୍ୟ କର୍କଟମାଂସର ସ୍ୱାଦ ଅନୁଭବ କରିବାକୁ ହେବ ।" ଏହି ବିଚାର କରି ସେ କୁଳୀରକର ପ୍ରସ୍ତାବରେ ସମ୍ମତ ହୋଇ ଆପଣା ପୃଷ୍ଠରେ ତାହାକୁ ସ୍ଥାପନକରି ଆକାଶ-ମାର୍ଗରେ ଗମନକଲା ।

ବକ ଉଦ୍ଦେଶ୍ୟ ଶିଳାର ସମୀପବର୍ତ୍ତୀ ହେଲାରୁ କୁଳୀରକ ଉପରୁ ମତ୍ସ୍ୟାସ୍ଥି ଚାହିଁପାରି ପ୍ରଶ୍ନକଲା, "ମାତୁଳ ! ଆଉ କେତେଦୂର ଗଲେ ସେହି ଜଳାଶୟ ପ୍ରାପ୍ତ ହେବୁଁ ? ମୋହର ଶରୀରଭାର ତୁମ୍ଭଙ୍କୁ ବାଧିବଣି ।" ଦୁଷ୍ଟବୁଦ୍ଧି ବକ ଭାବିଲା

ଏ ଜଳଚର ଜୀବ, ସ୍ଥଳରେ ସାମର୍ଥ୍ୟ-ହୀନ ।” ଅନନ୍ତର ସେ ଈଷତ୍ ହାସ୍ୟ କରି କହିଲି “ରେ ବରାକ ! ଜଳାଶୟ କାହିଁ ? ଏହା ମୋର ଜୀବନୋପାୟ ଅଟେ । ବର୍ତ୍ତମାନ ତୋର ଇଷ୍ଟଦେବଙ୍କୁ ସ୍ମରଣ କର, ତୋହର ମୃତ୍ୟୁ ଆସନ୍ନ ।” ଏହା ଶୁଣିଲାକ୍ଷଣି କୁଳୀରକ ଦଶନ-ସନ୍ଦଂଶରେ ବକର ମୃଣାଳଧବଳ ମୃଦୁ ଗ୍ରୀବାକୁ କର୍ତ୍ତନ କଲା ।



## ୭୪—ସମ୍ରାଟ୍ ହୁମାୟୁନ୍ ଓ ଭିସ୍ତିର କଥା

ବାବର ଭାରତବର୍ଷରେ ପ୍ରଥମେ ମୋଗଲ ଅଧିକାର ସ୍ଥାପନକଲେ । ତାହାଙ୍କ ପୁତ୍ର ହୁମାୟୁନ୍ ଏ ଦେଶରେ ଦ୍ୱିତୀୟ ମୋଗଲ ସମ୍ରାଟ୍ ଅଟନ୍ତି । ହୁମାୟୁନ୍ ଶବ୍ଦର ଅର୍ଥ ଭାଗ୍ୟବାନ୍ ; ମାତ୍ର ପ୍ରଥମ ଛଅଜଣ ମୋଗଲ ସମ୍ରାଟ ମଧ୍ୟରେ ତାଙ୍କପରି ହତଭାଗ୍ୟ ଆଉ କେହି ନ ଥିଲେ । ହୁମାୟୁନଙ୍କ ସ୍ୱଦୋଷ ଏହି ଭାଗ୍ୟ-ବିପର୍ଯ୍ୟୟର କାରଣ ଅଟେ । ତାହାଙ୍କର ଅସୀମ ସାହସ ଓ ଦୟାଳୁତା ପ୍ରଶଂସାର ଯୋଗ୍ୟ । ମାତ୍ର ଆଳସ୍ୟ ଓ ଭୋଗବିଳାସିତା ତାହାଙ୍କର ଜୀବନକୁ କଳୁଷିତ କରିଥିଲା ।

ପୁତ୍ରବତ୍ସଳ ବାବରଙ୍କର ଚାରିଗୋଟି ପୁତ୍ରଥିଲେ । ହୁମାୟୁନ ସେମାନଙ୍କ ମଧ୍ୟରେ ଜ୍ୟେଷ୍ଠ । ବର୍ଣ୍ଣିତଅଛି ବାବର ସ୍ୱୀୟ ପ୍ରାଣ ଉତ୍ସର୍ଗକରି ଜ୍ୟେଷ୍ଠ ପୁତ୍ରକୁ ଦୁରାରୋଗ୍ୟ ରୋଗରୁ ଯେପରି ମୁକ୍ତ କରିଥିଲେ, ଇତିହାସରେ ତାହାର ପଟାନ୍ତର ଦୃଷ୍ଟିଗୋଚର ହୁଏ ନାହିଁ । “ବତ୍ସ ! ମୋହର ମୃତ୍ୟୁପରେ ତୁମ୍ଭେ ସ୍ୱୀୟ ଭ୍ରାତାମାନଙ୍କ ପ୍ରତି ସଦୟ ବ୍ୟବହାର କରିବ ।” ଆସନ୍ନକାଳରେ ହୁମାୟୁନଙ୍କ ପ୍ରତି ଏହା ହିଁ ବାବରଙ୍କର ଅନ୍ତିମ ନିର୍ଦ୍ଦେଶ ଥିଲା । ହୁମାୟୁନ ଜନକଙ୍କର ଏହି ଅନୁରୋଧ ପାଳନ କରିବେ ବୋଲି ସାଶ୍ରୁଲୋଚନରେ ତାହାଙ୍କ ସମକ୍ଷରେ ପ୍ରତିଜ୍ଞା କଲେ । ଉତ୍ତର କାଳରେ ଏହି ପ୍ରତିଜ୍ଞାରୁ ସେ କେବେ ହେଁ ଭ୍ରଷ୍ଟ ହେଲେ ନାହିଁ । ତାହାଙ୍କର ସୌଭ୍ରାତ୍ର ମୋଗଲ ଇତିହାସରେ ଅସାଧାରଣ ଅଟେ । କେବଳ ଦିଲ୍ଲୀରାଜ୍ୟକୁ ସ୍ୱୟଂ ଭୋଗ କରି ହୁମାୟୁନ୍ ସାମ୍ରାଜ୍ୟର ଅପର ଅଂଶଗୁଡ଼ିକ ଭ୍ରାତାମାନଙ୍କ ମଧ୍ୟରେ ବିଭକ୍ତ କରିଦେଲେ । ଅଳ୍ପକାଳପରେ ଶେର୍‌ଶାହ ନାମକ ଜଣେ ପରାକ୍ରାନ୍ତ ଆଫଗାନ୍-ପଠାଣ ତାହାଙ୍କୁ ଆକ୍ରମଣ କଲା । ତାହାକୁ ଦମନ କରିବା ନିମନ୍ତେ ହୁମାୟୁନ୍ ପୂର୍ବଦେଶକୁ ସୈନ୍ୟଯାତ୍ରା କଲେ । ଶେରଶାହ ପଳାୟନ କରି ପର୍ବତମାଳାରେ ଆଶ୍ରୟ ଗ୍ରହଣ କଲା । ହୁମାୟୁନ କ୍ରମେ କ୍ରମେ ଅଗ୍ରସର ହୋଇ ପରିଶେଷରେ ବଙ୍ଗଦେଶରେ ଉପସ୍ଥିତ ହେଲେ । ସେଠାରେ ତାହାଙ୍କର ପାନ-ଭୋଜନର

ନିରନ୍ତର ଅନୁଷ୍ଠାନରୁ ପ୍ରତୀୟମାନ ହେଲା, ଶତ୍ରୁଭୀତି ତାହାଙ୍କ ମନରୁ ସମ୍ପୂର୍ଣ୍ଣରୂପେ ତିରୋହିତ ହୋଇଥିଲା ।

ବର୍ଷାକାଳରେ ନଦୀବୃନ୍ଦ ପୂର୍ଣ୍ଣତାପ୍ରାପ୍ତ ଏବଂ ସ୍ଥଳଭାଗ ନାନା ସ୍ଥାନରେ ବନ୍ୟାଜଳରେ ପ୍ଲାବିତ ହେଲା । ଯୋଗ୍ୟ ଅବସର ଦେଖି ଶେର୍‌ଶାହ ପର୍ବତରୁ ଅବତୀର୍ଣ୍ଣ ହେଲା । ଅପରିଣାମଦର୍ଶୀ ହୁମାୟୁନ୍ ବଙ୍ଗଦେଶରେ ଅବସ୍ଥାନ କରି ସମସ୍ତର ଯେପରି ଅପବ୍ୟବହାର କରୁଥିଲେ, ଶେର୍‌ଶାହ ନିପୁଣ ଗୁପ୍ତଚରଦ୍ୱାରା ତାହା ଉତ୍ତମରୂପେ ଅବଗତ ହୋଇଥିଲା । ଦିଲ୍ଲୀ ଓ ବଙ୍ଗଦେଶ ମଧ୍ୟରେ ଯେଉଁ ରାଜମାର୍ଗ ବିଦ୍ୟମାନ ଥିଲା, ତାହାର ନାନା ଅଂଶରେ ଅବଚ୍ଛେଦକ ଦୃଢ଼ ପ୍ରାଚୀର ନିର୍ମାଣ କରାଇ, ସେହି ସ୍ଥାନମାନଙ୍କରେ ଶେର୍‌ଶାହ ସୈନିକ-ପ୍ରହରୀ ନିଯୁକ୍ତ କରିଥିଲା । ଫଳତଃ ଲୋକେ ସେ ଦୁଇଦେଶ ମଧ୍ୟରେ ପୂର୍ବବତ୍ ଗତାୟାତ କରିବାକୁ ଅସମର୍ଥ ହେଲେ । ସୁତରାଂ ହୁମାୟୁନ ବଙ୍ଗ-ଦେଶରେ ଥାଇ ଦିଲ୍ଲୀରୁ କୌଣସି ସମ୍ବାଦ ବା କୌଣସି ପ୍ରକାର ସାହାଯ୍ୟ ପ୍ରାପ୍ତ ହୋଇପାରିଲେ ନାହିଁ ।

ହୁମାୟୁନ୍ ଯେତେବେଳେ ବଙ୍ଗଦେଶ ପରିତ୍ୟାଗ କରି ଦିଲ୍ଲୀମୁଖରେ ପ୍ରତ୍ୟାଗମନ କରିବାକୁ ଉଦ୍ୟତ ହେଲେ, ତେତେବେଳେ ତାଙ୍କର ସୈନିକ, ଘୋଟକ ଏବଂ ଭାରବାହୀ ବଳଦଗୁଡ଼ିକ ସମସ୍ତେ ଜ୍ୱରରେ ଅବସନ୍ନ ହେଲେ । ଯୁଦ୍ଧ କରିବାକୁ ଏହିରୂପେ ଅସମର୍ଥ ହୋଇ ହୁମାୟୁନ୍ ଶେର୍‌ଶାହ ସହିତ ସନ୍ଧି ସ୍ଥାପନ କଲେ । ସନ୍ଧିର ସର୍ତ୍ତ ଅନୁସାରେ ହୁମାୟୁନ୍ ଶେରଶାହକୁ ପୂର୍ବଦେଶ ଛାଡ଼ିଦେଲେ । ପକ୍ଷାନ୍ତରେ ଶେର୍‌ଶାହ ହୁମାୟୁନଙ୍କ ଦିଲ୍ଲୀ ପ୍ରତ୍ୟାବର୍ତ୍ତନରେ ବିଘ୍ନ ନ ଜନ୍ମାଇବା ପାଇଁ ପ୍ରତିଶ୍ରୁତ ହେଲା ।

ଶେର୍‌ଶାହର କଥାରେ ବିଶ୍ୱାସ ସ୍ଥାପନ କରି ହୁମାୟୁନ୍ ତତ୍ପରଦିନ ଗଙ୍ଗାନଦୀ ପାରହେବାର ମାନସରେ ସେଦିନ ତାହାର ଯଥାବିଧି ଆୟୋଜନ କଲେ । କ୍ଳାନ୍ତ ଓ ଅବସାଦ ହେତୁରୁ ସମସ୍ତେ ଅସ୍ତ୍ର ଓ ବର୍ମ୍ମ ପରିତ୍ୟାଗ କରି ବିଶ୍ରବ୍ଧମନରେ ଶିବିର ମଧ୍ୟରେ ଶୟନ କଲେ । ବିଶ୍ୱାସଘାତକ ଆଫଗାନ୍‌ମାନେ ଅତି ପ୍ରତ୍ୟୁଷରେ ମୋଗଲମାନଙ୍କୁ ଆକ୍ରମଣ କରି ଅନେକଙ୍କୁ ହତ୍ୟାକଲେ ।

ହୁମାୟୁନ୍ ପ୍ରଧାନ କର୍ମଚାରୀମାନଙ୍କ ସମଭିବ୍ୟାହାରରେ ପଳାୟନ କରି ଅଶ୍ୱପୃଷ୍ଠରେ ନଦୀ ପାରହେବାର ଚେଷ୍ଟା କଲେ । ମାତ୍ର ପୂର୍ଣ୍ଣକଳେବରା ନଦୀର ଖର ସ୍ରୋତରେ ଅଶ୍ୱଗୁଡ଼ିକ ସନ୍ତରଣ କରିବାକୁ ଅକ୍ଷମ ହେଲେ । ହୁମାୟୁନ୍ ସ୍ୱୀୟ ଅଶ୍ୱପୃଷ୍ଠରୁ ସ୍ଖଳିତ ହୋଇ ଜଳରେ ମଗ୍ନ ହେବାକୁ ଲାଗିଲେ ।

ଏହି ସମୟରେ ଜଣେ ଭିସ୍ତି ଗୋଟିଏ ବାୟୁପୂର୍ଣ୍ଣ ମସକ ବା ଚର୍ମଥଳୀ ଅବଲମ୍ବନ କରି ନଦୀରେ ସନ୍ତରଣ କରୁଥିଲା । ସେ ତତ୍‌କ୍ଷଣାତ୍ ମଗ୍ନପ୍ରାୟ

ହୁମାୟୁନ୍‌ଙ୍କ ସମୀପବର୍ତ୍ତୀ ହୋଇ ତାହାଙ୍କୁ ମସକର ଏକ ଅଂଶ ଅବଲମ୍ବନ କରିବାକୁ ଦେଲା । ହୁମାୟୁନ୍ ତଦ୍ଦ୍ୱାରା ଆପଣାର ପ୍ରାଣରକ୍ଷା କରି ନଦୀର ଅପର ପାର୍ଶ୍ୱରେ ନିରାପଦରେ ପହଞ୍ଚିଲେ । ଏହି ଭିସ୍ତିର ନାମ ନିଜାମ୍ ମହମ୍ମଦ ସକ୍ । କୃତଜ୍ଞତା ପ୍ରଦର୍ଶନ କରି ହୁମାୟୁନ୍ ତାହାଙ୍କୁ କହିଲେ ତୁମ୍ଭେ ଯଦି ଆଗ୍ରାକୁ ଯାଅ, ଆମ୍ଭେ ତୁମ୍ଭଙ୍କୁ ଦିନଘଣ୍ଟା ପାଇଁ ସିଂହାସନରେ ବସିବାକୁ ଦେବୁଁ । ସେହି ସମୟ ମଧ୍ୟରେ ତୁମ୍ଭେ ସମ୍ରାଟବତ୍ ଯଥେଚ୍ଛ ଆଦେଶ ପ୍ରଦାନ କରିପାରିବ ।

ଭିସ୍ତି ଅବିଳମ୍ବେ ଆଗ୍ରାରେ ଉପସ୍ଥିତ ହୋଇ ସମ୍ରାଟଙ୍କୁ ତାହାଙ୍କ ଅଙ୍ଗୀକୃତ ବିଷୟ ସ୍ମରଣ କରାଇ ଦେଲା । ସତ୍ୟସନ୍ଧ ହୁମାୟୁନ୍ ତାହାକୁ ଦିନଘଣ୍ଟା କାଳ ଆପଣାର ସିଂହାସନ ଛାଡ଼ିଦେଲେ । କଥିତ ଅଛି ଉକ୍ତସମୟ ମଧ୍ୟରେ ନିଜାମ୍ ମହମ୍ମଦ୍ ପୂର୍ବବର୍ଣ୍ଣିତ ଚର୍ମମୁଶିକୁ କର୍ତ୍ତନ କରି କ୍ଷୁଦ୍ର କ୍ଷୁଦ୍ର ଗୋଲାକାର ଚର୍ମ୍ମ ଖଣ୍ଡରେ ପରିଣତ କଲା, ଏବଂ ତହିଁରେ ଆପଣାର ନାମ ମୁଦ୍ରିତ କରି ମୁଦ୍ରାରୂପେ ସେଗୁଡ଼ିକ ପ୍ରଚ୍ଚର କଲା । ତାହାର ଆଦେଶରେ ତାହାର ସୁହୃଦ୍‌ବର୍ଗ ଓ ସ୍ୱଜନମାନେ ରାଜକୋଷରୁ ବହୁ ମୂଲ୍ୟ ଉପହାର ପ୍ରାପ୍ତ ହେଲେ ।

---

## ୭୫—ନୀଳବର୍ଣ୍ଣରେ ରଞ୍ଜିତ ଶୃଗାଳର ଉପାଖ୍ୟାନ

ଏକଦା କୌଣସି ନଗରରେ ଗୋଟିଏ ଶୃଗାଳ ରାତ୍ରିକାଳରେ ବିଚରଣ କରୁଁ କରୁଁ କୁକୁରମାନଙ୍କ କର୍ତ୍ତୃକ ତାଡ଼ିତ ହୋଇ ରଜକର ନୀଳରସ ଭାଣ୍ଡରେ ପତିତ ହେଲା । ନାନା ଚେଷ୍ଟାକରି ସୁଦ୍ଧା ସେଥିରୁ ଆପଣାକୁ ଉଦ୍ଧାର କରିବାକୁ ଅସମର୍ଥ ହୋଇ ସେ ମୃତବତ୍ ସେହି ଭାଣ୍ଡରେ ପଡ଼ିରହିଲା । ପ୍ରାତଃକାଳରେ ରଜକ ସେଠାରେ ଉପସ୍ଥିତ ହୋଇ ଶୃଗାଳକୁ ମୃତ ମନେ କରି ନୀଳୀ-ଭାଣ୍ଡରୁ ଉଠାଇ ତାହାକୁ ପାର୍ଶ୍ୱବର୍ତ୍ତୀ ଅରଣ୍ୟରେ ନିକ୍ଷେପ କଲା ।

ରଜକ ପ୍ରସ୍ଥାନ କଲାରୁ ଶୃଗାଳ ଦେଖିଲା ଯେ ଆପଣା ଦେହର ସ୍ୱାଭାବିକ ବର୍ଣ୍ଣ ରମଣୀୟ ନୀଳବର୍ଣ୍ଣରେ ପରିଣତ ହୋଇଅଛି । ଏହା ଦେଖି ଶୃଗାଳ ମନେ କଲା, "ଭଗବାନ ମୋହର ପ୍ରାଧାନ୍ୟ ସ୍ଥାପନର ଗୋଟାଏ ଉପାୟ କରିଦେଇଅଛନ୍ତି ।" ଅନନ୍ତର ସେ ଅନ୍ୟ ଶୃଗାଳମାନଙ୍କୁ ଆହ୍ୱାନ କରି ଗମ୍ଭୀର ଭାବରେ ସେମାନଙ୍କୁ ସମ୍ବୋଧନ କରି କହିଲା—"ହେ ଶୃଗାଳମାନେ ! ବନର ଅଧିଷ୍ଠାତ୍ରୀ ଦେବତା ସ୍ୱହସ୍ତରେ ଆମ୍ଭର ଅଭିଷେକ ସମ୍ପାଦନ କରି ଏହି ଅରଣ୍ୟରେ ପଶୁମାନଙ୍କ ଉପରେ ଆମ୍ଭଙ୍କୁ ଚକ୍ରବର୍ତ୍ତୀ କରିଅଛନ୍ତି । ଆମ୍ଭର ଏହି ଅପୂର୍ବ ବର୍ଣ୍ଣ ସନ୍ଦର୍ଶନ କର ।

ତୁମ୍ଭେମାନେ ଆଜଠାରୁ ଆମ୍ଭଙ୍କୁ ତୁମ୍ଭମାନଙ୍କର ରାଜା ବୋଲି ଜାଣ ଏବଂ ଆମ୍ଭର ଆଦେଶ ବିନା କୌଣସି କାର୍ଯ୍ୟର ଅନୁଷ୍ଠାନ କର ନାହିଁ ।''

ଶୃଗାଳମାନେ ତାହାର ଏହି ବର୍ଣ୍ଣ ସନ୍ଦର୍ଶନ କରି ବିସ୍ମିତ ହେଲେ ଏବଂ ତାହାର ଉକ୍ତିକୁ ସଂପୂର୍ଣ୍ଣରୂପେ ସତ୍ୟ ମଣି ତାହାର ଚରଣତଳେ ସାଷ୍ଟାଙ୍ଗ ପ୍ରଣିପାତ କଲେ ଏବଂ ତାହାର ଆଜ୍ଞାନୁବର୍ତ୍ତୀ ହୋଇ ଚଳିବାପାଇଁ ପ୍ରତିଶ୍ରୁତି ଦେଲେ । ସେହି ଦିନଠାରୁ ନୀଳବର୍ଣ୍ଣ ଶୃଗାଳ ସେମାନଙ୍କ ଉପରେ ରାଜତ୍ୱ କରିବାକୁ ଲାଗିଲା । ଏହିପରି ଅପୂର୍ବ ପ୍ରାଣୀ ଏଥିପୂର୍ବେ କେବେହେଁ ନୟନଗୋଚର ହୋଇ ନ ଥିବାରୁ ସିଂହ ଓ ବ୍ୟାଘ୍ରମାନେ ସୁଦ୍ଧା ତାହାର ଆଜ୍ଞାନୁବର୍ତ୍ତୀ ହେଲେ । ଏଥିରେ ନୀଳବର୍ଣ୍ଣ ଶୃଗାଳ ଅତିଶୟ ଗର୍ବିତ ହୋଇ ସ୍ୱଜାତି ଶୃଗାଳମାନଙ୍କୁ ଘୃଣାଚକ୍ଷୁରେ ଦର୍ଶନ କରି ସେମାନଙ୍କୁ ଆପଣାର ସମୀପବର୍ତ୍ତୀ ହେବାକୁ ଆଉ ଦେଲା ନାହିଁ ।

ତାହାର ଏହି ବ୍ୟବହାରରେ ଶୃଗାଳମାନେ ଅତିଶୟ ବ୍ୟଥିତ ଓ କ୍ଷୁବ୍ଧ ହେଲେ । ଦିନକରେ ଗୋଟିଏ ବୃଦ୍ଧ ଶୃଗାଳ ଅପର ଶୃଗାଳମାନଙ୍କୁ କହିଲା, "ଭାଇମାନେ ! ତୁମ୍ଭେମାନେ ମୋହର ସତ୍‌ପରାମର୍ଶ ଗ୍ରହଣ କଲେ ମୁଁ ଏହି ପ୍ରତାରକର ଗର୍ବ ଖର୍ବ କରିଦେବି । ବ୍ୟାଘ୍ର ଓ ଅନ୍ୟ ପଶୁମାନେ ତାହାର ଦେହର ନୀଳବର୍ଣ୍ଣ ଦେଖି ତାହାକୁ ରାଜା ମଣିଅଛନ୍ତି । ମୁଁ ଆଜି ସମସ୍ତଙ୍କୁ ଦେଖାଇଦେବି ସେ ପ୍ରକୃତରେ କ'ଣ । ଶୁଣ, ଆଜି ସନ୍ଧ୍ୟା ସମୟରେ ସମସ୍ତେ ତାହାର ସମୀପବର୍ତ୍ତୀ ହୋଇ ପୂର୍ବବତ୍ ଜୋରସ୍ୱରେ ବୋବାଇବ ।

ସ୍ୱଭାବକୁ ଲଙ୍ଘିଯିବା ଅତୀବ ଦୁଷ୍କର ।
କୁକ୍‌କୁରକୁ କର ଯଦି ରାଜ୍ୟ ଅଧୀଶ୍ୱର,
ସିଂହାସନେ ଅଭିଷେକ ହେଉଁ ହେଉଁ ତା'ର
ଚୋବାଇବ ଉପାନହ ସେହୁ ଆପଣାର ।

ସେ ବୋବାଇଲେ ବ୍ୟାଘ୍ରମାନେ ତାହାକୁ ଶୃଗାଳ ବୋଲି ଚିହ୍ନି ପାରିବେ ଏବଂ ବଧ କରିବେ ।''

କ୍ରମେ ଦିବାବସାନ ହେଲା । ସନ୍ଧ୍ୟାକାଳ ସମାଗତ ହେବାରୁ ଯାବତୀୟ ପଶୁ ଛଦ୍ମବେଶୀ ଶୃଗାଳ ସମ୍ମୁଖରେ ପ୍ରଣିପାତ କରିବାପାଇଁ ଯଥାରୀତି ଉପଗତ ହେଲେ । ସମବେତ ଶୃଗାଳମାନେ ପୂର୍ବପରାମର୍ଶ ଅନୁସାରେ ହଠାତ୍ ବୋବାଇ ଉଠିଲେ । ଚିରନ୍ତନ ଅଭ୍ୟାସର ବଶବର୍ତ୍ତୀ ହୋଇ ରାଜା ମଧ୍ୟ ମୁଖବ୍ୟାଦାନ କରି ଇତର ଶୃଗାଳ ପରି ବୋବାଇଲା । ତେତେବେଳେ ବ୍ୟାଘ୍ରମାନେ ତାହାକୁ ଶୃଗାଳ ବୋଲି ଜାଣିପାରି ଅବିଲମ୍ବେ ତାହାର ପ୍ରାଣ ନାଶ କଲେ ।

ଆତ୍ମପକ୍ଷ ତେଜି ଅବିବେକୀ ଯେହୁ
ପରପକ୍ଷେ ହୁଏ ରତ,
ନୀଳୀରେ ରଞ୍ଜିତ ଶୃଗାଳ ପରିଷ୍ୟେ
ପରହସ୍ତେ ହେବ ହତ ।

---

## ୭୭—ଗଜଶଶକର ଉପାଖ୍ୟାନ

ଗୋଟିଏ ବନରେ ଚତୁର୍ଦ୍ଦନ୍ତ ନାମକ ଯୂଥାଧିପ ମହାଗଜ ବାସ କରୁଥିଲା । ଏକଦା ସେହି ପ୍ରଦେଶରେ ଅତ୍ୟନ୍ତ ଅନାବୃଷ୍ଟି ହେଲରୁ ହ୍ରଦ, ତଡ଼ାଗାଦି ଯାବତୀୟ ଜଳାଶୟ ଶୁଷ୍କ ହୋଇଗଲା । ଏଥିରେ ଗଜମାନେ ଅତିଶୟ କଷ୍ଟ ପ୍ରାପ୍ତ ହୋଇ ଯୂଥପତିଙ୍କି ନିବେଦନ କଲେ, ଆମ୍ଭମାନଙ୍କ ମଧ୍ୟରୁ କେତେଗୁଡ଼ିଏ ଜଳକଷ୍ଟରେ ପ୍ରାଣତ୍ୟାଗ କଲେଣି । ଯେଉଁମାନେ ଜୀବିତ ଅଛନ୍ତି ସେମାନଙ୍କୁ ଜଳକଷ୍ଟ ନିତାନ୍ତ ବାଧିଲଣି । ଅତଏବ ଏପରି ଗୋଟିଏ ଜଳାଶୟ ଅନ୍ୱେଷଣ କର, ଯହିଁରେ ଜଳପାନ କରି ଆମ୍ଭେମାନେ ସୁସ୍ଥଶରୀର ହୋଇପାରିବୁ । ସେମାନଙ୍କ ପ୍ରାର୍ଥନାନୁସାରେ ଗଜାଧିପ ଜଳାଶୟ ଅନ୍ୱେଷଣ ନିମନ୍ତେ ନାନା ଦିଗକୁ କ୍ଷିପ୍ରଗତି ଅନୁଚରମାନଙ୍କୁ ପ୍ରେରଣ କଲେ । ଯେଉଁମାନେ ପୂର୍ବ ଦିଗକୁ ଗମନ କଲେ ସେମାନେ ନାନା ସ୍ଥାନରେ ଭ୍ରମଣ କରି ଅବଶେଷରେ ଦେଖିଲେ ଯେ ଚନ୍ଦ୍ରସର ନାମରେ ଗୋଟିଏ ହ୍ରଦ ଅଛି । ସେଥିରେ ହଂସ, କାରଣ୍ଡବାଦି ଜଳଚର ପକ୍ଷୀମାନେ ବାସକରୁଅଛନ୍ତି ଏବଂ କୂଳବର୍ତ୍ତୀ ଫଳଭର-ନତ ବନ-ପାଦପମାନେ ତାହାର ଶୋଭା ବୃଦ୍ଧି କରୁଅଛନ୍ତି । ସେହି ହ୍ରଦ-ଦର୍ଶନରେ ଆନନ୍ଦିତ ହୋଇ, ସେମାନେ ଆସି ଗଜରାଜଙ୍କୁ ନିବେଦନ କଲେ, "ନିର୍ଜ୍ଜନ ପ୍ରଦେଶରେ ଗୋଟିଏ ବଡ଼ ହ୍ରଦ ଅଛି; ସେଠାକୁ ଗମନ କରିବା ହେଉ ।" ଅନନ୍ତର କ୍ରମାଗତ ପଞ୍ଚଦିବସ ଅଧୋଗମନରେ ଅତିବାହିତ କରି ସେମାନେ ହ୍ରଦ ନିକଟରେ ଉପସ୍ଥିତ ହେଲେ, ଏବଂ ତାହାର ଜଳରେ ବହୁକ୍ଷଣ ଆବଗାହନ କରି ସୂର୍ଯ୍ୟଙ୍କ ଅସ୍ତଗମନ ସମୟରେ ସେଥିରୁ ଉଠିଲେ । ସେହି ହ୍ରଦର କୂଳରେ ଚାରିଆଡ଼େ ଅସଂଖ୍ୟ ଶଶକବିଳ ଥିଲା । ଗଜମାନେ ଇତସ୍ତତଃ ଭ୍ରମଣ କରୁଁ କରୁଁ ସେହି ବିଳଗୁଡ଼ିକ ନଷ୍ଟ କରିଦେଲେ । ବିଳବାସୀ ଶଶକ-ମାନଙ୍କ ମଧ୍ୟରୁ କେତେ-ଗୁଡ଼ିଏ ପଞ୍ଚତ୍ୱପ୍ରାପ୍ତ ହେଲେ, କେତେକ ମୁମୂର୍ଷୁ ଅବସ୍ଥା ପ୍ରାପ୍ତ ହେଲେ, କତିପୟ ଶଶକର ପଦ ଭଗ୍ନ ହୋଇଗଲା, ଅପର କେତେଗୁଡ଼ିଏ ଶଶକର ଶରୀର ରୁଧିରାକ୍ତ ହେଲା ।

ଗଜଯୂଥ ହ୍ରଦକୂଳ ପରିତ୍ୟାଗ କରି ପ୍ରସ୍ଥାନ କଲାରୁ ଉଦ୍‌ବେଜିତ ଶଶକଗୁଡ଼ିକ ସମବେତ ହୋଇ ମନ୍ତ୍ରଣା କଲେ, "ଆମ୍ଭମାନଙ୍କର ବିନାଶକାଳ ଉପସ୍ଥିତ କାରଣ ଅନ୍ୟ କୌଣସି ଜଳାଶୟରେ ବର୍ତ୍ତମାନ ଜଳ ନ ଥିବାରୁ ଏହି ଗଜଯୂଥ ପ୍ରତିଦିନ ଆସି ଏହିପରି ଉତ୍ପାତ କରିବେ । ଅତଏବ ଏହି ବିପଦରୁ ପରିତ୍ରାଣର ଉପାୟ ଉଦ୍ଭାବନ କରିବା ଆବଶ୍ୟକ ।"

ଶଶକମାନଙ୍କ ମଧ୍ୟରୁ କେହି ପ୍ରସ୍ତାବ କଲେ, "ଏ ସ୍ଥାନ ପରିତ୍ୟାଗ କରି ଅନ୍ୟତ୍ର ଯିବା ବାଞ୍ଛନୀୟ" । ଅପର କେହି କେହି ଆପତ୍ତି କରି କହିଲେ, "ଏ ଆମ୍ଭମାନଙ୍କର ପୈତୃକ ସ୍ଥାନ ; ଏହାକୁ ପରିତ୍ୟାଗ କରି ଯିବାପାଇଁ ମନ ବଳୁନାହିଁ । ଅତଏବ ଏପରି ବିଭୀଷିକା ଜନ୍ମାଇବାକୁ ହେବ ଯହିଁରେ ସେମାନେ ଏ ହ୍ରଦକୁ ଆଦୌ ଆସିବେ ନାହିଁ ।" ଏହାଶୁଣି ଅନ୍ୟ ଶଶକମାନେ କହିଲେ, ଯଦି ଏହା ହିଁ ନିର୍ଦ୍ଧାରିତ ହୁଏ, ତାହାହେଲେ ହସ୍ତୀମାନଙ୍କୁ ବିଭୀଷିକା ପ୍ରଦର୍ଶନ କରିବାର ସହଜ ଉପାୟ ଅଛି । ସେହି ବିଭୀଷିକାଟି ଏହି :—ଆମ୍ଭମାନଙ୍କର ସ୍ୱାମୀ ବିଜୟଦତ୍ତ ଚନ୍ଦ୍ରମଣ୍ଡଳରେ ବାସ କରନ୍ତି । ଗଜଯୂଥାଧିପ ସମୀପକୁ ଦୂତ ଦ୍ୱାରା କହି ପଠାଇବାକୁ ହେବ, "ହେ ଯୂଥାଧିପ ! ଭଗବାନ୍ ଚନ୍ଦ୍ରଙ୍କର ଆଶ୍ରିତ ଶଶକମାନେ ଏ ହ୍ରଦକୂଳରେ ବାସ କରୁଥିବାରୁ ସେ ଆପଣଙ୍କୁ ଏଠାକୁ ଆସିବାକୁ ନିଷେଧ କରିଅଛନ୍ତି ।" ଏହି କୌଶଳ କଲେ ଯୂଥାଧିପର ହ୍ରଦ ପରିତ୍ୟାଗ ସମ୍ଭାବ୍ୟ ।"

ଶଶକମାନଙ୍କ ମଧ୍ୟରୁ କେହି କେହି କହିଲେ, "ଆମ୍ଭମାନଙ୍କ ମଧ୍ୟରେ ଲମ୍ବକର୍ଣ୍ଣ ବଚନ-ରଚନାଚତୁର ; ସୁତରାଂ ଦୂତ-କର୍ମକୁ ଯୋଗ୍ୟ । ତାହାକୁ ହିଁ ଯୂଥାଧିପ ସମୀପକୁ ପ୍ରେରଣ କରିବା ଯୁକ୍ତିସଙ୍ଗତ ବୋଧ ହେଉଅଛି । ଲମ୍ବକର୍ଣ୍ଣ ଏହି କାର୍ଯ୍ୟର ଭାର ଗ୍ରହଣ କରିବାକୁ ସମ୍ମତ କି ନାହିଁ, ବୁଝାଯାଉ ।" ଏହି ପ୍ରସ୍ତାବ ଅପର ଶଶକମାନଙ୍କର ମନୋନୀତ ହେବାରୁ ସେମାନେ କହିଲେ, "ଏହାହିଁ ଆମ୍ଭମାନଙ୍କ ପ୍ରାଣରକ୍ଷାର ଶ୍ରେଷ୍ଠ ଉପାୟ । ଅତଏବ ଲମ୍ବକର୍ଣ୍ଣକୁ ଅନ୍ୱେଷଣ କରି ପ୍ରସ୍ତାବିତ ଦୌତ୍ୟକାର୍ଯ୍ୟରେ ପ୍ରେରଣ କରାଯାଉ ।"

ଲମ୍ବକର୍ଣ୍ଣ ଦୌତ୍ୟକାର୍ଯ୍ୟ ଗ୍ରହଣ କରି ପ୍ରସ୍ଥାନ କଲା । ଅନନ୍ତର ଯୂଥ ପରିବୃତ ଗଜାଧିପର ଆଗମନ ଦେଖି ଲମ୍ବକର୍ଣ୍ଣ ଉଚ୍ଚ ଓ ନିରାପଦ ସ୍ଥାନରେ ଅବସ୍ଥାନ କରି ତାହାକୁ ସମ୍ବୋଧନ କରି କହିଲା, "ରେ ଦୁଷ୍ଟ ଗଜ ! ତୋର ଏଡ଼େ ଆସ୍ପର୍ଦ୍ଧା ଯେ ତୁ ନିର୍ଭୀକ ଚିତ୍ତରେ ପର ହ୍ରଦରେ ଅବଳୀଳା କ୍ରମେ ବିହାର କରୁଅଛୁ ? ଯଦି ଆପଣାର ମଙ୍ଗଳ ବାଞ୍ଛାକରୁ, ତେବେ ଏହି ହ୍ରଦ ପରିତ୍ୟାଗ କରି ଅନ୍ୟତ୍ର ଯା ।"

ଯୂଥପତି ବିସ୍ମିତ ହୋଇ ପ୍ରଶ୍ନ କଲା, "ତୁମ୍ଭେ କିଏ ?" ଶଶକ ଉତ୍ତର କଲା "ଅମ୍ଭେ ଚନ୍ଦ୍ରମଣ୍ଡଳନିବାସୀ ବିଜୟଦତ୍ତନାମକ ଶଶକ । ସପ୍ରତି ଚନ୍ଦ୍ରଦେବ

ଆମ୍ଭଙ୍କୁ ଦୂତକରି ଆପଣଙ୍କ ସମୀପକୁ ପ୍ରେରଣ କରିଅଛନ୍ତି । ଆପଣଙ୍କୁ ତ ଜଣାଅଛି ଯଥାର୍ଥବାଦୀ ଦୂତର ଦୋଷ ଧର୍ତ୍ତବ୍ୟ ନୁହେଁ ।” ଗଜରାଜ କହିଲା, “ହେ ଶଶକ ! ଚନ୍ଦ୍ରଦେବଙ୍କର ସନ୍ଦେଶ ପ୍ରକାଶ କର । ଅବିଳମ୍ବେ ତାହା ପାଳନ କରିବୁଁ ।”

ଶଶକ କହିଲା, “ଚନ୍ଦ୍ରଦେବ କହିଅଛନ୍ତି—କାଲି ତୁମେ ଆପଣାର ଯୂଥ ସହିତ ଆଗମନ କରି ବହୁସଂଖ୍ୟକ ଶଶକ ବିନାଶ କରି ଅଛ । ତୁମ୍ଭେ ଜାଣ, ଏହି ଶଶକଗୁଡ଼ିକ ଆମ୍ଭର ଆଶ୍ରିତ, ସେହି ହେତୁରୁ ଜଗତରେ ଶଶାଙ୍କ ବୋଲି ଆମ୍ଭର ଆଖ୍ୟାଅଛି । ଅତଏବ ଆପଣାର ପ୍ରାଣରେ ପ୍ରୟୋଜନ ଥିଲେ ଏ ହ୍ରଦକୁ ପୁନର୍ବାର ଆସିବ ନାହିଁ । ଅଧିକଗୁଡ଼ାଏ କହିବାର ପ୍ରୟୋଜନ ନାହିଁ । ଏ ଦୁଷ୍କାର୍ଯ୍ୟରୁ ନିବୃତ୍ତ ନ ହେଲେ ଆମ୍ଭେ ତୁମ୍ଭର ପ୍ରଭୂତ ଅନିଷ୍ଟ ସାଧନ କରିବୁଁ । ଚନ୍ଦ୍ରଦେବ ତୁମ୍ଭ ସମୀପକୁ ଏହି ସମ୍ବାଦ ପ୍ରେରଣ କରିଅଛନ୍ତି ।”

ଏହାଶୁଣି ହସ୍ତିରାଜ ଅତିଶୟ କ୍ଷୁଭିତ-ହୃଦୟ ହୋଇ ଓ ଦୀର୍ଘକାଳ ଚିନ୍ତାକରି କହିଲା, “ଭଦ୍ର ! ପ୍ରକୃତ ପକ୍ଷରେ ଚନ୍ଦ୍ରଦେବଙ୍କଠାରେ ଅପରାଧୀ ହୋଇଅଛି । ମୁଁ ତାହାଙ୍କ ସହିତ ବିରୋଧ କରିବି ନାହିଁ । ବର୍ତ୍ତମାନ ଚନ୍ଦ୍ରଦେବଙ୍କ ସହିତ ସାକ୍ଷାତ୍କାରର ଉପାୟ ପ୍ରଦର୍ଶନ କର ! ମୁଁ ତାଙ୍କ କୋପ-ଶାନ୍ତ କରିବି ।” ଶଶକ କହିଲା, “ତୁମ୍ଭେ ଏକାକୀ ଆମ୍ଭ ସଙ୍ଗରେ ଆସ । ଆମ୍ଭେ ତୁମ୍ଭଙ୍କୁ ପଥ ପ୍ରଦର୍ଶନ କରିବୁଁ ।” ଗଜରାଜ ପ୍ରଶ୍ନକଲା, “ସମ୍ପ୍ରତି ଚନ୍ଦ୍ରଦେବ କେଉଁଠାରେ ଅବସ୍ଥାନ କରୁଅଛନ୍ତି ?” ଶଶକ ଉତ୍ତର କଲା, “ହତାବଶିଷ୍ଟ ଶଶକମାନଙ୍କର ଆଶ୍ୱାସନା ନିମନ୍ତେ ବର୍ତ୍ତମାନ ଏହି ହ୍ରଦରେ ଚନ୍ଦ୍ରଦେବ ବିଜେ କରି ତୁମ୍ଭ ସମୀପକୁ ଆମ୍ଭଙ୍କୁ ପ୍ରେରଣ କରିଅଛନ୍ତି ।” ଗଜାଧିପ ଅନୁରୋଧ କଲା, “ଚନ୍ଦ୍ରଦେବଙ୍କ ସହିତ ମୋହର ସାକ୍ଷାତ କରାଅ ; ମୁଁ ତାହାଙ୍କୁ ପ୍ରଣାମ କରି ଓ ତାହାଙ୍କ କୋପଶାନ୍ତ କରି ଅନ୍ୟତ୍ର ଗମନ କରିବି ।”

ଅନନ୍ତର ନିଶାକାଳ ଉପସ୍ଥିତ ହେଲରୁ ଶଶକ ଗଜରାଜଙ୍କୁ ହ୍ରଦକୂଳକୁ ନେଇ ଜଳରେ ଚନ୍ଦ୍ରବିମ୍ବ ଦର୍ଶନ କରାଇ କହିଲା ଆମ୍ଭମାନଙ୍କର ପ୍ରଭୁ ଧ୍ୟାନନିବିଷ୍ଟ ହୋଇଅଛନ୍ତି । ତାହାଙ୍କୁ ନୀରବରେ ପ୍ରଣାମ କରି ପ୍ରସ୍ଥାନ କର । କୌଣସି ପ୍ରକାରେ ଯଦି ତାହାଙ୍କ ଧ୍ୟାନରେ ବିଘ୍ନ ଘଟେ, ତାହାହେଲେ ତାହାଙ୍କର କ୍ରୋଧର ସୀମା ରହିବ ନାହିଁ ।” ତଦନନ୍ତର ଗଜ ହୁଙ୍କାର-ଶବ୍ଦ କରି ଜଳ ମଧ୍ୟକୁ ଶୁଣ୍ଡ ପ୍ରସାରଣ କଲା ।

ଶୁଣ୍ଡ-ପ୍ରବେଶରେ ଜଳ-କ୍ଷୋଭ ଜନ୍ମିଲାରୁ ଭ୍ରାମ୍ୟମାନ ସହସ୍ର ଚନ୍ଦ୍ରବିମ୍ବ ଗଜରାଜର ଦୃଷ୍ଟି ଗୋଚର ହେଲା । ଶଶକ କହିଲା “ଆଃ ! କି ଅପରିଣାମ-ଦର୍ଶିତା ! ତୁମ୍ଭେ ଅସାବଧାନ ହୋଇ ପ୍ରଭୁଙ୍କର ରୋଷ ଦ୍ୱିଗୁଣ ବର୍ଦ୍ଧିତ କଲ ।” ଗଜରାଜ ପ୍ରଶ୍ନକଲା, “କି ହେତୁରୁ ଚନ୍ଦ୍ରଦେବ ମୋ ଉପରେ କୁପିତ ହେଲେ ?” ଶଶକ

କହିଲ, "ଏହି ଜଳ ସ୍ପର୍ଶ କରିବାରୁ ।" ଏହାଶୁଣି ଗଜପତି ଅବନୀ ତଳେ ମସ୍ତକସ୍ପର୍ଶ-ପୂର୍ବକ ପ୍ରଣାମ କରି ଚନ୍ଦ୍ରଦେବଙ୍କୁ କ୍ଷମା ପ୍ରାର୍ଥନା କଲା ।

ସେ ଉଦ୍‌ଦନନ୍ତର ଶଶକକୁ କହିଲା, ଭଦ୍ର ! ତୁମ୍ଭର ଅଶେଷ କାର୍ଯ୍ୟ ଥିଲେହେଁ ଚନ୍ଦ୍ରଦେବ ଯହିଁରେ ମୋ ପ୍ରତି ପ୍ରସନ୍ନ ହେବେ, ଅନୁଗ୍ରହ କରି ତାହା କରିବାକୁ ହେବ । ଏହି ହ୍ରଦକୁ ମୁଁ ପୁନର୍ବାର ଆସିବି ନାହିଁ ।" ଏହା କହି ସେ ଭୟବ୍ୟସ୍ତ ମନରେ ପ୍ରସ୍ଥାନ କଲା । ଶଶକମାନେ ସେହି ଦିନଠାରୁ ଉଦ୍‌ବେଗବର୍ଜିତ ହୋଇ ପରମସୁଖରେ କାଳଯାପନ କରିବାକୁ ଲାଗିଲେ ।

———

## ୭୭—ରାଜା ଆଲ୍‌ଫ୍ରେଡ୍‌ଙ୍କ ଉପାଖ୍ୟାନ

ତୁମ୍ଭେମାନେ ଜାଣ ଭାରତସମ୍ରାଟ୍ ପଞ୍ଚମ ଜର୍ଜ ଇଂଲଣ୍ଡ ଦେଶରେ ବାସ-କରନ୍ତି । ଅତି ପ୍ରାଚୀନ କାଳରେ ସେ ଦେଶରେ ଆର୍ଥର୍ ନାମଧେୟ ଜଣେ ରାଜା ଥିଲେ । ତାହାଙ୍କ ରାଜପଣର ବହୁକାଳ ପରେ ଏବଂ ଆଜକୁ ପ୍ରାୟ ଏକ ସହସ୍ର ବର୍ଷ ହେଲା ଅଧିକ ପ୍ରସିଦ୍ଧ ଆଲ୍‌ଫ୍ରେଡ୍ ନାମଧେୟ ଜଣେ ରାଜା ସେ ଦେଶରେ ରାଜତ୍ୱ କରୁଥିଲେ । ପ୍ରଜାମାନେ ତାହାଙ୍କୁ ଇଂଲଣ୍ଡର ଆଶ୍ୱାସସ୍ଥଳ ଓ ଇଂଲଣ୍ଡର ପ୍ରିୟପାତ୍ର ବୋଲି କହୁଥିଲେ ।

ଯେତେବେଳେ ଆଲ୍‌ଫ୍ରେଡ୍‌ଙ୍କ ବୟସ ଅତି ଅଳ୍ପ ସେତେବେଳେ ଆଲ୍‌ଫ୍ରେଡ୍‌ଙ୍କ ମାତା ଦିନକରେ ତାହାଙ୍କୁ ଏବଂ ତାହାଙ୍କର ତିନି ଭ୍ରାତାଙ୍କୁ ଖଣ୍ଡିଏ କବିତା ପୁସ୍ତକ ଦେଖାଇ କହିଲେ, "ଏହା ତୁମ୍ଭମାନଙ୍କ ମଧ୍ୟରେ ଯେ ସର୍ବାଗ୍ରେ ମୁଖସ୍ଥ କରିପାରିବ, ତାହାକୁ ମୁଁ ଏହି ପୁସ୍ତକ ଖଣ୍ଡିକ ପୁରସ୍କାର ଦେବି ।"

ପୁତ୍ରମାନଙ୍କ ମଧ୍ୟରେ ଆଲ୍‌ଫ୍ରେଡ୍ ସର୍ବକନିଷ୍ଠ ଥିଲେ । ଅନ୍ୟ କେହି କବିତା-ଗୁଡ଼ିକ କଣ୍ଠସ୍ଥ କରିବାରେ ଆସ୍ଥା ପ୍ରଦର୍ଶନ କଲେନାହିଁ । ମାତ୍ର ଆଲ୍‌ଫ୍ରେଡ୍ ପୁସ୍ତକ ଖଣ୍ଡିକ ମାତାଙ୍କଠାରୁ ନେଇ ମନୋଯୋଗପୂର୍ବକ କବିତାଗୁଡ଼ିକ ମୁଖସ୍ଥ କରି ତାହାଙ୍କ ସମ୍ମୁଖରେ ଆବୃତ୍ତି କଲେ । ମାତା ପ୍ରୀତ ହୋଇ ସେ ଖଣ୍ଡିକ ତାହାଙ୍କୁ ପୁରସ୍କାର ଦେଲେ ।

ଦ୍ୱାବିଂଶ ବର୍ଷ ବୟସରେ ଆଲ୍‌ଫ୍ରେଡ୍ ସିଂହାସନାରୋହଣ କଲେ । ସେ ସମୟରେ ଦିନାମାରମାନେ ଇଂଲଣ୍ଡ ଜୟ କରିବା ଉଦ୍ଦେଶ୍ୟରେ ସେ ଦେଶରେ ନାନାପ୍ରକାର ଉତ୍ପାତ କରୁଥିଲେ । ଏମାନଙ୍କ ପ୍ରକୃତି ଭୀଷଣ ଓ ନିଷ୍ଠୁର ଥିଲା । ସେମାନେ ଆପଣାକୁ ସାଗରେଶ୍ୱର ବୋଲିଉଥିଲେ । ଏମାନଙ୍କ ସହିତ ଆଲ୍‌ଫ୍ରେଡ୍‌ଙ୍କୁ ଅନେକ ଥର ଯୁଦ୍ଧ କରିବାକୁ ହେଲା । ଗୋଟିଏ ବର୍ଷରେ ଏମାନଙ୍କ ସହିତ

ଆଲ୍‌ଫ୍ରେଡ୍‌ଙ୍କର ଆଠଗୋଟି ଯୁଦ୍ଧ ହେଲା । ବହୁବର୍ଷବ୍ୟାପୀ ସମରର ପରିଣାମରେ ଆଲ୍‌ଫ୍ରେଡ୍ ଜୟୀ ହେଲେ । ତେତେବେଳେ ଦେଶରେ ଶାନ୍ତି ସ୍ଥାପିତ ହେଲା । ସନ୍ଧିର ସର୍ତ୍ତ ଅନୁସାରେ ଆଲ୍‌ଫ୍ରେଡ୍ ସେମାନଙ୍କୁ ସ୍ୱରାଜ୍ୟର ଯେଉଁ ଅଂଶ ଅର୍ପଣ କଲେ, ସେଥିରେ ସେମାନେ ବାସ କରିବାକୁ ଲାଗିଲେ ।

ଯୁଦ୍ଧବିଗ୍ରହ ପୂର୍ବେ ଏକଦା ଆଲ୍‌ଫ୍ରେଡ୍ ପ୍ରାଣରକ୍ଷା ନିମନ୍ତେ ପଳାୟନ କରି ଅରଣ୍ୟ ମଧ୍ୟରେ ଜଣେ ବିଶ୍ୱାସୀ ମେଷପାଳକର କୁଟୀରରେ ଅଜ୍ଞାତବାସ କଲେ । ସେ କେବଳ ମେଷପାଳକଙ୍କୁ ଆତ୍ମପରିଚୟ ଦେଲେ । ମାତ୍ର ତାହାର ସ୍ତ୍ରୀ ସୁଦ୍ଧା ତଦ୍‌ବିଷୟରେ ସମ୍ପୂର୍ଣ୍ଣରୂପେ ଅନଭିଜ୍ଞ ହୋଇ ରହିଲା ।

ଇଂଲଣ୍ଡ ଶୀତ-ପ୍ରଧାନ ଦେଶ । ଶୀତର ପ୍ରାଦୁର୍ଭାବରୁ ଆତ୍ମରକ୍ଷା ନିମନ୍ତେ ଲୋକେ ଅନେକ ସମୟରେ ଅଗ୍ନିସେବା କରନ୍ତି । ଏକଦା ମେଷପାଳକ କୁଟୀରରେ ସନ୍ଦୀପ୍ତ ଅଗ୍ନି ନିକଟରେ ଉପବେଶନ କରି ସ୍ୱୀୟ ଧନୁର ଜୀର୍ଣ୍ଣ ସଂସ୍କାର କରୁଁ କରୁଁ, କି କୌଶଳରେ ଦିନାମାନଙ୍କ ସହିତ ପୁର୍ନବାର ଯୁଦ୍ଧ କରିବେ, ଆଲ୍‌ଫ୍ରେଡ୍ ତାହା ଭାବୁଥିଲେ । ମେଷ-ପାଳକ ପତ୍ନୀ ସେହି ଅଗ୍ନିରେ ଯେଉଁ ପିଷ୍ଟକଗୁଡ଼ିକ ପ୍ରସ୍ତୁତ କରୁଥିଲା, ତାହାର ଭାର ଆଲ୍‌ଫ୍ରେଡ୍‌ଙ୍କ ଉପରେ ନ୍ୟସ୍ତ କରି କାର୍ଯ୍ୟାନ୍ତରରେ ଅନ୍ୟତ୍ର ଗମନ କଲା । ଆଲ୍‌ଫ୍ରେଡ୍ ସ୍ୱଦେଶର ଉଦ୍ଧାର-ଚିନ୍ତାରେ ଏପରି ତନ୍ମୟ ଥିଲେ ଯେ ପିଷ୍ଟକଗୁଡ଼ିକ ପର୍ଯ୍ୟବେକ୍ଷଣ କରିବା ତାହାଙ୍କ ମନୋଯୋଗକୁ ସ୍ପର୍ଶ କରିପାରିଲା ନାହିଁ । ପରିଣାମରେ ସେଗୁଡ଼ିକ ପୋଡ଼ିଗଲା । କୃଷକ-ପତ୍ନୀ ପ୍ରତ୍ୟାଗମନ କରି ପିଷ୍ଟକ-ଗୁଡ଼ିକର ଏହି ଦୁର୍ଦ୍ଦଶା ଦେଖି ଆଲ୍‌ଫ୍ରେଡ୍‌ଙ୍କୁ ଅତିଶୟ ରୁକ୍ଷଭାବରେ ତିରସ୍କାର କରି କହିଲା, "ତୁମ୍ଭେ ପିଷ୍ଟକଗୁଡ଼ିଏ ଗ୍ରାସ କରିବାକୁ ବଡ଼ ତତ୍ପର, ମାତ୍ର ସେଗୁଡ଼ିକ ନେଉଟାଇ ଦେବା ବେଳକୁ ତୁମ୍ଭର ଦେହ ଚଳେ ନାହିଁ ।" ସ୍ୱାଭାବିକ ଧୈର୍ଯ୍ୟ ବଳରେ ଆଲ୍‌ଫ୍ରେଡ୍ ମେଷପାଳକ ପତ୍ନୀର ଏହି ତିରସ୍କାର ନିର୍ବିକାରରେ ସହ୍ୟ କଲେ ।

ବୀଣାବାଦନ ଓ ଗୀତଗାନରେ ଆଲ୍‌ଫ୍ରେଡ୍‌ଙ୍କର ନୈପୁଣ୍ୟ ଥିଲା । ଏକଦା ସେ ଦରିଦ୍ର ପରିବ୍ରାଜକର ଛଦ୍ମରେ ବୀଣାହସ୍ତରେ ଶତ୍ରୁଶିବିର ମଧ୍ୟରେ ପ୍ରବେଶ କଲେ । ସେଠାରେ ସେ ଶିବିରବାସୀ ସେନା ଓ ସେନାନାୟକଙ୍କୁ ଆପଣାର ଗାନ-ବାଦନରେ ଆପ୍ୟାୟିତ କରୁଁ କରୁଁ ଶତ୍ରୁମାନଙ୍କର ବ୍ୟୂହରଚନା ପରିଦର୍ଶନ କରି-ନେଲେ । ତଦନନ୍ତର ଆପଣାର ସୈନ୍ୟମାନଙ୍କୁ ଏକତ୍ର କରି ସେ ଦିନାମାରମାନଙ୍କ ସହିତ ପୁନର୍ବାର ଯୁଦ୍ଧ କଲେ । ସେ କାଳରେ ଇଂଲଣ୍ଡର ଅଧିବାସୀମାନଙ୍କର ନାମ ସ୍ୟାକ୍‌ସନ୍ ଥିଲା ।

ଇଂଲଣ୍ଡର ସ୍ୟାକ୍‌ସନ୍ ରାଜାମାନଙ୍କ ମଧ୍ୟରେ ଆଲ୍‌ଫ୍ରେଡ୍ ସର୍ବପ୍ରସିଦ୍ଧ ଥିଲେ । ସେ ମହାପଣ୍ଡିତ ଥିଲେ ଏବଂ ଅନେକଗୁଡ଼ିଏ ଗ୍ରନ୍ଥ ରଚନା କରିଯାଇଅଛନ୍ତି ।

ପ୍ରଜାମାନଙ୍କର ସୁଖବୃଦ୍ଧି କରିବାରେ ଏବଂ ସେମାନଙ୍କୁ ସନ୍ମାର୍ଗରେ ରଖିବାରେ ତାହାଙ୍କର ଯଥୋପଯୋଗୀ ଯତ୍ନ ଥିଲା । ସ୍ୱଦେଶ ରକ୍ଷା ନିମନ୍ତେ ସେ ସର୍ବପ୍ରଥମେ ପୋତ ନିର୍ମାଣ କଲେ । ଏହାହିଁ ଇଂଲଣ୍ଡର ରଣତରୀର ପ୍ରଥମ ସୃଷ୍ଟି । ବର୍ତ୍ତମାନ ସେହି ଇଂଲଣ୍ଡର ରଣତରୀ ପୃଥିବୀରେ ଶୀର୍ଷସ୍ଥାନ ଅଧିକାର କରିଅଛି ।

---

## ୭୮—କ୍ଷୁଦ୍ର ବାଳକର ଅସୀମ ସାହସ ଓ ସାଧୁକାର୍ଯ୍ୟ

ସୋମପୁର ଗ୍ରାମ ବିସ୍ତୃତ ସମଭୂମି ମଧ୍ୟରେ ଅବସ୍ଥିତ । ଏହି ଗ୍ରାମରେ ଅନେକ ଜଳାଶୟ ବିଦ୍ୟମାନ । ଯଥା ସମୟରେ ସୁବୃଷ୍ଟିର ଅଭାବ ହେଲେ ଏହି ଜଳାଶୟଗୁଡ଼ିକର ଜଳରେ ଗ୍ରାମର ଚତୁଃପାର୍ଶ୍ୱବର୍ତ୍ତୀ କ୍ଷେତ୍ରଗୁଡ଼ିକର ଶସ୍ୟ ରକ୍ଷା ହୁଏ । ଏହିରୂପେ ପୁଷ୍କରିଣୀଗୁଡ଼ିକ ଗ୍ରାମବାସୀମାନଙ୍କର ଧନଧାନ୍ୟର ଅଭାବ ତିରୋହିତ କରନ୍ତି ।

ଥରେ କ୍ରମାଗତ ଦୁଇବର୍ଷକାଳ ଅତ୍ୟଳ୍ପ ବୃଷ୍ଟି ହେଲା । ଫଳତଃ ପୁଷ୍କରିଣୀ-ମାନଙ୍କରେ ଜଳାଭାବ, ଓ ଶସ୍ୟକ୍ଷେତ୍ରଗୁଡ଼ିକ ଶୁଷ୍କ ହେଲା । ଏହି ଦୁର୍ଦ୍ଦଶାରେ ଅତିଶୟ କାତର ହୋଇ ଗ୍ରାମବାସୀମାନେ ଈଶ୍ୱରଙ୍କୁ ବୃଷ୍ଟି ଭିକ୍ଷାକଲେ । ଆର୍ତ୍ତତ୍ରାଣ ଭଗବାନ୍ ଅବଶେଷରେ ସେମାନଙ୍କ ପ୍ରାର୍ଥନା ପୂରଣ କଲେ । ମୂଷଳଧାରରେ ଦୁଇ ଦିନବ୍ୟାପୀ ବୃଷ୍ଟିରେ ଜଳାଶୟଗୁଡ଼ିକ ପୂର୍ଣ୍ଣ ହେଲା । ତତ୍ପରେ ବୃଷ୍ଟିର ବିରାମ ହେଲେହେଁ ଗ୍ରାମବାସୀମାନଙ୍କ ମନରେ ଉଦ୍‌ବେଗ ଆଉ ଜନ୍ମିଲା । ନାହିଁ କାରଣ ବୃହତ୍ତମ ପୁଷ୍କରିଣୀରେ ଯେତେ ଜଳ ଥିଲା ତଦ୍ଦ୍ୱାରା ତିନିମାସ ପର୍ଯ୍ୟନ୍ତ ଶସ୍ୟ-କ୍ଷେତ୍ର-ମାନଙ୍କର ଜଳାଭାବ ଅପସାରିତ ହୁଅନ୍ତା ଏବଂ ଏହି ତିନିମାସ ମଧ୍ୟରେ ଶସ୍ୟ ଉତ୍ପନ୍ନ ହୋଇପାରନ୍ତା ।

ସେହି ଗ୍ରାମର ବାରିକର ନଅବର୍ଷବୟସ୍କ ଗୋଟିଏ ପୁତ୍ର ଥିଲା । ତାହାର ନାମ ରଙ୍ଗ । ସମୀପବର୍ତ୍ତୀ ଗ୍ରାମରେ ରଙ୍ଗର ମାତୁଳାଳୟ । ରଙ୍ଗର ପିତା ଦିନକରେ ରଙ୍ଗଦ୍ୱାରା ତାହାର ମାତୁଳ ନିକଟକୁ କୌଣସି ସମ୍ବାଦ ପ୍ରେରଣ କରିଥିଲା । ରାତ୍ରି ପ୍ରାୟ ଏକପ୍ରହର ସମୟରେ ରଙ୍ଗ ସ୍ୱଗୃହକୁ ପ୍ରତ୍ୟାଗମନ କରୁଥିଲା । ରାତ୍ରି ଅନ୍ଧକାର-ମୟୀ, ବାୟୁ ଶୀତଳ, ସଙ୍ଗରେ କେହି ନାହିଁ, ଶୃଗାଳରବ ମନକୁ କମ୍ପିତ୍ ଆକୁଳ କରୁଅଛି । ରଙ୍ଗ ବୃହତ୍ତମ ପୁଷ୍କରିଣୀର ହୁଡ଼ାରେ ଉପସ୍ଥିତ ହୋଇ ଦେଖିଲା ଯେ ପୁଷ୍କରିଣୀଟି ପୂର୍ଣ୍ଣତା ପ୍ରାପ୍ତ ହୋଇଅଛି ଏବଂ ଗୋଟିଏ ସ୍ଥାନରେ ଜଳ କୂଳ ଉଲ୍ଲଙ୍ଘନ କରି କ୍ଷୁଦ୍ରସ୍ରୋତରେ ବହିଯାଉଅଛି ।

ଏହି ପୁଷ୍କରିଣୀଟି ଲୋକାଳୟରୁ ପ୍ରାୟ ଅର୍ଦ୍ଧ କ୍ରୋଶଦୂରବର୍ତ୍ତୀ ଥିଲା ତେଣୁ ସେତେବେଳେ ପୁଷ୍କରିଣୀର ଏହି ଅବସ୍ଥା ପ୍ରତ୍ୟକ୍ଷ କରିବାକୁ ବା ତାହାର ପ୍ରତୀକାର କରିବାକୁ ସେଠାରେ କେହି ନ ଥିଲେ । ବାଳକଟି ସମସ୍ତ ସମୟରେ ଗ୍ରାମବାସୀ-ମାନଙ୍କ ମୁଖରୁ ଶୁଣିଥିଲା ଯେ ଜଳ ଉଛୁଳି ପୁଷ୍କରିଣୀର କୂଳ ଲଙ୍ଘନ କଲେ ତାହାର ମାଟି କ୍ରମେ କ୍ରମେ ଅଧିକ ଖୋଲା ହୋଇଯାଏ । ଫଳତଃ, ସ୍ରୋତ ପ୍ରବଳତର ଆକାର ଧାରଣ କରେ ଏବଂ ବହୁତ ଜଳ ପୁଷ୍କରିଣୀରୁ ବାହାରିଯାଏ । ସେ ଭାବିଲା ପୁଷ୍କରିଣୀରୁ ବହୁତ ଜଳ ବାହାରିଗଲେ, ଯଥାସମୟରେ ପୁଣି ପ୍ରଚୁର ବୃଷ୍ଟି ନ ହେଲେ ଶସ୍ୟହାନି ହୋଇପାରେ । ପ୍ରଥମେ ତାହାର ମନେ ହେଲା ଯେ ସେ ଗୃହକୁ ଯାଇ ଗ୍ରାମବାସୀମାନଙ୍କୁ ସମ୍ବାଦ ଦେଲେ ସେମାନେ ଯଥା ପ୍ରୟୋଜନ କାର୍ଯ୍ୟ କରିବେ । କିନ୍ତୁ ଜଳସ୍ରୋତରେ ପାର୍ଶ୍ୱବର୍ତ୍ତୀ ମୃତ୍ତିକାର ଏପରି କ୍ଷିପ୍ର କ୍ଷୟ ହେଲା ଯେ ବାଳକର ବିବେଚନାରେ ଘଣ୍ଟାକ ପରେ ସ୍ରୋତର ଗତିରୋଧ ଅସାଧ୍ୟ ହୁଅନ୍ତା ।

ଅନନ୍ୟୋପାୟ ହୋଇ କ୍ଷୁଦ୍ର ବାଳକଟି ସ୍ରୋତର ଗତିପଥରେ ବସି ତାହା ନିବାରଣ କଲା । ଶୀତ ଓ ଦୂରରେ ଉଗର ଦେହ କମ୍ପିତ ହେଲା । ଶୃଗାଳମାନେ ଅଦୂରବର୍ତ୍ତୀ ହୋଇ ବିକଟଶବ୍ଦରେ ତାହା ମନରେ ଭୀତି ଜନ୍ମାଇଲେ । ପରନ୍ତୁ କଚ୍ଛପସ୍ତ ଗଧିଆର ଶବ୍ଦ ସେହି ଭୀତିକୁ ଦ୍ୱିଗୁଣିତ କଲା । ଏ ଅବସ୍ଥାରେ ତାମସୀ ରାତ୍ରିରେ ଅନାବୃତ ସ୍ଥାନରେ ପଡ଼ି ରହିବାକୁ ଉଗର ସନ୍ତ୍ର ବଳୁ ନାହିଁ । ପ୍ରାତଃ-କାଳରେ ଗୃହରୁ ବାହାରିବା ପୂର୍ବେ ଯାହା ଭୋଜନ କରିଥିଲା, ତହିଁ ଉତ୍ତାରୁ ଅନ୍ୟ ଭୋଜନ ତାହା ଭାଗ୍ୟରେ ଘଟିନାହିଁ । କ୍ଷୁଧାରେ ଶରୀର କ୍ଷୀଣ ଓ ବଳହୀନ ହେଲାଣି । ଉଗର ମନେ ହେଲା ଏହିକ୍ଷଣି ପିତା, ମାତା, ଭ୍ରାତା ଓ ଭଗିନୀ ଘରେ ଭୋଜନରେ ବସିଥିବେ । ମାତ୍ର ପୂର୍ବୋକ୍ତ ଭୀତି ଓ ଭାବନା ସାଧୁ ଓ ସାହସୀ ବାଳକକୁ କର୍ତ୍ତବ୍ୟ-ପଥରୁ ସ୍ଖଳିତ କରି ପାରିଲା ନାହିଁ । କ୍ରମେ ନିଶୀଥ ଉପସ୍ଥିତ ହେଲା । ନିଶୀଥ ଉତ୍ତାରୁ ଯାମିନୀ ତୃତୀୟ ଯାମରେ ଉପସ୍ଥିତ ହୋଇ ଯଥାସମୟରେ ଅତୀତ ହେଲା ।

ଚତୁର୍ଥଯାମର ଅବସାନ ସଙ୍ଗେ କ୍ଷୁଦ୍ର ବାଳକଟିର ଚୈତନ୍ୟ କ୍ରମେ କ୍ରମେ ତିରୋହିତ ହେଲା । ତଥାପି ସ୍ରୋତର ଗତିପଥରେ ସେ ଅଟଳ ହୋଇ ରହିଲା । ଏଣେ ତାହାର ପିତା ମନେ କଲା ପୁତ୍ରଟି ମାତୁଳାଳୟରେ ରାତ୍ରି ଯାପନ କରି ପରଦିନ ପ୍ରାତଃକାଳରେ ପ୍ରତ୍ୟାବୃତ୍ତ ହେବ ।

ପ୍ରତ୍ୟୁଷରେ ଗ୍ରାମର ଚୌକିଦାର ଓ ତାହାର ଭ୍ରାତା ପୁଷ୍କରିଣୀ କୂଳରେ ଉପସ୍ଥିତ ହୋଇ ତଦବସ୍ଥ ବାଳକଟିକୁ ସନ୍ଦର୍ଶନ କରି ତାହାକୁ ମୃତାୟୁ ବିବେଚନା କଲେ । ସେତେବେଳେ ତାହାର ଚକ୍ଷୁଦ୍ୱୟ ମୁଦ୍ରିତ ଓ ଶରୀର ନିଶ୍ଚଳ ହୋଇଥିଲା ।

ସେ ତୁହେଁ ନାନାପ୍ରକାର ପ୍ରଶ୍ନକରି ତାହାଠାରୁ କୌଣସି ଉତ୍ତର ପାଇଲେ ନାହିଁ। କତିପୟ ଲୋକ କାର୍ଯ୍ୟ କରିବା ନିମନ୍ତେ ଶସ୍ୟକ୍ଷେତ୍ରକୁ ଯାଉଥିଲେ। ଚୌକିଦାର ଓ ତାହାର ଭ୍ରାତା ଉଚ୍ଚୈଃ ସ୍ୱରରେ ଆହ୍ୱାନ କରିବାରୁ ସେମାନେ ସେଠାରେ ଉପସ୍ଥିତ ହୋଇ ରଙ୍ଗକୁ ଉଠାଇ ତାହାର ଗୃହକୁ ଘେନିଗଲେ। ଅପର ଲୋକେ ମୃତ୍ତିକାଦି ନିକ୍ଷେପକରି ସମ୍ପୂର୍ଣ୍ଣରୂପେ ସ୍ରୋତର ଗତି ଅବରୋଧକଲେ।

ଗୃହରେ ଲୋକେ ଅଗ୍ନି ସନ୍ଦୀପନ କରି ରଙ୍ଗକୁ ସେକିବାରେ ଲାଗିଲେ। ପିତା ତପ୍ତହସ୍ତରେ ତାହାର ସର୍ବାଙ୍ଗ ମର୍ଦ୍ଦନ କଲେ ଏବଂ କିଞ୍ଚିତ୍ ଉଷ୍ଣଜଳ ତାହାକୁ ପିଆଇ ଦେଲେ। କିୟତ୍‌କ୍ଷଣପରେ ରଙ୍ଗର ଚୈତନ୍ୟ ସମ୍ପାଦିତ ଓ ତାହାର କର୍ଣ୍ଣନାସିକାଦ୍ୱୟର ଗତି ଲକ୍ଷିତ ହେଲା। କ୍ରମେ ତାହାର ବାକ୍‌ସ୍ଫୂର୍ତ୍ତି ହେଲା। ତେତେ-ବେଳେ ସେ ପିତାକୁ ଅନୁରୋଧ କଲା ଯେ ମାତୁଳଙ୍କଠାରୁ ପ୍ରତିସମ୍ବାଦ ଆଣି ପୂର୍ବରାତ୍ରିରେ ଦେଇ ନ ଥିବାରୁ ତାହାର ଯେଉଁ ଦୋଷ ହୋଇଥିଲା, ତାହା ମାର୍ଜନା କରିବେ ଓ ତାହା ପ୍ରତି କ୍ରୁଦ୍ଧ ହେବେ ନାହିଁ। ବାଳକଟି ତତ୍ପରେ ସମବେତ ଲୋକମଣ୍ଡଳୀକୁ ପୂର୍ବରାତ୍ରିର ସମସ୍ତ ବୃତ୍ତାନ୍ତ ବିଜ୍ଞାପନ କଲା।

ଗ୍ରାମ-ପ୍ରଧାନ ରଙ୍ଗର ଏହି ଆଚରଣ ଶ୍ରବଣ କରି ଅତିଶୟ ମୋହିତ ହେଲେ। ସେ ଓ ଅପର କତିପୟ ଗ୍ରାମବାସୀ ପ୍ରୀତି ଉପହାର ସ୍ୱରୂପ ରଙ୍ଗକୁ ଖଣ୍ଡିଏ ନବବସ୍ତ୍ର ଓ ଯୋଡ଼ିଏ ରୌପ୍ୟବଳୟ ଦେଲେ। ସମସ୍ତେ ମହାଶୟ ବାଳକର ସାହସ ଓ ସତ୍‌କାର୍ଯ୍ୟର ସାଧୁବାଦ କଲେ। ସେ ଆପଣା ପ୍ରାଣକୁ ତୁଚ୍ଛ ମଣି ଶତଶତ ଲୋକର ଜୀବନରକ୍ଷାର ଉପାୟ ବିଧାନ କଲା।

---

## ୭୯—ଉଷ୍ଟ୍ର ଓ ସିଂହର ଉପାଖ୍ୟାନ

ଗୋଟିଏ ଅରଣ୍ୟରେ ମଦୋତ୍କଟ ନାମକ ସିଂହ ବାସ କରୁଥିଲା। ତାହାର ବ୍ୟାଘ୍ର, ବାୟସ ଓ ଶୃଗାଳ ଏହି ତିନି ଅନୁଚର ଥିଲେ। ଏକଦା ସେମାନେ ଇତସ୍ତତଃ ଭ୍ରମଣ କରୁଁ କରୁଁ ଯୂଥଭ୍ରଷ୍ଟ କ୍ରଥନକ ଉଷ୍ଟ୍ର ଅବଲୋକନ କଲେ। ସିଂହ କହିଲା, "ହେ ଅନୁଚରବର୍ଗ ! ଏ ଗୋଟିଏ ଅପୂର୍ବ ପ୍ରାଣୀ। ଏ ଗ୍ରାମ୍ୟ କି ଅରଣ୍ୟ ବୁଝି ଆମ୍ଭଙ୍କୁ ଜଣାଅ।" ଏହା ଶୁଣି ବାୟସ କହିଲା "ପ୍ରଭୋ ! ଏ ଗ୍ରାମ୍ୟ ପଶୁ ଏହାକୁ ଉଷ୍ଟ୍ର କହନ୍ତି। ଏ ଆପଣଙ୍କର ଭୋଜ୍ୟ ଅଟେ, ଆଦେଶ ଦେଲେ ଏହାକୁ ବଧ କରିବୁଁ।" ସିଂହ ବାଧା ଦେଇ କହିଲା, "ଗୃହାଗତ ବ୍ୟକ୍ତିକୁ ଆମ୍ଭେ ବଧ କରୁଁ ନାହିଁ। ତାହାକୁ ଅଭୟ ପ୍ରଦାନ କରି ଆମ୍ଭ ସମୀପକୁ ଆଣ। ଏଠାକୁ ତାହାର ଆଗମନର କାରଣ ପଚାରିବୁଁ।"

ଅନନ୍ତର ଅନୁଚରବର୍ଗ ଅଭ୍ୟାଗତ ଉଷ୍ଟ୍ରକୁ ଅଭୟ ପ୍ରଦାନ କରି ତାହାକୁ ସିଂହ ସମୀପକୁ ଘେନିଗଲେ । ଉଷ୍ଟ୍ର ପଶୁରାଜକୁ ପ୍ରଣାମ କରି ଆସନ ଗ୍ରହଣ କଲା । ସିଂହ କହିଲା, "ହେ କ୍ରଥନକ ! ଗ୍ରାମକୁ ପ୍ରତ୍ୟାଗମନ କରି ତୁମ୍ଭଙ୍କୁ ଭାରବହନର କଷ୍ଟ ପୁନର୍ବାର ଅନୁଭବ କରିବାକୁ ହେବ ନାହିଁ । ଏହି ଅରଣ୍ୟରେ ନିଃଶଙ୍କମନରେ ଦୁର୍ବାଦଳ ଭକ୍ଷଣ କରି ଆମ୍ଭ ଗହଣରେ ବାସ କର ।" ଉଷ୍ଟ୍ର ସେଥିରେ ସମ୍ମତ ହୋଇ ନିର୍ଭୟଚିତ୍ତରେ ସେହି ଅରଣ୍ୟରେ ବାସ କରିବାକୁ ଲାଗିଲା ।

କିୟତ୍କାଳପରେ ଅରଣ୍ୟଗୃଷ୍ଟି ଗୋଟିଏ ଦନ୍ତାବଳ ସହିତ ମଦୋତ୍କଟର ଯୁଦ୍ଧ ହେଲା; ସେହି ଯୁଦ୍ଧରେ ଗଜଦନ୍ତ ପ୍ରହାରରେ ତାହାର ସର୍ବାଙ୍ଗରେ ଏପରି ବ୍ୟଥା ଜନ୍ମିଲା ଯେ ସେ ଗତିଶକ୍ତିବିହୀନ ହୋଇ ପଡ଼ିରହିଲା । ପଶୁରାଜ ଏପରି ଅସମର୍ଥ ହେବାରୁ କାକାଦି ଅନୁଚରବର୍ଗ ଖାଦ୍ୟାଭାବରେ ଅତ୍ୟନ୍ତ ଦୁଃଖିତ ହେଲେ । ସେମାନଙ୍କର ଦୀନ ଦଶା ଦର୍ଶନ କରି ସିଂହ କହିଲା, "ତୁମ୍ଭେମାନେ ଅନ୍ୱେଷଣ କରି ଆମ୍ଭ ସମୀପକୁ କୌଣସି ପଶୁ ଆଣ । ଏତାଦୃଶ ଅବସ୍ଥାପ୍ରାପ୍ତ ହେଲେ ସୁଦ୍ଧା ଆମ୍ଭେ ତାହାକୁ ବଧକରି ତୁମ୍ଭମାନଙ୍କର ଭୋଜନବ୍ୟବସ୍ଥା କରିବୁଁ ।"

ସିଂହର ଏହି ଆଦେଶ ପ୍ରାପ୍ତ ହୋଇ ବ୍ୟାଘ୍ରାଦି ଅନୁଚର-ଚତୁଷ୍ଟୟ ନାନାସ୍ଥାନ ଭ୍ରମଣ କରିବାକୁ ଲାଗିଲେ ; ମାତ୍ର କୌଣସି ସ୍ଥାନରେ ବଧ୍ୟ ପଶୁ ପ୍ରାପ୍ତ ହେଲେ ନାହିଁ । ଅନନ୍ତର ବାୟସ ଶୃଗାଳ ପରସ୍ପର ସହିତ ମନ୍ତ୍ରଣା କଲେ । ଶୃଗାଳ କହିଲା, "ହେ ବାୟସ ! ପଶୁଅନ୍ୱେଷଣରେ ଏତେ ଭ୍ରମଣ କରିବୁଁ କାହିଁକି ? ପ୍ରଭୁଙ୍କର ବିଶ୍ୱାସୀ ଏହି କ୍ରଥନକ ନାମକ ଉଷ୍ଟ୍ରକୁ ବଧକରି ଆମ୍ଭମାନଙ୍କ ସମସ୍ତଙ୍କର ପ୍ରାଣଯାତ୍ରା ନିର୍ବାହ କରିବୁଁ ।" ବାୟସ କହିଲା, "ହେ ଶୃଗାଳ ! ତୁମ୍ଭେ ଯାହା କହିଲ ତାହା ଯଥାର୍ଥ, ମାତ୍ର ସ୍ୱାମୀ ତାହାକୁ ଅଭୟ ଦେଇଥିବାରୁ ସେ ଅବଧ୍ୟ ଅଟେ ।" ଶୃଗାଳ କହିଲା, "ହେ ବାୟସ ! ମୁଁ ସ୍ୱାମୀଙ୍କୁ ପ୍ରବର୍ତ୍ତାଇ ଏପରି କୌଶଳ କରିବି ଯହିଁରେ ସେ ତାହାର ବଧ ନିମନ୍ତେ ଆଦେଶ ଦେବେ । ମୁଁ ଗୃହକୁ ଯାଇ ପ୍ରଭୁଙ୍କର ଆଜ୍ଞା ଆଣିବାପର୍ଯ୍ୟନ୍ତ ତୁମ୍ଭେ ଏହିଠାରେ ଥାଅ ।" ଶୃଗାଳ ଏହିକଥା କହି ସିଂହ ସମୀପକୁ ପ୍ରସ୍ଥାନ କଲା ।

ଅନନ୍ତର ଶୃଗାଳ ସିଂହସମୀପରେ ଉପସ୍ଥିତ ହୋଇ କହିଲା, "ହେ ପ୍ରଭୋ ! ଆମ୍ଭେମାନେ ସମସ୍ତେ ବନ ବୁଲି ବୁଲି ଆସିଲୁଁ; କିନ୍ତୁ ଗୋଟିଏ ସୁଦ୍ଧା ପଶୁ ପାଇଲୁଁ ନାହିଁ । ତେବେ ଏ ଅବସ୍ଥାରେ ଆମ୍ଭମାନଙ୍କର କର୍ତ୍ତବ୍ୟ କଅଣ ? ବର୍ତ୍ତମାନ କ୍ଷୁଧାରେ ଏପରି ବଳହୀନ ହୋଇଅଛୁ ଯେ ଆମ୍ଭେମାନେ ପାଦେ ସୁଦ୍ଧା ଅଗ୍ରସର ହେବାକୁ ଅସମର୍ଥ । ଆମ୍ଭେମାନେ ଆପଣଙ୍କ ଶରୀରର ଯେଉଁ ଅବସ୍ଥା ଦେଖୁଅଛୁଁ ସେଥିରେ ସୁପଥ୍ୟ ଆପଣଙ୍କର ନିତାନ୍ତ ଆବଶ୍ୟକ । ଏପରି ସ୍ଥଳରେ ଯଦି ଆଦେଶ ହୁଏ,

ତେବେ କ୍ରଥନକକୁ ବଧ କରି ତାହାର ମାଂସରେ ଆଜି ଆମ୍ଭମାନଙ୍କର ଭୋଜନ ବ୍ୟବସ୍ଥା କରବୁଁ ।"

ଏହି ନିଷ୍ଠୁର ପ୍ରସ୍ତାବ ଶ୍ରବଣ କରି ସିଂହ କହିଲା"ରେ ପାପାଧମ ! ତୋହର ଏହି ପ୍ରସ୍ତାବକୁ ଶତବାର ଧିକ୍ ! ଯଦି ପୁନର୍ବାର ଏହି ପ୍ରସ୍ତାବ କରୁ, ତାହାହେଲେ ତତ୍କ୍ଷଣାତ୍ ତୋହର ଶିର ଉତ୍ପାଟନ ଦେବୁଁ ।" ଆମ୍ଭେ ତାହାକୁ ଅଭୟ ପ୍ରଦାନ କରିଅଛୁଁ, ତୁ ଜାଣୁ । ବର୍ତ୍ତମାନ ସ୍ୱୟଂ କପରି ତାହାକୁ ବଧ କରିବାର ଆଦେଶ ଦେବୁ ?" ଏଥିରେ ଶୃଗାଳ କହିଲା । "ପ୍ରଭୋ ! ଅଭୟ ପ୍ରଦାନକରି ବଧକରିବା ଗର୍ହଣୀୟ ଏଥିରେ ସନ୍ଦେହ ନାହିଁ । ମାତ୍ର କ୍ରଥନକ ଯଦି ଭକ୍ତିରେ ଆପଣଙ୍କ ଶ୍ରୀମୁଖରେ ବଧ ନିମନ୍ତେ ଆପଣାକୁ ଅର୍ପଣ କରେ, ତେବେ ତାହାକୁ ବଧ କରିବାରେ ଦୋଷ କଅଣ ? ଅଥବା ଆମ୍ଭମାନଙ୍କ ମଧ୍ୟରୁ କୌଣସି ଗୋଟିକୁ ବଧ କରିବା ହେଉ । ଆପଣଙ୍କର ବର୍ତ୍ତମାନ ଅବସ୍ଥାରେ ସୁପଥ୍ୟ ଏକାନ୍ତ ପ୍ରୟୋଜନୀୟ । କ୍ଷୁଧା ନିରୋଧ କଲେ ଅବଲମ୍ବେ ଅନ୍ତିମ ଦଶା ଉପସ୍ଥିତ ହେବ । ଏ ପ୍ରାଣ ଯଦି ସ୍ୱାମୀଙ୍କ ସେବାରେ ଉତ୍ସୃଷ୍ଟ ନ ହେଲା ତେବେ ଏଥିରେ କି ପ୍ରୟୋଜନ ? ସ୍ୱାମୀଙ୍କର ଯଦି ଅନିଷ୍ଟ ଘଟେ, ତେବେ ଆମ୍ଭମାନଙ୍କର ଅଗ୍ନିପ୍ରବେଶ କର୍ତ୍ତବ୍ୟ ଅଟେ ।"

ଏ ସମସ୍ତ ଶ୍ରବଣକରି ମଦୋତ୍କଟ କହିଲା, "ତୁମ୍ଭମାନଙ୍କର ଯାହା ଅଭିରୁଚି ତାହାହିଁ କର ।" ଏହାଶୁଣି ଶୃଗାଳ ସତ୍ୱର ଗମନକରି ସିଂହର ଅନୁଚରବର୍ଗଙ୍କୁ ସମ୍ବୋଧନ କରି କହିଲା "ପ୍ରଭୁଙ୍କର ଅନ୍ତିମ ଅବସ୍ଥା ଉପସ୍ଥିତ । ତାହାଙ୍କର ପ୍ରାଣ ନାସିକାରେ ବିଦ୍ୟମାନ । ଏତେବେଳେ ଆଉ ପର୍ଯ୍ୟଟନ କଲେ କି ଫଳ ହେବ ? ସେ ପରଲୋକ ପ୍ରାପ୍ତହେଲେ ଏ ବନରେ ଆମ୍ଭମାନଙ୍କୁ କିଏ ରକ୍ଷା କରିବ ? ଏପରି ଅବସ୍ଥାରେ ଆପଣାର ପ୍ରାଣଦାନ କରି ତାହାଙ୍କର ପ୍ରାଣରକ୍ଷା କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ ହେଉଅଛି ।" ତଦନନ୍ତର ସମସ୍ତେ ପ୍ରତ୍ୟାଗମନ ପୂର୍ବକ ବାଷ୍ପାକୁଳ ଲୋଚନରେ ମଦୋତ୍କଟଙ୍କୁ ପ୍ରଣାମ କରି ଉପବିଷ୍ଟ ହେଲେ । ମଦୋତ୍କଟ ପଚାରିଲା "ତୁମ୍ଭେମାନେ କୌଣସି ପଶୁପ୍ରାପ୍ତ ହେଲ କି ?"

କାକ ନିବେଦନ କଲା, "ପ୍ରଭୋ ! ଆମ୍ଭେମାନେ ସର୍ବତ୍ର ବିଚରଣ କରି ଗୋଟିଏ ସୁଦ୍ଧା ପଶୁ ବା ପକ୍ଷୀ ପ୍ରାପ୍ତ ହେଲୁ ନାହିଁ । ଅଦ୍ୟ ମୋହର ମାଂସ ଭକ୍ଷଣ କରିବା ହେଉ । ତାହାହେଲେ ପ୍ରଭୁଙ୍କର ପ୍ରାଣରକ୍ଷା ଏବଂ ମୋର ମଧ୍ୟ ସ୍ୱର୍ଗଲାଭ ହେବ ।"

ଶୃଗାଳ କହିଲା, "ମିତ୍ର ! ତୁମ୍ଭେ ସ୍ୱଳ୍ପକାୟ । ତୁମ୍ଭଙ୍କୁ ଭକ୍ଷଣ କଲେ ସ୍ୱାମୀଙ୍କର ପ୍ରାଣଧାରଣର ସମ୍ଭାବନା ଅତି ଅଳ୍ପ । ସ୍ୱାମୀଭକ୍ତି ପ୍ରଦର୍ଶନ କରି ତୁମ୍ଭେ ଅନୃଣୀ ଏବଂ ଇହଲୋକ ଓ ପରଲୋକରେ ଧନ୍ୟବାଦାର୍ହ ହେଲ । ବର୍ତ୍ତମାନ

ମୋତେ ଟିକିଏ ଅଗ୍ରସର ହେବାକୁ ଦିଅ ।” ଏହା କହି ଶୃଗାଳ ସିଂହର ସମୀପବର୍ତ୍ତୀ ହୋଇ ନିବେଦନ କଲା “ପ୍ରଭୋ ! ଅଦ୍ୟ ମୋହର ମାଂସ ଭକ୍ଷଣକରି ପ୍ରାଣଧାରଣ କରିବା ହେଉ ।”

ଅନନ୍ତର ଶୃଗାଳକୁ ସମ୍ବୋଧନ କରି ବ୍ୟାଘ୍ର କହିଲା “ତୁମ୍ଭେ ଯାହା କହିଲ ତାହା ଯଥାର୍ଥ, ମାତ୍ର ତୁମ୍ଭେ ମଧ୍ୟ କ୍ଷୁଦ୍ରକାୟ ଏବଂ ନଖାୟୁଧ ବୋଲି ଦୁର୍ନ୍ନିଖାଦ୍ୟ ଅଭକ୍ଷ୍ୟ । ତୁମ୍ଭେ ଆପଣାର ସାଧୁତା ପ୍ରତିପାଦନ କଲ । ବର୍ତ୍ତମାନ ମୋତେ ଅଗ୍ରସର ହେବାକୁ ଦିଅ ।” ଅନନ୍ତର ବ୍ୟାଘ୍ର ମଦୋତ୍କଟକୁ ପ୍ରଣାମ କରି ବିଜ୍ଞାପନ କଲା, “ସ୍ୱାମିନ୍ ! ଆଜି ମୋହର ମାଂସ ଭକ୍ଷଣକରି ପ୍ରାଣଧାରଣ କରିବା ହେଉ ଏବଂ ସ୍ୱର୍ଗରେ ମୋହର ଅକ୍ଷୟବାସ ବିଧାନ କରିବା ହେଉ । ଏଥିରେ ଆଉ ଦ୍ୱିଧା କରିବା ଉଚିତ ହେଉ ନାହିଁ ।

ଏହି ସମସ୍ତ ଶୁଣି କ୍ରଥନକ ମନେ ମନେ ବିଚାରକଲା “ଆହା ! କି ସାଧୁ ଆତ୍ମତ୍ୟାଗ, ମାତ୍ର ସ୍ୱାମୀ ଏ ତିନି ମଧ୍ୟରୁ କାହାକୁ ତ ବିନାଶ କଲେ ନାହିଁ । ବର୍ତ୍ତମାନ ମୁଁ ଆତ୍ମନିବେଦନ କରି ଦେଖେଁ ।” ଏହା ଭାବି ବ୍ୟାଘ୍ରକୁ ସମ୍ବୋଧନ କରି କ୍ରଥନକ କହିଲା, “ତୁମ୍ଭେ ଯାହା କହିଲ ତାହା ତୁମ୍ଭର ଯୋଗ୍ୟ, ମାତ୍ର ତୁମ୍ଭେ ମଧ୍ୟ ନଖାୟୁଧ । ସ୍ୱାମୀ ତୁମ୍ଭଙ୍କୁ ଭକ୍ଷଣ କରିବେ କିପରି ? ବର୍ତ୍ତମାନ ମୋତେ ଅଗ୍ରସର ହେବାକୁ ଦିଅ । ଅନନ୍ତର ସେ ସମସ୍ତଙ୍କର ଅଗ୍ରବର୍ତ୍ତୀ ହୋଇ ପଶୁରାଜକୁ ପ୍ରଣାମକରି କହିଲା, “ପ୍ରଭୋ ! ଆଜି ମୋର ମାଂସ ଭକ୍ଷଣକରି ଜୀବିକା ନିର୍ବାହ କରିବା ହେଉ । ତାହାହେଲେ ମୋହର ସଦ୍‌ଗତି ସୁନିଶ୍ଚିତ ।”

ତଦନନ୍ତର ସିଂହର ଅନୁଜ୍ଞାରେ ବ୍ୟାଘ୍ର ଶୃଗାଳ, ବାୟସ ତିନିଜଣ ମିଳି କ୍ରଥନକର କୁକ୍ଷି ବିଦାରଣ ଓ ଉତ୍ପାଟନ କରି ତାହାର ପ୍ରାଣ ନାଶ କଲେ ।

———

## ୮୦—ଜର୍ଜ ଓ୍ୱାଶିଂଟନ୍ (୧)

ଆମେରିକା ମହାଦେଶରେ ଇଉନାଇଟେଡ୍ ଷ୍ଟେଟସ୍ ନାମକ ଗୋଟିଏ ବୃହତ୍ ଦେଶ ଅଛି । ଭାରତବର୍ଷରେ ତାହା ମାର୍କିନଦେଶ ନାମରେ ପରିଚିତ । ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀରେ ଓ୍ୱାଶିଂଟନ୍ ଉପାଧିଧାରୀ ଜଣେ ମାର୍କିନ୍ ଦେଶବାସୀର ଗୋଟିଏ ପୁତ୍ରସନ୍ତାନ ହେଲା । ନବଜାତ ଶିଶୁର ନାମ ହେଲା ଜର୍ଜ । ଜର୍ଜର ଯେତେବେଳେ ଛଅବର୍ଷ ବୟସ, ସେହି ସମୟରେ ତାହାର ପିତୃବ୍ୟ ଦିନେ ତାହାକୁ ସାନ କୁରାଢ଼ି ଖଣ୍ଡିଏ ଉପହାର ଦେଲେ । ଏଥିପୂର୍ବେ ଜର୍ଜ କୁରାଢ଼ି ଦେଖି ନ

ନ ଥିଲା । ସୁତରାଂ କୁରହାଡ଼ି ଖଣ୍ଡିକ ପାଇ ସେ ଅତ୍ୟନ୍ତ ଆନନ୍ଦିତ ହେଲା । ସେଦିନ ବିଦ୍ୟାଳୟକୁ ଗଲବେଳେ ବାଟରେ ତନ୍ମୟ ହୋଇ କୁରହାଡ଼ି ବିଷୟ ଭାବି ଭାବି ଗଲା । ବିଦ୍ୟାଳୟ ଛୁଟି ହେଲା ମାତ୍ରେ ସେ ଦ୍ରୁତ ବେଗରେ ଘରେ ପହଞ୍ଚି କୁରହଡ଼ି ଖଣ୍ଡିକ ହାତରେ ଧରି ନାନାପ୍ରକାରେ ତାହାକୁ ନିରୀକ୍ଷଣ କଲା । ଓହୋ ! କୁରହାଡ଼ି ଖଣ୍ଡିକ କେଡ଼େ ଉଜ୍ଜ୍ୱଳ ! ଧାର କେଡ଼େ ତୀକ୍ଷ୍ଣ ! କାଠବେଣ୍ଟ ଖଣ୍ଡିକ କେଡ଼େ ସୁନ୍ଦର ହୋଇଅଛି । ଜର୍ଜ ମନେ ମନେ ଏହିପରି କୁରହାଡ଼ିର ରୂପଗୁଣ ପ୍ରଶଂସା କରି ସ୍ଥିରକଲା, "ଏ କୁରହାଡ଼ିରେ ସବୁ ପଦାର୍ଥ କାଟି ହେବ । ଆଚ୍ଛା, କୌଣସି ଗୋଟିଏ ପଦାର୍ଥରେ ଏହାର ଧାର ପରୀକ୍ଷା କରିବା ।"

ଅନନ୍ତର ଜର୍ଜ ବିଦ୍ୟୁତ୍ ବେଗରେ ପିତାଙ୍କ ଉଦ୍ୟାନରେ ପ୍ରବେଶ କଲା । ସେଠାରେ ଗୋଟିଏ ତରୁଣ ବୃକ୍ଷ ଦେଖି ତହିଁରେ କୁରହାଡ଼ିର ଧାର ପରୀକ୍ଷା କରିବାକୁ ଲଗିଲା । ମାତ୍ର ଥରେ ସୁଦ୍ଧା ଭାବିଲା ନାହିଁ ଯେ, ସେ ଯେଉଁ କାର୍ଯ୍ୟ କରୁଥିଲା ସେଥିରେ ଲଭ କେତେ, କ୍ଷତି ବା କେତେ । କୁରହାଡ଼ି ଯେତେ ଉପରକୁ ଯାଇପାରେ ମୂଳରୁ ସେପର୍ଯ୍ୟନ୍ତ ବୃକ୍ଷବଲ୍‌କଲ ସମସ୍ତ ଜର୍ଜ ମୁହୂର୍ତ୍ତି ମଧ୍ୟରେ ଛେଦି ପକାଇଲା । ତତ୍ପରେ ଜର୍ଜ ଗୃହକୁ ପ୍ରତ୍ୟାଗମନ କରି ଯଥାବିଧି ପାନାହାର କଲା ।

ଆହାରାନ୍ତେ ଜର୍ଜର ପିତା ଉଦ୍ୟାନକୁ ଗଲେ, ଏବଂ ବୃକ୍ଷଟିର ଏ ଶୋଚନୀୟ ଅବସ୍ଥା ଦେଖି ବିସ୍ମିତ ଓ ଦୁଃଖିତ ହେଲେ । ଅନନ୍ତର ସେ କ୍ରୋଧଭରରେ ଉଚ୍ଚୈଃ ସ୍ୱରରେ କହିଲେ, "କିଏ ଏହି ଦୁଷ୍କାର୍ଯ୍ୟ କଲା ? ଉପଯୁକ୍ତ ବେତ୍ରାଘାତରେ ଆଜି ତାହାର ପ୍ରାୟଶ୍ଚିତ୍ତ କରିବି ।"

ଜର୍ଜ ମଧ୍ୟ ପିତାଙ୍କ ସଙ୍ଗେ ସଙ୍ଗେ ଉଦ୍ୟାନକୁ ଗମନ କରିଥିଲା । ପିତାଙ୍କର କ୍ରୋଧ ଦେଖି ସେ ଭୟରେ କମ୍ପିତ ହୋଇ ଦଣ୍ଡାୟମାନ ହେଲା । ତାହାର ଏହି ଭାବ ନିରୀକ୍ଷଣ କରି ପିତା ପଚାରିଲେ "କିଏ ଏହି ଦୁଷ୍କାର୍ଯ୍ୟ କରିଅଛି ଜାଣୁ ? ଦଣ୍ଡର ଆଶଙ୍କା ଅନୁଭବ କରି ସୁଦ୍ଧା ବାଳକଟି ଗଦ୍‌ଗଦ୍ ସ୍ୱରରେ କହିଲା "ବାପା ! ମିଥ୍ୟା କଥା ମୋ ତୁଣ୍ଡରୁ ବାହାରୁ ନାହିଁ । ମୋର ନୂଆ କୁରହାଡ଼ିରେ ମୁଁ ଏହି କାର୍ଯ୍ୟ କରିଅଛି ।"

ଜର୍ଜର ପିତା କଅଣ କଲେ ବୋଲି ତୁମ୍ଭଙ୍କୁ ବୋଧ ହେଉଅଛି ? ସେ ଶିଶୁ-ପୁତ୍ରକୁ ଦଣ୍ଡଦେଲେ କି ? ନା, ସେ ତାହାକୁ ଆଲିଙ୍ଗନ କରି ତାହା ମୁଖ ଚୁମ୍ବନ କରି କହିଲେ, "ବତ୍ସ ! ତୋହର ଏହି ସତ୍ୟ-କଥନରେ ମୁଁ ଆନନ୍ଦିତ ହେଲି । ମୋର ଉଦ୍ୟାନର ତାବତୀୟ ବୃକ୍ଷ ବରଂ ନଷ୍ଟ ହେଉ, ମାତ୍ର ମୋର ପୁତ୍ର ମିଥ୍ୟା କହି କେବେହେଁ କଳଙ୍କିତ ନ ହେଉ ।"

ପରିଣତ ବୟସରେ ଏହି ଜର୍ଜ ସାହସ ଏବଂ ବହୁବିଧ ଅପର ସଦ୍‌ଗୁଣ ନିମନ୍ତେ ଖ୍ୟାତି ଲଭକଲେ । ତାହାଙ୍କର ଗୁଣାବଳି ଦେଖି ସେ ଦେଶର ଲୋକେ

ତାହାଙ୍କ ଉପରେ ବିଶ୍ୱାସ ସ୍ଥାପନ କଲେ । ତଦନନ୍ତର ଜର୍ଜ ସ୍ୱଦେଶର ସେନାପତି ହେଲେ । ଆଜି ପର୍ଯ୍ୟନ୍ତ ମାର୍କିନ୍ ଦେଶରେ କୌଣସି ବ୍ୟକ୍ତି ଗୁଣରେ ଓ ଖ୍ୟାତିରେ ତାହାଙ୍କୁ ଅତିକ୍ରମ କରିପାରି ନାହାନ୍ତି ।

———

## ୮୧—ଜର୍ଜ ଓ୍ୱାଶିଂଟନ୍ (୨)

ଆମେରିକା ମହାଦେଶରେ ଇଉନାଇଟେଡ୍ ଷ୍ଟେଟ୍ସ ନାମରେ ଯେଉଁ ବୃହତ୍ ଦେଶ ଅଛି, ଭାରତବର୍ଷରେ ତାହା ମାର୍କିନ୍‌ଦେଶ ନାମରେ ପରିଚିତ । ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀରେ ଜର୍ଜ ଓ୍ୱାଶିଂଟନ୍ ନାମରେ ଜଣେ ଲୋକ ସେ ଦେଶରେ ଆବିର୍ଭୂତ ହେଲେ । ଶୈଶବ ଓ ବାଲ୍ୟକାଳରେ ସତ୍ୟବାଦୀ ବୋଲି ଜର୍ଜଙ୍କର ଖ୍ୟାତି ଥିଲା । ଉତ୍ତରକାଳରେ ତାଙ୍କର ଦୟା ଓ ଅପର କେତେଗୁଡ଼ିଏ ଗୁଣ ବିକାଶପ୍ରାପ୍ତ ହେଲା ।

ଯୋଗ୍ୟତା ବଳରେ ଜର୍ଜ ଓ୍ୱାଶିଂଟନ୍ ସ୍ୱଦେଶରେ ସେନାପତି ହୋଇ ସୁଖ୍ୟାତି ଉପାର୍ଜନ କଲେ । ଏହି ସମୟରେ ସେ ଦିନେ ଅଶ୍ୱାରୋହଣ କରି ଯାଉଥିଲେ । ସେ ସାଧାରଣ ପରିଚ୍ଛଦ ପରିଧାନ କରିଥିଲେ । ସେଥିରେ ତାହାଙ୍କର ସାମରିକ ପଦର କୌଣସି ଚିହ୍ନ ନ ଥିଲା । ସେ ମାର୍ଗରେ ଦେଖିଲେ କେତେକ ଜଣ ସୈନିକ-ପୁରୁଷ ନଦୀର ବାଲୁକାଶଯ୍ୟାରୁ ଖଣ୍ଡିଏ ଭାରି କାଷ୍ଠ କୂଳକୁ ଆଣିବା ପାଇଁ ଚେଷ୍ଟା କରୁଅଛନ୍ତି ଏବଂ ସୈନିକମାନଙ୍କର ଜମାଦାର ଉପସ୍ଥିତ ଥାଇ ସେମାନଙ୍କୁ ଆଦେଶ ମାତ୍ର ଦେଉଅଛନ୍ତି । ସେମାନଙ୍କ ମଧ୍ୟରୁ କେହି ସେନାପତି ଓ୍ୱାଶିଂଟନଙ୍କୁ ଚିହ୍ନି ନ ଥିଲେ ।

କାଷ୍ଠଖଣ୍ଡିକ ଅତିଶୟ ଭାରି ଥିବାରୁ ଯଥୋପଯୁକ୍ତ ଯତ୍ନ କରି ସୁଦ୍ଧା ସୈନିକମାନେ ତାହାକୁ ଉଠାଇ ପାରିଲେ ନାହିଁ । ଅନ୍ତତଃ ଆଉ ଜଣେ ଲୋକର ସାହାଯ୍ୟ ପାଇଲେ ସେମାନେ କାଷ୍ଠ ଖଣ୍ଡିକ ଉଠାଇବାକୁ ସମର୍ଥ ହୁଅନ୍ତେ । ଜମାଦାର ଏପରି ସାହାଯ୍ୟ କରିବା ଆପଣାର ପଦର ଅଯୋଗ୍ୟ ମନେ କରି ସେ ବିଷୟରେ ଉଦାସୀନ ହୋଇ ରହିଲେ । "ସାବାସ୍" "ସାବାସ୍", "ଉଠାଅ" 'ଉଠାଅ' ଏହିପରି ବାକ୍ୟରେ ସୈନିକମାନଙ୍କୁ ଉତ୍ସାହିତ କରିବା ହିଁ ତାହାଙ୍କର କର୍ତ୍ତବ୍ୟ ବୋଲି ସେ ଅବଧାରଣ କଲେ । ଓ୍ୱାଶିଂଟନ୍ ତାଙ୍କୁ ପ୍ରଶ୍ନ କଲେ, "ଆପଣ ଦେହି ଲଗାଇ ସୈନିକମାନଙ୍କୁ କିପାଇଁ ସାହାଯ୍ୟ କରୁନାହାନ୍ତି ।" ଆଗନ୍ତୁକ ଆଡ଼କୁ ମୁଖ ଫେରାଇ ଜମାଦାର କହିଲେ, "ଆମ୍ଭେ କିଏ ଆପଣ ଜାଣନ୍ତି ? ଆମ୍ଭେ ଜମାଦାର, ଇତର ସୈନିକ ନୋହୁଁ ।"

ଏହା ଶୁଣି ଓ୍ୱାଶିଂଟନ୍ କହିଲେ, "ଜମାଦାର ସାହେବ ! କ୍ଷମା କରିବା ହେଉ । ଆପଣ ଏଡ଼େ ଉଚ୍ଚପଦସ୍ଥ ବ୍ୟକ୍ତି ବୋଲି ମୋତେ ଜଣା ନ ଥିଲା ।" ଓ୍ୱାଶିଂଟନ୍ ତତ୍କ୍ଷଣାତ୍ ଅଶ୍ୱରୁ ଅବତରଣ କରି ସ୍ୱହସ୍ତରେ କାଷ୍ଠଖଣ୍ଡିକ ଧରି ସୈନିକମାନଙ୍କ ସହିତ ତାହାକୁ ଯଥାଶକ୍ତି ଓଟାରିବାକୁ ଲଗିଲେ । ତାହାଙ୍କର ସହାୟତାରେ ସେମାନେ କାଷ୍ଠ ଖଣ୍ଡିକ ଯଥାସ୍ଥାନରେ ସ୍ଥାପନ କରିବାକୁ ସମର୍ଥ ହେଲେ ।

ଅନନ୍ତର ଓ୍ୱାଶିଂଟନ୍ ପୁନର୍ବାର ଅଶ୍ୱପୃଷ୍ଠରେ ଆରୋହଣ କରି ଅଭୀଷ୍ଟ ସ୍ଥାନକୁ ଗମନକଲେ । ଗମନକରିବା ପୂର୍ବରୁ ସେ ଜମାଦାରଙ୍କୁ ସମ୍ବୋଧନ କରି କହିଲେ,"ଜମାଦାର ସାହେବ ! ଭବିଷ୍ୟତରେ ଗୁରୁତର କାର୍ଯ୍ୟ ପାଇଁ ମନୁଷ୍ୟର ଅଭାବ ହେଲେ ଆମ୍ଭଙ୍କୁ ସମ୍ବାଦ ଦେବ । ଏପରି କାର୍ଯ୍ୟରେ ସାହାଯ୍ୟ କରିବାପାଇଁ ତୁମ୍ଭର ସେନାପତି ସର୍ବଦା ପ୍ରସ୍ତୁତ ଥାଆନ୍ତି ବୋଲି ଜାଣିବ ।"

ଏହାଶୁଣି ଜମାଦାର ଲଜ୍ଜା ଓ ବିସ୍ମୟରେ ଜଡ଼ବତ୍ ସ୍ତବ୍ଧ ହୋଇଗଲେ, ତାହାଙ୍କ ତୁଣ୍ଡରୁ ଭାଷା ବାହାରିଲା ନାହିଁ ।

---

## ୮୨—ବାୟାଚଢ଼େଇ ଓ ମାଙ୍କଡ଼ମାନଙ୍କ କଥା

ନର୍ମଦା-ନଦୀର କୂଳରେ ଗୋଟିଏ ବିଶାଳ ଶିମୁଳୀବୃକ୍ଷ ଥିଲା । କେତେଗୁଡ଼ିଏ ବାୟାଚଢ଼େଇ ଏହିବୃକ୍ଷର ଶାଖାରୁ ତଳକୁ ଲମ୍ବାଇ ବସାଗୁଡ଼ିଏ ନିର୍ମାଣକଲେ, ଏବଂ ଗ୍ରୀଷ୍ମ ବର୍ଷାଦି ଋତୁରେ ତହିଁରେ ଆନନ୍ଦରେ ବାସକଲେ । ବର୍ଷାକାଳ ଉପସ୍ଥିତ ହେବାରୁ ଆକାଶ ମେଘମାଳାରେ ଆଚ୍ଛନ୍ନ ହେଲା ଏବଂ ଅଜସ୍ର ବୃଷ୍ଟିପାତ ହେଲା ।

ପକ୍ଷୀମାନେ ଆପଣା ଆପଣା ବସାରେ ଥାଇ ବହିର୍ମୁଖ ହୋଇ ଦେଖିଲେ, ବୃକ୍ଷମୂଳରେ କେତେଗୁଡ଼ିଏ ମର୍କଟ ବର୍ଷାଜନିତ ଶୀତରେ ଥରଥର ହୋଇ କଷ୍ଟ ଭୋଗ କରୁଅଛନ୍ତି । ପକ୍ଷୀମାନେ ସେମାନଙ୍କୁ ସମ୍ବୋଧନ କରି କହିଲେ "ହେ ମର୍କଟମାନେ ! ଆମ୍ଭେମାନେ କଅଣ କହୁଅଛୁ ଶୁଣ—

ବିଧାତା ନ ଦେଲେ ; ଚଞ୍ଚୁର ମୂନରେ<br>
କେଡ଼େ ଦୃଢ଼ ନୀଡ଼ ଦେଖ କଲୁଁ କୌଶଳରେ ।

ଅଛି ଦୁଇ ପାଦ ତବ ପୁଣି ଦୁଇ କର ,<br>
କିପାଇଁ ଉଦ୍ଧୃତ ନୀଡ଼ ରଚନା ନ କର ?

ରହିବ ଆନନ୍ଦେ, କଲେ କୁଳାୟ ରଚନା ;
ନୋହିଲେ ଭୋଗିବ କଷ୍ଟେ ବରଷା-ଯନ୍ତ୍ରଣା ।”

ପକ୍ଷୀମାନଙ୍କର ଏହିପରି ହାସ ବାକ୍ୟ ଶୁଣି ମର୍କଟମାନେ ମର୍ମାହତ ହେଲେ । ସେମାନେ ଚିତ୍କାର କରି କହିଲେ ଓ ହୋ ! ପକ୍ଷିଜାତିର ଏତେ ସାହସ ହେଲାଣି ଆମ୍ଭମାନଙ୍କୁ ପରିହାସ କରୁଅଛନ୍ତି ! ଆଚ୍ଛା ! ଟିକିଏ ଧୈର୍ଯ୍ୟ ଧର, ବୃଷ୍ଟିର ବିରାମ ହେଉ ।” ଅନନ୍ତର ବୃଷ୍ଟିର ବିରାମ ହେଲାମାତ୍ରକେ ମର୍କଟମାନେ ବୃକ୍ଷ-ଶାଖାରେ ଆରୋହଣ କରି ପକ୍ଷୀମାନଙ୍କର ଅଣ୍ଡାଗୁଡ଼ିକ ବିନଷ୍ଟ କଲେ ଏବଂ ସେମାନଙ୍କର ବସାଗୁଡ଼ିକ ଖଣ୍ଡଖଣ୍ଡ କରି ପକାଇଲେ ।

---

## ୮୩—ଶୃଗାଳ ଓ ହସ୍ତୀର କଥା

ବ୍ରହ୍ମଦେଶର ଅରଣ୍ୟରେ ଶ୍ୱେତମୁଖ ନାମରେ ଗୋଟିଏ ହସ୍ତୀ ବାସ କରୁଥିଲା । ତାହାର ଜନ୍ମଭୂମିରେ ଦୁର୍ଭିକ୍ଷ ଉପସ୍ଥିତ ହେବାରୁ ସେ ବହୁଦୂର ଅତିକ୍ରମ କରି ଏହି ଅରଣ୍ୟକୁ ଆସିଥିଲା । ଏହି ହସ୍ତୀକୁ ଦେଖି ଶୃଗାଳମାନେ ଆପଣା ମଧ୍ୟରେ ଗୋଟିଏ ସଭା କରି ମନ୍ତ୍ରଣା କଲେ, ‘ଏହି ମହାକାୟ ପ୍ରାଣୀର ବିନାଶହେଲେ ଏହାର ଶରୀରର ମାଂସ ଭକ୍ଷଣକରି ଆମ୍ଭେମାନେ ଚାରିମାସ ଅଥବା ତହିଁରୁ ଅଧିକ କାଳ ଆନନ୍ଦରେ କଟାଇପାରୁଁ ।” ନାନା ତର୍କଉତ୍ତାରୁ ଗୋଟିଏ ବୃଦ୍ଧ ଶୃଗାଳ ଗୂଢ଼ କୌଶଳରେ ହସ୍ତୀର ପ୍ରାଣନାଶ କରିବ ବୋଲି ପ୍ରତିଶ୍ରୁତ ହେଲା ।

ସନ୍ଧ୍ୟାସମୟ ଉପସ୍ଥିତ ହେବାରୁ ସେ ଶ୍ୱେତମୁଖ ଅପେକ୍ଷାରେ ମାର୍ଗ ପାର୍ଶ୍ୱରେ ଦଣ୍ଡାୟମାନ ହେଲା । ଶ୍ୱେତମୁଖ ଉପସ୍ଥିତ ହୁଅନ୍ତେ ବୃଦ୍ଧ ଶୃଗାଳ ଗମ୍ଭୀରଭାବରେ ସାଷ୍ଟାଙ୍ଗ ପ୍ରଣିପାତ କରି କହିଲା “ହେ ହସ୍ତୀରାଜ ! ଆପଣଙ୍କର ଏ ଦାସ ପ୍ରତି ଥରେ କୃପାଦୃଷ୍ଟି ନିକ୍ଷେପ କରିବା ହେଉ ।”

ହସ୍ତୀ ଗର୍ଜନ କରି କହିଲା “ତୁମ୍ଭେ କିଏ ? କେଉଁଠାରୁ ଆସିଲ ? କଅଣ ମାଗୁଅଛ ?” ଶୃଗାଳ କହିଲା “ମୁଁ ଗୋଟିଏ ଶୃଗାଳଟିଏ । ଏହି ଅରଣ୍ୟ ଆଜିପର୍ଯ୍ୟନ୍ତ ଅରାଜକ ହୋଇ ରହିଅଛି । ଉପଯୁକ୍ତ ବ୍ୟକ୍ତିର ଅଭାବରେ ପଶୁମାନେ କାହାରିକୁ ରାଜପଦରେ ବରଣ କରିନାହାନ୍ତି । ମାତ୍ର ଆପଣଙ୍କର ଶୁଭାଗମନ ଦେଖି ସେମାନେ ସମସ୍ତେ ଏକ ମହାସଭା କରି ଆପଣଙ୍କ ପାଖକୁ ପ୍ରତିନିଧି ସ୍ୱରୂପ ମୋତେ ପ୍ରେରଣ କରି କହିଅଛନ୍ତି, ଯେ “ଆପଣ ନ୍ୟାୟପରାୟଣ ବଳବାନ୍ ଓ ବିଜ୍ଞ ଏବଂ ସର୍ବାଂଶରେ ଆମ୍ଭମାନଙ୍କ ଉପରେ ରାଜତ୍ୱ କରିବାକୁ ଯୋଗ୍ୟ ଅଟନ୍ତି ।” ଅତଏବ ଏହି

ଅରଣ୍ୟର ପଶୁମାନେ ଆପଣଙ୍କୁ ରାଜପଦରେ ବରଣ କରୁଅଛନ୍ତି । ହେ ପଶୁରାଜ ! ପଶୁମାନଙ୍କର ମହାସଭାକୁ ବିଜେ କରିବା ହେଉ । ସେମାନେ ଏହି ଶୁଭ ମୁହୂର୍ତ୍ତରେ ରାଜପଦରେ ଆପଣଙ୍କ ଅଭିଷେକ ସମ୍ପାଦନ କରିବେ ।” ଏହା କହି ଶୃଗାଳ ଅଗ୍ରସର ହେଲା । ଶ୍ୱେତମୁଖ ରାଜତ୍ୱର ଆଶାରେ କ୍ଷିପ୍ରପଦରେ ତାହାର ଅନୁଗମନ କଲା ।

ଧୂର୍ତ୍ତ ଶୃଗାଳ ହଠାତ୍ ଗଭୀର କର୍ଦ୍ଦମମୟ ପାଙ୍କରେ ହସ୍ତୀକୁ ଅବତରଣ କରାଇଲା । ଆପଣାର ଗତିବେଗ ନିବାରଣ କରୁଁ କରୁଁ ଶ୍ୱେତମୁଖ କର୍ଦ୍ଦମରେ ଆକଣ୍ଠ ବୁଡ଼ିଗଲା ।

ହସ୍ତୀ ଉଚ୍ଚୈଃ ସ୍ୱରରେ କହିଲା, “ଆହେ ଶୃଗାଳ ! ବର୍ତ୍ତମାନ ଆମ୍ଭର ଉପାୟ କଣ ? ଆମ୍ଭର ଅର୍ଦ୍ଧଶରୀର କର୍ଦ୍ଦମରେ ମଗ୍ନ ହୋଇଗଲା ; ଆମ୍ଭେ ଉତ୍‌ଥାନର ଚେଷ୍ଟା ଯେତିକ କରୁଅଛୁଁ, କର୍ଦ୍ଦମରେ ତେତେ ଅଧିକ ମଗ୍ନ ହେଉଅଛୁଁ ।” ଶୃଗାଳ ହସିହସି କହିଲା “ହେ ରାଜନ୍ ! ଶୁଣ୍ଡରେ ଆମ୍ଭ ଲାଙ୍ଗୁଳର ଅଗ୍ରଭାଗ ଧାରଣ କରି ଆପଣାକୁ କର୍ଦ୍ଦମରୁ ଉଦ୍ଧାର କର ।” ଶ୍ୱେତମୁଖ ହସ୍ତୀ ବର୍ତ୍ତମାନ ବୁଝିପାରିଲା ଯେ ସେ ପ୍ରତାରିତ ହୋଇଅଛି । ଉଦ୍ଧାରର କୌଣସି ଉପାୟ ନ ପାଇ ସେ ସମ୍ପୂର୍ଣ୍ଣରୂପେ କର୍ଦ୍ଦମରେ ମଗ୍ନ ହୋଇଗଲା । ଅନନ୍ତର ଶୃଗାଳମାନେ ତାହାର ମାଂସ ଭକ୍ଷଣ କଲେ । ବିଶାଳକାୟ ହସ୍ତୀ ଧୂର୍ତ୍ତ ଶୃଗାଳର ଚାଟୁବାକ୍ୟରେ କର୍ଣ୍ଣପାତ କରି ଏହିରୂପେ ଆପଣାର ପ୍ରାଣ ହରାଇଲା ।

---

## ୮୪—ରାଣୀ ଜୟମତୀ

ଆସାମ ଦେଶରେ ଶିବସାଗର ନଗରରୁ ସାର୍ଦ୍ଧ ଏକ କ୍ରୋଶ ଦୂରରେ ଜୟସାଗର ନାମରେ ଗୋଟିଏ ବୃହତ୍ ଜଳାଶୟ ଏବଂ ତାହାର କୂଳରେ ଜୟଦେବ ନାମରେ ବୃହତ୍ ଦେବାଳୟ ଅଛି । ରୁଦ୍ରସିଂହନାମକ ଆସାମର ବିଖ୍ୟାତ ରାଜା ସ୍ୱୀୟ ମାତା ଜୟମତୀଙ୍କର ନାମ ଚିରସ୍ମରଣୀୟ କରିବା ନିମନ୍ତେ ଏହି ଜଳାଶୟ ଖନନ ଏବଂ ଏହି ମନ୍ଦିର ନିର୍ମାଣ କରାଇଲେ ।

ପ୍ରାୟ ଦୁଇ ଶତ ବର୍ଷ ହେଲା ଜୟମତୀ ପରଲୋକ ଗମନ କଲେ । ସେ ଆସାମର ରାଜା ଗଦାପାଣିଙ୍କର ରାଜ୍ଞୀ ଥିଲେ । ବର୍ଣ୍ଣିତ ସମୟର ପୂର୍ବବର୍ତ୍ତୀ କାଳରେ ଲର ରାଜା ଆସାମର ଅଧିପତି ଥିଲେ । ସେ ରାଜକୁଳରେ ଜନ୍ମି ନ ଥିବାରୁ ସେ ଦେଶର ମୁଖ୍ୟ ଓ ପରାକ୍ରମଶାଳୀ ବ୍ୟକ୍ତିମାନେ କାଳେ ତାହାଙ୍କୁ ହତ୍ୟାକରି ରାଜବଂଶୀୟ କୌଣସି ବ୍ୟକ୍ତିକୁ ସିଂହାସନରେ ଆରୋପଣ କରିବେ, ଏହି ଭୟ ସର୍ବଦା ତାହାଙ୍କ ମନରେ ଜାଗରୂକ ଥିଲା ।

ସେ କାଳରେ ଆସାମ ଦେଶରେ ଏହିବିଧି ଥିଲା କି ଅନ୍ଧ, ଖଞ୍ଜ, ବିକର୍ଣ୍ଣ, ବିଗ ବା ଅନ୍ୟ କୌଣସି ପ୍ରକାରେ ବିକଳାଙ୍ଗ ବ୍ୟକ୍ତି ସିଂହାସନରେ ବସିବାକୁ ଅଯୋଗ୍ୟ । ଏହି ହେତୁରୁ ରାଜା ଲର ରାଜବଂଶୀୟ ପ୍ରତ୍ୟେକ ପୁରୁଷକୁ ହତ୍ୟା କରିବାରେ ଅଥବା ବିକଳାଙ୍ଗ କରିବାରେ ଅଧ୍ୟବସାୟୀ ହେଲେ ।

ଗଦାପାଣି ରାଜବଂଶୀୟ, ସାହସୀ ଓ ସାଧୁସ୍ୱଭାବ ଥିବାରୁ ସମସ୍ତଙ୍କର ପ୍ରୀତିପାତ୍ର ଥିଲେ । ରାଜା ଲର ତାହାଙ୍କୁ ଧରିଆଣିବା ପାଇଁ କେତେଗୁଡ଼ିଏ ଲୋକ ପଠାଇଲେ । ଏହା ଶ୍ରବଣ କରି ଗଦାପାଣି ପଳାୟନ କରି ନାଗ ପର୍ବତରେ ଲୁକ୍କାୟିତ ଭାବରେ ରହିଲେ । ଅନନ୍ତର ରାଜା ଲର ତାହାଙ୍କର ପତ୍ନୀକୁ ଧରି ଆଣି ତାହାଙ୍କଠାରୁ ଗଦାପାଣିଙ୍କର ଗୁପ୍ତସ୍ଥାନ ଜାଣିବା ନିମନ୍ତେ ନାନା କୌଶଳ କଲେ । ମାତ୍ର ଜୟମତୀ କୌଣସି ପ୍ରକାରେ ତାହା ପ୍ରକାଶକଲେ ନାହିଁ । ଅବଶେଷରେ ତାହାଙ୍କର ଲୋକେ ପ୍ରସ୍ତରେ ଜୟମତୀଙ୍କୁ ବନ୍ଧନ କରି ପ୍ରତିଦିନ ନିର୍ଦ୍ଦୟରୂପେ ପ୍ରହାରକଲେ । ତଥାପି ଜୟମତୀ ଅଟଳ ରହିଲେ । ସ୍ୱପତ୍ନୀର ଏହି ଲାଞ୍ଛନା ଶ୍ରବଣ କରିବାମାତ୍ରେ ଗଦାପାଣି ପର୍ବତରୁ ଅବତରଣ କରି ଆତ୍ମସମର୍ପଣ ଦ୍ୱାରା ସ୍ତ୍ରୀର ପ୍ରାଣରକ୍ଷା କରିବା ଅଭିପ୍ରାୟରେ ଛଦ୍ମବେଶରେ ରାଜପ୍ରାସାଦରେ ଉପସ୍ଥିତ ହେଲେ ।

ଗଦାପାଣି ରାଜାଙ୍କ ସମୀପକୁ ଗମନ କରୁଅଛନ୍ତି ଏମନ୍ତ ସମୟରେ ପ୍ରତ୍ୟୁତ୍ପନ୍ନମତି ଜୟମତୀ ତାହାଙ୍କୁ ଦେଖିପାରି କହିଲେ "ମାତୁଳ ! କି ନିମନ୍ତେ ତୁମ୍ଭେ ଏଠାକୁ ଆସିଅଛ ? ମୋ ପ୍ରତି ତୁମ୍ଭର ଯଦି ସ୍ନେହ ଥାଏ ତେବେ ମୋହର ଅନୁରୋଧ ରକ୍ଷାକରି ତୁମ୍ଭେ ଏଠାରୁ ଚାଲିଯାଅ । ମୋହର ସ୍ୱାମୀଙ୍କୁ କହିବ ସେ କେବେ ହେଁ ଏଠାକୁ ଆସିବେ ନାହିଁ । ସେ ଏଠାକୁ ନ ଆସିଲେ ମୁଁ ଜାଣିବି ମୋ ପ୍ରତି ତାହାଙ୍କର ପ୍ରୀତି ଅକ୍ଷୁଣ୍ଣ ରହିଅଛି ।" ତେତେବେଳେ ଯେଉଁମାନେ ସେଠାରେ ଉପସ୍ଥିତ ଥିଲେ ସେମାନଙ୍କ ମଧ୍ୟରୁ କେହି ଗଦାପାଣିଙ୍କୁ ଚିହ୍ନି ନ ଥିଲେ । ସେମାନେ ସମସ୍ତେ ତାଙ୍କୁ ଜୟମତୀଙ୍କର ମାତୁଳ ବୋଲି ମନେକଲେ । ସେ ଜୟମତୀଙ୍କର ଅନୁରୋଧ ଅନୁସାରେ ସେ ସ୍ଥାନ ପରିତ୍ୟାଗ କରି ଚାଲିଗଲେ । ସେ ମନେ ମନେ ବିଚାର କଲେ ରାଜା ଅବଳାର ପ୍ରାଣବଧ ନ କରି କିୟତ୍କାଳପରେ ତାହାକୁ ମୁକ୍ତ ଦେବେ ।

କିନ୍ତୁ ରାଜଭୃତ୍ୟମାନଙ୍କର ପୌନଃପୁନିକ ନିଷ୍ଠୁର ଆଘାତରେ ଜୟମତୀ ଅବଶେଷରେ ପ୍ରାଣତ୍ୟାଗ କଲେ । ଏହି ସମ୍ବାଦ ତାହାଙ୍କର ସ୍ୱାମୀଙ୍କର ମନକୁ ଶୋକରେ ଅଭିଭୂତ କଲା । ଅନନ୍ତର ଗଦାପାଣି ରାଜ୍ୟ ଲାଭକଲେ । ଜୟମତୀଙ୍କ ଗର୍ଭରୁ ଜାତ ପୁତ୍ର ତାହାଙ୍କର ମୃତ୍ୟୁପରେ ଆସାମ ସିଂହାସନ ଆରୋହଣ କଲେ । ଆସାମର ରାଜାମାନଙ୍କ ମଧ୍ୟରେ ସେ ସର୍ବାପେକ୍ଷା ଅଧିକ ଖ୍ୟାତି ଲାଭ କରିଥିଲେ । ତାହାଙ୍କ ନାମ ରୁଦ୍ରସିଂହ ।

———

# ୮୫—ରାଜା କେନଉଟ୍ ଓ ଚାଟୁକାର ପାରିଷଦମାନଙ୍କ କଥା

ସୁବିଖ୍ୟାତ ଆଲ୍ ଫ୍ରେଡ୍‌ଙ୍କ ଉତ୍ତାରେ ଇଂଲଣ୍ଡଦେଶରେ ଅପ୍ରସିଦ୍ଧ ଅନେକ ରାଜା ରାଜପଣ କଲେ । ଅନନ୍ତର ଦିନାମାରମାନେ ସମସ୍ତ ଇଂଲଣ୍ଡ ଦେଶ ଅଧିକାର କରି ସେଥିରେ ରାଜତ୍ୱ କରିବାକୁ ଲାଗିଲେ । କିୟତ୍କାଳପରେ ଦିନାମାର୍, ସାକ୍‌ସନ୍ ଓ ସେ ଦେଶର ପ୍ରାଚୀନତମ ଅଧିବାସୀ ବ୍ରିଟନ୍ ଏ ତିନି ଜାତି ବୈବାହିକ ସୂତ୍ରରେ ଆବଦ୍ଧ ହୋଇ ଏକଜାତିରେ ପରିଣତ ହେଲେ । ଦିନାମାର ରାଜବଂଶର ସର୍ବପ୍ରସିଦ୍ଧ ରାଜାଙ୍କର ନାମ କେନଉଟ୍ । ସେ ବିଜ୍ଞ ଓ ସୁଶାସକ ଥିଲେ ।

ତାହାଙ୍କର ରାଜପରିଷଦରେ ଅନେକଗୁଡ଼ିଏ ସାମନ୍ତ ଓ ସମ୍ଭ୍ରାନ୍ତ ବ୍ୟକ୍ତି ଥିଲେ । ସେମାନେ ଚାଟୁବାକ୍ୟରେ ତାହାଙ୍କର ସନ୍ତୋଷ-ବିଧାନରେ ସର୍ବଦା ତତ୍ପର ଥିଲେ । ଭୂମଣ୍ଡଳରେ ଅନ୍ୟ କୌଣସି ରାଜା ଗୁଣ ଓ ବିକ୍ରମରେ କେନଉଟଙ୍କର ପଟାନ୍ତର ନୁହନ୍ତି ବୋଲି ସେମାନେ ତାହାଙ୍କ ସ୍ତୁତି କରୁଥିଲେ । ରାଜାମାନେ ସାଧାରଣତଃ ଚାଟୁପ୍ରିୟ । ମାତ୍ର ବିବେକୀ କେନଉଟଙ୍କର ଚାଟୁ ବାକ୍ୟରେ ଅଶାନ୍ତ ଅଶ୍ରଦ୍ଧା ଥିଲା । ସେ ସେମାନଙ୍କୁ ସୁଶିକ୍ଷା ଦେବାପାଇଁ ଯୋଗ୍ୟ ଅବସର ଲୋଡ଼ୁଥିଲେ ।

ଦିନକରେ ପାରିଷଦମାନେ ତାହାଙ୍କ ସହିତରେ ସମୁଦ୍ରକୂଳରେ ବିଚରଣ କରୁଁ କରୁଁ ଅଭ୍ୟାସବଶତଃ କହିଲେ, 'ମହୀମଣ୍ଡଳରେ ତୁମ୍ଭଙ୍କର କ୍ଷମତାର ପଟାନ୍ତର ନାହିଁ । ତୁମ୍ଭେ ସସାଗରା ଧରାର ପ୍ରଭୁ, ଏବଂ କ୍ଷିତି ଓ ଅପ୍ ଏ ଦୁଇ ମହାଭୂତ ତୁମ୍ଭଙ୍କର କିଙ୍କର ଅଟନ୍ତି ।" କେନଉଟ୍ ପ୍ରଶ୍ନ କଲେ "ଏହି ସମୁଦ୍ର ଆମ୍ଭର ଆଦେଶ ପାଳନ କରିବ କି ? ପାରିଷଦମାନେ ଉତ୍ତର କଲେ "ମହିମା ! ତୁମ୍ଭଙ୍କର ଆଦେଶ ପାଳନ ନ କରି ସମୁଦ୍ରର ଗତି ନାହିଁ ।"

ତଦନନ୍ତର ରାଜାଙ୍କର ଆଦେଶରେ ଜଣେ ଭୃତ୍ୟ ଖଣ୍ଡିଏ ଚୌକି ଆଣି ବେଳାଭୂମିରେ ସ୍ଥାପନ କଲା । ରାଜା ସେଥିରେ ଉପବେଶନ କରି ଉଚ୍ଚୈଃ ସ୍ୱରରେ ସମୁଦ୍ରକୁ ସମ୍ବୋଧନ କରି କହିଲେ "ହେ ସମୁଦ୍ର ! ଆମ୍ଭର ପାରିଷଦମାନେ କହୁ-ଅଛନ୍ତି ଆମ୍ଭେ ତୁମ୍ଭର ପ୍ରଭୁ ଏବଂ ତୁମ୍ଭେ ଆମ୍ଭର ବଶମ୍ବଦ ପ୍ରଜା । ଆମ୍ଭେ ଆଦେଶ କରୁଅଛୁଁ ତୁମ୍ଭେ ପ୍ରତ୍ୟାବର୍ତ୍ତନ କର, ଆମ୍ଭର ପାଦ ଜଳ ଦ୍ୱାରା ସିକ୍ତ କରନାହିଁ ।" ମାତ୍ର ଜୁଆରତେଉ କ୍ରମଶଃ ଊର୍ଦ୍ଧ୍ୱଗାମୀ ହୋଇ ଅବଶେଷରେ ରାଜାଙ୍କ ପଦଦ୍ୱୟରେ ବାଜିଲା ।

ଇତ୍ୟବସରରେ ପାରିଷଦମାନେ ନୀରବ ହୋଇ ଦଣ୍ଡାୟମାନ ହୋଇଥିଲେ । ସେମାନେ ଭାବୁଥିଲେ ରାଜା କ୍ଷିପ୍ତ ହୋଇଅଛନ୍ତି, ନୋହିଲେ ସମୁଦ୍ରକୁ ଏପରି ଆଦେଶ ଦିଅନ୍ତେ କାହିଁକି ? ଅନନ୍ତର କେନଉଟ୍ ସେମାନଙ୍କ ଆଡ଼କୁ ମୁଖ ଫେରାଇ

କହିଲେ, "ସମୁଦ୍ର ଆମ୍ଭର ଆଜ୍ଞାକାରୀ ବୋଲି ଯେଉଁ ଚାଟୁବାକ୍ୟ ତୁମ୍ଭେମାନେ କହିଲ, ତୁମ୍ଭେମାନେ ମନେ କରିଥିଲ କି ଆମ୍ଭେ ସେଥିରେ ବିଶ୍ୱାସ ସ୍ଥାପନ କରିଅଛୁ ? ଆମ୍ଭେ ରାଜା, ଏଥିରେ ସନ୍ଦେହ ନାହିଁ । ମାତ୍ର ରାଜା ତ ଜଣେ ମନୁଷ୍ୟ । ସମୁଦ୍ର ପରି ମହାଭୂତ ଉପରେ ତାହାର ଆଧିପତ୍ୟ କାହିଁ ? ଏ ସଂସାରରେ କେବଳ ଈଶ୍ୱର ସମସ୍ତଙ୍କର ଅଧିପତି । ସେହି ଏକା ସମୁଦ୍ରକୁ ଆଦେଶ କରିପାରନ୍ତି । ତୁ ଏହି ପର୍ଯ୍ୟନ୍ତ ଆସିବୁ, ଏ ସୀମା ଲଙ୍ଘନ କରିପାରିବୁ ନାହିଁ । ଈଶ୍ୱର ଭିନ୍ନ କୌଣସି ବ୍ୟକ୍ତିର ଏପରି ଆଦେଶ ଦେବାର ଅଧିକାର ନାହିଁ ।"

କଥିତ ଅଛି କେନିଉଟ୍ ସେହି ମୁହୂର୍ତ୍ତିରେ ସ୍ୱୀୟ ମସ୍ତକରୁ ରାଜମୁକୁଟ ବାହାର କରି ପକାଇଲେ, ଏବଂ ଉତ୍ତର କାଳରେ କେବେହେଁ ତାହା ମସ୍ତକରେ ଧାରଣ କଲେ ନାହିଁ ।



## ୮୭—ସବକ୍ତଗୀନ୍ ଓ ମୃଗଶାବକର କଥା

ପ୍ରାୟ ସହସ୍ର ବର୍ଷ ପୂର୍ବେ ଗଜନୀନଗରୀରେ ମାମୁଦ୍ ନାମରେ ଜଣେ ସୁପ୍ରସିଦ୍ଧ ରାଜା ରାଜପଣ କରୁଥିଲେ । ଭାରତବର୍ଷର ଇତିହାସରେ ତାହାଙ୍କର ଉଲ୍ଲେଖ ଦେଖି ପାରିବ । ସମସ୍ତ ଆଫଗାନିସ୍ଥାନ ତାହାଙ୍କର ଅଧିକାରଭୁକ୍ତ ଥିଲା । ତାହାଙ୍କର ପିତା ସବକ୍ତଗୀନ୍ ମଧ୍ୟ ଜଣେ ପରାକ୍ରାନ୍ତ ରାଜା ଥିଲେ । ସବକ୍ତଗୀନ୍ ବାଲ୍ୟ ଓ ଯୌବନରେ ଅତିଶୟ ଦରିଦ୍ର ଥିଲେ । ତାହାଙ୍କର ଗୋଟିଏ ମାତ୍ର ଘୋଟକ ଥିଲା । ଏହି ଅଶ୍ୱପୃଷ୍ଠରେ ଆରୋହଣ କରି ସବକ୍ତଗୀନ୍ ଆପଣାର ବାସସ୍ଥାନ ସମୀପବର୍ତ୍ତୀ ଅରଣ୍ୟ ଓ ପ୍ରାନ୍ତରମାନଙ୍କରେ ମୃଗୟାରେ ବହୁ ସମୟ ଅତିବାହିତ କରୁଥିଲେ ।

ମୃଗୟାନ୍ୱେଷଣରେ ଭ୍ରମଣ କରୁଁ କରୁଁ ଦିନକରେ ସବକ୍ତଗୀନ୍ ଗୋଟିଏ ପ୍ରାନ୍ତରେ ମଧ୍ୟରେ ଯାଉଅଛନ୍ତି, ଏମନ୍ତ ସମୟରେ ଦେଖିଲେ ଗୋଟିଏ ହରିଣୀ ନିଜର ଶିଶୁଶାବକ ସଙ୍ଗେ ନିର୍ଭୟ ଚିତ୍ତରେ ସେଠାରେ ଚରୁଅଛି । ସବକ୍ତଗୀନ୍ ଦ୍ରୁତବେଗରେ ଅଶ୍ୱ ଚଲାଇ ଅବିଳମ୍ବେ ସେଠାରେ ଉପସ୍ଥିତ ହେଲେ ଏବଂ ମୃଗଶିଶୁର ପଦ ବନ୍ଧନ ଓ ତାହାକୁ ଅଶ୍ୱପୃଷ୍ଠରେ ସ୍ଥାପନ କରି, ସ୍ୱଗୃହାଭିମୁଖରେ ପ୍ରତ୍ୟାଗମନ କଲେ ।

ସବକ୍ତଗୀନ୍ ଅଗ୍ରସର ହେବାରୁ ଆପଣାର ଶାବକ ପ୍ରତି କରୁଣ ଦୃଷ୍ଟି ନିକ୍ଷେପ କରି ହରିଣୀଟି ତାହାଙ୍କର ଅନୁଗମନ କଲା । ଏହି ଦୃଶ୍ୟ ଦେଖି ସବକ୍ତଗୀନଙ୍କର ହୃଦୟ ଦୟାରେ ତରଳି ଗଲା । ସେ ମୃଗଶିଶୁର ବନ୍ଧନ ମୋଚନ

କରି ତାହାକୁ ଧୀରେ ଓହ୍ଲାଇଦେଲେ । ଶାବକଟି ଆନନ୍ଦରେ ଅଧୀର ହୋଇ ମାତୃ-କୋଳ ପୁନଃ ପ୍ରାପ୍ତ ହେଲା ।

ହରିଣୀ ଶାବକ ସଙ୍ଗରେ ମହୋଲ୍ଲାସରେ ଆପଣାର ଆବାସ ପ୍ରାନ୍ତରକୁ ଧୀରେ ଧୀରେ ପ୍ରତ୍ୟାବୃତ୍ତ ହେଲା । ପ୍ରତ୍ୟାଗମନ କାଳରେ ସେ ସ୍ନେହକୃତଜ୍ଞତା-ପୂର୍ଣ୍ଣଚିତ୍ତରେ ଆକର୍ଣ୍ଣବିସ୍ତୃତ ନୟନଯୁଗଳରେ ସବକ୍ତଗୀନ୍‌ଙ୍କୁ ବାରମ୍ବାର ନିରୀକ୍ଷଣ କରିବାକୁ ଲଗିଲା ।

ସେହି ଦିନର ରାତ୍ରି-ଶେଷଭାଗରେ ସବକ୍ତଗୀନ୍ ସ୍ୱପ୍ନ ଦେଖିଲେ ମୁସଲମାନ ଧର୍ମର ସ୍ଥାପୟିତା ମହମ୍ମଦ ତାହାଙ୍କୁ କହୁଅଛନ୍ତି, "ହେ ଅମୀର ସବକ୍ତଗୀନ୍ ! ତୁମ୍ଭେ ଆଜି ଅସହାୟା ହରିଣୀ ପ୍ରତି ଯେଉଁ ଦୟା ପ୍ରଦର୍ଶନ କଲ ସେଥିରେ ଈଶ୍ୱର ପ୍ରୀତ ହୋଇଅଛନ୍ତି । ତୁମ୍ଭର ଏହି ସାଧୁ କାର୍ଯ୍ୟର ପୁରସ୍କାର ସ୍ୱରୂପ ସେ ତୁମ୍ଭ ନାମକୁ ଭାବୀ ନରପତିମାନଙ୍କର ତାଲିକାର ଅନ୍ତର୍ଭୁକ୍ତ କଲେ । ଅତଏବ ତୁମ୍ଭେ ଭବିଷ୍ୟତରେ ରାଜା ହେବ । ତେତେବେଳେ ତୁମ୍ଭର ପ୍ରଜାମାନଙ୍କ ପ୍ରତି ଏପରି ବ୍ୟବହାର କରିବାକୁ ଭୁଲିବ ନାହିଁ ଏବଂ ଦୟାଗୁଣକୁ ମନରୁ କେବେହେଁ ତିରୋହିତ କରିବ ନାହିଁ ; କାରଣ, ଇହଲୋକ ଓ ପରଲୋକରେ ଦୟାଗୁଣ ନରପତିମାନଙ୍କର ସର୍ବଶ୍ରେଷ୍ଠ ଭୂଷଣ ଅଟେ ।

ଏହି ଘଟନା ଉତ୍ତାରେ ସବକ୍ତଗୀନ୍ ପ୍ରଭୂତ କ୍ଷମତା ପ୍ରାପ୍ତ ହେଲେ ଏବଂ ସେ ଦେଶର ତଦାନୀନ୍ତନ ସୁଲତାନଙ୍କ କନ୍ୟାର ପାଣିଗ୍ରହଣ କଲେ । ଏହାଙ୍କ ମୃତ୍ୟୁ-ଉତ୍ତାରେ ସବକ୍ତଗୀନ୍ ସ୍ୱୟଂ ସୁଲତାନ ହେଲେ । ଏହିରୂପେ ତାହାଙ୍କର ସ୍ୱପ୍ନ ସଫଳ ହେଲା । ମୁସଲମାନ ଧର୍ମ-ପ୍ରବର୍ତ୍ତକ ମହମ୍ମଦଙ୍କ ନାମାନୁସାରେ ସବକ୍ତଗୀନ୍ ଆପଣା ପୁତ୍ରର ନାମ ରଖିଲେ ମହମୂଦ ବା ମାମୁଦ୍ । ଏହି ମାମୁଦ୍ ତଦାନୀନ୍ତନ ରାଜାମାନଙ୍କ ମଧ୍ୟରେ ସର୍ବାପେକ୍ଷା ଅଧିକ ଶକ୍ତିଶାଳୀ ଓ ବିଖ୍ୟାତ ହେଲେ । ପଞ୍ଜାବ ପର୍ଯ୍ୟନ୍ତ ସବକ୍ତଗୀନଙ୍କ ରାଜ୍ୟ ବିସ୍ତୃତ ଥିଲା ।

**( କଥାବଦ୍ଧ-ଗଦ୍ୟାଂଶ ଶେଷ )**



# ପ୍ରବନ୍ଧ-ବିଭାଗ

## ୧—ସାହିତ୍ୟ ପତ୍ରିକାର ଉପଯୋଗିତା

ଜ୍ଞାନ ମନୁଷ୍ୟଜାତିର ବିଶେଷତ୍ୱ ଏବଂ ସର୍ବାପେକ୍ଷା ଅଧିକ ସ୍ପୃହଣୀୟ । ଏହି ଜ୍ଞାନ ଲଭ କରିବାର ନାନା ଉପାୟ ଅଛି । ଉକ୍ତ ଉପାୟମାନଙ୍କୁ ଦୁଇଟି ପ୍ରଧାନ ଭାବରେ ବିଭକ୍ତ କରାଯାଇପାରେ :—ଅନୁଭବ ଓ ଅଧ୍ୟୟନ । ଅଭିନିବେଶ ଓ ବିଚାର ସହକାରେ ଉକ୍ତ ଉଭୟ ଉପାୟରେ ଲବ୍ଧ ଜ୍ଞାନ ମାର୍ଜିତ ଓ ପୁଷ୍ଟ ହୋଇ-ଥାଏ । ପ୍ରତ୍ୟେକ ଉପାୟ ଅପରର ସାହାଯ୍ୟ ସଂପାଦନ କରେ । ଅଧ୍ୟୟନ ଦ୍ୱାରା ଅନ୍ୟୋପାର୍ଜିତ ଜ୍ଞାନ ଯେପରି ଲଭ କରାଯାଏ, ସେହିପରି ଅନୁଭବ ଓ ପରିଦର୍ଶନର ପ୍ରଣାଳୀ ମଧ୍ୟ ଶିକ୍ଷା କରାଯାଏ ।

ସଂସାରରେ ମନୁଷ୍ୟ ନିଜେ ସବୁ କରିପାରେ ନାହିଁ । ଅନେକ ବିଷୟରେ ଜାଣି ଅବା ନ ଜାଣି ସେ ଅନ୍ୟର ସାହାଯ୍ୟ ଗ୍ରହଣ କରେ । ଜ୍ଞାନ-ଲଭ ବିଷୟରେ ମଧ୍ୟ ସେହିପରି ଲୋକ ଅପର ମୁଖରୁ ଶୁଣି ନୂତନ ବିଷୟ ଶିକ୍ଷା କରେ, ଅଥବା ପୂର୍ବବର୍ତ୍ତୀ ସମସାମୟିକ ଜ୍ଞାନୀମାନେ ସ୍ୱରଚିତ ଗ୍ରନ୍ଥାଦିରେ ଯେଉଁ ଜ୍ଞାନ ସଞ୍ଚୟ କରି ରଖିଥାନ୍ତି, ତାହା ଗ୍ରହଣ କରେ । ଏଓଟି ଉପାୟରେ ଲିପିବଦ୍ଧ ଜ୍ଞାନ ଅର୍ଜନ କରାଯାଇପାରେ । ପୋଥି ବା ପୁସ୍ତକ ଓ ପତ୍ରିକା ଉଭୟରୁ ହିଁ ଜ୍ଞାନ ଲଭ କରା ଯାଇପାରେ । ତଥାପି ଦୁହିଁଙ୍କ ମଧ୍ୟରେ କିଛିଟା ପ୍ରଭେଦ ଅଛି । ଖଣ୍ଡିଏ ପୁସ୍ତକରେ ସାଧାରଣତଃ ଗୋଟିଏ ବିଷୟର ଆଲୋଚନା କରାଯାଇଥାଏ । କିନ୍ତୁ ଖଣ୍ଡିଏ ପତ୍ରିକାରେ ନାନା ବିଷୟର ଆଲୋଚନା ଥାଏ, ସୁତରାଂ ଖଣ୍ଡିଏ ପତ୍ରିକା-ପାଠରୁ ନାନା ପୁସ୍ତକ-ପାଠର ଜ୍ଞାନ ନ୍ୟୂନାଧିକ ପରିମାଣରେ ମିଳେ । ପୁଣି, ପାଞ୍ଚଖଣ୍ଡ ପୁସ୍ତକ କିଣିବା ଅସମ୍ପନ୍ନ ଲୋକ ପକ୍ଷରେ କଠିନ ହୋଇପାରେ । ଅଥଚ ପତ୍ରିକା ଖଣ୍ଡିଏ କିଣିବା ସେତେଦୂର କଠିନ ନ ହୋଇପାରେ । ପତ୍ରିକା ଖଣ୍ଡିକରେ ନାନା ବିଷୟକ ପ୍ରବନ୍ଧର ସମାବେଶ ଥିବାରୁ ବିଷୟ-ପରିବର୍ତ୍ତନ କିୟତ୍ ପରିମାଣରେ ମାନସିକ କ୍ଲାନ୍ତି ନିବାରଣ କରେ ଓ ଆଗ୍ରହ ସଞ୍ଚାର କରେ । ଭୋଜନ, ଦର୍ଶନ, ଶ୍ରବଣ ପ୍ରଭୃତି ବିଷୟରେ ନବୀନତା ବା ପରିବର୍ତ୍ତନର ଫଳ କିପରି ରୁଚିକର, ଅନେକେ ଅନୁଭବ କରିଥିବେ । ପ୍ରବନ୍ଧ ସମ୍ବନ୍ଧରେ ମଧ୍ୟ ତଦ୍ରୂପ । ଏକାଧିକ ବ୍ୟକ୍ତି ମିଳିତ ହୋଇ ଖଣ୍ଡିଏ ପତ୍ରିକାର ଗ୍ରାହକ ହେବା ଅନେକ ସ୍ଥଳରେ ଦେଖାଯାଏ । କିନ୍ତୁ, ଏକାଧିକ ବ୍ୟକ୍ତି ମିଳିତ ହୋଇ ଖଣ୍ଡିଏ ପୁସ୍ତକ କିଣି କରି ପଢ଼ିବାର

ଉଦାହରଣ ଅତି ବିରଳ । ପୁସ୍ତକପାଠରେ କୌଣସି ପାଠକ ଯେଉଁ ଆସ୍ୱାଦ ଅନୁଭବ କରନ୍ତି, ପତ୍ରିକା-ପାଠରେ ତାହା ସେତେ ପରିମାଣରେ ଅନୁଭୂତ ହୁଏ ନାହିଁ । ଏହା ବୋଲି ପୁସ୍ତକ-ପାଠ ହେୟ ଓ ପତ୍ରିକା-ପାଠ ହିଁ ଉପାଦେୟ, ଏହା ବୋଲିବା ଆମ୍ଭମାନଙ୍କର ଅଭିପ୍ରାୟ ନୁହେଁ । ପୁସ୍ତକ-ପାଠର ମଧ୍ୟ ଉପଯୋଗିତା ଅଛି, କିନ୍ତୁ ତାହା ଅଦ୍ୟ ଆଲୋଚ୍ୟ ବିଷୟ ନୁହେଁ । ପତ୍ରିକା-ପାଠର ଆଉ କେତେକ ସୁଫଳ ଏଠାରେ ଉଲ୍ଲେଖ କରାଯାଉଅଛି । ପାଠକମାନଙ୍କ ମଧ୍ୟରୁ କାହାର ମନରେ ରଚନାତ୍ମକ ପ୍ରବନ୍ଧର ପ୍ରଭାବ ସହଜରେ ଅଙ୍କୁରିତ ହୁଏ । ପୁସ୍ତକ-ପାଠରେ ସେପରି ହେଉଥିବାର ଦେଖାଯାଏ ନାହିଁ । ଏପରି ପାଠକ, ତନ୍ମଧ୍ୟରେ ବିଶେଷତଃ ତରୁଣ ବୟସ୍କପାଠକ, ପ୍ରବନ୍ଧ ସହିତ ଲେଖକର ନାନା ଲିପିବଦ୍ଧ ଦେଖିବାକୁ ଅଭିଳାଷୀ ହୋଇ ରଚନାର "ସିଦ୍ଧିରସ୍ତୁ" ଆରମ୍ଭ କରିଥାନ୍ତି । ଏପରି ଅଭିଳାଷ ସାହିତ୍ୟ-ବିକାଶର ଅନୁକୂଳ, ଏଣୁ ସମ୍ବୋଧନୀୟ । ସଭ୍ୟତର ଦେଶମାନଙ୍କରେ ନବୀନ ବକ୍ତା ଓ ଲେଖକମାନେ ଏହିପରି ବକ୍ତୃତା ଓ ରଚକତାର ମୂଳପତ୍ତନ ଶିକ୍ଷା କରି ପରିଣାମରେ ପ୍ରବୀଣ ସ୍ଥପତିତ୍ୱର ଲକ୍ଷଣ ପ୍ରଦର୍ଶନ କରିଅଛନ୍ତି । ଏହି ପତ୍ରିକାମାନ ପ୍ରଧାନତଃ ଦୁଇ ଶ୍ରେଣୀରେ ବିଭକ୍ତ । ଏକ ଶ୍ରେଣୀରେ ଦୈନିକ ଓ ସାପ୍ତାହିକ ପତ୍ରିକାମାନ, ଅପର ଶ୍ରେଣୀରେ ମାସିକ ପ୍ରଭୃତି । ଉଭୟେ ଗୁରୁ କିନ୍ତୁ ଭିନ୍ନ ଭିନ୍ନ ଭାବରେ । ଦୈନିକ ଓ ସାପ୍ତାହିକ ପତ୍ରିକା ସାମୟିକ ସମ୍ବାଦରେ ଓ ସାମୟିକ ଘଟନାମାନଙ୍କର ଆଲୋଚନାରେ ପୂର୍ଣ୍ଣ । ଅପରବିଧ ପତ୍ରିକାରେ ଉଚ୍ଚତର ବିଷୟର ଆଲୋଚନା ଲିପିବଦ୍ଧ ହୋଇଥାଏ । ଏହି ଅପର ଶ୍ରେଣୀର ପତ୍ରିକା ମଧ୍ୟରେ ମାସିକ ପତ୍ରିକାର ସଂଖ୍ୟା ଓ ପ୍ରଚୁର ଅଧିକ । ମାସିକ ପତ୍ରିକା ବିଜ୍ଞାନ, ଇତିହାସ ଓ ସାହିତ୍ୟର ଅନ୍ତର୍ଗତ ଅନ୍ୟାନ୍ୟ ବିଷୟରେ ଲୋକମାନଙ୍କୁ ଅଳ୍ପାଂଶ ଶିକ୍ଷାଦିଏ, ଏବଂ ଶିକ୍ଷିତ ମଣ୍ଡଳୀର ସାହିତ୍ୟଲାଳସା କିୟତ୍ପରିମାଣରେ ତୃପ୍ତ କରେ । ମାସିକ-ପତ୍ର ସାହିତ୍ୟ-ବିକାଶର ନାୟକ, ଏବଂ ତାହା ସମାଜର ସାହିତ୍ୟ-ବୃଦ୍ଧିର ପରିଚାୟକ ।

( ଉତ୍କଳ ସାହିତ୍ୟ, ପ୍ରଥମ ଭାଗ, ପ୍ରଥମ ସଂଖ୍ୟା—୧୮୯୭ ମସିହାରେ ପ୍ରକାଶିତ )

---

## ୨—ଭୂଗୋଳ ବିଦ୍ୟା

( କଟକ ଆଲୋଚନା ସଭାରେ ପଠିତ )

ସୂର୍ଯ୍ୟ, ଚନ୍ଦ୍ର, ବୃହସ୍ପତି ଜଡ଼ସୃଷ୍ଟିର ଯାବତୀୟ ବୃହତ୍ ବୃହତ୍ ଅଙ୍ଗଗୁଡ଼ିକ ଗୋଲ ବା ପ୍ରାୟ ଗୋଲ । ତନ୍ମଧ୍ୟରେ ଆମ୍ଭେମାନେ ଯେଉଁ ପୃଥିବୀରେ ବାସ କରୁଁ ତାହାକୁ ଭୂ ବା ଭୂଗୋଳ କହନ୍ତି । ଯହିଁରେ ଏହି ଭୂ ବା ଭୂଗୋଳର ପୃଷ୍ଠଦେଶର ବା ତାହାର ଅଂଶବିଶେଷର ପ୍ରାକୃତିକ ଅବସ୍ଥା, ବୈଚିତ୍ର୍ୟ ଏବଂ ନୈସର୍ଗିକ ଓ

କୃତ୍ରିମ ପରିବର୍ତ୍ତନର ଶୃଙ୍ଖଳାବଦ୍ଧ ଆଲୋଚନା ଥାଏ, ତାହାକୁ ଭୂଗୋଳ ବିବରଣ, ଭୂଗୋଳବିଦ୍ୟା ବା ଭୂଗୋଳବିଜ୍ଞାନ କହନ୍ତି । ବିଦ୍ୟାଳୟର ବାଳକ ଓ ଶିକ୍ଷକମାନେ ଏବଂ ପୁସ୍ତକରଚୟିତାମାନଙ୍କ ମଧ୍ୟରୁ ଅନେକେ ଏହାକୁ କେବଳ ଭୂଗୋଳ ବୋଲି ମଧ୍ୟ କହନ୍ତି ।

ଆଧୁନିକ ଭୂଗୋଳବେତ୍ତାମାନେ ଭୂଗୋଳବିଜ୍ଞାନକୁ ଗାଣିତିକ, ରାଜନୈତିକ ଓ ପ୍ରାକୃତିକ ଏହି ତିନିଭାଗରେ ବିଭକ୍ତ କରିଅଛନ୍ତି । କୌଣସି କୌଣସି ପଣ୍ଡିତ ବାଣିଜ୍ୟ-ବିଭାଗ ବୋଲି ଗୋଟିଏ ଚତୁର୍ଥ ଭାଗ ନିର୍ଦ୍ଦେଶ କରିଅଛନ୍ତି । ଭୂଗୋଳ-ବିଦ୍ୟାର ଯେଉଁ ଅଂଶରେ ସୌର ଓ ନକ୍ଷତ୍ର-ଜଗତ୍ ସହିତ ପୃଥିବୀର ସମ୍ବନ୍ଧ ବର୍ଣ୍ଣିତ ଥାଏ, ତାହାର ନାମ ଗାଣିତିକ ; ଯେଉଁ ଅଂଶରେ ପ୍ରାକୃତିକ ଅବସ୍ଥା ଓ ନୈସର୍ଗିକ ପରିବର୍ତ୍ତନ, କାରଣ ସହିତ, ବିବୃତ ହୋଇଥାଏ, ତାହାର ନାମ ପ୍ରାକୃତିକ ; ଏବଂ ଯେଉଁ ଅଂଶରେ ମାନବ ସମାଜର ଆଚାର, ବ୍ୟବହାର, ଶିକ୍ଷା, ସମୃଦ୍ଧି ଓ ଶାସନ ପ୍ରଣାଳୀର, ଏବଂ ମାନବକୃତ ଭୂପୃଷ୍ଠର ବୈଚିତ୍ର୍ୟ ଓ ପରିବର୍ତ୍ତନର ବିବରଣ ଥାଏ, ତାହାର ନାମ ରାଜନୈତିକ ।

ଜ୍ଞାନତୃଷ୍ଣା ମନୁଷ୍ୟର ସ୍ୱଭାବ-ସିଦ୍ଧ । ମନୁଷ୍ୟ ଆପଣାକୁ ଓ ଆପଣା ସହିତ ଯେଉଁମାନେ ସମ୍ପୃକ୍ତ, ସେମାନଙ୍କୁ ନାନାପ୍ରକାରରେ ଜାଣିବା ପାଇଁ ସର୍ବଦା କୁତୂହଳୀ । ଏହି କୌତୂହଳବଶତଃ ମନୁଷ୍ୟ ଅନ୍ୟାନ୍ୟ ବିଦ୍ୟା ପରି ଭୂଗୋଳ ବିଦ୍ୟାର ଆଲୋଚନାରେ ସ୍ୱତଃ ପ୍ରବୃତ୍ତ ହୁଏ । ଦିବାରାତ୍ରି ରୂପ ଆଲୋକ ଓ ଅନ୍ଧକାରର ବୈଚିତ୍ର୍ୟ, ଋତୁମାନଙ୍କର ପାରମ୍ପର୍ଯ୍ୟ, ସାଗରାଙ୍ଗନରେ ଲହରୀଲୀଳା, ଆକାଶରେ ଜ୍ୟୋତିଷ୍କମାନଙ୍କର ଆଲୋକୋତ୍ସବ ଓ ଜଳଦାବଳୀର ରୁଦ୍ରସୁନ୍ଦର ବିଳାସ, ବାୟୁ ଓ ବୃଷ୍ଟିର କ୍ୱଚିତ୍ ବିଭୀଷିକାମୟୀ କ୍ରୀଡ଼ା, ନବଦୂର୍ବାଦଳରେ ଶିଶିରପଟଳ, ଭୂପୃଷ୍ଠର କଦାଚିତ୍ କମ୍ପନ ଓ ଗିରିମୁଖରୁ ନାନାପ୍ରକାର ପଦାର୍ଥର ଉଦ୍‌ଗମନ ପ୍ରଭୃତି ଦର୍ଶନ କରି ସେମାନଙ୍କ ବିଷୟ ଆଲୋଚନା କରିବାପାଇଁ ମନୁଷ୍ୟ ମନରେ ସ୍ୱଭାବତଃ ପ୍ରବୃତ୍ତି ଜନ୍ମେ । ଏହି ଆଲୋଚନାର ଫଳରେ ଭୂଗୋଳ-ବିଦ୍ୟାର ସୃଷ୍ଟି ।

ଏହି ବିଦ୍ୟା ଇତିହାସ, ଜ୍ୟୋତିର୍ବିଦ୍ୟା, ଭୂତତ୍ତ୍ୱବିଦ୍ୟା, ଉଦ୍ଭିଦ୍‌ବିଦ୍ୟା, ଜୀବତତ୍ତ୍ୱବିଦ୍ୟା ପ୍ରଭୃତି ଜ୍ଞାନର ଅନ୍ୟାନ୍ୟ କେତେଗୁଡ଼ିଏ ଅଙ୍ଗ ସହିତ ନ୍ୟୂନାଧିକ ଘନିଷ୍ଠଭାବରେ ସମ୍ବନ୍ଧ । ଏମାନଙ୍କ ମଧ୍ୟରୁ ଇତିହାସ ସହିତ ଭୂଗୋଳବିଦ୍ୟାର ସମ୍ବନ୍ଧ ସର୍ବାପେକ୍ଷା ଅଧିକ । ଭୂପୃଷ୍ଠ ମାନବର ଆବାସ, ଏବଂ ଭୂପୃଷ୍ଠର ନାନାସ୍ଥାନ ଇତିହାସର ରଙ୍ଗଭୂମି । ଭିନ୍ନ ଭିନ୍ନ ବିଷୟରେ ମାନବ-ଜାତିର ନେତାମାନେ ଏହି ଭୂପୃଷ୍ଠସ୍ଥ କୌଣସି କୌଣସି ସ୍ଥାନରେ ଜନ୍ମ ଗ୍ରହଣକରି ଏବଂ ଜୀବନର ଉଦ୍ଦେଶ୍ୟ ସାଧନ କରିବାପାଇଁ ନାନା ସ୍ଥାନରେ ବିଚରଣ ଓ ଅବସ୍ଥାନ କରି ଇତିହାସ ସହିତ ଭୂଗୋଳର ଏବଂ ଅତୀତ ସହିତ ବର୍ତ୍ତମାନର ସମ୍ବନ୍ଧ ସ୍ଥାପନ କରିଯାଇଅଛନ୍ତି ।

ଏଥିପାଇଁ ମନୁଷ୍ୟ ସ୍ଥାନ ବିଶେଷରେ ଉପସ୍ଥିତ ହେଲକ୍ଷଣି, ତାହାର ନାମ ଶ୍ରବଣ କଲ କ୍ଷଣି, ଅଥବା ଭୂପୃଷ୍ଠର କୃତ୍ରିମ ଚିତ୍ରରେ ଉକ୍ତ ସ୍ଥାନର ଅବସ୍ଥାନ ଦର୍ଶନ କଲ-କ୍ଷଣି, ତାହା ମନରେ ତତ୍ସମ୍ପୃକ୍ତ ଅତୀତ ଇତିହାସର ବିଷୟମାନ ଉଦ୍‌ବୋଧିତ ହୁଏ । ଏହି ହେତୁରୁ ଗୟା, ନବଦ୍ୱୀପ, ଜେରୁସାଲମ୍, ମକ୍‌କା, ମଦିନା, ରାମେଶ୍ୱର, ପଞ୍ଚବଟୀ, ମଥୁରା, ବୃନ୍ଦାବନ, ଦ୍ୱାରକା ପ୍ରଭୃତି ତୀର୍ଥସ୍ଥାନରେ ପରିଣତ ହୋଇଅଛି । ପ୍ରସିଦ୍ଧ ଇଂରାଜ ପଣ୍ଡିତ ଆର୍ନଲଡ଼୍ ଭୂପୃଷ୍ଠର ଚିତ୍ର ଖଣ୍ଡିଏ ଦେଖିଲେ ନାନା ଯୁଗର ଅତୀତ ଇତିହାସକୁ ପ୍ରତ୍ୟକ୍ଷ ମଣି ମୋହିତ ଓ ମଧୁର ବିସ୍ମୟରସରେ ଅଭିଭୂତ ହେଉଥିଲେ । ଭୂତତ୍ତ୍ୱ, ଉଦ୍ଭିଦ୍‌ତତ୍ତ୍ୱ ଓ ଜୀବତତ୍ତ୍ୱ ସ୍ୱତନ୍ତ୍ର ସ୍ୱତନ୍ତ୍ର ବିଜ୍ଞାନର ବିଷୟ ହେଲେ ହେଁ, ମୃତ୍ତିକା, ବାଲୁକା, ପ୍ରସ୍ତର ପ୍ରଭୃତି ଏବଂ ଉଦ୍ଭିଦ୍ ଓ ଜୀବମାନେ ଭୂପୃଷ୍ଠର ସୌନ୍ଦର୍ଯ୍ୟ ଓ ବୈଚିତ୍ର୍ୟ ସମ୍ପାଦନ କରୁଥିବାରୁ ଭୂଗୋଳଗ୍ରନ୍ଥରେ ସେମାନଙ୍କ ଯଥାଯୋଗ୍ୟ ଉଲ୍ଲେଖ ଦେଖାଯାଏ । ଏହିରୂପେ ଉକ୍ତ ବିଜ୍ଞାନତ୍ରୟ ସହିତ ଭୂଗୋଳ-ବିଦ୍ୟାର ସମ୍ବନ୍ଧ ସ୍ଥାପିତ ହୋଇଅଛି । ପୃଥିବୀ ସୌର ଜଗତର ଗୋଟିଏ ଅଙ୍ଗ, ସୌର ଜଗତର ଅନ୍ୟାନ୍ୟ ଅଙ୍ଗ ପରି ଏହା ମଧ୍ୟ ବିଧିନିର୍ଦ୍ଦିଷ୍ଟ ନିୟମ ଦ୍ୱାରା ଚାଳିତ । ଏହାର ଗତି ଓ ସୂର୍ଯ୍ୟ ସହିତ ଏହାର ସମ୍ବନ୍ଧ ହେତୁରୁ ଦିବାରାତ୍ରିର କ୍ଷୟବୃଦ୍ଧି ଓ ଋତୁମାନଙ୍କର ଆବର୍ତ୍ତନ ହେଉଅଛି, ଜ୍ୟୋତିଷ୍କମାନଙ୍କର ଦର୍ଶନ ଓ ପ୍ରତୀୟମାନ ଗତି ସହକାରେ ମନୁଷ୍ୟ ଦିଗ ନିର୍ଦ୍ଧାରଣ କରି ତଦ୍ୱାରା ଆପଣାର ପ୍ରୟୋଜନ ସାଧନ କରୁଅଛି । ଏହିରୂପେ ଦେଖାଯାଏ ଯେ ଜ୍ୟୋତିର୍ବିଦ୍ୟା ସହିତ ଭୂଗୋଳ-ବିଦ୍ୟା ସମ୍ବନ୍ଧିତ । ପୂର୍ବୋକ୍ତ ବିଜ୍ଞାନ ଭିନ୍ନ ଅନ୍ୟାନ୍ୟ କତିପୟ ବିଜ୍ଞାନ ସହିତ ଭୂଗୋଳ-ବିଜ୍ଞାନର ନ୍ୟୂନାଧିକ ସମ୍ବନ୍ଧ ଅଛି ।

ଭୂଗୋଳ-ବିଜ୍ଞାନରେ କେଉଁ କେଉଁ ବିଷୟ କିପରି ଆଲୋଚିତ ହୋଇଥାଏ, ଅଭିଜ୍ଞ ଶ୍ରୋତାମାନେ / ପାଠକମାନେ ଅବଗତ ଥିବାରୁ, ସେଗୁଡ଼ିକର ବିଶେଷ ଆଲୋଚନାରୁ ଏଠାରେ ନିବୃତ୍ତ ହେଲି ।

ଜ୍ଞାନ ମନୁଷ୍ୟର ବଳ । ମନୁଷ୍ୟ ଯେତେବେଳେ ଆଉ କିଛି ଅବଲମ୍ବନ ନ ପାଏ, ତେତେବେଳେ ଜ୍ଞାନକୁ ଅବଲମ୍ବନ କରି ଚଳେ । ବହୁରୂପୀ ମନୁଷ୍ୟ ନାବିକ ରୂପରେ ନାନା ନଦୀ ଓ ସମୁଦ୍ରରେ ବିଚରଣ କରୁଅଛି, ବଣିକ ବେଶରେ ନାନା ସ୍ଥାନରେ ବାଣିଜ୍ୟ କରୁଅଛି, ଶିଳ୍ପୀ ରୂପରେ ନାନାପ୍ରକାର ମନୋଜ୍ଞ ଶିଳ୍ପର ଅନୁଷ୍ଠାନ କରୁଅଛି, ହୃତ୍-କମ୍ପୋତ୍ପାଦକ ଜଗଜ୍‌ଝମ୍ପ ବଜାଇ ବୀର-ବେଶରେ ଦିଗ୍‌ବିଜୟ କରୁଅଛି, ନାନା ପ୍ରଦେଶରେ ଆଧିପତ୍ୟ ବିସ୍ତାର କରି ସାମ୍ରାଜ୍ୟ-ଶାସନର ଲାଳସା ଚରିତାର୍ଥ କରୁଅଛି, ସାଗର ଓ ଧରାର ଗର୍ଭରୁ ରତ୍ନ ଆକର୍ଷଣ କରି ଭୂଷଣ-ଲାଳସା ଓ ବିଭବ-ସ୍ପୃହା ଚରିତାର୍ଥ କରୁଅଛି । ଏହି କାର୍ଯ୍ୟମାନଙ୍କରେ ବହୁରୂପୀର ବହୁବିଧ ବଳ ମଧ୍ୟରେ ଭୂଗୋଳ-ଜ୍ଞାନ ଗୋଟିଏ ପ୍ରଧାନ ବଳ । ଏହି ବଳର

ଅଗ୍ରବରୁ ଅନ୍ୟଥା ପ୍ରବଳ ବହୁ ନରେଶ୍ବର ପରହସ୍ତରେ ରାଜ୍ୟ-ଧନ-ପ୍ରାଣ ଅର୍ପଣ କରିଅଛନ୍ତି । ଭୂଗୋଳଜ୍ଞାନ ସ୍ୱୀୟ ଆପେକ୍ଷିକ ଗୁରୁତ୍ୱ, ବରଂ ସ୍ୱୀୟ ଆପେକ୍ଷିକ ଲଘୁତ୍ୱ, ମନୁଷ୍ୟର ହୃଦୟଙ୍ଗମ କରାଇ ତାହାର ହୃଦୟକୁ ପ୍ରଶସ୍ତ କରେ, ଏବଂ ତାହାର ମନରୁ ଅକ୍ଷେମଙ୍କର ଅହଙ୍କାର ନ୍ୟୂନାଧିକ ପରିମାଣରେ ଉଚ୍ଛେଦିତ କରେ । ଭୂଗୋଳ-ବିଦ୍ୟାର ସମ୍ୟକ୍ ଆଲୋଚନା ଦ୍ୱାରା ମନୁଷ୍ୟ ମନରେ ଭ୍ରାତୃଭାବ ଓ ଉପଚିକୀର୍ଷା ପ୍ରବୃତ୍ତି କିଞ୍ଚିତ୍ ପରିମାଣରେ ହେଲେ ମାର୍ଜିତ ଓ ବିସ୍ତୃତ ହୁଏ । ଭୂଗୋଳ ଜ୍ଞାନ-ହୀନତା ଆସିଆଖଣ୍ଡର ଦୁର୍ଦ୍ଦଶାର ଏକତମ କାରଣ ଅଟେ । ଯେଉଁ ମୂଢ଼ ବ୍ୟକ୍ତି ଭୂପୃଷ୍ଠର ଏକ ସହସ୍ରାଂଶର କ୍ଷଣିକ ଓ ଆଂଶିକ ଅଧିକାର ପାଇ ଅହଂମଦରେ ମନେ କରେ ଯେ ସମଗ୍ର ଇଉରୋପରେ ଦଶ ସହସ୍ରରୁ ଅଧିକ ଲୋକ ନାହାନ୍ତି, ରସା-ତଳରେ କେଉଁ ସ୍ଥାନ ବିଧାତା ସେହି ବରାକ ବ୍ୟକ୍ତି ପାଇଁ ନିର୍ଦ୍ଦିଷ୍ଟ କରିଅଛନ୍ତି, ଅଭିଜ୍ଞ ଶ୍ରୋତାମାନେ ବା ପାଠକମାନେ ତାହା ଅନୁମାନ କରିନଅନ୍ତୁ । ଆଲସ୍ୟପରବଶ ଯେଉଁ ଲୋକ ଶିଳ୍ପ, ବାଣିଜ୍ୟ, ମାନବସମାଜ ଓ ମାନବର ବିଭବ ସହିତ ଭୂପୃଷ୍ଠର ସମ୍ବନ୍ଧ ଆଲୋଚନା କରିନାହିଁ,ତାହାର ଲଲାଟରେ ଜୀର୍ଣ୍ଣକୁଟିର-ବାସ ଓ ପରାଧୀନତାର ଶୃଙ୍ଖଳା ଭିନ୍ନ ବିଧାତା ଆଉ କ'ଣ ଲେଖିବେ ? ଯେଉଁମାନେ ଆଧୁନିକ ଇଉରୋପୀୟ ସାହିତ୍ୟର ଆଲୋଚନା କରିଥାନ୍ତି, ସେମାନେ ଜାଣିଥିବେ ଯେ ଭୂଗୋଳ-ଜ୍ଞାନ ଓ ଭୌଗଳିକ ଆବିଷ୍କାର ଅଧ୍ୟବସାୟ ଓ ଚରିତବଳ ସହିତ ସମନ୍ୱିତ ହୋଇ ଇଉରୋପୀୟ ସାହିତ୍ୟିକ ଓ ବୈଷୟିକ ଅବସ୍ଥାରେ ନବଯୁଗର ଅବତାରଣା କରିଅଛି । ସମ୍ବାଦପତ୍ର-ପ୍ରିୟ ଆଧୁନିକ ସମୟରେ ଭୂଗୋଳ ଜ୍ଞାନ ବିହୀନ ଲୋକ ସମ୍ବାଦପତ୍ର ପାଠର ସୁଖରୁ ବହୁ ପରିମାଣରେ ବଞ୍ଚିତ ହେବ । ପିଞ୍ଜରାବଦ୍ଧ ବା ନିଦ୍ରିତ ଦ୍ୱିପଦ ବା ଚତୁଷ୍ପଦ ଭିନ୍ନ ଅପର .ପ୍ରାଣୀ ପକ୍ଷରେ ଭୂଗୋଳଜ୍ଞାନ କେତେ ମୂଲ୍ୟବାନ୍, ତାହା ସ୍ୱଗ୍ରାମ ଓ ସ୍ୱଦେଶ ଛାଡ଼ି କିଛି ଦୂର ଗଲେ ମନୁଷ୍ୟ ଅନୁଭବ କରିପାରିବ ।

ସଂସ୍କୃତ ଭାଷାର ଅଭିଧାନରେ ଭୂଗୋଳ ଶବ୍ଦର ଉଲ୍ଲେଖ ଦୃଷ୍ଟ ହେଲେ ହେଁ ଏବଂ ସଂସ୍କୃତ ଭାଷାରେ ଭୂଗୋଳ ନାମଧେୟ ଗ୍ରନ୍ଥ ଥିଲେ ହେଁ, ବର୍ତ୍ତମାନ ଯୁଗରେ ଯାହା ଭୂଗୋଳବିଦ୍ୟା ନାମରେ ଅଭିହିତ, ପ୍ରାଚୀନକାଳରେ ଭାରତୀୟ ପଣ୍ଡିତ-ମାନଙ୍କ କଳ୍ପନାରେ ତାହା ସମ୍ୟକ୍‌ରୂପେ ଉଦିତ ହୋଇଥିଲା ବୋଲି ପ୍ରତୀୟମାନ ହୁଏ ନାହିଁ । ବିଶ୍ୱକୋଷନାମକ ବଙ୍ଗଳା ଅଭିଧାନର ସମ୍ପାଦକ, ସଂସ୍କୃତ ଭାଷାରେ ରଚିତ ଖଣ୍ଡିଏ ଭୂଗୋଳ-ଗ୍ରନ୍ଥ ତାହାଙ୍କର ହସ୍ତଗତ ହୋଇଅଛି ବୋଲି ତାଙ୍କ ସହିତ ଆଳାପ-କାଳରେ କହିଥିଲେ । କିନ୍ତୁ ସେ ସଂକ୍ଷେପରେ ଗ୍ରନ୍ଥ ଖଣ୍ଡିକର ଯେପରି ପରିଚୟ ଦେଲେ, ତହିଁରୁ ସେ ଖଣ୍ଡିକ ଭୂଗୋଳ-ବିଜ୍ଞାନ ପରିବର୍ତ୍ତରେ ଭୂଗୋଳ-କାବ୍ୟ ବୋଲି ଅନୁମାନ ହେଲା । ପ୍ରାଚୀନ କାଳରେ ସଂସ୍କୃତ ଭିନ୍ନ ଆଉ

କୌଣସି ଭାଷାରେ ସୁଦ୍ଧା ଏହାର ଚର୍ଚ୍ଚା ଥିଲା ବୋଲି ବୋଧହୁଏ ନାହିଁ । ସୁତରାଂ ଭୂଗୋଲବିଜ୍ଞାନ ତରୁଣବୟସ୍କ ବୋଲିବାକୁ ହେବ । ଏହି ଅର୍ଦ୍ଧଶତାବ୍ଦୀ ମଧ୍ୟରେ ସୁପଥ୍ୟରେ ପୁଷ୍ଟ ହୋଇ ଏହା ଅଙ୍ଗ-ସୌଷ୍ଟବ ଲାଭ କରିଅଛି । ଆଧୁନିକ ଭୂଗୋଲ-ଗ୍ରନ୍ଥ ସହିତ ଚତ୍ୱାରିଂଶଦ୍‌ବର୍ଷ ପୂର୍ବବର୍ତ୍ତୀ ଗ୍ରନ୍ଥର ତୁଳନା କଲେ, ଶେଷୋକ୍ତ ହୀନାଙ୍ଗ ବୋଲି ସ୍ପଷ୍ଟରୂପେ ପରିଲକ୍ଷିତ ହେବ । ଆଧୁନିକ ଇୟୁରୋପୀୟମାନେ ରାଜ୍ୟ ଓ ବାଣିଜ୍ୟର ବିସ୍ତାର, ଧନବୃଦ୍ଧି, ଧର୍ମପ୍ରଚାର, ଅନୁନ୍ନତ ମାନବ-ସମାଜମାନଙ୍କର ଉନ୍ନତି-ବିଧାନ ଓ ଜ୍ଞାନ ପିପାସା-ତର୍ପଣର ଲାଲସାରେ ନାନାଦି ଦେଶ ପର୍ଯ୍ୟଟନ କରି ଓ ନାନା ଆବିଷ୍କାର କରି ଏହି ବିଜ୍ଞାନର ପୁଷ୍ଟି ସାଧନ କରିଅଛନ୍ତି ।

( ଉତ୍କଳ ସାହିତ୍ୟ, ପ୍ରଥମ ଭାଗ ପ୍ରଥମ ସଂଖ୍ୟାରେ ପ୍ରକାଶିତ )

---

## ୩—ବାଣିଜ୍ୟ

ଭିନ୍ନଭିନ୍ନ ଦେଶ ମଧ୍ୟରେ ମାନବସମାଜର ପ୍ରୟୋଜନୀୟ ଦ୍ରବ୍ୟମାନଙ୍କର ଆଦାନ-ପ୍ରଦାନକୁ ବାଣିଜ୍ୟ କହନ୍ତି । ଅବସ୍ଥା-ଭେଦରେ ମନୁଷ୍ୟର ଅଭାବ ନାନା-ପ୍ରକାର । ମନୁଷ୍ୟ ନାନାପ୍ରକାରେ ଏହି ଅଭାବ ପୂରଣ କରିବାପାଇଁ ସର୍ବଦା ଯତ୍ନବାନ୍ । ପ୍ରଥମତଃ, ପ୍ରାଣ-ଧାରଣ ପାଇଁ ମନୁଷ୍ୟର ଆହାରୀୟ ପଦାର୍ଥର ପ୍ରୟୋଜନ । ଖାଦ୍ୟ ପାକସ୍ଥଳୀରେ ପ୍ରବେଶ କରି ରକ୍ତରେ ପରିଣତ ହୋଇ ଶରୀର ପୋଷଣ କଲେ ହେଁ, ବୃଷ୍ଟି, ହିମ, ଶୀତ, ଗ୍ରୀଷ୍ମର ଆଧିକ୍ୟାଦିଦ୍ୱାରା ଶରୀରର କ୍ଷୟ ସାଧିତ ହୋଇଥାଏ । ଏଣୁ ମନୁଷ୍ୟ ଏମାନଙ୍କର ଆକ୍ରମଣରୁ ଦେହକୁ ରକ୍ଷା କରିବା ପାଇଁ କୌଣସି ପ୍ରକାର ଆଶ୍ରୟ ଲୋଡ଼େ । ଏହିରୂପେ ସାମାନ୍ୟ ପର୍ଣ୍ଣକୁଟୀରଠାରୁ ସୁରମ୍ୟ ହର୍ମ୍ୟ ପର୍ଯ୍ୟନ୍ତ ନାନାବିଧ ମାନବ-ବାସର ସୃଷ୍ଟି । ସାମାଜିକ ଓ ସୌନ୍ଦର୍ଯ୍ୟ-ପ୍ରିୟ ମନୁଷ୍ୟର ଲଜ୍ଜା-ନିବାରଣ ଓ ଶ୍ରମସମ୍ପାଦନ ନିମନ୍ତେ ବହୁବିଧ ବସନ-ଭୂଷଣ ପ୍ରୟୋଜନୀୟ । ଶ୍ରାନ୍ତ ଅବସନ୍ନ ଓ ରୁଗ୍ଣ ଶରୀରର ଶାନ୍ତି, ଅବସାଦ ଓ ରୋଗର ଅପନୟନ, ଏବଂ ସ୍ଫୂର୍ତ୍ତି ଓ ସ୍ୱାସ୍ଥ୍ୟର ପୁନଃପ୍ରବର୍ତ୍ତନ ନୂତନ ଅଭାବର ଅବତାରଣା କରେ । ସୌନ୍ଦର୍ଯ୍ୟପ୍ରିୟତା ଅତିଭୂମି ପ୍ରାପ୍ତ ହୋଇ ବିଳାସିତାର ରୂପ ଧାରଣ କଲେ, ଅଭାବର ଦ୍ୱାର ଅଧିକ ଉନ୍ମୁକ୍ତ ହୁଏ । ଏହିରୂପେ ଏବଂ ଅନ୍ୟାନ୍ୟ ଅନେକ ପ୍ରକାରେ ଜନ୍ମିତ ମାନବର ଅସଂଖ୍ୟ ଅଭାବର ପୂରଣ ନିମନ୍ତେ ସହସ୍ର ସହସ୍ର ଦ୍ରବ୍ୟ ପ୍ରୟୋଜନୀୟ । ଏହି ଦ୍ରବ୍ୟମାନ କୌଣସି ଏକ ବ୍ୟକ୍ତିକର୍ତ୍ତୃକ ଅଥବା କୌଣସି ଏକ ଦେଶରେ ପ୍ରସ୍ତୁତ ହୁଏ ନାହିଁ । ଏଣୁ ଆଦାନ-ପ୍ରଦାନର ପ୍ରୟୋଜନ । ଏହି ଆଦାନ-ପ୍ରଦାନ ବିପୁଳ ଆକାର ଧାରଣ କଲେ, ବାଣିଜ୍ୟ ନାମରେ ଅଭିହିତ ହୁଏ ।

ବାଣିଜ୍ୟ ମାନବସଭ୍ୟତାର ସହୋଦର । ଆଜିକାଲି ଯାହା ବାଣିଜ୍ୟ ନାମରେ ଆଖ୍ୟାତ, ମାନବସମାଜର ଶୈଶବାବସ୍ଥାରେ ତାହା ଆଧୁନିକ ଆକାରରେ ଲକ୍ଷିତ ନ ହେଲେ ହେଁ, ତାହାର ଅଙ୍କୁର ବିନିମୟରୂପେ ତଦାନୀନ୍ତନ ସମାଜର ପ୍ରୟୋଜନ ସମ୍ପାଦନ କରୁଥିଲା । ଏହି ଅବସ୍ଥାରେ ମୁଦ୍ରାର ଅସ୍ତିତ୍ୱ ନ ଥିଲା ; ତାହାର ଅଭାବ ଅନୁଭୂତ ହୋଇ ନ ଥିଲା । ଲୋକେ ସ୍ୱ ସ୍ୱ ଦ୍ରବ୍ୟମାନଙ୍କର ବିନିମୟ ଦ୍ୱାରା ପରସ୍ପରର ଅଭାବ ପୂରଣ କରି ନେଉଥିଲେ । ମନୁଷ୍ୟର ସାମାଜିକ ଅବସ୍ଥାର ଉନ୍ନତି ଓ ରୁଚିର ବିକାଶ ହେତୁରୁ ତାହାର ଅଭାବ ଅତିଶୟ ବହୁଳୀଭୂତ ହେବାରୁ ବିନିମୟ-ପ୍ରଥାର ଅପ୍ରାଚୁର୍ଯ୍ୟ ଓ ଦ୍ରବ୍ୟର ପ୍ରୟୋଜନ ନ୍ୟୂନାଧିକ ପରିମାଣରେ ଅନୁଭୂତ ହେଲା । ମୁଦ୍ରାର ସୃଷ୍ଟି ଓ ପ୍ରଚଳନଦ୍ୱାରା ବିନିମୟ ରୂପାନ୍ତରିତ ହୋଇ କ୍ରୟ-ବିକ୍ରୟର ଆକାର ଧାରଣ କଲା । ଏହି କ୍ରୟବିକ୍ରୟ ସଭ୍ୟତାର ଶ୍ରୀବୃଦ୍ଧି ଓ ମାନବର ବୈଷୟିକ ଅବସ୍ଥାର ଉନ୍ନତି-ସହକାରେ ପୁଷ୍ଟ ଓ ବିସ୍ତୃତ ହୋଇ ବାଣିଜ୍ୟନାମରେ ପ୍ରଥିତ ହୋଇଅଛି ।

ମୁଦ୍ରା ଓ ବାଣିଜ୍ୟ ମଧ୍ୟରେ ଘନିଷ୍ଠ ସମ୍ବନ୍ଧ ରହିଛି । ବାଣିଜ୍ୟର ପ୍ରସାର ମୁଦ୍ରାବାହୁଲ୍ୟର କାରଣ ; ପୁଣି ମୁଦ୍ରାବାହୁଲ୍ୟ ମଧ୍ୟ ବାଣିଜ୍ୟରାଜ୍ୟ ବିସ୍ତୃତ କରି ଦିଏ । ମୁଦ୍ରା-ନିର୍ମାଣ ଶିଳ୍ପବିଶେଷ ଅଟେ । ଅନ୍ୟାନ୍ୟ ଶିଳ୍ପ ସହିତ ମଧ୍ୟ ବାଣିଜ୍ୟ ଦୃଢ଼ରୂପେ ସମ୍ବନ୍ଧିତ, ଶିଳ୍ପ ବ୍ୟତିରେକେ ବାଣିଜ୍ୟର ଅସ୍ତିତ୍ୱ ଅସମ୍ଭାବ୍ୟ ନୋହିଲେ ହେଁ ଶିଳ୍ପହୀନ ବାଣିଜ୍ୟ ସ୍ୱଳ୍ପକଳେବର ହୁଅନ୍ତା । ଅପକୃଷ୍ଟ ପଚ୍ୟ ଫଳାଦି, କୃଷି-ଜାତ ଓ ଶିଳ୍ପଜାତ ଦ୍ରବ୍ୟ, ଏବଂ ଯାନ ଏହି ଚତୁର୍ବିଧ ବାଣିଜ୍ୟର ଅଙ୍ଗ । ହସ୍ତିତକ୍ଷ ପ୍ରଭୃତି ଫଳ, ଇନ୍ଧନ ଓ ପ୍ରକାରାନ୍ତରେ ପ୍ରୟୋଜନୀୟ କାଷ୍ଠ, କତିପୟ ତୃଣ ଓ ପର୍ଣ୍ଣ ଏବଂ ଖନିରୁ ଉତ୍ତୋଳିତ ଲୌହାଦି ପ୍ରଥମ ଶ୍ରେଣୀର ଅନ୍ତର୍ଗତ । ବିବିଧ ଶସ୍ୟ ଏବଂ ମନୁଷ୍ୟ ଯତ୍ନରେ ସମ୍ବର୍ଦ୍ଧିତ ତରୁଲତାଦିର ପତ୍ରପୁଷ୍ପାଦି ଦ୍ୱିତୀୟ ଶ୍ରେଣୀର ଉଦାହରଣ ; ଉକ୍ତ ଦୁଇବିଧ ପଦାର୍ଥ ମନୁଷ୍ୟ-ହସ୍ତରେ ତାହାର ରୁଚି ଓ ପ୍ରୟୋଜନ ଅନୁସାରେ ନବୀନ ଆକାର ଧାରଣ କଲେ ତୃତୀୟ ଶ୍ରେଣୀର ଅନ୍ତର୍ଭୁକ୍ତ ହୁଏ । ପ୍ରଥମ ଦୁଇ ଶ୍ରେଣୀର ମଦାର୍ଥ ଅପେକ୍ଷା ତୃତୀୟ ଶ୍ରେଣୀର ପଦାର୍ଥମାନଙ୍କର ସଂଖ୍ୟା ଓ ପ୍ରକାର-ଭେଦ ବହୁପରିମାଣରେ ଅଧିକ । ଏଣୁ ଶିଳ୍ପୋନ୍ନତି ବାଣିଜ୍ୟ-ଶ୍ରୀବୃଦ୍ଧିର ପ୍ରଧାନ ସହାୟ । ଶିଳ୍ପଜାତ ଦ୍ରବ୍ୟ ଦ୍ୱାରା ଆମ୍ଭମାନଙ୍କର ଶରୀରର ପୋଷଣ, ଭୂଷଣ, ଆବରଣ, ଆରୋଗ୍ୟ, ଆରାମ ପ୍ରଭୃତି ବିବିଧ ପ୍ରୟୋଜନ ସମ୍ପାଦିତ ହୁଏ !

ବାଣିଜ୍ୟ ଯାନ-ସାପେକ୍ଷ । ଏହି ଯାନମାନ ଦୁଇ ପ୍ରଧାନ ଭାଗରେ ବିଭକ୍ତ :—ସ୍ଥଳଯାନ ଓ ଜଳଯାନ । ସ୍ଥଳଯାନରେ ସାଧାରଣ ନାମ ଶକଟ, ଜଳଯାନରୁ ସାଧାରଣ ନାମ ପୋତ । ଉଭୟବିଧ ଯାନ କାଷ୍ଠ ଓ ଧାତୁ ଦ୍ରବ୍ୟରେ

ନିର୍ମିତ । ସ୍ଥଳଯାନଗୁଡ଼ିକ ପ୍ରାଣୀଦ୍ୱାରା ଏବଂ ଜଳଯାନଗୁଡ଼ିକ ମନୁଷ୍ୟ ଓ ସମୀରଣ ଦ୍ୱାରା ଚାଳିତ ହୋଇ ଆସୁଥିଲା । ଖ୍ରୀଷ୍ଟୀୟ ଊନବିଂଶ ଶତାବ୍ଦୀର ପ୍ରାରମ୍ଭରୁ ଶିଳ୍ପ-କୌଶଳ ଦ୍ୱାରା ଉତ୍ତପ୍ତ ଜଳୀୟ ବାଷ୍ପକୁ ଉକ୍ତ ଉଭୟବିଧ ଯାନର ଚାଳନାରେ ବୁଦ୍ଧିମାନ୍ ମାନବ ନିଯୁକ୍ତ କରିଅଛି । ବାଷ୍ପୀୟ ଶକଟ ଓ ବାଷ୍ପୀୟ ପୋତ ଜଳସ୍ଥଳ ଉଭୟତ୍ର ଅଚିନ୍ତିତ ବେଗରେ ଧାବିତ ହୋଇ ବାଣିଜ୍ୟ-ବିସ୍ତାର ଓ ମନୁଷ୍ୟ-ସମାଜର ସୁଖସ୍ୱାଚ୍ଛନ୍ଦ୍ୟ-ବୃଦ୍ଧିର ନବୀନ ସୁବିଧା କରିଅଛି । ସ୍ଥଳରେ ବାଷ୍ପୀୟ ଶକଟପାଇଁ ବିଶେଷବିଧ ପଥ ପ୍ରୟୋଜନୀୟ । ଏହି ପଥର ନାମ ଲୌହ ବର୍ତ୍ମ । ଅନ୍ୟାନ୍ୟ ପଥ ଅପେକ୍ଷା ଏହା ବହୁ ପରିମାଣରେ ଅଧିକ ସରଳ, ଓ ଉଚ୍ଚାବଚ ହେଲେ ବାଷ୍ପୀୟ ଶକଟର ଚାଳନା ଅସିଦ୍ଧ ହୁଏ । ଲୌହବର୍ତ୍ମ ଏତଦ୍ ଦେଶୀୟ ଜନ-ସାଧାରଣଙ୍କଠାରେ ରେଲ-ବାଟ ନାମରେ ପରିଚିତ । ଇତର ଶକଟମାନ ଦେଶ-ଭେଦରେ ବଳୀବର୍ଦ୍ଦ, ମହିଷ, ଅଶ୍ୱ ପ୍ରଭୃତିଦ୍ୱାରା ଚାଳିତ ହୁଏ । ମରୁପ୍ରଦେଶରେ ଉଷ୍ଟ୍ର ହିଁ ଏକମାତ୍ର ବାଣିଜ୍ୟଯାନ । ଏ ଦେଶର ପାର୍ବତୀୟ ବନ୍ଧୁର ପ୍ରଦେଶରେ ବାଣିଜ୍ୟବସ୍ତୁ ବହନ ନିମିତ୍ତ ଗୋରୁ ଅପେକ୍ଷା ମହିଷ ଅଧିକ ଉପଯୋଗୀ । ବର୍ତ୍ତମାନ ବୃହଦାକାର ପୋତଗୁଡ଼ିକ ଭାଷାନ୍ତରଗତ ଜାହାଜ ଶବ୍ଦ ଦ୍ୱାରା ଆଖ୍ୟାତ ହେଉଅଛି ।

କର୍ମଶୀଳତା ମାନବପ୍ରକୃତିର ଗୋଟିଏ ଧର୍ମ । ଏହି କର୍ମଶୀଳତା ମନୁଷ୍ୟର ଅନ୍ୟ ବହୁବିଧ କଲ୍ୟାଣର ଯେପରି ଜନନୀ, ବାଣିଜ୍ୟର ମଧ୍ୟ ସେହିପରି ପ୍ରସୂତି । ଏହାଦ୍ୱାରା ଉତ୍ପନ୍ନ, ପୁଷ୍ଟ ଓ ବର୍ଦ୍ଧିତ ହୋଇ ବାଣିଜ୍ୟ ସମଗ୍ର ସଭ୍ୟ ଜଗତରେ ସ୍ୱୀୟ ପ୍ରଭାବ ବିସ୍ତାର କରେ । ମନୁଷ୍ୟ ଯେ ପରିମାଣରେ ଉଦ୍ୟୋଗୀ, ଅଧ୍ୟବସାୟୀ, ସହିଷ୍ଣୁ ଓ ଚରିତ୍ରବାନ୍ ହୁଏ, ତାହା ଦ୍ୱାରା ବାଣିଜ୍ୟ ସେହି ପରିମାଣରେ ଶ୍ରୀବୃଦ୍ଧି-ସମ୍ପନ୍ନ ହୁଏ । ପକ୍ଷାନ୍ତରେ, ମନୁଷ୍ୟ ଯେ ପରିମାଣରେ ବିକୃତିଗ୍ରସ୍ତ, ଅଳସ ଓ ଚରିତ୍ର-ହୀନ ହୁଏ, ତାହା ହସ୍ତରେ ବାଣିଜ୍ୟ ସେହି ପରିମାଣରେ ଶ୍ରୀହୀନ ହୋଇ ଅବଶେଷରେ ଅତିହୀନ ଦଶା ପ୍ରାପ୍ତ ହୁଏ । ପୃଥିବୀର ପ୍ରାଚୀନ ଆଧୁନିକ ନାନା ଜାତିର ବାଣିଜ୍ୟର ଇତିବୃତ୍ତ ଆଲୋଚନା କଲେ ଏହା ସ୍ପଷ୍ଟ ରୂପେ ପ୍ରତୀୟମାନ ହେବ ।

ସଭ୍ୟତାର ପାରମ୍ଭରୁ ବାଣିଜ୍ୟ ନାନାରୂପେ ପ୍ରଚଳିତ ହୋଇ ଆସୁଥିଲେ ହେଁ ଯୁଗବିଶେଷରେ ଜାତିବିଶେଷର ଏ ବିଷୟରେ ଶ୍ରେଷ୍ଠତା ଲକ୍ଷିତ ହୁଏ । ଅତି ପ୍ରାଚୀନକାଳରେ ଭାରତବର୍ଷ, ଫିନିସିଆ ଓ କାର୍ଥେଜର ଅଧିବାସୀମାନେ ବାଣିଜ୍ୟରେ ଉନ୍ନତି ବା ସମୃଦ୍ଧି ଲାଭ କରିଥିଲେ । ଭାରତର ଅନ୍ୟାନ୍ୟ ଅଧିବାସୀ ଅପେକ୍ଷା ଉପକୂଳବାସୀ ଲୋକେ ଅଧିକ ବାଣିଜ୍ୟପ୍ରିୟ ଥିଲେ । ପୂର୍ବାଭିମୁଖରେ ଭାରତ ଓ ପ୍ରଶାନ୍ତ ମହାସାଗରର ଦ୍ୱୀପସମୂହ ଓ ସନ୍ନିହିତ ଦେଶ ସହିତ ବାଣିଜ୍ୟ-ସୂତ୍ରରେ ସମ୍ବନ୍ଧ ଥିଲା । ଭାରତବାସୀମାନେ ବାଣିଜ୍ୟ କରୁଁ କରୁଁ ବାଲି ଓ ଯବ ଦ୍ୱୀପରେ

ଉପନିବେଶ ସ୍ଥାପନ କରିଥିଲେ ବୋଲି ଇତିହାସବେତ୍ତାମାନେ ଉଲ୍ଲେଖ କରି-ଅଛନ୍ତି । ଏତଦ୍ ଦେଶୀୟ ବନ୍ଦରମାନଙ୍କ ମଧ୍ୟରେ ତାମ୍ରଲିପ୍ତି ଅଧିକ ଉତ୍କର୍ଷ ଲାଭ କରିଥିଲା । ଉତ୍କଳ ପ୍ରଦେଶରେ ଚିଲିକା ହିଁ ପ୍ରଧାନ ବନ୍ଦର ଥିଲା । ପ୍ରାଚ୍ୟ ଜାତିମାନଙ୍କ ମଧ୍ୟରେ ଫିନିସିଆର ଲୋକେ ବାଣିଜ୍ୟରେ ସର୍ବାପେକ୍ଷା ଅଧିକ ସିଦ୍ଧହସ୍ତ ଥିଲେ । ଭାରତୀୟ ଶିଳ୍ପଜାତଦ୍ରବ୍ୟ ସେମାନଙ୍କଦ୍ୱାରା ୟୁରୋପରେ ରପ୍ତାନି ହେଉଥିଲା । ଭୂମଧ୍ୟସାଗରର ପୂର୍ବକୂଳବର୍ତ୍ତୀ ଟ୍ରାୟ ନଗର ଫିନିସୀୟ ବାଣିଜ୍ୟର କେନ୍ଦ୍ରସ୍ଥଳୀ ଥିଲା । ଫିନିସିଆରୁ ଯେଉଁମାନେ ଯାଇ ଆଫ୍ରିକାର ଉତ୍ତରକୂଳସ୍ଥ କାର୍ଥେଜ ନଗରରେ ଉପନିବିଷ୍ଟ ହୋଇଥିଲେ, ସେମାନଙ୍କ ବଂଶର କାର୍ଥେଜୀୟମାନେ ଉତ୍ତର କାଳରେ ବାଣିଜ୍ୟ-ମଣ୍ଡଳୀ ମଧ୍ୟରେ ଶୀର୍ଷସ୍ଥାନ ଅଧିକାର କଲେ । ପ୍ରାଚୀନ ଗ୍ରୀସୀୟମାନେ ମଧ୍ୟ ବାଣିଜ୍ୟକୁଶଳ ଥିଲେ । ଆଥେନ୍‌ସ ନଗରୀ ସରସ୍ୱତୀ ଓ ଲକ୍ଷ୍ମୀ ଉଭୟଙ୍କର ପ୍ରିୟ ନିକେତନ ଥିଲା । ଗ୍ରୀସୀୟ ବାଣିଜ୍ୟ-ପୋତ ସନ୍ନିହିତ ଭୂମଧ୍ୟ-ସାଗରୀସ୍ଥ ଦ୍ୱୀପମାନଙ୍କରେ ଗ୍ରୀସ୍‌ର ବାଣିଜ୍ୟ ବିସ୍ତାର କରିଥିଲା । ପ୍ରସିଦ୍ଧ ପ୍ରାଚୀନ ଜାତିମାନଙ୍କ ମଧ୍ୟରେ ରୋମୀୟମାନେ ବହିର୍ବାଣିଜ୍ୟରେ ଅନଭିଜ୍ଞ ଥିଲେ । ଇଟାଲୀୟମାନେ ବହୁକାଳ ପର୍ଯ୍ୟନ୍ତ ପୋତନିର୍ମାଣ-ପ୍ରଣାଳୀ ଆଦୌ ଜାଣି ନ ଥିଲେ । କିନ୍ତୁ ଉତ୍ତର କାଳରେ, ଅର୍ଥାତ୍, ଇୟୁରୋପୀୟ ମଧ୍ୟଯୁଗରେ ସେମାନେ ବାଣିଜ୍ୟ ବିଷୟରେ ବହୁ ପରିମାଣରେ ଉନ୍ନତ ହେଲେ । ତଦ୍ଦେଶୀୟ ନଗରମାନଙ୍କ ମଧ୍ୟରେ ଭେନିସ୍ ପୀଜା ଓ ଜେନିଓ୍ୱା ଅନ୍ୟାନ୍ୟ ବାଣିଜ୍ୟସ୍ଥଳୀ ଅପେକ୍ଷା ଶ୍ରେଷ୍ଠ ହୋଇ ଉଠିଲା, ଏବଂ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର ଶେଷ ଭାଗରେ ଭିନିସନଗରୀ ଅପର ସମସ୍ତଙ୍କୁ ଅତିକ୍ରମ କରି ବାଣିଜ୍ୟରାଜ୍ୟର ସମ୍ରାଜ୍ଞୀ ହୋଇ ବସିଲା । ତେତେବେଳେ ଉକ୍ତ ନଗରୀ ବାଣିଜ୍ୟ ଦ୍ୱାରା ଏପରି ସମୃଦ୍ଧି-ଶାଳିନୀ ହୋଇଥିଲା ଯେ କୌଣସି ଭିନିସୀୟ ଗୃହରେ ପୁତ୍ର-ସନ୍ତାନ ଜନ୍ମଗ୍ରହଣ କଲେ, ପୃଥିବୀରେ ଜଣେ କୋଟିପତିର ଆବିର୍ଭାବ ହେଲା ବୋଲି ଜନସାଧାରଣ କହୁଥିଲେ ।

ବର୍ତ୍ତମାନ ଯୁଗରେ ଇଉରୋପୀୟମାନେ ପୃଥିବୀର ଅନ୍ୟାନ୍ୟ ଅଂଶର ଅଧିବାସୀମାନଙ୍କ ଅପେକ୍ଷା ଅଧିକ ବାଣିଜ୍ୟନିପୁଣ । ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀର ମଧ୍ୟଭାଗରେ ଜର୍ମାନିର ଅନ୍ତର୍ଗତ ଲୁବେକ୍, ହାମ୍‌ବର୍ଗ ଓ ବ୍ରନ୍‌ସ୍ୱିକ ନଗର-ତ୍ରୟର ମହାଜନମାନେ ସମ୍ମିଳିତ ହୋଇ ଗୋଟିଏ ବଣିକ୍‌ସମିତି ଗଠନକଲେ । ବାଣିଜ୍ୟ-ଇତିହାସରେ ଏହା ନବୀନ ଅନୁଷ୍ଠାନ । ଏହି ସମିତି କ୍ରମେ ବଡ଼ ପ୍ରବଳ ହେଲା, ଏବଂ ଇଉରୋପୀୟ ଏତେ ଅନ୍ୟାନ୍ୟ ନଗର ସ୍ୱତଃ ପ୍ରବୃତ୍ତ ହୋଇ ଏହାର ଅନ୍ତର୍ଭୁକ୍ତ ହେଲେ ଯେ ମହୀପତିମାନେ ସୁଦ୍ଧା ଏମାନଙ୍କୁ କରପତ୍ର ଯୋଡ଼ି ରହିଲେ ଏବଂ କୌଣସି କୌଣସି ନରପତି ଏମାନଙ୍କଦ୍ୱାରା ସିଂହାସନଚ୍ୟୁତ ଓ କେହି କେହି ଏମାନଙ୍କ କର୍ତ୍ତୃକ ସିଂହାସନରେ ଆରୋପିତ ହେଲେ । ଉତ୍ତର କାଳରେ ନାନା

କାରଣରୁ ଏହି ସମିତି ସ୍ୱଳ୍ପକାୟ ଓ ହୀନବଳ ହେଲେହେଁ ଏହାର ଅସ୍ତିତ୍ୱ ଲୋପ ହୋଇନାହିଁ । ପୂର୍ବୋକ୍ତ ନଗରଦ୍ୱୟ ଅଦ୍ୟାପି ପରସ୍ପର ସହ ସମ୍ପର୍କ ରଖିଛନ୍ତି । ଅନନ୍ତର ପଞ୍ଚଦଶ ଶତାବ୍ଦୀର ପ୍ରାରମ୍ଭରେ ପର୍ତ୍ତୁଗୀଜମାନେ ନୌବାଣିଜ୍ୟ-ବିଦ୍ୟା ଓ ବହିର୍ବାଣିଜ୍ୟରେ ମସ୍ତକୋତ୍ତୋଳନ କଲେ । ପ୍ରାୟ ଏହି ସମୟରେ ଆମେରିକା ଆବିଷ୍କୃତ ହେବାରୁ ସ୍ପେନୀୟମାନେ ଉକ୍ତ ବିଷୟରେ ଶୀର୍ଷ ସ୍ଥାନ ଅଧିକାର କଲେ । ପରବର୍ତ୍ତୀ ଶତାବ୍ଦୀଦ୍ୱୟରେ ଓଲନ୍ଦାଜମାନେ ଅପର ଜାତିଦ୍ୱୟ ଜାତିଙ୍କୁ ଜିଣି ପୃଥିବୀର ନାନା ଅଂଶରେ ସ୍ୱୀୟ ବାଣିଜ୍ୟ ବିସ୍ତାର କଲେ । ଏମାନେ ଭାରତ ମହାସାଗରସ୍ଥ ଦ୍ୱୀପପୁଞ୍ଜରେ ପ୍ରଚଳିତ ବାଣିଜ୍ୟର ପ୍ରାୟ ଏକାଧିପତି ଥିଲେ । ପୂର୍ବୋକ୍ତ ଜାତିମାନଙ୍କ ପଦାଙ୍କ ଧୀରେ ଧୀରେ ଅନୁସରଣ କରି, ଇଂରେଜମାନେ ଅଷ୍ଟାଦଶ ଶତାବ୍ଦୀରୁ ବଣିକ୍‌କୁଳର ଅଗ୍ରଣୀ ହୋଇଅଛନ୍ତି । ବାଣିଜ୍ୟାର୍ଥୀ ଇଂରେଜ ଜାତିର ପୌରୁଷ ଓ ଯୋଗ୍ୟତା ଅବଲମ୍ବନ କରି ଲକ୍ଷ୍ମୀ ସେମାନଙ୍କ ମସ୍ତକରେ ଭାରତ ସାମ୍ରାଜ୍ୟର ମୁକୁଟ ପିନ୍ଧାଇ ଦେଇଅଛନ୍ତି । ଫରାସୀ ଜାତି ବାଣିଜ୍ୟ-ବିମୁଖ ନୋହିଲେ ହେଁ କେବେ ହେଁ ଶୀର୍ଷ ସ୍ଥାନ ଅଧିକାର କରିନାହାନ୍ତି । ଆମେରିକାର ଅନ୍ତର୍ଗତ ମାର୍କିନ୍ ନିବାସୀମାନେ ଅନ୍ୟାନ୍ୟ ଅନେକ ଆଧୁନିକ ଜାତି ଅପେକ୍ଷା ଶ୍ରେଷ୍ଠ । ବିଗତ ଶତାବ୍ଦୀର ଶେଷଭାଗରେ ଯେଉଁ ଅନ୍ତଃସମରାଗ୍ନି ସେ ଦେଶରେ ପ୍ରଜ୍ୱଳିତ ହୋଇଥିଲା, ତାହା ଘଟି ନ ଥିଲେ ମାର୍କିନ୍‌ବାସୀମାନେ ଏତେବେଳକୁ ସମ୍ଭବତଃ ଇଂରେଜମାନଙ୍କର ପ୍ରାୟ ସମକକ୍ଷ ହୋଇଥାନ୍ତେ । ଆଧୁନିକ ପ୍ରାଚ୍ୟ ଜାତିମାନଙ୍କ ମଧ୍ୟରେ ଜାପାନୀୟମାନେ ହିଁ ବାଣିଜ୍ୟରେ ଇଉରୋପୀୟମାନଙ୍କ ସହିତ ପ୍ରତିଯୋଗିତାର ଭାଜନ ବୋଲି ପ୍ରତୀୟମାନ ହୁଏ । ବୋମ୍ବାଇର ସନ୍ନିହିତ ପ୍ରଦେଶ-ମାନଙ୍କରେ ପ୍ରାଚୀନକାଳରୁ ଉପନିବିଷ୍ଟ ପାରସୀଜାତିର ଆଧୁନିକ ବାଣିଜ୍ୟ ପ୍ରତିଷ୍ଠା ଭାରତୀୟମାନଙ୍କର ଲୁପ୍ତ ବାଣିଜ୍ୟ-ଗୌରବ ଉଦ୍ଧାର କରିପାରିବ ବୋଲି ମନୋ-ମଧ୍ୟରେ ଆଶାର ସଞ୍ଚାର ହେଉଅଛି । ବାଣିଜ୍ୟ-ପ୍ରସାଦରୁ ଦାରିଦ୍ର୍ୟ ଜାତିରୁ ଅନ୍ତର୍ହିତ ହୋଇଅଛି । ରାଜପୁତନାର ଅନ୍ତର୍ଗତ ଯୋଧପୁରବାସୀ ମାରୱାଡ଼ିମାନେ ଭାରତୀୟ ବଣିକସମାଜରେ ଦ୍ୱିତୀୟ ଆସନ ପାଇବାର ଯୋଗ୍ୟ । ପୂର୍ବୋପକୂଳବାସୀମାନଙ୍କ ମଧ୍ୟରେ ମାନ୍ଦ୍ରାଜ ପ୍ରଦେଶୀୟମାନଙ୍କର ବଣିଗ୍‌ବୃତ୍ତି ପ୍ରତି ଅନୁରାଗ ଲକ୍ଷିତ ହୁଏ । ଭାରତର ଅନ୍ୟାନ୍ୟ ଜାତି ଯେଉଁ ଅନ୍ତର୍ବାଣିଜ୍ୟରେ ନିଯୁକ୍ତ, ପୃଥିବୀର ଅପର ସଭ୍ୟ ଦେଶମାନଙ୍କ ବାଣିଜ୍ୟ ସହିତ, ତୁଳନାରେ ତାହା ନଗଣ୍ୟ ବୋଲିବାକୁ ହେବ । ଉତ୍କଳରେ ବାଲେଶ୍ୱରବାସୀମାନେ ବାଣିଜ୍ୟସ୍ପୃହା ନିମନ୍ତେ ଖ୍ୟାତ ଥିଲେ । ମାତ୍ର ଭାରତର ପାଶ୍ଚାତ୍ୟ ଜାତିମାନଙ୍କ ପ୍ରତିଯୋଗିତାରେ ବାଣିଜ୍ୟ-ଲକ୍ଷ୍ମୀ ସେମାନଙ୍କଠାରୁ ମେଲାଣି ଘେନିଲେଣି ।

"ବାଣିଜ୍ୟେ ବସତେ ଲକ୍ଷ୍ମୀଃ" ବୋଲି ଗୋଟିଏ ପ୍ରବାଦ ଅଛି । ମାନବ ସଭ୍ୟତାରେ ବହୁ ଦିନରୁ ଏହାର ଯଥାର୍ଥତା ଉପଲବ୍ଧ ହୋଇଆସୁଅଛି । ଲୋକେ ନାନା ଉପାୟରେ ଅର୍ଥଲାଭ କରନ୍ତି । ଏହି ଉପାୟମାନଙ୍କ ମଧ୍ୟରେ ବାଣିଜ୍ୟ ସର୍ବଶ୍ରେଷ୍ଠ । ଅର୍ଥ-ଲାଭ ବାଣିଜ୍ୟର ମୁଖ୍ୟ ଉଦ୍ଦେଶ୍ୟ ହେଲେ ହେଁ ମନୁଷ୍ୟ ବାଣିଜ୍ୟ-ଦ୍ୱାରା ପ୍ରକାରାନ୍ତରରେ ମଧ୍ୟ ଲାଭବାନ୍ ହୁଏ । କର୍ମଶୀଳତାର ରୂପାନ୍ତର ଯେଉଁ ଅଧ୍ୟବସାୟ ବାଣିଜ୍ୟ ପକ୍ଷରେ ଏକାନ୍ତ ପ୍ରୟୋଜନୀୟ, ବାଣିଜ୍ୟଜୀବୀମାନଙ୍କ ଚରିତ୍ରରେ ତାହା ସମ୍ୟକ୍ ବଳାଧାନ କରିଥାଏ । ଏହି ଅଧ୍ୟବସାୟ ଦୃଢ଼ୀଭୂତ ହେଲେ ମନୁଷ୍ୟ ନାନା ବିଷୟରେ କୃତିତ୍ୱ ଅର୍ଜ୍ଜନ କରେ । ବଣିକମାନେ ସ୍ୱାର୍ଥ-ସାଧନୋଦ୍ଦେଶ୍ୟରେ ନାନା ଦେଶରେ ବିଚରଣ କରୁଁ କରୁଁ ତଦ୍ଦେଶମାନଙ୍କର ବାହ୍ୟ ଓ ଆଭ୍ୟନ୍ତର ବିଷୟମାନ ଅବାନ୍ତର ଭାବରେ ଅବଗତ ହୋଇ ଅନାୟାସରେ ବା ଅପେକ୍ଷାକୃତ ସ୍ୱଳ୍ପାୟାସରେ ସ୍ୱୀୟ ଜ୍ଞାନର ପୁଷ୍ଟିସାଧନ କରନ୍ତି ଏବଂ ସେମାନଙ୍କ ମଧ୍ୟରେ କେହି କେହି ସରସ୍ୱତୀଙ୍କ ଉପାସକ ଥିଲେ ସେମାନଙ୍କ ଦ୍ୱାରା ଏହି ଜ୍ଞାନ ପୁସ୍ତକାକାରରେ ପ୍ରଚାରିତ କରି ସ୍ୱଦେଶୀୟ ସାହିତ୍ୟର ନାନାପ୍ରକାର ପୁଷ୍ଟିସାଧନ କରନ୍ତି । ବାଣିଜ୍ୟ ଯେବେ ପୃଥିବୀର ଭିନ୍ନ ଭିନ୍ନ ଅଂଶର ଲୋକମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଜନ୍ମାଉଥିଲେ ହେଁ,ପରିଣାମରେ ମନୁଷ୍ୟ-ମନକୁ ସଂସ୍କୃତ ଓ ଔଦାର୍ଯ୍ୟ-ସମ୍ପନ୍ନ କରିବାର ସମ୍ଭାବନା ଏଥିରେ ରହିଅଛି । ଅର୍ଥ ଅପବ୍ୟବହୃତ ହେଲେ ଅମଙ୍ଗଳ ପ୍ରସବ କରେ । ସଦ୍‌ବ୍ୟବହାରରେ ପକ୍ଷାନ୍ତରରେ ନାନାପ୍ରକାର କଲ୍ୟାଣର କାରଣ ହୁଏ । ବାଣିଜ୍ୟରେ ଲକ୍ଷ୍ମୀ ଲାଭ କରି ମହାଶୟ ଲୋକମାନେ ମାନବର ଓ ଇତରପ୍ରାଣୀମାନଙ୍କର ଅନେକ ପ୍ରକାର କଲ୍ୟାଣ ସାଧନ କରିଅଛନ୍ତି । ଏମାନଙ୍କ ଦୟାରେ ଅନେକ ସ୍ଥଳରେ ଦରିଦ୍ର-ମାନେ ଦାରିଦ୍ର୍ୟରୁ ଓ ରୋଗୀମାନେ ରୋଗରୁ ମୁକ୍ତିଲାଭ କରିଥାନ୍ତି । ସ୍ୱୀୟ ଉଦ୍ଦେଶ୍ୟ ସାଧନରେ ନିରତ ବଣିକମାନଙ୍କ କର୍ତ୍ତୃକ ଦରିଦ୍ର ଶ୍ରମିକମାନେ ଓ ବିପନ୍ନ ଲୋକେ ନାନାପ୍ରକାରେ ଉପକୃତ ହୁଅନ୍ତି । ଯେଉଁ ମହାନଦୀ ଓ ମହାସାଗରରେ ବାଣିଜ୍ୟ-ପୋତ ସର୍ବଦା ବିଚରଣ କରେ, ଉପକାରିତାରେ ବାଣିଜ୍ୟ ସେମାନଙ୍କ ସହିତ ତୁଳନୀୟ ।

( ଉତ୍କଳ ସାହିତ୍ୟ, ୨ୟ ଭାଗ, ୧୧ଶ ସଂଖ୍ୟାରେ ପ୍ରକାଶିତ )

---

## ୪—କୈଫିୟତ୍

ଶ୍ରୀଯୁକ୍ତ ଉତ୍କଳ ସାହିତ୍ୟ ସମ୍ପାଦକ ମହାଶୟ

ସମୀପେଷୁ,

ମହାଶୟ !

ଆପଣ ମୋତେ ଉତ୍କଳ ସାହିତ୍ୟ ପତ୍ରିକାରେ ଲେଖିବାପାଇଁ ପତ୍ରଦ୍ୱାରା ଓ

ମୌଖିକ ଅନେକଥର ଅନୁରୋଧ କରିଅଛନ୍ତି ଏବଂ ମୁଁ ନ ଲେଖିବାରୁ ବ୍ୟଥିତ ହୋଇଅଛନ୍ତି । ଏକଥା ଅନେକ ସମୟରେ ମୋହର ମନେ ପଡ଼େ ଓ ତାହା ସହିତ ସମସ୍ତ ସମୟରେ ଯେଉଁ ଭାବର ଉଦୟ ହୁଏ ତାହା ଆଜି ଏହି ପତ୍ରରେ ଆପଣଙ୍କଠାରେ ବ୍ୟକ୍ତ କଲି । ଆପଣଙ୍କ ପତ୍ରିକାରେ ଏହା ପ୍ରକାଶ କରିବାକୁ ଇଚ୍ଛା କଲେ ପ୍ରକାଶ କରିପାରନ୍ତି । ଯେଉଁ କାରଣରୁ ମୁଁ ଲେଖିବାର ଅଭ୍ୟାସ ପରିତ୍ୟାଗ କରିଅଛି ତାହା ମୁଁ ବର୍ତ୍ତମାନ ଆପଣଙ୍କଠାରେ ବ୍ୟକ୍ତ କରିବାକୁ ଅସମର୍ଥ ।

ଏହି ଉତ୍କଳ ପ୍ରଦେଶରେ ଲୋକେ ମୋତେ ଲେଖକ ବୋଲି ଗଣନା କରନ୍ତି, ଏହା ମନେ କଲେ ମୁଁ ସମସ୍ତ ସମୟରେ ବିସ୍ମିତ ହୁଏ । କିନ୍ତୁ ଏହି ଦୀନ ଦେଶ ଲେଖକ ଓ ଲେଖାରେ ଦରିଦ୍ର, ଏହା ମନେ କଲାକ୍ଷଣି ସେ ବିସ୍ମୟ କ୍ରମେ ଊଣା ହୋଇ ବିଷାଦରେ ପରିଣତ ହୁଏ । ସ୍ଥୂଳ ବୁଦ୍ଧିରେ ଏହି ଦରିଦ୍ରତାର କାରଣ ଅନୁସନ୍ଧାନ କଲେ ମୋର ପ୍ରତୀତ ଜନ୍ମେ ଯେ ଉତ୍କଳର ଆଧୁନିକ ଅବସ୍ଥା ସାହିତ୍ୟବିକାଶର ଅନୁକୂଳ ନୁହେଁ । ସମ୍ପୂର୍ଣ୍ଣ ରୂପରେ ନ ହେଲେ, ବହୁପରିମାଣରେ ।

ମନୁଷ୍ୟମାନଙ୍କ ମନରେ ସର୍ବଦା ନାନାପ୍ରକାର ଭାବ ଜନ୍ମେ । ତନ୍ମଧ୍ୟରୁ ଅଧିକାଂଶ ଠିକ୍ ବୃଷ୍ଟିପାତଜନିତ ଜଳବୁଦ୍‌ବୁଦ୍ ପରି "ଉତ୍ପଦ୍ୟନ୍ତେ ପ୍ରଲୀୟନ୍ତେ" । ଅତଏବ ତାହାର ଅବଶେଷ ବା ଚିହ୍ନ ପ୍ରାୟ ଆଉ କିଛି ରହେ ନାହିଁ । ବିଶେଷ ଘଟନା-ଜନିତ ଗାଢ଼ ଭାବ ଅପେକ୍ଷାକୃତ ଦୀର୍ଘକାଳସ୍ଥାୟୀ ହୁଏ । ଏହି ଭାବର ମାତ୍ରା ଯେତେବେଳେ ଅତ୍ୟଧିକ ହୋଇ ମନ ମଧ୍ୟରେ ପ୍ରଚୁର ସ୍ଥାନ ନ ପାଏ, ତେତେବେଳେ ତାହା ଉଚ୍ଛୁଳି ପଡ଼େ । ଏ ସମୟରେ ଅନୁଭବୀ ଅନ୍ୟ ନିକଟରେ ତାହା ବ୍ୟକ୍ତ କରିପକାଏ, ଅଥବା ନିର୍ଜନରେ ହର୍ଷ ବା ବିଷାଦର ଅଧୀନ ହୋଇ ପ୍ରଳାପବନ୍ତୁ କହି ପକାଏ । ଯେଉଁମାନେ ଶିକ୍ଷାଶାସ୍ତ୍ରରେ ଅଧିକାର ଓ ରଚନାଶକ୍ତି ଲାଭ କରିଅଛନ୍ତି, ସେମାନେ ତାହା ଗଦ୍ୟ ବା ପଦ୍ୟ ଆକାରରେ ଅନ୍ୟଠାରେ ପ୍ରକାଶ କରନ୍ତି । ମାତ୍ର ଭାବ ଗାଢ଼ତମ ହୋଇ ମନୁଷ୍ୟ-ମନକୁ ଅଭିଭୂତ କଲେ, ମନୁଷ୍ୟ ଜଡ଼ୀଭୂତ ହୁଏ ; ତେତେବେଳେ କବିତା ପ୍ରଭୃତି ତାହା ପକ୍ଷରେ ଅସମ୍ଭବ ହୁଏ । ଏଣୁ ଦେଖାଯାଏ ଯେ କୃତବିଦ୍ୟ ଲୋକେ ନବୀନ ବୟସରେ ପଦାର୍ପଣ କଲେ, ନୂତନ ଦେଶରେ ଉପସ୍ଥିତ ହେଲେ ଅଥବା ନୂତନ ବା ଅଦ୍ଭୁତ ଦୃଶ୍ୟ ବା ଘଟନା ଅନୁଭବ କଲେ, ସ୍ୱୀୟ ମନୋଭାବ ଲିପିବଦ୍ଧ କରିବାପାଇଁ ଉତ୍ସୁକ ହୁଅନ୍ତି ।

ଆର୍ଯ୍ୟମାନେ ଯେତେବେଳେ ଭାରତବର୍ଷରେ ପ୍ରବେଶ କଲେ, ଆର୍ଯ୍ୟାବର୍ତ୍ତର କମନୀୟ ଶୋଭାରେ ବିସ୍ମିତ ଆର୍ଯ୍ୟ ଋଷିମାନଙ୍କ ମନରେ ନାନା ନବୀନ ଭାବର ଉଦୟ ହେଲା । ସେମାନେ ସେହି ଭାବଗୁଡ଼ିକ ଛନ୍ଦୋବଦ୍ଧ ଭାଷାରେ ପ୍ରକାଶକଲେ । ସୂର୍ଯ୍ୟବଂଶର ପବିତ୍ର ଓ ଉଜ୍ଜ୍ୱଳ କୀର୍ତ୍ତିରେ ମୁଗ୍ଧ ହୋଇ କବିଗୁରୁ ବାଲ୍ମୀକି ଆଦି-

କାବ୍ୟ ରଚନା କଲେ । ବ୍ୟାସଦେବ ତତ୍କାଳୀନ ସମାଜ ଓ ରାଜନୀତିର ବୈଚିତ୍ର୍ୟମୟ ଚିତ୍ରଗୁଡ଼ିକର ଉପାଦାନରେ ବିରାଟ ମହାଭାରତ ପ୍ରଣୟନ କଲେ । ବିଖ୍ୟାତ ଚୀନ ପରିବ୍ରାଜକ ଭାରତର ଶାନ୍ତିମୟ ସମାଜନୀତି ପ୍ରଭୃତିରେ ମୋହିତ ହୋଇ ମାତୃଭାଷାରେ ତାହା ଲିପିବଦ୍ଧ କଲେ । ସମ୍ରାଟ୍-ଶିରୋମଣି ଆକବରଙ୍କ ଉଦାର ଶାସନକାଳରେ ଆଇନ୍-ଇ-ଆକବର ଜନ୍ମ ଲାଭ କଲା । ଭୌଗୋଳିକ ଆବିଷ୍କାର ଓ ମୁଦ୍ରା-ଯନ୍ତ୍ରର ଉଦ୍ଭାବନ ଇଉରୋପୀୟ ସାହିତ୍ୟରେ ନବଯୁଗର ଅବତାରଣା କଲା, ଏ ଦେଶର ଇଂରେଜ-ରାଜତ୍ୱରେ ଦରସ୍ୱତୀ-ସେବକ ବଂଶୀୟ ଯୁବକମାନେ ଦେଶାନ୍ତର ଗମନ କରି ଅଦୃଷ୍ଟପୂର୍ବ ପ୍ରାକୃତିକ ଓ କୃତ୍ରିମ ଶୋଭା, ସମାଜନୀତି ପ୍ରଭୃତି ପ୍ରବନ୍ଧାକାରରେ ବର୍ଣ୍ଣନ କଲେ ଏବଂ ଭାଷାନ୍ତର-ଲିଖିତ ନାନା ଗ୍ରନ୍ଥର ଆଲୋଚନାରେ ସେମାନଙ୍କ ମନରେ ଯେଉଁ ଭାବଗୁଡ଼ିକ ମୁଦ୍ରିତ ହେଲା, କାବ୍ୟାଦିରେ ତାହା ପୁନର୍ଜନ୍ମ ଲାଭକଲା । ସୁତରାଂ ଉଦ୍ଦୀପନର ଅଭାବରେ, ଭାବର ଅଭାବରେ ପ୍ରକୃତ କାବ୍ୟ-କବିତା ପ୍ରଭୃତି ଅସମ୍ଭବ । ଏ ପ୍ରଦେଶର ଲୋକେ ପ୍ରଗାଢ଼ ଅଧ୍ୟବସାୟ ସହକାରେ ନାନା ଶାସ୍ତ୍ରାଲୋଚନା, ଉଚ୍ଚ ବିଷୟ ଚିନ୍ତନ ଏବଂ ବିଦ୍ୟା, ବାଣିଜ୍ୟ ପ୍ରଭୃତି ଉଦ୍ଦେଶ୍ୟରେ ବିଦେଶ ଗମନ କରି 'ଦ୍ୱିଜତ୍ୱ' ଲାଭ ନ କଲେ ସାହିତ୍ୟ-ବିକାଶ ପକ୍ଷରେ ଅନୁକୂଳ ପବନର ଆଶା ଦୂରପରାହତ ।

ଆଳସ୍ୟ ଓ ବ୍ୟସନରେ ବର୍ତ୍ତମାନ ଉତ୍କଳ ଜଡ଼ୀଭୂତ । ଯେଉଁ ଉତ୍କଳୀୟ-ମାନେ କୃଷ୍ଣ ବା କୃତୀକଳ୍ପ ବୋଲି ଗଣ୍ୟ, ସେମାନେ ଏ ଦୁଇଟି ଶିକୁଳିରୁ ଆପଣାକୁ ବିମୁକ୍ତ ନ କଲେ ଉତ୍କଳର ଜଡ଼ତ୍ୱ ଘୁଞ୍ଚିବ ନାହିଁ, ଏ ପ୍ରଦେଶ ବିଦ୍ୟା-ଗୌରବରେ ମହୀୟାନ୍ ଓ ଧନବଳରେ ବଳୀୟାନ୍ ହୋଇ ପାରିବ ନାହିଁ ।

( ଉତ୍କଳ ସାହିତ୍ୟ, ୬ଷ୍ଠ ଭାଗ, ୩ୟ ସଂଖ୍ୟାରେ ପ୍ରକାଶିତ )

---

## ୪—ଶ୍ରୀଧର ସ୍ୱାମୀ

ଯେଉଁମାନେ ତତ୍ତ୍ୱ ଆବିଷ୍କାର କରନ୍ତି ଓ ଯେଉଁମାନେ ତତ୍ତ୍ୱବୋଧର ପଥ ପ୍ରଶସ୍ତ କରିଦିଅନ୍ତି, ସେମାନେ ଉଭୟେ ମାନବମଣ୍ଡଳୀର ଉପକାରୀ, ତେଣୁ ପ୍ରାତଃସ୍ମରଣୀୟ । ଗ୍ରନ୍ଥକାର ଓ ଟୀକାକାର ଅନନ୍ୟ ସମ୍ବନ୍ଧରେ ଏହିପରି ସମ୍ବନ୍ଧ ହୋଇ ଅମରତ୍ୱ ଲାଭ କରନ୍ତି । କାଳୀଦାସଙ୍କ ସହିତ ମଲ୍ଲିନାଥ, ବ୍ୟାସଦେବଙ୍କ ସହିତ ଶ୍ରୀଧର ଏହିପରି ଅମର ହୋଇ ରହିଅଛନ୍ତି । ଏହି ଶ୍ରୀଧର ସ୍ୱାମୀଙ୍କ ଜୀବନୀ ଓ ବଂଶାବଳୀ ବିଷୟରେ ମୁଁ କୁତ୍ରାପି କୌଣସି ଉଲ୍ଲେଖ ଦେଖି ନାହିଁ । ପ୍ରାୟ ଶ୍ରୁତିବର୍ତ୍ତ ହେବ ନୈବାତ୍ ଗୋଟିଏ ଘଟନାରୁ ମୁଁ ଅନୁମାନ କରିବାକୁ ସାହସୀ

ହେଲି ଯେ ସେହି ପ୍ରାତଃସ୍ମରଣୀୟ ଶ୍ରୀଧର ସ୍ୱାମୀଙ୍କର ଜନ୍ମଭୂମି ବାଲେଶ୍ୱର ଜିଲ୍ଲାର ଅନ୍ତଃପାତୀ ରେମୁଣା ବା ତାହାର ଅଦୂରବର୍ତ୍ତୀ ଗ୍ରାମ ଥିଲା ।

ରେମୁଣା-ନିବାସୀ ବୃନ୍ଦାବନ ପତି ନାମକ ବ୍ରାହ୍ମଣ ବାଳକ ମଧ୍ୟ-ଛାତ୍ରବୃତ୍ତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କଟକ ଟ୍ରେନିଂ ସ୍କୁଲସଂଲଗ୍ନ ସେଣ୍ଟ୍ରାଲ୍ କ୍ଲାସରେ ଅଧ୍ୟୟନ କରୁଥିଲା । ବୃନ୍ଦାବନର ପିତା ମହାଦେବ ପତି ପୁତ୍ରସ୍ନେହରେ ଆକୃଷ୍ଟ ହୋଇ ତାହାକୁ ଦେଖିବାପାଇଁ କଟକ ଆଗମନ କଲେ ; ତଦନନ୍ତର ଜଗନ୍ନାଥ ଦର୍ଶନକରି କଟକରୁ ପ୍ରତ୍ୟାଗମନ କଲେ । ପୁରୀରେ ଅବସ୍ଥାନ କାଳରେ ସ୍ୱଗ୍ରାମବାସୀ ସଙ୍ଗତି-ସମ୍ପନ୍ନ ପରିଚିତ, ତୈଳଜାତୀୟ କୌଣସି ବ୍ୟକ୍ତି ତାଙ୍କୁ ଦାନଗ୍ରହଣ କରିବାକୁ ଅନୁରୋଧ କଲେ । ତୀର୍ଥ-ସ୍ଥାନରେ ଦାନ ଗ୍ରହଣ କଲେ ପୁଣ୍ୟ ହାନି ହୁଏ, ଏହି ବିଶ୍ୱାସ ହେତୁରୁ ପତି ଗୋସାଇଁ କ୍ରୋଧରେ ଅଧୀର ହୋଇ କହିଲେ, ତୁମେ ଜାଣନା, ଆମ୍ଭେ ଶ୍ରୀଧର ସ୍ୱାମୀଙ୍କ ବଂଶଧର, ଦରିଦ୍ର ହୋଇଗଲୁଁ ବୋଲି ଆମ୍ଭଙ୍କୁ ତୁମ୍ଭେ ତୀର୍ଥ-ସ୍ଥାନରେ ଦାନଗ୍ରହଣ କରିବାକୁ କହୁଅଛ ।" ସ୍ୱଗ୍ରାମବାସୀର ଦାନ ଗ୍ରହଣ ଅନୁରୋଧରେ ମହାଦେବ ପତି ଅତି ମର୍ମାହତ ହୋଇଥିଲେ । କଥାଟା କିଛିକାଳ ତାଙ୍କ ସ୍ମୃତିପଥରେ ଜାଗରୂକ ହୋଇ ରହିଲା । କଟକରେ ଅବସ୍ଥାନ ସମୟରେ ଦିନେ ସାୟଂକାଳରେ ମୋଠାରେ ଏହି ଘଟନାର ବିବୃତି କରି ସେ କ୍ଷୋଭ ପ୍ରକାଶ କଲେ । ମୁଁ ଶ୍ରୀଧର ସ୍ୱାମୀଙ୍କ ନାମୋଚ୍ଚାରଣ ଶୁଣି କ୍ଷଣକାଳ ବିସ୍ମିତ ହୋଇ ରହିଲି । ଅଧୁନା ଅଧଃପତିତ ଉତ୍କଳଭୂମି ଯେ କ୍ଷଣଜନ୍ମା ଶ୍ରୀଧର ସ୍ୱାମୀଙ୍କର ଜନ୍ମଭୂମି, ଏ ପ୍ରତୀତି ଏହା ଗ୍ରହଣ କରିବାକୁ ମନ କୁଣ୍ଠିତ ହେଲା । "କେଉଁ ଶ୍ରୀଧର ସ୍ୱାମୀ ?" ତାଙ୍କସହିତ ତୁମ୍ଭର ସମ୍ପର୍କ କଣ ?", "ତାଙ୍କ କଥା କଣ ଜାଣ ?" ଇତ୍ୟାଦି ପ୍ରଶ୍ନ କରିବାରେ ପତି ଉତ୍ତର ଦେଲେ ଯେ ଶ୍ରୀମଦ୍‌ଭାଗବତ ଓ ଶ୍ରୀମଦ୍‌ଭଗବଦ୍‌ଗୀତାର ଟୀକାକାର ଶ୍ରୀଧରଙ୍କ କଥା ସେ କହୁଥିଲେ ; ତାଙ୍କର ଜନ୍ମଭୂମି ରେମୁଣାର ଅଦୂରବର୍ତ୍ତୀ ; ସେ ସଂସ୍କୃତ ଭାଷାରେ ବ୍ୟୁତ୍ପତ୍ତି ଲାଭ କରି ନବଦ୍ୱୀପରେ ପଣ୍ଡିତ-ମାନଙ୍କ ସହବାସରେ ଜୀବନର ଅଧିକାଂଶ କଟାଇଥିଲେ ; ପୁରୀର ରାଜସଭାରେ ତାଙ୍କର ପ୍ରତିପତ୍ତି ଓ ଆଦର ଥିଲି ; ଏବଂ କ୍ୱଚିତ୍ କାଶୀଗମନ କରୁଥିଲେ ।

ଭୂୟୋଽନୁସନ୍ଧାନରେ ଅବଗତ ହେଲି ଯେ ମରେଇଗାଁ ଶ୍ରୀଧରଙ୍କ ଜନ୍ମସ୍ଥାନ । ବଡ଼ସୋନ ଓ ଗଙ୍ଗାହାର ବଳଙ୍ଗର ଉପନଦୀ ଅଟନ୍ତି । ଏହି ତଟିନୀଦ୍ୱୟର ମଧ୍ୟବର୍ତ୍ତୀ ଓ ବଡ଼ସୋନର କୂଳବର୍ତ୍ତୀ ମରେଇଗାଁ ବର୍ତ୍ତମାନ ରେମୁଣାରୁ ପ୍ରାୟ ଦୁଇ କୋଶ ଉତ୍ତରକୁ ଓ ଗଡପୁର ତାଲୁକର ଅନ୍ତଃପାତୀ ଅଟେ । ମୟୂରଭଞ୍ଜର ସୀମା ମରେଇଗାଁର ସମୀପବର୍ତ୍ତୀ । ଶ୍ରୀଧର ଦାଶ-ସଙ୍କଳକ ଥିଲେ । ତାଙ୍କର କୌଣସି ଉତ୍ତର ପୁରୁଷ ରେମୁଣାନିବାସୀ ଥିଲେ ।

ଅପୁତ୍ରିକ ପତି-ପତ୍ନୀକ କୌଣସି ବ୍ରାହ୍ମଣଙ୍କର ପୋଷ୍ୟପୁତ୍ର ହୋଇ ଆସିଲେ ବୋଲି ପତିବଂଶରେ ପୂର୍ବୋକ୍ତ ମହାଦେବଙ୍କର ଜନ୍ମ । ସମ୍ଭବତଃ ପଶ୍ଚାତ୍ ମରେଗାଁର ଦାଶବଂଶ ଲୁପ୍ତ ହେଲି ଏବଂ ତାହାର ସ୍ୱଳ୍ପ ଭୂସମ୍ପତ୍ତି ପତିମାନେ ଉତ୍ତରାଧିକାରିତ୍ୱ-ସୂତ୍ରରେ ପ୍ରାପ୍ତ ହେଲେ । ଅଦ୍ୟାପି ମହାଦେବଙ୍କର ଜ୍ଞାତି ସେହି ବ୍ରହ୍ମୋତ୍ତର ଭୂସମ୍ପତ୍ତି ଭୋଗ କରୁଅଛନ୍ତି । ସ୍ୱଧର୍ମରତ ନିଷ୍ଠାପର ମହାଦେବ ଅଳ୍ପକାଳ ହେଲି ପରଲୋକ ଗମନ କରିଅଛନ୍ତି । ଶ୍ରୀଧର ଓ ତାଙ୍କ ମଧ୍ୟରେ ସମ୍ବନ୍ଧ ସନ୍ତୋଷଜନକରୂପେ ନିର୍ଣ୍ଣୟ କରିବା ବର୍ତ୍ତମାନ ସାଧ୍ୟ ବୋଲି ବୋଧହେଉନାହିଁ । ମହାଦେବଙ୍କ ଜ୍ୟେଷ୍ଠପୁତ୍ର ବିଦ୍ୟାର୍ଥୀ ହୋଇ ପିତାଙ୍କ ଜୀବନଦଶାରେ ଗୃହ ପରିତ୍ୟାଗ କରିଅଛନ୍ତି । ପତିଙ୍କର ତିନିପୁତ୍ର ମଧ୍ୟରେ ବୃନ୍ଦାବନ ଜ୍ୟେଷ୍ଠ ଏବଂ ସମସ୍ତେ ସ୍ୱଳ୍ପବୟସ୍କ । ମହାଦେବଙ୍କର କନିଷ୍ଠ ଭ୍ରାତା ଭଗବାନ୍‌ଙ୍କ ସହିତ ଅଦ୍ୟାପି ମୋର ସାକ୍ଷାତ୍ ହୋଇନାହିଁ । ସାକ୍ଷାତ୍ ହେଲେ ସୁଦ୍ଧା ତାଙ୍କଠାରୁ ଅଧିକ କିଛି ଜ୍ଞାତବ୍ୟ ବିଷୟ ମିଳିବ କି ନାହିଁ, ସେଥିରେ ସନ୍ଦେହ । ମହାଦେବଙ୍କ ପିତା ବଳଭଦ୍ର ପତି, ପିତାମହ ହରିହର ପତି, ପ୍ରପିତାମହ ଶିବରାମ ଦେବ । ଏହି ଦେବତ୍ୱରେ ପତିତ୍ୱ କି ଦାଶତ୍ୱ ଅନ୍ତର୍ହିତ, ତାହା ଏପର୍ଯ୍ୟନ୍ତ ନିର୍ଣ୍ଣୀତ ହୋଇ ନାହିଁ ।

ଉକ୍ତ ପତିବଂଶଙ୍କ ଗୃହରେ ତାଳପତ୍ରରେ ସଂସ୍କୃତ ଓ ଉତ୍କଳ ଭାଷାରେ ଉତ୍କଳାକ୍ଷରରେ ଲିଖିତ ଅନେକଗୁଡ଼ିଏ ଗ୍ରନ୍ଥ ବିଦ୍ୟମାନ । ମାତ୍ର ଉତ୍କୃଷ୍ଟ ଗ୍ରନ୍ଥମାନଙ୍କରୁ ଅଧିକାଂଶ ଅକାଳକୁଷ୍ମାଣ୍ଡ କୌଣସି କୌଣସି ବଂଶଧର ସ୍ୱଳ୍ପ ମୂଲ୍ୟରେ ଅପାତ୍ରରେ ବିକ୍ରୟ କରିଅଛନ୍ତି ବା ବନ୍ଧକ ଦେଇଅଛନ୍ତି । ସେଗୁଡ଼ିକର ଉଦ୍ଧାର ଏବେ ଅସମ୍ଭବ । ଶୁଣିଲି ଶ୍ରୀଧରଙ୍କ ସ୍ୱହସ୍ତ ଲିଖିତ ଗ୍ରନ୍ଥ ମଧ୍ୟ ବିଦ୍ୟମାନ, ମାତ୍ର ମୁଁ ସେଗୁଡ଼ିକ ଦର୍ଶନ କରିନାହିଁ । ତାଙ୍କ ରଚିତ ଖଣ୍ଡିଏ ଦୁଇଖଣ୍ଡି ଗ୍ରନ୍ଥ ଦେଖିଅଛି, ସେଥିରେ ସେ ଆତ୍ମ-ପରିଚୟ ଦେଇ ନାହାନ୍ତି ।

( ଉତ୍କଳ ସାହିତ୍ୟ, ୬ଷ୍ଠ ଭାଗ, ୪ର୍ଥ ସଂଖ୍ୟାରେ ପ୍ରକାଶିତ )

---

## ୭—ଇତିହାସ

କୌଣସି ବ୍ୟକ୍ତି ଜାତି, ଦେଶ ବା ଅନୁଷ୍ଠାନର କାର୍ଯ୍ୟ-କାରଣ-ହେତୁ ସମନ୍ୱିତକାଳ-କ୍ରମିକ ବିବରଣୀକୁ ଇତିହାସ କହନ୍ତି । ଇତିହାସ ଶବ୍ଦଟି ସଂସ୍କୃତ ଭାଷାରୁ ଆଗତ ; ମାତ୍ର ବର୍ତ୍ତମାନ ଏ ଶବ୍ଦଟି ଯେଉଁ ଅର୍ଥରେ ବ୍ୟବହୃତ , ପ୍ରାଚୀନ କାଳରେ ଏହା ଠିକ୍ ସେହି ଅର୍ଥରେ ବ୍ୟବହୃତ ହେଉ ନ ଥିଲା । ଐତିହାସିକ ଉପାଖ୍ୟାନାବଳୀ ପୂର୍ବକାଳରେ ଇତିହାସ ନାମରେ ଆଖ୍ୟାତ ହେଉଥିଲା । ପୂର୍ବେ ଏ ଦେଶରେ ଇତିହାସ ଲେଖା ନ ଥିଲା । ପାଶ୍ଚାତ୍ୟ ଜାତିମାନଙ୍କ ଏ ବିଦ୍ୟାର

ଗୁରୁ ବୋଲି ମାନିବାକୁ ହେବ । ପଣ୍ଡିତମାନଙ୍କ ମତରେ ଗ୍ରୀସ ଦେଶୀୟ ଇତିହାସର ବାଲ୍ମିକ । ସେ ଗ୍ରୀସ୍ ଓ ସନ୍ନିହିତ ଦେଶମାନଙ୍କରେ ଭ୍ରମଣ କରି କିମ୍ବଦନ୍ତୀ ଓ ଜନଶ୍ରୁତିରୁ ତଦାନୀନ୍ତନ ପ୍ରସିଦ୍ଧ ରାଜା ଓ ଦେଶମାନଙ୍କର ବିବରଣ ଲିପିବଦ୍ଧ କରିଥିଲେ । ତତ୍ପ୍ରଦର୍ଶିତ ପଥକୁ ଉତ୍ତରକାଳରେ ଗ୍ରୀସୀୟ ଓ ରୋମୀୟ ଐତିହାସିକମାନେ ଅନୁସରଣ କରି, ଇତିହାସଲେଖା-ପ୍ରଣାଳୀର କିଛିତ୍ ଉନ୍ନତି ସାଧନ କଲେ । ହାଇରଡ଼ଟ୍ସ୍ଙ୍କ ଗ୍ରନ୍ଥରେ କିମ୍ବଦନ୍ତୀର ମାତ୍ରା ଅପେକ୍ଷାକୃତ ଅଧିକ ହେଲେ ହେଁ ସେହି ଗ୍ରନ୍ଥ ଆଦି ଇତିହାସ ଅଟେ ।

ଗ୍ରୀସୀୟମାନଙ୍କ ଉଦୟ ଭାରତୀୟ ଆର୍ଯ୍ୟମାନଙ୍କ ଉନ୍ନତିର ପଶ୍ଚାଦ୍ବର୍ତ୍ତୀ ଅଥବା ସମସାମୟିକ । ଗ୍ରୀସୀୟମାନଙ୍କ ଉଦୟର ବହୁକାଳ ପୂର୍ବେ ପ୍ରାଚୀନ ମିଶର-ଦେଶ ଜ୍ଞାନାଲୋକରେ ଆଲୋକିତ ଓ ବହୁକାଳରେ ବଳୀୟାନ୍ ହୋଇଥିଲା । ଆମେରିକା ମହାଦେଶର ମେକ୍ସିକୋ ଦେଶ ମଧ୍ୟ ଅତି ପ୍ରାଚୀନ କାଳରେ ସଭ୍ୟ ଦେଶ ଥିଲା । ଏହି ଦେଶମାନଙ୍କରେ ଓ ଏହିପରି ଅନ୍ୟ ଦେଶମାନଙ୍କରେ ଇତିହାସ-ଲେଖାର ରୀତି ଥିଲା କି ନାହିଁ, ବର୍ତ୍ତମାନ ନିର୍ଣ୍ଣୟ କରିବାର କୌଣସି ଉପାୟ ଦେଖାଯାଏ ନାହିଁ । ଅଥଚ ମିଶରବାସୀମାନେ ଗଣିତ, ବିଜ୍ଞାନ ଓ ଅଧ୍ୟାତ୍ମଶାସ୍ତ୍ରରେ ଯେ ନିତାନ୍ତ ହୀନ ନ ଥିଲେ, ଏହା ସହଜରେ ଅନୁମାନ କରାଯାଇ-ପାରେ । ମିଶର କିମ୍ବା ଅନ୍ୟ କୌଣସି ଦେଶରେ ଇତିହାସ-ଲେଖାର ଯେଉଁ ରୀତି ପ୍ରଚଳିତ ଥିଲା, ତାହା କାଳର କୁଟିଳ ଗର୍ଭରେ ବିଲୁପ୍ତ ହୋଇଥିବ । ଅତଏବ ଗ୍ରୀସୀୟ ହାଇରଡ଼ଟ୍ସ୍ଙ୍କୁ ଇତିହାସଗୁରୁ ଆଖ୍ୟା ଦେବା ଅଯୌକ୍ତିକ ନୁହେଁ ।

ଉତ୍କଳଦେଶର ମାଦଳାପାଞ୍ଜି ପ୍ରସିଦ୍ଧ ଅଟେ । ଏହା ଇତିହାସର ପଦବାଚ୍ୟ ନୁହେଁ, ଇତିହାସର ପୂର୍ବାକୃତି । ଏହିପରି କାଳକ୍ରମିକ ବିବରଣ ଲିପିବଦ୍ଧ କରିବାର ରୀତି ପୃଥିବୀର ଅନ୍ୟ କୌଣସି କୌଣସି ଦେଶରେ ମଧ୍ୟ ଥିଲା । ସେ ଦେଶମାନଙ୍କରେ ଇତିହାସଲେଖାର ପଦ୍ଧତି ପ୍ରଚଳିତ ହେବାରୁ ତାହା ତିରୋହିତ ହୋଇଅଛି । ଉକ୍ତ କାଳକ୍ରମିକ ବିବରଣ ଇତିହାସର ପ୍ରଧାନ ଉପାଦାନ ଅଟେ । ଇତିହାସର ଅନ୍ୟ ଗୋଟିଏ ଉପାଦାନ କିମ୍ବଦନ୍ତୀ ଓ ଜନଶ୍ରୁତିର ଉଲ୍ଲେଖ ଇତିପୂର୍ବେ ହୋଇଅଛି । ଅତୀତର ମୂକ ସାକ୍ଷୀ ଦେବାଳୟ, ବନ୍ଧ, ସେତୁ, ମୃତ ବ୍ୟକ୍ତିର ସମାଧି-ସ୍ଥାନ ପ୍ରଭୃତି ଅନ୍ୟ ଏକ ଉପାଦାନ । ମୁଦ୍ରା, ତାମ୍ରଫଳକ, ପ୍ରସ୍ତର-ଫଳକ, ସନନ୍ଦ ପ୍ରଭୃତି ଇତିହାସର ଗୋଟିଏ ଗୋଟିଏ ଉତ୍କୃଷ୍ଟ ଉପାଦାନ ଅଟେ । ଏମାନଙ୍କ ମଧ୍ୟରେ ତାମ୍ରଫଳକର ମୂଲ୍ୟ ସର୍ବାପେକ୍ଷା ଅଧିକ ବୋଲି ପ୍ରତୀୟମାନ ହୁଏ । ମାଦଳାପାଞ୍ଜିରେ ଉଲ୍ଲେଖ ଅଛି, ଏ ଦେଶର ଗଙ୍ଗବଂଶୀୟ ରାଜାମାନଙ୍କର ଆଦିପୁରୁଷ ଦକ୍ଷିଣରୁ ଆସି ଓଡ଼ିଶା ଅଧିକାର କରିଥିଲେ । ଇଂରେଜ ଐତିହାସିକମାନେ ଏହାକୁ ଗ୍ରହଣ କରିଥିଲେ । ମାତ୍ର ଗଙ୍ଗାନଦୀର ଉତ୍ତରଦିଗ୍ବର୍ତ୍ତିତ୍ୱ ବିବେଚନାରେ କୌଣସି କୌଣସି

ସେ ଉତ୍ତରରୁ ଆସି ଏ ଦେଶ ଅଧିକାର କରିଥିଲେ ବୋଲି ଭାରତୀୟ ଐତିହାସିକ ସ୍ୱପ୍ରଣୀତ ଗ୍ରନ୍ଥରେ ପ୍ରଖ୍ୟାନ କରିଅଛନ୍ତି ।

ଅଳ୍ପକାଳ ହେଲା ଏହି କଟକ ଜିଲ୍ଲାର ମୌଦା ନିକଟବର୍ତ୍ତୀ ସ୍ଥାନରୁ ଯେଉଁ ତାମ୍ରଫଳକ ଶ୍ରୀଯୁକ୍ତ ଆର୍ତ୍ତତ୍ରାଣ ମିଶ୍ର ମହାଶୟ ପ୍ରାପ୍ତ ହୋଇଥିଲେ, ତଦ୍ଦ୍ୱାରା ମତାନୈକ୍ୟର କି ସୁନ୍ଦର ମୀମାଂସା ହୋଇଅଛି, ଶ୍ରୋତୃବର୍ଗ ମଧ୍ୟରୁ ଅନେକଙ୍କର ସ୍ମରଣ ଥିବ । ନାନାବିଷୟକ ଗ୍ରନ୍ଥାବଳୀ, ଇତିହାସର ଅପର ଉପାଦାନ ଅଟେ । କାବ୍ୟମାନଙ୍କରେ ସମସାମୟିକ ଘଟଣା ଓ ପ୍ରସିଦ୍ଧ ବ୍ୟକ୍ତିମାନଙ୍କର ଉଲ୍ଲେଖ ଇତିହାସ-ପ୍ରଣୟନର ସହାୟ ହୁଏ । ଜୀବନ-ଚରିତ ଇତିହାସର ଅଙ୍ଗ ଅଥବା ଉପାଦାନ । ଲୌକିକ ଅନୁଷ୍ଠାନାବଳୀ ମଧ୍ୟ ଆଉ ଏକ ଶ୍ରେଣୀର ଉପାଦାନ । ନାନାପ୍ରକାର ସମ୍ବାଦପତ୍ର ଓ ସମସାମୟିକ ପତ୍ରିକା ଇତିହାସ-ମହାନଦୀର ଗିରିନଦୀ ଅଟନ୍ତି ।

'ଇତିହାସ-ପ୍ରଣୟନ କଠିନ କାର୍ଯ୍ୟ । ପ୍ରଥମ କୋଷପ୍ରଣେତା ଓ ପ୍ରଥମ ଇତିହାସ-ପ୍ରଣେତାଙ୍କ ଆୟାସ ମଧ୍ୟରେ କିୟତ୍ ପରିମାଣରେ ସାଦୃଶ୍ୟ ଅଛି । ପ୍ରଥମ ଅଭିଧାନ-ପ୍ରଣେତାଙ୍କୁ ନାନା ଗ୍ରନ୍ଥରୁ ଶବ୍ଦାବଳୀ ସଂଗ୍ରହକରି ବର୍ଣ୍ଣମାଳାକ୍ରମରେ ସଜାଡ଼ିବାକୁ ଓ ସମ୍ୟକ୍ ଅର୍ଥ ନିର୍ଣ୍ଣୟ କରିବାକୁ ହୁଏ । ଇତିହାସ-ପ୍ରଣେତାଙ୍କୁ ଘଟଣା ସଂଗ୍ରହ କରି ସେମାନଙ୍କର କାରଣ ଏବଂ କୁତ୍ରାପି ଫଳନିର୍ଣ୍ଣୟ କରିବାକୁ ହୁଏ । କାର୍ଯ୍ୟକାରଣ ନିର୍ଣ୍ଣୟ କରିବାପାଇଁ ବୁଦ୍ଧିର ସମ୍ୟକ୍ ସ୍ଫୁରଣ ନ ହେଲେ ଇତିହାସ-ପ୍ରଣୟନ ଦୁରୂହ ହୁଏ । ଅକ୍ଲାନ୍ତ ପରିଶ୍ରମ ଓ ଦୃଢ଼ ଅଧ୍ୟବସାୟ ଏ କାର୍ଯ୍ୟରେ ଅତ୍ୟନ୍ତ ଆବଶ୍ୟକ । ଯେଉଁ ଦେଶ, ଜାତି ବା ବଂଶର ଇତିହାସ ଲେଖାଯିବ, ତତ୍-ପ୍ରଚଳିତ ରୀତି-ନୀତି, ପ୍ରଥାମାନଙ୍କରେ ଅଭିଜ୍ଞତା ପ୍ରଣୟନର ଅନୁକୂଳ ହୁଏ । ପ୍ରଣେତାର ପକ୍ଷପାତ ଇତିହାସକୁସୁମର କୀଟ ଅଟେ । ପକ୍ଷପାତଦୁଷ୍ଟମନା ଅନେକ ଐତିହାସିକ ବିଗ୍ରହ-ମୂଢ଼ତାର ପରିଚୟ ଦେଇଅଛନ୍ତି । କେହି କେହି ମିଥ୍ୟା ଲେଖି ମହାପାପରେ ସ୍ୱଲେଖନୀକୁ କଳଙ୍କିତ କରିଅଛନ୍ତି । ଏତାଦୃଶ ଇତିହାସ-ପ୍ରଣୟନ ଅପେକ୍ଷା କାବ୍ୟରଚନା ବା ଉପନ୍ୟାସଲେଖା ଅଧିକ ଶ୍ରେୟସ୍କର ଅଟେ । ସତ୍ୟ ପ୍ରତି ଅଟଳ ଭକ୍ତି ଇତିହାସ-ପ୍ରଣେତାଙ୍କର ପ୍ରଧାନ ଲକ୍ଷଣ ହେବା ବିଧେୟ ।

ଇତିହାସ-ଚର୍ଚ୍ଚାର ଫଳ ସୁମହତ୍ ଓ ବହୁବିଧ ଅଟେ । ଏହାଦ୍ୱାରା ଜ୍ଞାନର ଗୋଟିଏ ମାର୍ଗ ପ୍ରସାରିତ, ମନ ପ୍ରଶସ୍ତ, ଅଭିଜ୍ଞତା ପୁଷ୍ଟ ଓ ବିବେଚନା ମାର୍ଜିତ ହୁଏ । ଏହା ରାଜନୀତିକ ଭିତ୍ତି ଅଟେ । ଦେଶାଟନ ଦ୍ୱାରା ଯେଉଁ ଫଳ ମିଳେ ଇତିହାସର ଆଲୋଚନା ଦ୍ୱାରା ନ୍ୟୂନାଧିକ ପରିମାଣରେ ସେହି ଫଳ ମିଳେ । ଅମର ବାଗ୍ମୀପ୍ରବର ବର୍କ ମହୋଦୟ ଇଂଲଣ୍ଡର ପାର୍ଲିମେଣ୍ଟ ମହାସଭାରେ କୌଣସି ସମୟରେ ବକ୍ତୃତା ଦେଲାବେଳେ ଭାରତବର୍ଷ ସମ୍ବନ୍ଧରେ ଯେଉଁ ଅଭିଜ୍ଞତା ପ୍ରଦର୍ଶନ କରିଥିଲେ କେତେ ଜଣ ଭାରତବାସୀଙ୍କର ସେ ଅଭିଜ୍ଞତା ଦେଖାଯାଏ ? ଶୁଣାଯାଏ-

ଅଛୁ ଯେ ବର୍ଣ୍ଣୀସ୍ଥ କୃଷ୍ଣଦାସ ପାଲ ମଧ୍ୟ ସ୍ୱୀୟ କକ୍ଷରେ ବସି ଭାରତର ନାନାସ୍ଥାନ ସମ୍ବନ୍ଧରେ ସେହିପରି ଅଭିଜ୍ଞତା ଉପାର୍ଜନ କରିଥିଲେ । ରାଜା, ଅମାତ୍ୟ ଓ ରାଜପୁରୁଷମାନଙ୍କର ରାଜନୀତିମାର୍ଗରେ ଇତିହାସ ପ୍ରଧାନ ସମ୍ବଳ । ଇତିହାସରେ ଅନଭିଜ୍ଞ ହେଲେ ବ୍ୟବସ୍ଥାପକ ସମ୍ପୂର୍ଣ୍ଣରୂପେ କୃତୀ ହୁଅନ୍ତି ନାହିଁ । ଯେଉଁଜାତି ହୀନାବସ୍ଥ, ଉନ୍ନତ ଜାତିର ଇତିହାସ ସେ ଜାତିର ମନରେ ନବୀନ ଉତ୍ସାହ ସଞ୍ଚାର କରେ ଓ ତାହାର ପଥପ୍ରଦର୍ଶକ ହୁଏ । ପୁଣି ଯେଉଁ ବର୍ତ୍ତମାନ ଅଧଃପତିତ ପୂର୍ବପୁରୁଷମାନେ ପ୍ରାଚୀନ କାଳରେ ଗରୀୟାନ୍ ଥିଲେ, ସେ ଜାତି ଭୂତ ଓ ବର୍ତ୍ତମାନକୁ ତୁଳନା କରି ଭବିଷ୍ୟତରେ ଲୁପ୍ତ ଗୌରବର ଉଦ୍ଧାର ନିମନ୍ତେ ପ୍ରୋତ୍ସାହିତ ହୋଇଥାଏ । ଇତିହାସ ଓ ତଦନ୍ତର୍ଗତ ମହାପୁରୁଷମାନଙ୍କ ଚରିତ ପାଠ କଲେ ମନର ସଙ୍କୀର୍ଣ୍ଣତାର ଓ ଅହଙ୍କାରର ତିରୋଧାନ ସ୍ୱାଭାବିକ । ପୂର୍ଣ୍ଣାଙ୍ଗ ଇତିହାସ ନାନା ବିଷୟକ ଜ୍ଞାନର ଖଣି, ସୁତରାଂ ତାହା ପାଠ କଲେ ବିପୁଳ ଅଭିଜ୍ଞତା ଜନ୍ମେ ଓ ସଂସାରଯାତ୍ରାରେ ସାହାଯ୍ୟ କରେ । ସଙ୍କେତ ନକ୍ଷତ୍ରମାନ ଜୀବମାନଙ୍କର ଯେଉଁ ଉପକାର କରେ, ଇତିହାସ ସଂସାରଯାତ୍ରୀର ସେହି ପ୍ରୟୋଜନ ସମ୍ପାଦନ କରେ । ସ୍ୱଦେଶ, ସ୍ୱଜାତି ଓ ସ୍ୱୀୟ ବଂଶର ଇତିହାସରେ ଅଭିଜ୍ଞ ହେଲେ ମାନବ ଆପଣାର ଦାୟିତ୍ୱ, ସ୍ୱତ୍ୱ ଓ ଦାବୀ ଉତ୍ତମରୂପେ ହୃଦୟଙ୍ଗମ କରିପାରେ । ଏହି ଅଭିଜ୍ଞତା ବ୍ୟକ୍ତିବିଶେଷଙ୍କୁ ସମସ୍ତ ସମୟରେ ବିପଥଗମନରୁ ନିବର୍ତ୍ତାଇଅଛି । ଏହି ଅଭିଜ୍ଞତା ଇଂଲଣ୍ଡର ଶାସନତନ୍ତ୍ରକୁ ସୁଦୃଢ଼ ଭିତ୍ତି ପ୍ରଦାନ କରିଅଛି । ଏହି ଅଭିଜ୍ଞତା ଅନେକ ମହାତ୍ମାଙ୍କୁ ଆତ୍ମୋତ୍ସର୍ଗ-ବ୍ରତରେ ଦୀକ୍ଷିତ କରିଅଛି । ସୁକୌଶଳରେ ଲିଖିତ ଇତିହାସକୁ ଭୂଚିତ୍ର ଅଥବା ନାଟ୍ୟାଭିନୟ ସହିତ ତୁଳନା କରାଯାଇପାରେ । ଭୂଚିତ୍ର ଓ ନାଟ୍ୟାଭିନୟ ଦର୍ଶନ କଲେ ତଦ୍ ବିଷୟ ସମ୍ବନ୍ଧରେ ଯେପରି ଜ୍ଞାନ ଓ ଆନନ୍ଦ ଜନ୍ମେ, ଇତିହାସପାଠରେ ସେହିପରି ଜ୍ଞାନ ଓ ଆନନ୍ଦ ଜନ୍ମେ । ଯେ ଦେଶରେ ଇତିହାସର ସମ୍ୟକ୍ ଓ ସାର୍ଥକ ଅନୁଶୀଳନ ହେଉଅଛି ସେ ଦେଶରେ ଅମାବସ୍ୟା ବା ପୂର୍ଣ୍ଣିମାସ୍ୟା ଦେଖାଯାଏ ନାହିଁ ।

ପୂର୍ବେ ବୋଲଯାଇଅଛି ଯେ ଜୀବନ-ଚରିତ ଇତିହାସର ଅଙ୍ଗ ବା ଉପାଦାନ । ଯାହା ସାଧାରଣତଃ ଇତିହାସ-ପଦବାଚ୍ୟ, ତାହା ଜାତି, ଦେଶ ବା ଅନୁଷ୍ଠାନର ବିବରଣ; ଜୀବନ-ଚରିତ ବ୍ୟକ୍ତି-ବିଶେଷର ବିବରଣ । ଜୀବନ-ଚରିତର ମୂଲ୍ୟ ସ୍ୱତନ୍ତ୍ର ।

ନାନା ତୀର୍ଥ-ପର୍ଯ୍ୟଟନ ଓ ତୀର୍ଥ-ବିଶେଷରେ କାଳଯାପନ ମଧ୍ୟରେ ଯେଉଁ ପ୍ରଭେଦ, ଇତିହାସ-ପାଠ ଓ ଜୀବନ-ଚରିତର ଆଲୋଚନା ମଧ୍ୟରେ ସେହି ପ୍ରଭେଦ । ଅଥଚ, ଦୁହେଁ ଏକଶ୍ରେଣୀର ପ୍ରବନ୍ଧ । ଏପରି କୌଣସି ବ୍ୟକ୍ତି ଅଛନ୍ତି, ଯାହାଙ୍କର

ଇତିହାସାଲୋଚନାରେ ଅନୁଭୂତ ନାହିଁ । ମାତ୍ର ମହାତ୍ମାମାନଙ୍କର ଜୀବନ-ଚରିତ ସମସ୍ତଙ୍କ ପକ୍ଷରେ ପୀୟୂଷପ୍ରଦ । ଇତିହାସାଭାସ ପୌରାଣିକ ଉପାଖ୍ୟାନ ମଧ୍ୟ ଏକ ଫଳ ପ୍ରଦାନ କରେ । ଏହି ହେତୁରୁ ପୁରାଣ ପ୍ରତି ଜନ-ସାଧାରଣଙ୍କର ଏଡ଼େ ଭକ୍ତି ।

ଇତିହାସର କ୍ଷେତ୍ର ଅତି ପ୍ରଶସ୍ତ । ଇତିହାସର କ୍ଷେତ୍ର ଅନ୍ୟ ଅପେକ୍ଷା ପ୍ରଶସ୍ତତର, ସାହିତ୍ୟର କ୍ଷେତ୍ର ପ୍ରଶସ୍ତତମ । ଯେଉଁ ଯେଉଁ ବସ୍ତୁର ଉତ୍ପତ୍ତି, ସ୍ଥିତି, ବିଲୟ ଅଛି, ତତ୍ସବୁ ଇତିହାସର ବିଷୟୀଭୂତ । ରାଜା, ରାଜବଂଶ, ରାଜ୍ୟ, ମାନବଜାତି, ତାହାର ଏକ ଅଙ୍ଗ । ସମରମାନଙ୍କର ଯେପରି ଇତିହାସ ଲେଖାଯାଏ, ସେହିପରି ମାନବୀୟ ବିଭିନ୍ନ ଧର୍ମସମ୍ପ୍ରଦାୟର ଇତିହାସ ଲେଖାଯାଏ; ସେହିପରି ବାଷ୍ପୀୟ ଯନ୍ତ୍ରର, ତଡ଼ିତ୍-ବାର୍ତ୍ତାବହର, ଚିତ୍ରବିଦ୍ୟାର, ସଙ୍ଗୀତଶାସ୍ତ୍ରର ଇତିହାସ ଲେଖାଯାଏ । ସେହିପରି ସୃଷ୍ଟ ବଟବୀଜ ଓ ଧୂଳିକଣାର ଏବଂ ସୃଷ୍ଟିତତ୍ତ୍ୱର ଇତିହାସ ମଧ୍ୟ ଲେଖାଯାଇ-ପାରେ । ଜ୍ଞାନାଲୋଚନା ନିମନ୍ତେ ପୃଥିବୀର ନାନା ଦେଶର ଯେଉଁ ସଭାମାନ ପ୍ରତିଷ୍ଠିତ ଅଛି, ସେଥିର ଏହିପରି ଇତିହାସ ଲେଖାଯାଇଥାଏ ଏବଂ ସାହିତ୍ୟ-ବିଜ୍ଞାନ-ରସିକ ଓ ତାହାର ସେବକମାନଙ୍କର ଅପୂର୍ବ ଆନନ୍ଦ ସହିତ ଶିକ୍ଷାର ବିଧାନ କରେ । ବୈଦିକ ଯୁଗରେ ଭାରତୀୟ ଆର୍ଯ୍ୟମାନଙ୍କର ସଭ୍ୟତା, ପ୍ରାଚୀନ ଭାରତ ଓ ଗ୍ରୀସରେ ଦର୍ଶନ-ଶାସ୍ତ୍ରର ଚର୍ଚ୍ଚା, ସଙ୍ଗୀତ-ଶାସ୍ତ୍ରର ଉତ୍ପତ୍ତି ଓ ଉନ୍ନତି, ଇଉରୋପୀୟ ମଧ୍ୟ-ଯୁଗରେ ସାହିତ୍ୟର ପୁନର୍ବିକାଶ ପ୍ରଭୃତି ବିଷୟର ଇତିହାସ କାହାର ମନୋରଞ୍ଜନ ନ କରିବ ? ବିଧାତାଙ୍କ କୃପାରେ ଏହି ସାହିତ୍ୟସମାଜ ଶତାୟୁ ହେଲେ, ତେତେ-ବେଳେ ଯଦି କେହି ଏହାର ଇତିହାସ ଲିପିବଦ୍ଧ କରନ୍ତି, ତେବେ ତାହା ଉତ୍କଳ-ସାହିତ୍ୟ ସେବକମାନଙ୍କର କେଡ଼େ କୌତୁକାବହ ଓ ଶିକ୍ଷାପ୍ରଦ ନ ହେବ ?

(ଉତ୍କଳ ସାହିତ୍ୟ, ୧୦ମ ଭାଗ, ୧୦ମ ସଂଖ୍ୟାରେ ପ୍ରକାଶିତ)

---

## ୭—ସ୍ୱପ୍ନ

ନିଦ୍ରା-ଜାଗରଣ-ଭେଦରେ ପ୍ରାଣୀର ଦ୍ୱିବିଧ ଅବସ୍ଥା, ନିଦ୍ରାରେ ଚେତନା-ସ୍ୱାତନ୍ତ୍ର୍ୟ ଥାଏ ନାହିଁ; ଜାଗରଣରେ ତାହା ଥାଏ । ଜାଗରଣର ପୁଣି ତିନିପ୍ରକାର ନିର୍ଦ୍ଦେଶ କରାଯାଇପାରେ । "ଯା ନିଶା ସର୍ବଭୂତାନାଂ ତସ୍ୟାଂ ଜାଗର୍ତ୍ତି ସଂଯମୀ" ଏହି ଶ୍ଳୋକାର୍ଦ୍ଧ ଦ୍ୱାରା ସୂଚିତ ଜାଗରଣ ଏକ ପ୍ରକାର ; ଲୋକେ ଚକ୍ଷୁକର୍ଣ୍ଣାଦି ଇନ୍ଦ୍ରିୟମାନଙ୍କୁ ମୁକୁଳା ରଖି ସେମାନଙ୍କ ସାହାଯ୍ୟରେ ସାଧାରଣତଃ ଯେ କାର୍ଯ୍ୟ କରନ୍ତି, ତାହା ଆଉ ଏକ ପ୍ରକାର । ଇନ୍ଦ୍ରିୟଗୁଡ଼ିକ ମୁକୁଳା ଥିଲେ ସୁଦ୍ଧା, ଯଦି

ସେମାନଙ୍କର କିମ୍ବା ପ୍ରତ୍ୟକ୍ଷମାନ ହେଉ ନ ଥାଏ ଏବଂ ମନୁଷ୍ୟ କଳ୍ପନାରେ ବିଚରଣ କରୁଥାଏ, ତାହାହେଲେ ସେ ତୃତୀୟ ପ୍ରକାର ଜାଗରଣ । ଏହି ଶେଷୋକ୍ତ ଅବସ୍ଥାକୁ ଜାଗ୍ରତ ସ୍ୱପ୍ନ ବୋଲି କୁହାଯାଏ । ନିଦ୍ରାକୁ ସେହିପରି ସ୍ୱପ୍ନ ଓ ସୁଷୁପ୍ତି ଏହି ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ସୁଷୁପ୍ତିରେ ମନୁଷ୍ୟର ଜ୍ଞାନର କୌଣସି ଲକ୍ଷଣ ପ୍ରତ୍ୟକ୍ଷମାନ ହୁଏ ନାହିଁ ; ସ୍ୱପ୍ନ ଜାଗରଣ ଓ ସୁଷୁପ୍ତିର ସନ୍ଧିସ୍ଥଳ । ଏହି ଅବସ୍ଥାପଞ୍ଚକ ବ୍ୟତୀତ ସମାଧି ନାମରେ ଗୋଟିଏ ଅବସ୍ଥା ଅଛି । ତାହାର ସୁଷୁପ୍ତି ସହିତ ସାଦୃଶ୍ୟ ଅଛି । ଜାଗ୍ରତ ସ୍ୱପ୍ନ ସହିତ ମଧ୍ୟ କିଛି ସାଦୃଶ୍ୟ ଅଛି । ସମାଧି ନିଦ୍ରା ନୁହେଁ, ଜାଗରଣ ମଧ୍ୟରେ ଗଣନୀୟ ।

ଉପରି-ଉକ୍ତ ଷଡ଼ବିଧ ଅବସ୍ଥା ମଧ୍ୟରୁ ସ୍ୱପ୍ନ ଏହି ପ୍ରବନ୍ଧର ଆଲୋଚ୍ୟ ବିଷୟ । ସ୍ୱପ୍ନ ଅନ୍ତଃସଲିଳା ଫଲ୍‌ଗୁନଦୀ ପରି । ସ୍ୱପ୍ନରେ ପ୍ରଚ୍ଛନ୍ନ ଜ୍ଞାନ ଥାଏ, ମାତ୍ର ଜୀବର ଚେତନା-ସ୍ୱାତନ୍ତ୍ର୍ୟ ନ ଥାଏ । ନିଦ୍ରାର ମୃଦୁ ମଧୁର ଆକର୍ଷଣର ନାମ ତନ୍ଦ୍ରା । ଏହା ଗୋଧୂଳି ପରି । ସାଧାରଣତଃ ସୁଷୁପ୍ତି ତନ୍ଦ୍ରାର ଅନୁଗମନ କରିଥାଏ । ଜାଗରଣାଭିମୁଖ ଚୈତନ୍ୟ ସୁଷୁପ୍ତି ରୂପ ଗାଢ଼ ତମିସ୍ର ଭେଦ କରି ସନ୍ଧି-ସ୍ଥଳରେ ଉପସ୍ଥିତ ହେଲେ ଜୀବ ସ୍ୱପ୍ନ ଦେଖେ । ଉଷା ଓ ସନ୍ଧ୍ୟା ଏବଂ ବସନ୍ତ ଓ ଶରତ୍ ପରି ସ୍ୱପ୍ନ ଅଳ୍ପ କାଳ ସ୍ଥାୟୀ । ତନ୍ଦ୍ରାର ଅବ୍ୟବହିତ ପରବର୍ତ୍ତୀ ସମୟରେ ଏବଂ ସୁଷୁପ୍ତି ପୂର୍ବେ ସ୍ୱପ୍ନ ଅସମ୍ଭାବ୍ୟ ନୁହେଁ । ମାତ୍ର ସୁସ୍ଥ ଦେହରେ ଓ ସୁସ୍ଥ ମନରେ ସାଧାରଣତଃ ସେ ସମୟରେ ସ୍ୱପ୍ନ ଦେଖା ଯାଏ ନାହିଁ । ଜାଗରଣାବସ୍ଥାରେ ଶରୀର ଓ ମନ ନ୍ୟୂନାଧିକ ପରିମାଣରେ କ୍ଳାନ୍ତ ବା ଅବସନ୍ନ ହୋଇଥାଏ । ବିଶ୍ରାମ ଏହି କ୍ଳାନ୍ତି ବା ଅବସାଦର ପ୍ରତିକାର । ଏଣୁ ମଧୁର ଓ ମୋହକର ତନ୍ଦ୍ରାର ଅବତାରଣା ଏବଂ ସୁଷୁପ୍ତିର ତଦନୁଗମନ । ସ୍ୱପ୍ନାବସ୍ଥାରେ ଦେହ ବା ମନର ପୂର୍ଣ୍ଣ ବିଶ୍ରାମ ହୁଏ ନାହିଁ । ଅତଏବ, ତନ୍ଦ୍ରା ପରେ ସ୍ୱପ୍ନ ଅନାବଶ୍ୟକ । ମାତ୍ର ଦେହ ରୁଗ୍‌ଣ ହେଲେ, ମନ ପ୍ରକୃତିସ୍ଥ ନ ଥିଲେ ଅଥବା ବିଶେଷ କାରଣ ଉପସ୍ଥିତ ହେଲେ, ସେ ସମୟରେ ସ୍ୱପ୍ନ ହୋଇପାରେ । ତମିସ୍ର ଓ ତମିସ୍ରା ବିଶ୍ରାମର ଅନୁକୂଳ । କତିପୟ ନିଶାଚର ଜୀବ ବ୍ୟତୀତ ପ୍ରାଣୀ-ପ୍ରକୃତି ନିଶାକାଳରେ ବିଶ୍ରାମ କରନ୍ତି । ଜ୍ଞାନାଭିମାନୀ ମାନବ ପ୍ରକୃତିରପରତନ୍ତ୍ରତାରୁ ବିମୁକ୍ତ ହେବା ପାଇଁ ସତତ ପ୍ରୟାସୀ ହେଲେ ହେଁ ମନୁଷ୍ୟ-ଜାତିର ଅଧିକାଂଶ ନିର୍ଶୀଥ ପୂର୍ବରୁ ବିଶ୍ରାମ ନେଉଛନ୍ତି । ଯଥୋଚିତ ସୁଷୁପ୍ତି ଉତ୍ତାରୁ ଚୈତନ୍ୟର ଉଦ୍‌ବୋଧନ ନିମନ୍ତେ ପ୍ରକୃତିର ଉପଯୋଗୀ ପଟପରିବର୍ତ୍ତନ ହୁଏ । ଏହି ପରିବର୍ତ୍ତନ ସ୍ୱପ୍ନର ଗୋଟିଏ କାରଣ ।

ପୂର୍ବୋକ୍ତ କାରଣ ସ୍ୱପ୍ନର ବାହ୍ୟ କାରଣ ଅଟେ । ସ୍ୱପ୍ନର ଅଭ୍ୟନ୍ତର କାରଣ ମଧ୍ୟ ଅଛି । ଏହା ଦ୍ୱିବିଧ, ମାନସ ଓ ଶାରୀର । ଜାଗରଣାବସ୍ଥାରେ କ୍ରୋଧ,

ବାହ୍ୟୋନ୍ମାଦ ଦ୍ୱାରା ମନର ଅଭିଭୂତତା ଏବଂ ବାସନା ବା ଔତ୍ସୁକ୍ୟର ବଳବତ୍ତତା ମାନସ କାରଣ ଅଟେ । ଏ ସମ୍ବନ୍ଧରେ ସ୍ମୃତି ନେପଥ୍ୟର କାର୍ଯ୍ୟ କରେ । ବାତ, ପିତ୍ତ ବା ଶ୍ଳେଷ୍ମାର ଆଧିକ୍ୟ, ଭୁକ୍ତ ବସ୍ତୁର ଅପରିପାକ ଏବଂ ମଳମୂତ୍ରାଦିର ନିର୍ଗମାସନ୍ନତା ଶାରୀରିକ କାରଣ ଅଟେ । ଉତ୍ତାନଶୟନ ମଧ୍ୟ ଶାରୀରିକ କାରଣର ଅନ୍ତର୍ଗତ ।

ସ୍ୱପ୍ନର ଯେଉଁ କାରଣ-ଭେଦ ନିର୍ଦ୍ଦେଶ କରାଗଲା, ସେଥିରେ ଭେଦର ଯେଉଁ ମାତ୍ରା ପ୍ରତୀୟମାନ ହେବ, ତାହା ପ୍ରକୃତ ନୁହେଁ । ମାନସାତିରିକ୍ତ କୌଣସି ବସ୍ତୁ ଅମ୍ଭେମାନେ ପ୍ରତ୍ୟକ୍ଷ ଭାବରେ ଅବଗତ ହେଉ ନାହିଁ । ବସ୍ତୁର ରୂପାଦି ଗୁଣ ଆମ୍ଭମାନଙ୍କର ଚକ୍ଷୁରାଦି ଇନ୍ଦ୍ରିୟ ଦ୍ୱାରା ଅନ୍ତଃପ୍ରବେଶ କରି, ଗୂଢ଼ ପ୍ରଣାଳୀରେ ମାନସ ଘଟନାରେ ପରିଣତ ହୁଏ । ଏହି ମାନସ ଘଟନା ହିଁ ଆମ୍ଭମାନଙ୍କର ପ୍ରତ୍ୟକ୍ଷାନୁଭୂତିର ବିଷୟ । ସ୍ୱପ୍ନର ଶାରୀରିକ ଓ ବାହ୍ୟ କାରଣ ବୋଲି ଯାହା ନିର୍ଦ୍ଦିଷ୍ଟ ହେଲା ସେଗୁଡ଼ିକ ପରୋକ୍ଷ କାରଣ, ପ୍ରତ୍ୟକ୍ଷ କାରଣ ମାତ୍ର ମାନସ ।

ସ୍ୱପ୍ନ-ବୈଚିତ୍ର୍ୟର ପ୍ରଧାନ ବିଧାତ୍ରୀ କଳ୍ପନା । କତିପୟ ମନୋବୃତ୍ତି ଓ ତତ୍ସଙ୍ଗେ ଶରୀରସ୍ଥ କତିପୟ ଯନ୍ତ୍ରର ଯେଉଁ କ୍ରିୟା ଜାଗରାବସ୍ଥାରେ ଲକ୍ଷିତ ହୁଏ, ସ୍ୱପ୍ନାବସ୍ଥାରେ ତତୋଽଧିକ କ୍ରିୟା ବା ଚାଳନା ହୋଇଥାଏ । ମନୁଷ୍ୟ ଯେତେବେଳେ ଜାଗ୍ରତ, ତେତେବେଳେ କଳ୍ପନାର କ୍ରିୟାର ଇୟତ୍ତା ସେ ଜାଣିପାରେ ନାହିଁ । ମଧ୍ୟ ଜାଗରାବସ୍ଥାରେ ସେହି କ୍ରିୟାରେ ଇନ୍ଦ୍ରିୟମାନେ ନାନା ବିଘ୍ନ ଉପସ୍ଥାପନା କରନ୍ତି । ସ୍ୱପ୍ନରେ ନିରଙ୍କୁଶା କଳ୍ପନା ତାହାର କ୍ଷତିପୂରଣ ବିଧାନ କରେ । ତାହାର ତଦାନୀନ୍ତନ କୌଣସି କୌଣସି କାର୍ଯ୍ୟ ଜାଗରଣରେ ସ୍ମରଣ କଲେ ମନୁଷ୍ୟ ବିସ୍ମିତ ହୁଏ ଏବଂ ତାହାଠାରେ କର୍ତ୍ତୃତ୍ୱ ବିଷୟରେ ସନ୍ଦିହାନ ହୋଇ ଅଜ୍ଞେୟ ଶକ୍ତ୍ୟନ୍ତରେ କର୍ତ୍ତୃତ୍ୱାରୋପ କରେ । କଳ୍ପନା ପରି ଭୀତି, ପ୍ରୀତି, ବାତ୍ସଲ୍ୟ, ଶୋକ, କ୍ରୋଧ ଓ ସୌନ୍ଦର୍ଯ୍ୟ-ପିପାସା ସ୍ୱପ୍ନାବସ୍ଥାରେ ପ୍ରବଳ ହୁଏ । ସ୍ୱପ୍ନରେ ମାତାଙ୍କର ସ୍ତନ୍ୟସ୍ରାବ ଦେଖାଯାଇଅଛି । ଜାଗରଣରେ ଯାଦୃଶ ବୃକ୍ଷଲତା ଉପରେ ଚକ୍ଷୁର ଚପଳା ଗତି ଦେଖାଯାଏ, ସ୍ୱପ୍ନରେ ଜୀବ ତାଦୃଶ ବୃକ୍ଷଲତାକୁ ଅନିମିଷ ନୟନରେ ଚାହିଁ ରହେ । ସ୍ୱପ୍ନରେ ଭୀତି ଏତେ ପ୍ରବଳ ହୁଏ ଯେ ତଦ୍ଦ୍ୱାରା ନିଦ୍ରାଭଙ୍ଗ ହେଉ ନ ଥିଲେ ଅନେକ ସ୍ଥଳରେ ତାହା ସାଂଘାତିକ ହେଉଥାନ୍ତା ।

ସ୍ୱପ୍ନର କାଳ ଯେପରି ଅଲ୍ଟିସ୍ଥାନ୍, ଦେଶ ସେହିପରି ଭୂସ୍ଥାନ୍ । ଏଣୁ, ଅନାୟାସେ ଜଣାଯିବ ଯେ ସ୍ୱପ୍ନ ସମୟରେ ମନର ଗତି ଅତିକ୍ଷିପ୍ର । ସେ ଅବସ୍ଥାରେ ମନୋଗତିର କ୍ଷିପ୍ରତାର କୌଣସି ପରିମାପକ ନ ଥିବାରୁ ଦେଶ-ବିବେଚନାରେ କାଳ ଅତ୍ୟଧିକ ଦୀର୍ଘ ବୋଲି ପ୍ରତୀୟମାନ ହୁଏ । ସ୍ୱପ୍ନର ବିଷୟାବଳୀର ବ୍ୟାପ୍ତି ନିର୍ଦ୍ଦେଶ କରିବା କଠିନ କାର୍ଯ୍ୟ ଅଟେ । ଜାଗରଣ-କାଳରେ ଅନୁଭୂତ ବିଷୟ ସ୍ୱପ୍ନରେ ସୁନ୍ଦର ରୂପେ ପୁନରନୁଭୂତ ହୁଏ । ପୁଣି, ଜାଗରାବସ୍ଥାରେ ଯାହା ଅନନୁଭୂତ,

ତାହା ସ୍ୱପ୍ନରେ ଅନୁଭବର ବିଷୟ ହୁଏ । ବିନିଦ୍ର ମନୁଷ୍ୟ ଯାହା କଳ୍ପନା କରି ନାହିଁ, ତାହା ମଧ୍ୟ ସ୍ୱପ୍ନରେ ଦେଖାଯାଏ । ମନୁଷ୍ୟ ଯାହା ପାଇଁଥାଏ ଏବଂ ଯହିଁରେ ତାହାର ଆଗ୍ରହ ଥାଏ, ସେମାନ ତାହାର ସ୍ୱପ୍ନର ବିଷୟୀଭୂତ ହୁଏ । ଶରୀରରେ ବାୟୁ ପ୍ରବଳ ହେଲେ ଉଡ଼ିବାର ସ୍ୱପ୍ନ, ଶ୍ଳେଷ୍ମାର ଆଧିକ୍ୟରେ ଜଳସ୍ୱପ୍ନ ଏବଂ ପିତ୍ତାଧିକ୍ୟରେ ବହ୍ନିସ୍ୱପ୍ନ ସାଧାରଣତଃ ଦେଖାଯାଏ । ମଳମୂତ୍ରାଦିର ବେଗରେ ତଦ୍ ତଦ୍ ବିଷୟକ ସ୍ୱପ୍ନ ଦୃଷ୍ଟିଗୋଚର ହୁଏ । ସ୍ୱପ୍ନରେ ମନୁଷ୍ୟର ତ୍ରିକାଳଜ୍ଞତା ଯେପରି ପ୍ରମାଣିତ ହୁଏ, ଜାଗରଣରେ ସେହିପରି ହୁଏ ନାହିଁ । ପୂର୍ବେ ଯେଉଁ ଯେଉଁ ପ୍ରକାର ସ୍ୱପ୍ନର ଉଲ୍ଲେଖ କରାଗଲା, କାଳତଃ ସେମାନେ ଅତୀତ ଓ ବର୍ତ୍ତମାନ । ଦୂରାଦୂର ଭବିଷ୍ୟତ୍ ଘଟନାର ଚିତ୍ର କିମ୍ବା ଛାୟା କେବେ କେବେ ସ୍ୱପ୍ନରେ ଦୃଷ୍ଟ ହୁଏ । ଯେଉଁମାନେ ଧୈର୍ଯ୍ୟଶୀଳ ଓ ଶୁଦ୍ଧସତ୍ତ୍ୱ ଏବଂ ଯେଉଁମାନେ ଘଟନା-ବିଶେଷର ପରିଣାମର ବିଷୟରେ ଅତି ଉଦ୍‌ବିଗ୍ନ, ସେମାନେ ସ୍ୱପ୍ନାବସ୍ଥାରେ ଭାବୀ ଦର୍ଶନ କରନ୍ତି । ରାଜା ପୁରୁଷୋତ୍ତମ ଦେବ ଦ୍ୱିତୀୟ କାଞ୍ଚିଯୁଦ୍ଧରେ ଭାବୀ ଜୟ ସ୍ୱପ୍ନରେ ଯେପରି ଅବଗତ ହୋଇଥିଲେ, ସେହିପରି ଓ ତଦପେକ୍ଷା ସ୍ପଷ୍ଟତରରୂପେ ଏବଂ ସମୟ-ସମୟରେ ସୁସ୍ପଷ୍ଟରୂପେ ଲୋକେ ଭବିଷ୍ୟନ୍ମୂର୍ତ୍ତି ଅବଲୋକନ କରନ୍ତି । ଜଡ଼ ବସ୍ତୁର ବନ୍ଧୁରତା ତୁଲ୍ୟ ମନର ବିକାର-ଗୁଡ଼ାକ ପୋଛି ଦେଲେ ବା ପୋଛି ଗଲେ ମନ ସ୍ୱଚ୍ଛ ଦର୍ପଣ ତୁଲ୍ୟ ହୁଏ ଏବଂ ବହିଃ-ପ୍ରକୃତି ସେଥିରେ ପ୍ରତିବିମ୍ବିତ ହୁଏ । ପ୍ରୟୋଜନ ହେଲେ ତେତେବେଳେ ଦେଖି ଦ୍ରଷ୍ଟା ତାହା ଦେଖିପାରେ । ବର୍ତ୍ତମାନ ଘଟନା ଓ ତାହାର ସମଦେଶ ଅତୀତ ଘଟନା ଦ୍ୱାରା ମନ ସଙ୍କୀର୍ଣ୍ଣ ଓ କଲ୍ଲୋଳିତ ହେବାରୁ ସ୍ୱପ୍ନରେ ସେହିମାନଙ୍କର ପ୍ରତିବିମ୍ବ ସାଧାରଣତଃ ଦେଖାଯାଏ ଏବଂ ଭବିଷ୍ୟତ୍ ପ୍ରତିବିମ୍ବକୁ ଅଭିଭୂତ କରେ । ଜାଗରଣରେ ପ୍ରତ୍ୟକ୍ଷ ବର୍ତ୍ତମାନ ଯେପରି ବଳୀୟାନ୍ ଭବିଷ୍ୟତର ଅନ୍ତରାଳ ହୁଏ, ସ୍ୱପ୍ନରେ ମଧ୍ୟ ପ୍ରାୟ ସେହିପରି । ପ୍ରଭେଦ ଏହି ଯେ ନିଦ୍ରାବସ୍ଥାରେ ଇନ୍ଦ୍ରିୟମାନଙ୍କର ସ୍ୱାତନ୍ତ୍ର୍ୟ ନ ଥିବାରୁ, ସେ ସମସ୍ତ ଚିତ୍ତପଟରେ ଭବିଷ୍ୟନ୍ମୂର୍ତ୍ତି ଦର୍ଶନର ଅନୁକୂଳ ହୁଏ । କୌଣସି କୌଣସି ମହାପୁରୁଷଙ୍କର ଭାବୀ ଜୀବନର ଛାୟା କିଶୋର ବୟସରେ ସ୍ୱପ୍ନର ଚିତ୍ରପଟରେ ପତିତ ହୁଏ । ଆତ୍ମାଙ୍କର ବିଶ୍ୱବ୍ୟାପକତା ଏବଂ ଅଧ୍ୟାତ୍ମରାଜ୍ୟରେ ତାର ଅତୀତ ତାଡ଼ିତ ବାର୍ତ୍ତା-ପ୍ରେରଣ ସ୍ୱପ୍ନରୁ ପ୍ରମାଣିତ ହୁଏ ।

କୃତ୍ରିମ ଉପାୟରେ ନିଦ୍ରିତ ଲୋକର ସ୍ୱପ୍ନ ଜାତ କରାଯାଇପାରେ । ନେତ୍ରଚ୍ଛଦ ଉପରେ ଆଲୋକ-ରଶ୍ମି ପକାଇଲେ ଗୃହାଦିର ଦାହ ସ୍ୱପ୍ନର ବିଷୟ ହେବ ; ନିଦ୍ରିତ ବ୍ୟକ୍ତି ନିକଟରେ ମୃଗ ପ୍ରଭୃତି ବାଜିଲେ ସେ ଗୋଳାଗୋଳିଦ୍ୱାରା ଯୁଦ୍ଧ ସ୍ୱପ୍ନରେ ଦେଖିପାରେ । ଜାଗ୍ରତବସ୍ଥାରେ ମସ୍ତକ ବା ବକ୍ଷରେ ଆର୍ଦ୍ର ଓ ଶୀତଳ ପବନ ଲାଗିଲେ ଭୀଷଣ ସ୍ୱପ୍ନ ଅନୁଭୂତ ହେବ । ପରିଷ୍ଟରାସନ୍ନ ଦନ୍ତଦ୍ୱୟ ମଧ୍ୟବର୍ତ୍ତୀ ଛିଦ୍ର ଜିହ୍ୱାକୁ ଯେପରି ବୃହତ୍ତର ପ୍ରତୀୟମାନ ହୁଏ, ସେହିପରି କୌଣସି କୌଣସି ଅନୁଭୂତ

ଭୂୟସୀ ପ୍ରତୀୟମାନ ହୁଏ । ମଶକ-ଦଂଶନ ତୁଲ୍ୟ ସାମାନ୍ୟ ଦଂଶନ ସମସ୍ତ ସମୟରେ ସ୍ୱପ୍ନରେ ସର୍ପାଘାତର ପ୍ରତୀତି ଜନ୍ମାଏ । ଶଯ୍ୟାର ଅଦୂରେ କଳଘଡ଼ିର ବା କଠଉର ଶବ୍ଦ ହେଉଥିଲେ, ବା କାହାର କଷ୍ଟକର ସଞ୍ଚରଣ ସ୍ୱପ୍ନର ବିଷୟୀଭୂତ ହେବ ।

କୃତ୍ରିମ ଉପାୟରେ ମଧ୍ୟ ସ୍ୱପ୍ନ-ବିଶେଷ ନିବାରଣ କରାଯାଇପାରେ । ଶୀକର-ଶୀତଳ ବାୟୁର ସ୍ପର୍ଶରେ ଯେଉଁ ସ୍ୱପ୍ନ ହୁଏ, ଶଯ୍ୟାର ନିକଟରେ ବା କିଞ୍ଚିତ୍ ଦୂରରେ ଅଗ୍ନିସଂସ୍ଥାପନ ଦ୍ୱାରା ତାହା ନିବାରିତ ହୁଏ । ଶରୀରରେ ବାୟୁର ଆଧିକ୍ୟରେ ଯେଉଁ ସ୍ୱପ୍ନ ହୁଏ, ଆର୍ଦ୍ର ବସ୍ତ୍ର ଦ୍ୱାରା ଦେହ ପୋଛି ଅଥବା ଶୀତଳ ଜଳ ପାନକରି ନିଦ୍ରିତ ହେଲେ ତାହାର ନିବାରଣ ହୋଇପାରେ । ଦୂଷିତ ବାଷ୍ପଯୋଗେ ଉତ୍ପନ୍ନ ସ୍ୱପ୍ନ ହୋମଦ୍ୱାରା ନିବାରିତ ହୁଏ । ଅନାର୍ଦ୍ର ସ୍ଥାନରେ ବାସ, କୋଷ୍ଠ-ଶୁଦ୍ଧି ଓ ସଂଯମ ଯାବତୀୟ କୁସ୍ୱପ୍ନର ପ୍ରତିକାର ଏବଂ "ନିମିତ୍ତସ୍ୟାଭାବାତ୍ ନୈମିତ୍ତିକସ୍ୟାପ୍ୟଭାବଃ" ଏହି ନ୍ୟାୟର ଉଦାହରଣ ଅଟେ । ଯେଉଁ ସ୍ୱପ୍ନ ବର୍ଜନୀୟ ଅଥଚ ପୁନଃ ପୁନଃ ଅନୁଭୂତ ହେଉଅଛି, ତାହା ଦେଖିବି ନାହିଁ ବୋଲି ଦୃଢ଼ ପ୍ରତିଜ୍ଞା କରି ନିଦ୍ରାଗଲେ ବିଲମ୍ବରେ ବା ଅବିଲମ୍ବରେ ସେଥିରୁ ନିଷ୍କୃତି ମିଳିବ । ଜାଗରଣର ପ୍ରତିଜ୍ଞା ଯେ ସ୍ୱପ୍ନରେ ଫଳଦାୟିନୀ ହୁଏ, ଏହା କେବଳ ଆପ୍ତବାକ୍ ନୁହେଁ, ପରୀକ୍ଷା ଦ୍ୱାରା ମଧ୍ୟ ପ୍ରମାଣିତ । ଜାଗ୍ରତ ବ୍ୟକ୍ତି ସୁପ୍ତବ୍ୟକ୍ତିର ସ୍ୱପ୍ନ-ନିବାରଣ ଇଚ୍ଛାକଲେ, ସମ୍ବୋଧନ, ଆକର୍ଷଣ ବା ଅନ୍ୟ ଉପାୟରେ ତାଙ୍କର ସଂଜ୍ଞା ସମ୍ପାଦନ କରିବେ । ସୁପ୍ତ ବ୍ୟକ୍ତିଙ୍କର ଗାତ୍ର-ସ୍ପର୍ଶ ଅଥବା ତାଙ୍କ ପ୍ରକୋଷ୍ଠରେ ନିର୍ମଳ ବାୟୁର ପ୍ରବେଶ ଦ୍ୱାରା କୌଣସି କୌଣସି ସ୍ୱପ୍ନର ସ୍ରୋତ ରୁଦ୍ଧ ହୁଏ ।

ସ୍ୱାନୁଭୂତ ଓ ଅପରାନୁଭୂତ କେତୋଟି ସ୍ୱପ୍ନ ନିମ୍ନରେ ବିବୃତ ହେଲା । କଟକ-ନଗରବାସୀ କାଳୀକୃଷ୍ଣନାମକ ବ୍ୟକ୍ତି ଗ୍ରୀଷ୍ମକାଳର ଅପରାହ୍ଣରେ ଦିନେ ସ୍ୱପ୍ନ ଦେଖିଲେ ଯେ ଦୁଇଟି ଗାଭୀ ପରସ୍ପର ସହିତ ଯୁଦ୍ଧ କରୁଅଛନ୍ତି । ନିଦ୍ରାପରଗମନ ଉତ୍ତାରେ ଜଣେ ପ୍ରତିବେଶୀଙ୍କ ଗୃହକୁ ଯିବାବେଳେ ଯେଉଁ ଗାଭୀ ଦୁଇଟିର ଯୁଦ୍ଧ ଦୃଷ୍ଟିଗୋଚର ହେଲା, ସେ ଦୁହେଁ ସର୍ବାଂଶରେ ସ୍ୱପ୍ନଦୃଷ୍ଟ ଗାଭୀ ଦୁଇଟିର ଅନୁରୂପ ।

କଲିକତା ନଗରବାସୀ ଜଣେ ଭଦ୍ରଲୋକଙ୍କ କନ୍ୟାର ଉକ୍ତ ନଗରବାସୀ ଅପର ଭଦ୍ରଲୋକ ସହିତ ବିବାହ ହୋଇଥିଲା । ସ୍ୱାମୀଗୃହରେ ଥାଇ କନ୍ୟାଟି ଦିନେ ସ୍ୱପ୍ନ ଦେଖିଲା, ସେ ପିତ୍ରାଳୟକୁ ଯାଇଅଛି, ସେଠାରେ ସମସ୍ତେ ବିଳାପ କରୁଅଛନ୍ତି, ସେ ବିଳାପ-ମେଳାରେ ପିତାଙ୍କୁ ଛାଡ଼ି ଆଉ ସମସ୍ତଙ୍କୁ ଦେଖି ପାରିଲା । ପରଦିବସରେ ସମ୍ବାଦ ଆସିଲା, ସେହି ରାତ୍ରିରେ ପିତାଙ୍କର ମୃତ୍ୟୁ ହୋଇଥିଲା ।

ଇଂଲଣ୍ଡର କୌଣସି ବୋର୍ଡ଼ିଂ ସ୍କୁଲରେ ଗୋଟିଏ ବାଳକ ପଢ଼ୁଥିଲା । ସେ ପିତାଙ୍କର କନିଷ୍ଠ ପୁତ୍ର ଏବଂ ତାହାର ପିତ୍ରାଳୟ ବିଦ୍ୟାଳୟରୁ ନାତିଦୂରରେ

ଅବସ୍ଥିତ ଥିଲା । ଛାତ୍ରାବାସରେ ପ୍ରଚଳିତ ନିୟମାନୁସାରେ ଅନ୍ତେବାସୀମାନେ ରାତ୍ରିରେ ଭୋଜନାନ୍ତେ ଶୟନକଲେ, କକ୍ଷଗୁଡ଼ିକ ବହିର୍ଭାଗରୁ ବନ୍ଦ କରାଯାଏ । ଦିନେ ନିଶାକାଳରେ ବାଳକର ନିଦ୍ରାଭଙ୍ଗ ହେଲା । ସେ ଦେଖିଲା ତାହାର ପିତା ଶଯ୍ୟା ପାର୍ଶ୍ୱରେ ଦଣ୍ଡାୟମାନ । ସେ ଗାତ୍ରୋତ୍ଥାନ କରୁଁ କରୁଁ ପିତାକୃତ ଧୀରେ ଧୀରେ ଦ୍ୱାରାଭିମୁଖୀ ହେଲା । ବାଳକ ଅନୁଗମନ କଲା, ମାତ୍ର ଦ୍ୱାରଟି ଯଥାରୀତି ବନ୍ଦ ଦେଖି ବିସ୍ମିତ ହେଲା । ଶଯ୍ୟାକୁ ପ୍ରତ୍ୟାଗମନ କରି ଦେଖିଲା, କକ୍ଷ ଅନ୍ଧକାରମୟ, ଗାତ୍ରୋତ୍ଥାନକାଳୀନ ଆଲୋକ ଆଉ ନାହିଁ, ଅଥଚ କକ୍ଷର ଦୀପ ଶୟନସମୟରେ ନିର୍ବାପିତ ହୋଇଥିଲା । ବିସ୍ମୟରେ କଣ୍ଟକିତକଳେବର ବାଳକଟି ଦିଆଶିଲାଇ ସାହାଯ୍ୟରେ ଦୀପ ଜାଳି ଏହି ଅଦ୍ଭୁତ ବୃତ୍ତାନ୍ତ ଲେଖି ରଖି ପୁନର୍ବାର ଶୋଇଲା । କିଛିକ୍ଷଣ ଉତ୍ତାରୁ ପୁଣି ନିଦ୍ରାଭଙ୍ଗ ହେଲା, ପୁଣି ସେହି ଅଭିନୟ । ତୃତୀୟ ବାର ପୁଣି ସେହିପରି । ନିଦ୍ରା ବାଳକକୁ ଆଉ ସ୍ପର୍ଶ କଲାନାହିଁ । ଉଷାକାଳ ଆସନ୍ନ ହୋଇ ଆସିଲା ; ବାଳକର ଅଧୈର୍ଯ୍ୟ ଅତିଭୂମିକୁ ଅବଲମ୍ବନ କଲା ; ଯଥାସମୟରେ ଦ୍ୱାର ଉଦ୍‌ଘାଟିତ ହେଲା । ପିତା-ପୁତ୍ରଙ୍କ ମଧ୍ୟରେ ବାତ୍ସଲ୍ୟ ପ୍ରବଳ ଥିଲା । ପୁତ୍ର ଉଦ୍‌ବେଗବଶତଃ ବିଦ୍ୟାଳୟରୁ ବିଦାୟ ନେଇ ଗୃହରେ ଉପସ୍ଥିତ ହୋଇ ଜାଣିଲା, ପୂର୍ବ ରାତ୍ରିରେ ପ୍ରଥମ ଦୁଇ ଥର ସେ ଯେତେବେଳେ ପିତୃ-ମୂର୍ତ୍ତି ଦେଖିଥିଲା, ଅତି ରୁଗ୍‌ଣ ଓ ଶଯ୍ୟାଶାୟୀ ପିତା ତାହାକୁ ଦେଖିବାପାଇଁ ବ୍ୟାକୁଳ ହୋଇ ସେହି ସମୟରେ ମୂର୍ଚ୍ଛା ଯାଇଥିଲେ ଏବଂ ତୃତୀୟ ଥର ଯେତେବେଳେ ପୁତ୍ର ସେହି ମୂର୍ତ୍ତି ଦେଖିଥିଲା, ସେହି ମୁହୂର୍ତ୍ତରେ ପିତାଙ୍କର ମୃତ୍ୟୁ ହୋଇଥିଲା ।

୧୮୮୭ ଖ୍ରୀଷ୍ଟାବ୍ଦରେ ମୋହର ବୃଦ୍ଧା ପିତାମହୀ ସୁସ୍ଥ ଦେହରେ ଯେତେବେଳେ ପୁରୀରୁ ଗୃହକୁ ପ୍ରତ୍ୟାଗମନ କରୁଥିଲେ, ତେତେବେଳେ କଟକନଗରରେ ତାଙ୍କ ସହିତ ମୋର ସାକ୍ଷାତ୍ ହେଲା । ବିଦାୟ ଉତ୍ତାରୁ ଘରେ ତାଙ୍କର ପହଞ୍ଚିବା ସମ୍ବାଦକୁ ମୁଁ ଗୃହକ ପତ୍ର ଅପେକ୍ଷା କରୁଥିଲି । ତେତେବେଳେ ମାର୍ଗଶିର ମାସ, ଶୀତର ଆରମ୍ଭ ଅନୁଭୂତ ହେଉଥାଏ । ଇତିମଧ୍ୟରେ ଦିନେ ରାତ୍ରିରେ ସ୍ୱପ୍ନ ଦେଖିଲି, ଲୋକେ ତାଙ୍କର ଶବକୁ ଶ୍ମଶାନକୁ ନେବାର ଆୟୋଜନ କରୁଅଛନ୍ତି । ମୁଁ ନିର୍ନିମେଷ ଚକ୍ଷୁରେ ଅନାଇ ରହି ଅଶ୍ରୁ ବର୍ଷଣ କରୁଅଛି, ମୁଖରୁ ବାକ୍ୟ ସ୍ଫୁରୁ ନାହିଁ । ପରଦିନ ପ୍ରାତଃକାଳରେ ପତ୍ରରୁ ଅବଗତ ହେଲି, ସେ ପରଲୋକ ଗମନ କରିଅଛନ୍ତି । ଆଉଦିନେ ସ୍ୱପ୍ନ ଦେଖିଲି, ମୋହର କନିଷ୍ଠା ସହୋଦରା ବିବର୍ଣ୍ଣା ଓ ଶୀର୍ଣ୍ଣକାୟା । ପର ଦିବସରେ ମୁଁ ଯେଉଁ ପତ୍ର ଲେଖିଲି ତାହାର ଉତ୍ତର ଆସିଲା, ଦୀର୍ଘକାଳ ଜ୍ୱର ଭୋଗକରି ସେ ସେହିପରି ହୋଇଥିଲା ।

(ଉତ୍କଳ ସାହିତ୍ୟ, ୧୧ଶ ଭାଗ, ୯ମ ସଂଖ୍ୟାରେ ପ୍ରକାଶିତ)

---

# ୮—ପରଲୋକଗତ ରାଧାନାଥ ରାୟ

ଏ ଦେଶରେ ପ୍ରବାଦ ଅଛି, "ଜୀବର ଭଲମନ୍ଦ ବାଣୀ, ମରଣକାଳେ ତାହା ଜାଣି।" ଦେହୀ ଦେହତ୍ୟାଗ କଲେ ତାହାର ଗୁଣଦୋଷ ବିଚାରର ଉପଯୁକ୍ତ ସମୟ ଉପସ୍ଥିତ ହୁଏ। ରାଧାନାଥ ରାୟଙ୍କ ମର୍ତ୍ତ୍ୟଲୀଳାର ଯବନିକା ପତନ ହୋଇ ଅଛି। ଜୀବଦ୍ଦଶାରେ ଲୋକେ ତାହାଙ୍କ ଜୀବନର ଘଟଣାବିଶେଷ ଦେଖି କେବେ ଗୁଣ ବା ଦୋଷର ସମାଲୋଚନା କରୁଥିଲେ ହେଁ ସମ୍ପୂର୍ଣ୍ଣ ଭାବରେ ସମାଲୋଚନା କରିବାର ସମୟ ବର୍ତ୍ତମାନ ଉପସ୍ଥିତ ।

ଏ ମହାତ୍ମା ଉତ୍କଳର ଗୋଟିଏ ପଲ୍ଲୀଗ୍ରାମରେ କାୟସ୍ଥକୁଳରେ ଜନ୍ମଗ୍ରହଣ କରିଥିଲେ । ଏହାଙ୍କ ପିତା ସୁନ୍ଦରନାରାୟଣ ଅଳ୍ପ ବେତନରେ ରାଜକାର୍ଯ୍ୟ କରୁଥିଲେ। ତାହାଙ୍କର ବିସ୍ତୀର୍ଣ୍ଣ ଭୂସମ୍ପତ୍ତି ଅଥବା ଅନ୍ୟ ବିପୁଳ ବିଭବ ନ ଥିଲା। ମାତ୍ର ତାହାଙ୍କର ସ୍ୱଭାବ ଓ ଚରିତ୍ରରେ ଉଚ୍ଚ ଆଦର୍ଶ ଥିଲା। ପିତାଙ୍କର ସେହି ସ୍ୱଭାବ ଓ ଚରିତ୍ର ରାଧାନାଥଙ୍କ ବାଲ୍ୟମନରେ ତାହାଙ୍କର ଭବିଷ୍ୟତ୍ ମହତ୍ତ୍ୱର ମୂଳଭିତ୍ତି ଅଲକ୍ଷିତଭାବରେ ସ୍ଥାପନ କଲା । ସୁନ୍ଦରବାବୁଙ୍କର ପୁତ୍ରହିତୈଷଣା ଅତନ୍ଦ୍ରିତ କଠୋର ଶାସନର ପ୍ରସୂତ ଥିଲା।

ଷୋଡ଼ଶବର୍ଷ ବୟସରେ ରାଧାନାଥ ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ପୁତ୍ରଙ୍କୁ କଲେଜରେ ଉଚ୍ଚ ଶିକ୍ଷା ଦେବାର ଅଭିଳାଷ ପିତାଙ୍କର ଥିଲେ ହେଁ ଅର୍ଥାଭାବ ପ୍ରତିବନ୍ଧକ ହେଲା। ପିତାଙ୍କ ପରିବାର-ପୋଷଣ-ଭାରର ଲାଘବ କରିବା ନିମନ୍ତେ କିଶୋର ବୟସରେ ରାଧାନାଥ ଅଳ୍ପ ବେତନରେ ରାଜକାର୍ଯ୍ୟ ଗ୍ରହଣ କଲେ। ସେ ଶିକ୍ଷକତା କରୁଁ କରୁଁ ପ୍ରବେଶିକାର ପରବର୍ତ୍ତୀ ପରୀକ୍ଷାରେ କୃତିତ୍ୱ ଲାଭ କଲେ। ପ୍ରଗାଢ଼ ଅଧ୍ୟବସାୟ ଓ ନୈସର୍ଗିକ ବିଦ୍ୟାନୁରାଗରେ ସେ ଯେଉଁ ଜ୍ଞାନ ଉପାର୍ଜନ କରିଥିଲେ, ବିଶ୍ୱବିଦ୍ୟାଳୟର ଉଚ୍ଚ ଉପାଧିଧାରୀମାନଙ୍କଠାରେ ତାହା ଦୁର୍ଲ୍ଲଭ। ଅନ୍ତିମ ସମୟ ପର୍ଯ୍ୟନ୍ତ ତାହାଙ୍କର ଜ୍ଞାନପିପାସାର ନିବୃତ୍ତି ପରିଲକ୍ଷିତ ହୋଇନାହିଁ।

ରାଧାନାଥ ବିଦ୍ୱାନ୍ ଥିଲେ ବୋଲି ସମସ୍ତେ ଜାଣନ୍ତି। ଓଡ଼ିଆ, ବଙ୍ଗଳା, ଇଂରାଜୀ ଓ ସଂସ୍କୃତ ଭାଷାରେ ସେ ବ୍ୟୁତ୍ପତ୍ତି ଲାଭ କରିଥିଲେ। ଯାହା ମନରେ ସ୍ଥାନ ପାଇଲେ ଅବିଦ୍ୟା ତିରୋହିତ ହୁଏ, କୋଟିରେ ଗୋଟିଏ ସୁଦ୍ଧା ତାହା ଲାଭ କରିବାକୁ ସମର୍ଥ ହୁଅନ୍ତି ନାହିଁ। ସେ ଅର୍ଥରେ ବିଦ୍ୟାଶବ୍ଦ ସାଧାରଣତଃ ଗୃହୀତ ହୁଏ ନାହିଁ। ଯେ ଗଣିତ, ବ୍ୟାକରଣାଦି ବିଷୟକ ଗ୍ରନ୍ଥ ଆୟତ୍ତ କରିଥାନ୍ତି, ଲୋକରେ

ସେ ବିଦ୍ୱାନ୍ ବୋଲି ପରିଚିତ । ଏଥିପାଇଁ ବିଦ୍ୱତ୍ତା ଓ ଅବିଦ୍ୟାର ଏକାଧାରରେ ଅବସ୍ଥାନ ସୁଲଭ ଏବଂ ଅନେକ ବିଦ୍ୱାନ୍ ଲୋକଙ୍କଠାରେ, 'ବିଦ୍ୟା ଦଦାତି ବିନୟଂ' ଏହି ବାଣୀ ସାର୍ଥକତା ଲାଭକରେ ନାହିଁ । ମାତ୍ର ବିନୟ ରାଧାନାଥଙ୍କର ପ୍ରଧାନ ଭୂଷଣ ଥିଲା । ସେ ଏକଦା ପ୍ରସଙ୍ଗକ୍ରମେ କହିଥିଲେ, "ମୁଁ କିଛି ନୁହେଁ, ଏତିକି ମନେ କଲେ ତ ଅହଙ୍କାର ମନରେ ସ୍ଥାନ ପାଇପାରିବ ନାହିଁ ।"

ରାଧାନାଥ ଯେପରି ବିଦ୍ୱାନ୍, ସେହିପରି ବିଦ୍ୱଜ୍ଜନବତ୍ସଳ ଥିଲେ । ଉତ୍କଳର ଏହି ଅଧଃପାତ ଅବସ୍ଥାରେ ଯେଉଁମାନେ ସାଧାରଣତଃ ପଣ୍ଡିତ ବୋଲି ପରିଚିତ, ସେମାନେ ସମ୍ଭାଷଣ ଓ ଅର୍ଥଦ୍ୱାରା ତାହାଙ୍କ କର୍ତ୍ତୃକ ଯେପରି ପୁରସ୍କୃତ ହେଉଥିଲେ, ଅନ୍ୟତ୍ର ସେପରି ଦେଖାଯାଏ ନାହିଁ । ସଂସ୍କୃତଜ୍ଞ ପଣ୍ଡିତମାନଙ୍କଠାରୁ ଶ୍ଳୋକ ଶୁଣିବା ପାଇଁ ସେ ଯେପରି ଆଗ୍ରହବାନ୍ ଥିଲେ, ସେମାନେ ତାହାଙ୍କୁ ଶ୍ଳୋକ ଶୁଣାଇ ଆପଣା ଆପଣାକୁ ତୁଲ୍ୟରୂପେ ବା ଅଧିକ କୃତାର୍ଥ ମଣୁଥିଲେ । କାହାରିଠାରେ କବିତ୍ୱର ଅଙ୍କୁର ବା ପଲ୍ଲବଟିଏ ଦେଖିଲେ ସେ ତାହାଠାରେ ମଧୁଗନ୍ଧରେ ମଧୁକରବତ୍ ଆକୃଷ୍ଟ ହେଉଥିଲେ । ଦୁର୍ଦ୍ଦିନରେ ଏହା ଓଡ଼ିଶାର ସୌଭାଗ୍ୟ ବୋଲି ମଣିବାକୁ ହେବ ।

କାର୍ଯ୍ୟକ୍ଷେତ୍ରରେ ମନୁଷ୍ୟର ପରୀକ୍ଷା ହୁଏ । ରାଜକାର୍ଯ୍ୟ ଓ ସଂସାରକାର୍ଯ୍ୟରେ ରାଧାନାଥ କୃତିତ୍ୱର ପରିଚୟ ଦେଇଅଛନ୍ତି । ଏ ବିଷୟରେ ଓଡ଼ିଶାରେ ସେ ଜଣେ ଆଦର୍ଶ ଲୋକ ଥିଲେ । ଅନ୍ୟାନ୍ୟ ଗୁଣ ମଧ୍ୟରେ କର୍ତ୍ତବ୍ୟପରାୟଣତା ରାଜକାର୍ଯ୍ୟରେ ତାହାଙ୍କର ଉନ୍ନତିର ମୂଳ କାରଣ ଅଟେ । ସମୟର ମୂଲ୍ୟ ତାହାଙ୍କୁ ଉତ୍ତମରୂପେ ଜଣାଥିଲା । ଚିରରୋଗ ତାହାଙ୍କର କର୍ତ୍ତବ୍ୟ-ସମ୍ପାଦନରେ ବିଘ୍ନ ଜନ୍ମାଇ ପାରି ନାହିଁ । କାର୍ଯ୍ୟକୁଶଳତାରେ ସେ ଏପରି ଅଭ୍ୟସ୍ତ ହୋଇଥିଲେ ଯେ ଆୟାସ ପ୍ରତୀୟମାନ ହେଉ ନ ଥିଲା । କାର୍ଯ୍ୟଦକ୍ଷତା, ବିଦ୍ୱତ୍ତା, ବିନୟ, ସୌମ୍ୟାକୃତି ଏହି ଚତୁଷ୍ଟୟଦ୍ୱାରା ସେ ଅନେକଙ୍କର ପ୍ରୀତିଭାଜନ ହୋଇଥିଲେ । ବିଖ୍ୟାତ ଜନ୍ ବୀମସ୍ ସାହେବ ତାହାଙ୍କୁ ପୁତ୍ରବତ୍ ସ୍ନେହ କରୁଥିଲେ । ଏହି ସାହେବଙ୍କ ପ୍ରସ୍ତାବରେ ସେ ଯେତେବେଳେ ଓଡ଼ିଶାର ବିଦ୍ୟାଳୟସମୂହର ଜଏଣ୍ଟ ଇନସ୍‌ପେକ୍ଟର ନିଯୁକ୍ତ ହେଲେ, ସେତେବେଳକୁ ଶିକ୍ଷା-ବିଭାଗର ଉପରିସ୍ଥ କର୍ମଚାରୀମାନେ ମଧ୍ୟ ତାହାଙ୍କୁ ଉତ୍ତମରୂପେ ଚିହ୍ନି ନ ଥିଲେ । ଏହି ନିଯୁକ୍ତି ଉତ୍ତାରେ ଭୂଦେବ ମୁଖୋପାଧ୍ୟାୟ ବିଦ୍ୟାଳୟ-ପରିଦର୍ଶନ ନିମନ୍ତେ ଏ ପ୍ରଦେଶକୁ ଆଗମନ କଲେ । ରାଧାନାଥଙ୍କ ପ୍ରତି ସେ ପ୍ରଥମେ ମନେ ମନେ କିଞ୍ଚିତ୍ ଅବଜ୍ଞା ପୋଷଣ କରୁଥିଲେ ।

ମାତ୍ର କତିପୟ ଦିବସରେ ମଣିର ମୂଲ୍ୟ ଜାଣିପାରି ସେ ତତ୍ପ୍ରତି ଅତିଶୟ ଅନୁରାଗବାନ୍ ହେଲେ । ଏହି ଅନୁରାଗ ଚୁମ୍ବକବତ୍ ରାଧାନାଥଙ୍କର ଭକ୍ତି ଆକର୍ଷଣ କଲା । ଏହି ମନୋହର ଅନ୍ୟୋଽନ୍ୟ ସମ୍ବନ୍ଧ ଚିରସ୍ଥାୟୀ ହେଲା । ଓଡ଼ିଶାର ସାଧାରଣ ଶିକ୍ଷାରେ ସେ ଯେଉଁ ମହତ୍ତ୍ୱ ପରିବର୍ତ୍ତନ କଲେ, ସେଥିପାଇଁ ଏ ପ୍ରଦେଶ ତାଙ୍କଠାରେ ଚିରଋଣୀ । ସଜ୍ଜନ ପ୍ରତି କର୍ତ୍ତବ୍ୟ-ପାଳନରେ ମଧ୍ୟ ରାଧାନାଥ ଉଚ୍ଚ ଆଦର୍ଶ ଦେଖାଇଅଛନ୍ତି । ଏହି କର୍ତ୍ତବ୍ୟ-ପାଳନରେ ତାହାଙ୍କର ଅସାଧାରଣ ସହିଷ୍ଣୁତା ଦେଖାଯାଇଅଛି । ସେ ଆଶ୍ରିତ-ବତ୍ସଳ ଥିଲେ । ଅଧୀନ ବା ଆଶ୍ରିତ ଜନର ଦୋଷ ଉପେକ୍ଷା କରିବା ତାହାଙ୍କର ଗୋଟିଏ ଅସାଧାରଣ ଗୁଣ ଥିଲା । ମାନବପ୍ରକୃତି ଅସମ୍ପୂର୍ଣ୍ଣ ଓ ଦୁର୍ବଳ, ଏହା ସେ ଉତ୍ତମରୂପେ ହୃଦୟଙ୍ଗମ କରିଥିଲେ ; ତେଣୁ ପରଦୋଷଦର୍ଶିତା ଇତରବତ୍ ତାଙ୍କ ମନରେ ସ୍ଥାନ ପାଇ ନ ଥିଲା । ଏଥିପାଇଁ ଆଶ୍ରିତ ଲୋକେ ସର୍ବଦା ତାହାଙ୍କର ମଙ୍ଗଳକାମନା କରୁଥିଲେ ।

ଅନ୍ୟର ମନରେ କଷ୍ଟ ନ ଦେବା ତାହାଙ୍କ ଚରିତ୍ରର ଗୋଟିଏ ପ୍ରଧାନ ଲକ୍ଷଣ ଥିଲା । କୌଣସି ବ୍ୟକ୍ତି ତାହାଙ୍କୁ କର୍କଶ କଥା କହିଲେ ସେ ତାହା ସହି ଯାଉଥିଲେ; ତତ୍ପରିବର୍ତ୍ତିରେ କର୍କଶ କଥା କହୁ ନ ଥିଲେ । ଅନ୍ୟ ମନରେ କଷ୍ଟ ନ ଦେବାର ପ୍ରବୃତ୍ତି ତାହାଙ୍କ ମନରେ ଗୋଟାଏ ଦୁର୍ବଳତା ଜନ୍ମାଇଥିଲା । ଅର୍ଥୀକୁ ନାହିଁ କହିଲେ ତାହା ମନରେ ଆଘାତ ହୁଏ, ତାହା ପରିହାର କରିବା ନିମନ୍ତେ ସେ ସମୟରେ ବୃଥା ଆଶା ଦେଉଥିଲେ । ଅର୍ଥୀ ପଶ୍ଚାତ୍ ଏହା ଜାଣି ପାରିଲେ ତାହାଙ୍କ ଉପରେ ବିରକ୍ତ ହେଉଥିଲେ । ଏହା ରାଧାନାଥଙ୍କ ଚରିତ୍ରର ଗୋଟାଏ ଦୋଷ ଅଟେ ।

ବଦାନ୍ୟତା ପାଇଁ ରାଧାନାଥଙ୍କର ଖ୍ୟାତି ନାହିଁ । ମାତ୍ର ନିୟମିତ ଓ ଅନିୟମିତରୂପେ ସେ ଯାହାକୁ ଯାହା ଦାନକରୁଥିଲେ, ତାହା ପାଇଁ ସେ ଶ୍ଳାଘାର ଆକାଙ୍‌କ୍ଷା ବା ଅପେକ୍ଷା କରୁ ନ ଥିଲେ । ସଂସ୍କୃତଜ୍ଞ ପଣ୍ଡିତମାନଙ୍କ ମଧ୍ୟରେ ଯେଉଁମାନଙ୍କ ପ୍ରତି ଲକ୍ଷ୍ମୀ ବିମୁଖ, ସେମାନେ ତାହାଙ୍କଠାରେ ଉପସ୍ଥିତ ହେଲେ ସେ ସେମାନଙ୍କୁ ଆନନ୍ଦରେ ସ୍ୱକୀୟ ଶକ୍ତି ଅନୁସାରେ ଦାନ କରୁଥିଲେ । ଏହି ଦାନ-ଶୀଳତା ଓ ଗ୍ରାହକତା ପାଇଁ ପଣ୍ଡିତମାନେ ତାଙ୍କ ପ୍ରତି ଅତ୍ୟନ୍ତ ଅନୁରକ୍ତ ଥିଲେ ।

ରାଜକାର୍ଯ୍ୟ ଓ ସଂସାର-କାର୍ଯ୍ୟର ନାନା ଅଙ୍କରେ ରାଧାନାଥଙ୍କର ଅଭିନୟ ଶେଷ ହୋଇଅଛି । ତାହାଙ୍କ ସହିତ ଆଳାପ ଓ ତାହାଙ୍କ ସହବାସରୁ ଯେଉଁମାନେ ପୀୟୂଷ ଲାଭ କରୁଥିଲେ, ସେମାନେ ସେଥିରୁ ବଞ୍ଚିତ ହୋଇଅଛନ୍ତି । ଲତାବତ୍

ଯେଉଁମାନେ ତାହାଙ୍କୁ ଆଶ୍ରୟ କରିଥିଲେ, ସେମାନେ ବର୍ତ୍ତମାନ ନିରାଶ୍ରୟ ହୋଇ-ଅଛନ୍ତି । ସଂକ୍ଷେପରେ, ଯାହା ନଶ୍ୱର ତାହା ନାଶପ୍ରାପ୍ତ ହୋଇଅଛି । ମାତ୍ର କବିତା-ସଞ୍ଜୀବନୀ ତାହାଙ୍କୁ ଅମର କରି ରଖିବ । ଆଧୁନିକ ଉତ୍କଳ କବିମାନଙ୍କ ମଧ୍ୟରେ ସେ ସମ୍ରାଟ୍ ଥିଲେ । ବିଦ୍ୟମାନ କବି ଓ କବିଦଳମାନଙ୍କ ମଧ୍ୟରୁ ଅନେକେ ତାହାଙ୍କର ଶିଷ୍ୟ ବା ଅନୁଶିଷ୍ୟ ଅଟନ୍ତି । ବାଂଶତିବର୍ଷ ବୟଃକ୍ରମ ପୂର୍ବରୁ ତାହାଙ୍କ ପ୍ରତିଭାର ସ୍ଫୁରଣ ହୋଇଥିଲା । ବିଧାତା ତାହାଙ୍କ ହୃଦୟରେ ଯେଉଁ କବିତା-ବୀଜ ନିହିତ କରିଥିଲେ, ଓଡ଼ିଆ, ସଂସ୍କୃତ, ବଙ୍ଗଳା, ଇଂରାଜୀ କବିତାମୃତ-ପାନ ଏବଂ ନାନାବିଧ ନିସର୍ଗ ସୌନ୍ଦର୍ଯ୍ୟ-ପର୍ଯ୍ୟବେକ୍ଷଣ କିଶୋର ବୟସରେ ସେଥିରୁ ଅଙ୍କୁର ଜନ୍ମାଇଲା । ସେ ଯେ କେତୋଟି କବିତା ଓ କାବ୍ୟ ଲେଖିଯାଇଅଛନ୍ତି, ତନ୍ମଧ୍ୟରୁ ମହାଯାତ୍ରା ଅସଂପୂର୍ଣ୍ଣ ହେଲେ ହେଁ ବୃହତ୍ତମ ଓ ସର୍ବୋତ୍କୃଷ୍ଟ । ଏହାର ରଚନାପ୍ରଣାଳୀ ଯେପରି ସୁନ୍ଦର, ବିଷୟ-ଗୌରବ ସେହିପରି ବା ତତୋଽଧିକ ଉପାଦେୟ । ବର୍ଣ୍ଣନାତ୍ମକ ଚିଲିକା କବିତା ଉତ୍କଳ-ଭାଷାରେ ଅତୁଳନୀୟ । ପୁସ୍ତକାକାରରେ ପ୍ରକାଶିତ ହେବା ପୂର୍ବେ ଯେତେବେଳେ ତାହା 'ଉତ୍କଳପ୍ରଭା'ର ନାମ ସାର୍ଥକ କଲା, ତେତେବେଳେ ସେହି ମାସିକ ପତ୍ରିକା ଫିଟାଇ "ପାହିଲାଣି ଘୋର ତାମସୀ ଯାମିନୀ, ଫୁଟିବ ଉତ୍କଳଭାଷା-କମଳିନୀ" ପଢ଼ି ମୁଁ ବିସ୍ମିତ ଓ ରୋମାଞ୍ଚିତ ହେଲି । କବିବାଣୀକୁ ଭବିଷ୍ୟଦ୍ବାଣୀ ବୋଲି ବିଶ୍ୱାସ କରି ମୁଁ ମନେ ମନେ କହିଲି, "ପାହିଲାଣି ଏବେ ତାମସୀ ଯାମିନୀ ।" 'ଚନ୍ଦ୍ରଭାଗା' ଗୋଟିଏ କ୍ଷୁଦ୍ର ଲଳିତ କବିତା । ଏହାର ଶେଷାଂଶରେ ଗୋଟିଏ ତରଙ୍ଗିଣୀ ମାଲୋପମା ଅଛି । ମାତ୍ର ଏହାର ବିଷୟ ଉତ୍କୃଷ୍ଟ ନୁହେଁ । ତୁଳସୀ ସ୍ତବକଟିର ନାମ ଏକାଧିକ ପ୍ରକାରେ ସାର୍ଥକ ହୋଇଅଛି । ରଚନା-ବିଷୟରେ ତାହାଙ୍କର ଯାବତୀୟ କାବ୍ୟ ଓ କବିତା ସ୍ପୃହଣୀୟ ଅଟେ । କବିବରଙ୍କର ଲେଖନୀ ଯେପରି ପୀୟୂଷ-ପ୍ରସବିନୀ ଥିଲା, ସେହିପରି ତାଙ୍କର ହାସ୍ୟ ଅମୃତର ଫୁଆରା ଏବଂ ଆଳାପ ପ୍ରୋଢ଼ୋକ୍ତିପୂର୍ଣ୍ଣ ଥିଲା । ତାହାଙ୍କ କଥାରେ ଯେଉଁ ଭଙ୍ଗୀ, ପେଞ୍ଚ ଓ ପୂର ଥିଲା, ତାହା ଅନନ୍ୟ ସାଧାରଣ ଏବଂ କବିବରଙ୍କର ଯୋଗ୍ୟ ।

ଶ୍ରୀଯୁକ୍ତ ମଧୁସୂଦନ ରାଓଙ୍କ ସହିତ ସୌହାର୍ଦ୍ଦ୍ୟ ରାଧାନାଥଙ୍କ ଜୀବନର ଗୋଟିଏ ପ୍ରଧାନ ଘଟଣା ଅଟେ । ରାଧାନାଥ ଯେତେବେଳେ ପୁରୀଜିଲ୍ଲା ସ୍କୁଲର ଶିକ୍ଷକ, ମଧୁବାବୁ ତେତେବେଳେ ସେଠାରେ ଛାତ୍ର । ଏହି ସମୟରେ ଯେଉଁ ଶୁଭ ସମ୍ବନ୍ଧ ଦୁହିଙ୍କ ମଧ୍ୟରେ ସ୍ଥାପିତ ହେଲା, ଉତ୍ତରକାଳରେ ତାହା ଘନୀଭୂତ, କଲ୍ୟାଣକର ଓ ମନୋହର ହେଲା । ଏପରି ଶ୍ଳାଘ୍ୟ ସମ୍ବନ୍ଧ କବିମାନଙ୍କ ଇତିବୃତ୍ତରେ ଅତି ବିରଳ । (ଉତ୍କଳ ସାହିତ୍ୟ, ୧୩ଶ ଭାଗ, ୫ମ ସଂଖ୍ୟାରେ ପ୍ରକାଶିତ)

———

# ୯—ଫକୀରମୋହନ

ଉତ୍କଳ ସାହିତ୍ୟ-ସେବୀ ତଥା ଓଡ଼ିଶାର ଜନସାଧାରଣ ଜାଣୁଛନ୍ତି ଯେ ଫକୀରମୋହନ ଆଉ ଇହଜଗତରେ ନାହାନ୍ତି, ମର୍ତ୍ତ୍ୟଲୀଳା ସାଙ୍ଗ କରି ଲୋକାନ୍ତର-ଗାମୀ ହୋଇଅଛନ୍ତି ।

ଫକୀରମୋହନଙ୍କ ସହିତ ଓଡ଼ିଆ ସାହିତ୍ୟ-ପାଠକଙ୍କର ଯେ ଗୋଟିଏ ସମ୍ବନ୍ଧ ଥିଲା, ଏହା ସମସ୍ତେ ଜାଣନ୍ତି । ଅକିଞ୍ଚନ ଲେଖକର ତାଙ୍କ ସହିତ ଏକାଧିକ ସମ୍ପର୍କ ଥିଲା । ଫକୀରମୋହନଙ୍କ ଜନ୍ମ ଉତ୍କଳର ଯେଉଁ ଖଣ୍ଡରେ, ଲେଖକର ଜନ୍ମ ମଧ୍ୟ ସେହି ଖଣ୍ଡରେ । ଏହା ଗୋଟିଏ ସମ୍ପର୍କ ଓ ଦୈବ ସମ୍ପର୍କ । ଫକୀରମୋହନ ସର୍ବଦା, ଅନ୍ତତଃ ଜୀବନର ଶେଷଭାଗରେ, ଯେଉଁ ଚର୍ଚ୍ଚା କରୁଥିଲେ, ଏହି ଅକିଞ୍ଚନ କିଯ୍ଦତ୍ ପରିମାଣରେ ସେହି ଚର୍ଚ୍ଚା କରିଅଛି । ଆମ୍ଭେମାନେ ବାଲ୍ୟକାଳରେ ତତ୍-ପ୍ରଣୀତ ଭାରତବର୍ଷର ଇତିହାସ ବିଦ୍ୟାଳୟରେ ପଢ଼ିଥିଲୁଁ । ଏ ତିନୋଟି ସମ୍ପର୍କ ଅନନ୍ୟସାଧାରଣ ନୁହେଁ ।

ମାତ୍ର ଆଉ ଗୋଟିଏ ସମ୍ବନ୍ଧ ଅଛି, ଯାହାକୁ ମୁଁ ଅନନ୍ୟସାଧାରଣ କହିଲେ ତାହା ଅତଥ୍ୟ ହେବ ନାହିଁ । ମୁଁ ବାଲ୍ୟକାଳରେ ଯେଉଁ ବିଦ୍ୟାଳୟରେ ପଢ଼ିଥିଲି, ତାହାର ବୟଃକ୍ରମ ପ୍ରାୟ ପଞ୍ଚାଶବର୍ଷ ହେଲା । ତିନେ ରାଧାନାଥ, ବୈକୁଣ୍ଠନାଥ ଓ ଫକୀରମୋହନ ଯାଇ ରେମୁଣା ମଧ୍ୟୋତ୍କଳ ବିଦ୍ୟାଳୟଟି ସ୍ଥାପନ କରିଆସିଥିଲେ । [ତାହା ହାଇସ୍କୁଲ୍ ହେଲାଣି—ଗ୍ରନ୍ଥାବଳୀର ସମ୍ପାଦକ ।] ଏଥିରେ ଶିକ୍ଷା ଲାଭ କରି କେତେଗୁଡ଼ିଏ ଲୋକ ଓଡ଼ିଶାରେ, କେତେଗୁଡ଼ିଏ ବ୍ରହ୍ମ-ଦେଶରେ, କେହି ବା ମଧ୍ୟପ୍ରଦେଶରେ ଭିନ୍ନ ଭିନ୍ନ କ୍ଷେତ୍ରରେ କାର୍ଯ୍ୟ କରୁଅଛନ୍ତି । ସେହି ବିଦ୍ୟାଳୟର ତିନି ପ୍ରତିଷ୍ଠାପକଙ୍କ ମଧ୍ୟରେ ଫକୀରମୋହନ ଜଣେ । ରାଧାନାଥ ପ୍ରଥମେ ସ୍ୱର୍ଗ-ପ୍ରୟାଣ କଲେ, ତଦନନ୍ତର ବୈକୁଣ୍ଠନାଥ ଇହଲୋକ ପରିତ୍ୟାଗ କଲେ । ଅବଶିଷ୍ଟ ଥିଲେ ଫକୀରମୋହନ । ସେ ମଧ୍ୟ ଯାଇ ରାଧାନାଥଙ୍କ ପାର୍ଶ୍ୱରେ ଆସନ ଗ୍ରହଣ କଲେଣି ।

ଯେଉଁ ସମୟରେ ଏହି ତିନି ଯୁବା ଯାଇ ରେମୁଣା ବିଦ୍ୟାଳୟ ସ୍ଥାପନ କଲେ, ସେ ସମୟ ଓ ଏ ସମୟରେ ନାନାବିଷୟରେ ପ୍ରଭେଦ ଲକ୍ଷିତ ହୁଏ । ସେତେବେଳେ ଏହି ତିନି ଜଣଙ୍କର ଜୀବନରେ ଆଦ୍ୟ ଯୌବନର ଉତ୍ସାହର ପୂର୍ଣ୍ଣିମା କୁଆର । ସେହି ଉତ୍ସାହ ନାନା ଉଦ୍ୟମର ଜନକ । ସେହି ଉତ୍ସାହ ପ୍ରଥମୋକ୍ତ ଓ

ଶେଷୋକ୍ତ ବ୍ୟକ୍ତିଦ୍ୱୟଙ୍କୁ ତ୍ରିଦିବପଥର ପଥିକ କରି ପରିଶେଷରେ ଅମରତ୍ୱ ପ୍ରଦାନ କଲା ।

ସେ ଦିନ ଆଉ ଓଡ଼ିଶାରେ ନାହିଁ । ଥିଲେ, ଓଡ଼ିଶା ଭିନ୍ନ ଆକାର ଧାରଣ କରିଥାନ୍ତା । ତେତେବେଳେ କୌଣସି ଓଡ଼ିଆ ବ୍ୟବସ୍ଥାପକ ସଭାରେ, ବଡ଼ଲାଟ ବା ସାନଲାଟଙ୍କର ସଦସ୍ୟ ହୋଇ ନ ଥିଲେ ; ତେତେବେଳେ କୌଣସି ଓଡ଼ିଆ କଟକ ବା ପାଟନାକଲେଜରେ ଅଧ୍ୟାପକ ହୋଇ ନ ଥିଲେ । କୌଣସି ଓଡ଼ିଆ ଜାପାନ ବା ଇଉରୋପ ଯାଇ ନ ଥିଲେ । ମାତ୍ର ତେତେବେଳେ ମୁଷ୍ଟିମେୟ ଓଡ଼ିଆ ଯୁବକଙ୍କ ମନରେ ଉତ୍ସାହର ଯେଉଁ ପୂର୍ଣ୍ଣିମା-ଜୁଆର ଲକ୍ଷିତ ହେଉଥିଲା, ତାହା ଆଉ ଆଜି ଦେଖାଯାଉ ନାହିଁ । ସେ ଉତ୍ସାହ ଆଧୁନିକ ଓଡ଼ିଆ ଯୁବକର ମନରେ ଥିଲେ, ଓଡ଼ିଶାର ବର୍ତ୍ତମାନ ଅବସ୍ଥା ଆଉ ଏକ ପ୍ରକାର ହୋଇଥାନ୍ତା । ଆଉ ଗୋଟିଏ ଶୋଚନୀୟ ପ୍ରଭେଦ ସେ ଓଡ଼ିଶା ଓ ଏ ଓଡ଼ିଶା ମଧ୍ୟରେ ଲକ୍ଷିତ ହୁଏ । ଯାବତୀୟ ଉନ୍ନତିର ବିଘାତକ ଭେଦବୁଦ୍ଧି-କୀଟ ବର୍ତ୍ତମାନ ଓଡ଼ିଶାକୁ କୋରି ପକାଇଅଛି । ତେତେବେଳେ ଏ କୀଟ ଓଡ଼ିଶାରେ ପ୍ରବେଶ କରି ନ ଥିଲା । ତେତେବେଳେ ମୁଷ୍ଟିମେୟ ଓଡ଼ିଆ ଯୁବକ ଏକମନରେ ପୂର୍ଣ୍ଣ ଉତ୍ସାହରେ କାର୍ଯ୍ୟକ୍ଷେତ୍ରରେ ପ୍ରବେଶ କରିଥିଲେ । ଫକୀରମୋହନଙ୍କର ଜୀବନର ଶେଷାଂଶରେ ମଧ୍ୟ ଉତ୍ସାହର ଅଭାବ ଦୃଷ୍ଟିଗୋଚର ହୋଇନାହିଁ ।

ଫକୀରମୋହନ କୌଣସି କଲେଜରେ ପଢ଼ି ନ ଥିଲେ । କାରଣ ସେତେବେଳେ ଏ ଦେଶରେ କଲେଜ ନ ଥିଲା । କୌଣସି ସ୍କୁଲରେ ପଢ଼ିଥିଲେ କି ନାହିଁ, ତାଙ୍କର ଆତ୍ମଜୀବନୀ ଦେଖିଲେ ଜଣାଯିବ । ଶୁଣିଅଛୁ, ସେ ବାଲେଶ୍ୱର ମିଶନ୍ ସ୍କୁଲର ପ୍ରଧାନ ଶିକ୍ଷକ ବା ହେଡ୍‌ପଣ୍ଡିତ ଥିଲେ । ତେତେବେଳେ ସେ ସ୍କୁଲଟି ମଧ୍ୟୋତ୍କଳ ବିଦ୍ୟାଳୟ । ତେତେବେଳେ ମଧ୍ୟ-ଇଂରାଜୀ ବିଦ୍ୟାଳୟ ସବ୍‌ଡିଭିଜନର ସଦର ସ୍ଥାନ ଭିନ୍ନ ଅନ୍ୟତ୍ର ନ ଥିଲା ।

ଏହାଉତ୍ତାରୁ ଫକୀରମୋହନଙ୍କ ଜୀବନରେ ଆଉ ଗୋଟିଏ ପରିଚ୍ଛେଦର ଆରମ୍ଭ ହେଲା । ସ୍ଥାନୀୟ ପ୍ରଜାମାନଙ୍କ ରାଜ୍ୟରେ ତାଙ୍କର ଦେବାନୀ ପଦ-ଗ୍ରହଣର ଆରମ୍ଭ ହେଲା । ଢେଙ୍କାନାଳ, କେଉଁଝର, ଦଶପଲ୍ଲା, ଡୋମପଡ଼ା ପ୍ରଭୃତି ରାଜ୍ୟରେ ଦେବାନୀ କାର୍ଯ୍ୟରେ ତାଙ୍କର ବହୁ ସମୟ ଅତିବାହିତ ହୋଇ-ଯାଇଅଛି । ୧୮୮୩ ମସିହାରେ ମୁଁ ବାଲେଶ୍ୱର ଜିଲ୍ଲାସ୍କୁଲରେ ପଢୁଥିଲି । ତେତେବେଳେ ତାଙ୍କର ଗୋଟିଏ ରାଜ୍ୟର ଦେବାନୀ ଶେଷ ହୋଇଥାଏ , ଅନ୍ୟ

କୌଣସି ରାଜ୍ୟରେ ଦେବାକୁ ମିଳି ନ ଥାଏ । ଦିନେ ପ୍ରାତଃକାଳରେ ବାଲେଶ୍ୱର ସହରରେ ସେ ଭ୍ରମଣ କରିବାକୁ ବାହାରିଥିଲେ । ସହର ମଧ୍ୟରେ ଭ୍ରମଣ କରୁଁ କରୁଁ ସୁନହଟ କରଣ-ସାହିରେ ପହଞ୍ଚିଲେ । ଅନେକଦିନପରେ ସୁହୃଦ୍‌ବର୍ଗଙ୍କ ସହିତ ସାକ୍ଷାତ୍ ହେଲା । ଯଥାବିଧି ସ୍ୱାଗତ-ସମ୍ଭାଷଣ ପରେ ଜଣେ ସୁହୃତ୍ ତାଙ୍କୁ ପ୍ରଶ୍ନକଲେ, ଆଜିକାଲି କଅଣ କରୁଅଛନ୍ତି ?" (ଅଭିପ୍ରାୟ କି ଚାକିରି କରୁ ଅଛନ୍ତି ?) । ଫକୀର ମୋହନ କହିଲେ—ଆଜିକାଲି କୌଣସିଠାରେ କାର୍ଯ୍ୟ ମିଳି ନାହିଁ । ମାତ୍ର ସେଥିପାଇଁ ମୁଁ ଉଦ୍‌ବିଗ୍ନ ନୁହେଁ । ଏ ବି ଗୁଜର୍ ଜାଏଗା । ତାଙ୍କ ଜୀବନରେ "ଏ ବି ଗୁଜର୍ ଜାଏଗା" ଅନେକଥର ଲକ୍ଷିତ ହୋଇଅଛି ଏବଂ ଯେ ତାଙ୍କର ଜୀବନର ସମ୍ୟକ୍ ଆଲୋଚନା କରିବେ, ସେ ସେଥିରୁ ଏହି ଅମୂଲ୍ୟ ଶିକ୍ଷା ଲାଭ କରିବେ । ହତାଶ ବା ଗମ୍‌ଖୋର ହେବା ତାଙ୍କର ସ୍ୱଭାବ-ବିରୋଧୀ ଭାବ । ସମ୍ପଦ୍-ବିପଦରେ ଅଧୀର ନ ହେବା ତାଙ୍କର ସ୍ୱଭାବର ବିଶେଷତ୍ୱ ।

କଟକ ନଗରରେ ତାଙ୍କର ଗୋଟିଏ ପକ୍‌କାଘର ଅଛି । ସେହି ଘରର ଆଦ୍ୟ ଅବସ୍ଥାରେ ଫକୀରମୋହନ କଟକରେ ଅବସ୍ଥାନ କରୁଥିଲେ । ସଦର ଦ୍ୱାର ନିକଟରେ କାନ୍ଥରେ ଗୋଟିଏ ସ୍ୱର୍ଣ୍ଣଲତା ସେ ମଡ଼ାଇଥିଲେ । ମୁଁ ତେତେବେଳେ ପୁରୀରୁ ରାଜକାର୍ଯ୍ୟୋପଲକ୍ଷରେ କଟକକୁ ଆସିଲି । ତାଙ୍କ ସହିତ ସାକ୍ଷାତ୍ କରିବାକୁ ଗଲି । ତାଙ୍କର ପୁତ୍ର ମୋହିନୀମୋହନ ଓ କନ୍ୟା ସରୋଜିନୀର ବୟସ ତେତେବେଳେ ଅଳ୍ପ । ଫକୀରମୋହନଙ୍କ ସହିତ କଥୋପକଥନ ହେଉଅଛି, ଏହି ସମୟରେ ସେ ଲତାଟିକୁ ଦେଖି ମୁଁ କହିଲି, "ଆପଣ ଏ ଲତାଟି କାହିଁକି କାନ୍ଥରେ ମଡ଼ାଇଲେ ? ପାନ ଗଛଟିଏ ମଡ଼ାଇଥିଲେ ଭଲ ହୋଇଥାନ୍ତା ।" ଫକୀରମୋହନ ହସିହସି କହିଲେ, "ଠିକ୍ କହିଅଛ ।" ପାଠକମାନଙ୍କ ମଧ୍ୟରୁ ଅନେକେ ଜାଣିଥିବେ, ଫକୀରମୋହନ ବହୁତ ପାନ ଖାଉଥିଲେ ।

ଭାରତବର୍ଷର ଇତିହାସ ଓ ଉତ୍କଳ-ଭ୍ରମଣ ପହିଲି ଗଳ୍ପ ଏ ଦୁଇଟି ମଧ୍ୟରେ ଓଡ଼ିଆ ପାଠକ-ସାଧାରଣ ଫକୀରମୋହନଙ୍କର ସାକ୍ଷାତ୍ ପ୍ରାପ୍ତ ପାଇ ନାହାନ୍ତି । ଏହି ପହିଲି ଗଳ୍ପଠାରୁ ସାହିତ୍ୟରାଜ୍ୟରେ ତାଙ୍କର ଯେଉଁ ଗଳ୍ପ ଆରବ୍ଧ ହେଲା, ଅନ୍ତିମକାଳ ପର୍ଯ୍ୟନ୍ତ ତାହାର ବିରାମ ହୋଇନାହିଁ । ଖଣ୍ଡ କବିତା, କାବ୍ୟ, ଉପନ୍ୟାସ, ପୁରାଣ ଏସବୁରେ ତାଙ୍କର ଲେଖନୀ ଅହରହ ଗଳ୍ପକରି ଚାଲୁଥିଲା । ତାଙ୍କର ଉପନ୍ୟାସ ଲେଖା ଆରମ୍ଭ ଉତ୍ତାରେ ମୁଁ ଦିନେ ତାଙ୍କୁ କହିଲି, ଓଡ଼ିଆ ଭାଷାରୁ କେତେଗୁଡ଼ିଏ ଶବ୍ଦ ଲୁପ୍ତ ହୋଇ ଯାଉଅଛି । ଆପଣଙ୍କର ଉପନ୍ୟାସ ମଧ୍ୟରେ ସେଗୁଡ଼ିକୁ ସ୍ଥାନ ଦେଇ ବଞ୍ଚାଇ ରଖନ୍ତୁ । ଭାବୀ ବାଲେଶ୍ୱରବାସୀ ମଧ୍ୟ

ଗୋଧି, କାସ୍ବର ପ୍ରକୃତ ଶବ୍ଦର ଅସ୍ତିତ୍ୱରେ ଅନଭିଜ୍ଞ ହେବେ।” ମୋର ଉତ୍ତର ଯାଥାର୍ଥ୍ୟ ସେ ସ୍ୱୀକାର କଲେ । ମାତ୍ର ଶବ୍ଦଗୁଡ଼ିକ ତାଙ୍କର କୌଣସି ଲେଖାରେ ସ୍ଥାନ ପାଇଅଛି ବୋଲି ମୋତେ ଜଣା ନାହିଁ । ତାଙ୍କର ବାଚରଗଞ୍ଜ ପ୍ରବନ୍ଧ ଯେଉଁ ବାଲେଶ୍ୱରବାସୀ ବା ଉତ୍କଳବାସୀ ପଢ଼ିନାହିଁ, ସେ ବାଚର୍‌ଗଞ୍ଜର ଅର୍ଥ ବୁଝି ପାରିବ ନାହିଁ, ଏବଂ ଜଗନ୍ନାଥ-ସଡ଼କର ପୂର୍ବାବସ୍ଥା ଓ ପୂର୍ବକାଳର ଯାତ୍ରୀମାନଙ୍କର କଷ୍ଟ ହୃଦୟଙ୍ଗମ କରିପାରିବ ନାହିଁ ।

ଫକୀରମୋହନଙ୍କର ହୃଦୟ ରସଗୋଲା ପରି ଥିଲା । ତନ୍ମଧ୍ୟରେ ସ୍ନେହ ଓ ଦୟା ଏହି ଦୁଇ ସୁରସ ପ୍ରଚୁର ପରିମାଣରେ ଥିଲା । କ୍ରୋଧ ତାଙ୍କ ମନରେ ସ୍ଥାନ ପାଉଥିଲା କି ନାହିଁ, ମୋତେ ଜଣା ନାହିଁ । ଏହା ତାଙ୍କ ମନକୁ ଅଭିଭୂତ କରିବାକୁ ଅକ୍ଷମ ଥିଲା । ଆଶ୍ରିତବାତ୍ସଲ୍ୟ ତାଙ୍କ ଜୀବନର ଗୋଟିଏ ପ୍ରଧାନ ଲକ୍ଷଣ ଥିଲା ।

ତାଙ୍କର ଜୀବନର ଗୋଟିଏ ଗୋଟିଏ ବିଶେଷ ଘଟଣାରୁ ଗୋଟିଏ ଗୋଟିଏ ଅମୂଲ୍ୟ ଶିକ୍ଷା ମିଳେ । ସେଗୁଡ଼ିକ ସମସ୍ତ ଲିପିବଦ୍ଧ କରିବାର ସମୟ ଓ ସ୍ଥାନ ବର୍ତ୍ତମାନ ନାହିଁ । ସୁବିଧା ହେଲେ ସମୟାନ୍ତରରେ ଏ ବିଷୟରେ ପୁନରା-ଲୋଚନା କରାଯାଇପାରିବ ।

———

(ଉତ୍କଳ ସାହିତ୍ୟ, ୨୨ ଭାଗ, ୪ର୍ଥ ସଂଖ୍ୟା ୧୯୧୯ରେ ପ୍ରକାଶିତ)

## ୧୦–ସାହିତ୍ୟ-ଦର୍ପଣକାର

ଆପଣାକୁ ଟେକିବା ମାନବ-ଜାତିର ପ୍ରକୃତିସିଦ୍ଧ । ସମାଧି-ଯୋଗରେ ସିଦ୍ଧିଠାରୁ ମୟୂରପୁଚ୍ଛରେ କାକ-କଳେବରାଚ୍ଛାଦନ ପର୍ଯ୍ୟନ୍ତ ନାନାରୂପରେ ଏହି ଟେକିବା ଦୃଷ୍ଟିଗୋଚର ହୁଏ । ଏହି ପ୍ରବୃତ୍ତି କେତେକ ସ୍ଥଳରେ ପାବନୀ ବା ପାବକ; ଅପର କେତେକ ସ୍ଥଳରେ ପାତକ ହୁଏ । ଟେକିବା ସ୍ଥୂଳତଃ ଦୁଇ ପ୍ରକାର —(୧) ଉତ୍କର୍ଷ ସାଧନ କରିବା (୨) ଯଶୋଗାନ କରିବା । ଆଧ୍ୟାତ୍ମିକ ବା ବୈଷୟିକ ଉନ୍ନତି-ସାଧନ ବାଞ୍ଛନୀୟ; ଆପଣାର ବା ସ୍ୱଜାତିର ଗୌରବାଖ୍ୟାନ ଯଥୋଚିତ ସୀମା ମଧ୍ୟରେ ନ ରହିଲେ ଗର୍ହଣୀୟ । ଏହି ଶେଷୋକ୍ତ ପ୍ରବୃତ୍ତି ଅନେକ ସ୍ଥଳରେ ଆବର୍ତ୍ତାକାର ଧାରଣ କରେ । ଚରିତ-ରଚୟିତା ଓ ଇତିହାସ-ପ୍ରଣେତା ତଟସ୍ଥ ହୋଇ ଲକ୍ଷ୍ୟ ସ୍ଥାନରେ ଉପନୀତ ହେଲେ ସତ୍ୟର ସମ୍ମାନନା କରି ଧନ୍ୟ ହୁଅନ୍ତି; ମାତ୍ର ଅନେକେ ଆବର୍ତ୍ତରେ ପଡ଼ି ପାତକର ଫଳଭୋଗୀ ହୁଅନ୍ତି ।

ଯେଉଁ ଜାତି ଅସ୍ତାଚଳର ନିକଟବର୍ତ୍ତୀସ୍ୱମାନ, ତୈତନ୍ୟୋଦୟ ହେଲେ ପଶ୍ଚାଦ୍ଭାଗକୁ ମୁଖ ପରିବର୍ତ୍ତନ କରି ଭୂତ ଗୌରବର ମଧ୍ୟାହ୍ନ ଜ୍ୟୋତି କ୍ଷଣକାଳ ସତୃଷ୍ଣ ନୟନରେ ନିରୀକ୍ଷଣ କରିବା ତାହା ପକ୍ଷରେ ସ୍ୱାଭାବିକ । ଅଧ୍ୟବସାୟ ସହକାରେ ରଜୋଦଣ୍ଡରେ ତମୋବିନାଶ କରିପାରିଲେ ଭୂତସ୍ଫୂର୍ତ୍ତି କ୍ଷେମଙ୍କରୀ ହୁଏ; ଅନ୍ୟଥା ଆଳସ୍ୟର କ୍ରୀଡ଼ନକ ହୋଇ ଆତ୍ମଶ୍ଲାଘାରେ ବାବଦୂକ ହେଲେ ମାନବ ଉପହାସର ଆସ୍ପଦ ମାତ୍ର ହୁଏ । ଭଗବାନ ଉକ୍ତ ଆବର୍ତ୍ତ ଓ ବାବଦୂକତାରୁ ରକ୍ଷା କରନ୍ତୁ, ପ୍ରବନ୍ଧାରମ୍ଭରେ ତାହାଙ୍କ ଶ୍ରୀଚରଣରେ ଏହି ଭିକ୍ଷା ।

ଆଲୋଚ୍ୟ ବିଷୟର ଅବତାରଣା ପୂର୍ବରୁ ଓଡ଼ିଆମାନଙ୍କର ଆଧୁନିକ ଅବସ୍ଥା ପ୍ରତି ସ୍ଥୂଳ ଦୃଷ୍ଟିପାତ କରିବା ଅବାନ୍ତରୋଚିତ ବୋଲି ବୋଧ ହେଉଅଛି । ଉତ୍କଳର ଅତୀତ ସ୍ଥାପତ୍ୟର ସାକ୍ଷୀ ଦେବଳଗୁଡ଼ିକ ଯେଉଁ କାଳରେ ନିର୍ମିତ ହୋଇଥିଲା ଏବଂ ଚୈତନ୍ୟ, ଜଗନ୍ନାଥଦାସ, ସାରଳା ଦାସ, ମାଧବକର, ଭବଭୂତି ପ୍ରଭୃତିଙ୍କର ସ୍ଫୁରଣ ଯେଉଁକାଳରେ ଉତ୍କଳ ଗଗନରେ ଲକ୍ଷିତ ହେଉଥିଲା, ସେ କାଳ ଓ ଏ କାଳ ମଧ୍ୟରେ ମହଦନ୍ତର ବିଦ୍ୟମାନ । ଏହି ଅନ୍ତର ଏଡ଼େ ବଡ଼ ଯେ ଏ କାଳର ଓଡ଼ିଆମାନଙ୍କୁ ସେ କାଳର ଓଡ଼ିଆମାନଙ୍କର ବଂଶଧର ବୋଲି ବିଶ୍ୱାସ କରିବା ସହଜ ନୁହେଁ । ଖ୍ରୀଷ୍ଟୀୟ ଊନବିଂଶ ଶତାବ୍ଦୀର ପ୍ରଥମ ପାଦରେ ଗ୍ରୀସୀୟମାନଙ୍କର ହୀନଦଶା ଅବଲୋକନ କରି ଇଂରେଜ କବିପୁଙ୍ଗବ 'ବାଇରନ୍' ଯୀଶୁଜନ୍ମର ପ୍ରାକ୍‌କାଳବର୍ତ୍ତୀ ଗ୍ରୀସୀୟମାନଙ୍କର ବଂଶଧର ବୋଲି ସେମାନଙ୍କୁ ବିଶ୍ୱାସ କରିବାକୁ କୁଣ୍ଠିତ ଥିଲେ । ମୁଁ ଯେତେବେଳେ ବିଦ୍ୟାଳୟ-ପରିଦର୍ଶନ ନିମନ୍ତେ ରାଜନିୟୋଗରେ ବାଲେଶ୍ୱର ଜିଲାରେ ଥିଲି, ସେତେବେଳେ ରାଜକର୍ମଗୃହୀ ଜନପଦ-ନିବାସୀ ବୟୋଧିକ ଜଣେ ସମ୍ଭ୍ରାନ୍ତ ଉତ୍କଳୀୟଙ୍କ ସହିତ ପରିଚୟ ଓ ଆଳାପ ହେଲା । ଏକ ସମୟରେ ଦକ୍ଷିଣାଭିମୁଖ ହୋଇ ପ୍ରତ୍ୟାବର୍ତ୍ତନ କଲାବେଳେ ମାର୍ଗପାର୍ଶ୍ୱରେ ଆପଣାର ସମ୍ମୁଖରେ ଦଣ୍ଡାୟମାନ ହୋଇଥିବାର ତାହାଙ୍କୁ ଦେଖିଲି । ଦୁହିଁଙ୍କ ମଧ୍ୟରେ ଯଥାରୀତି ଶିଷ୍ଟ ସମ୍ଭାଷଣ ହେଲା । ସେ ବଙ୍ଗଭାଷାରେ ଯେଉଁ ପ୍ରଶ୍ନମାନ କଲେ, ମୁଁ ଓଡ଼ିଆ ଭାଷାରେ ତାହାର ଯଥୋଚିତ ଉତ୍ତର ଦେଲି । ଏଥିରେ ବିସ୍ମିତ ହୋଇ ସେ କହିଲେ, "ଆପଣ ଓଡ଼ିଆ କହୁଛନ୍ତି !" ଅଧିକ ବିସ୍ମୟରେ ମୁଁ କହିଲି, "ଆଉ କାହିଁରେ କହିନ୍ତି ?" ରାଜକାର୍ଯ୍ୟ ଉପଲକ୍ଷ୍ୟରେ ମୁଁ ଯେତେବେଳେ ପୁନର୍ବାର ସେହି ସ୍ଥାନରେ ଅବସ୍ଥାନ କଲି, ସାୟଂକାଳରେ ସେ ଭଦ୍ରଲୋକଟି ମୋହ ସହିତ ସାକ୍ଷାତ କରିବାକୁ ଆସିଲେ । ମାତ୍ର ଏଥର ତାହାଙ୍କର ସେ ବିସ୍ମୟ ନ ଥିଲା ବା ଭାଷାନ୍ତରାଳାପ ନ ଥିଲା । ମୁଁ ପ୍ରସଙ୍ଗକ୍ରମେ କହିଲି, "ଭଗବାନଙ୍କ କୃପାରୁ ଯଦି ଓଡ଼ିଆମାନଙ୍କର ଅବସ୍ଥାର ଏ ପରିବର୍ତ୍ତନ ଘଟେ ଯେ, ଓଡ଼ିଆ ନାମ ହେୟ ନ ହୋଇ ଗର୍ବ-ଗୌରବର ବିଷୟ ହେବ, ତାହାହେଲେ ଯେଉଁ ଓଡ଼ିଆମାନେ ପରିହାସର ଅଭାବରୁ ନାନା ଛଦ୍ମରେ

ଜନ୍ମଭୂମି ସହିତ ସ୍ୱୀୟ ସମ୍ବନ୍ଧ ଗୋପନକରୁଅଛନ୍ତି, ତେତେବେଳେ ସେମାନେ କେଉଁଠାରେ ଆପଣାର ମୁଖ ଲୋଡ଼ାଇ ରଖିବେ ?" କତିପୟ ଶିକ୍ଷିତ ବା ଅର୍ଦ୍ଧ-ଶିକ୍ଷିତ ଲୋକଙ୍କଠାରେ ଏହି ଛଦ୍ମବେଶ ବ୍ୟାପକ ନ ହେଲେ ମଧ୍ୟ କଥିଞ୍ଚ ପରିମାଣରେ ସଂକ୍ରାମକ ଅଟେ । ଖ୍ରୀଷ୍ଟୀୟ ୧୮୮୫ ଅବ୍ଦରେ ମୁଁ ପ୍ରତ୍ୟକ୍ଷ କରିଥିଲି କଲିକତାରେ ଓଡ଼ିଆ ପିତାପୁତ୍ର ପରସ୍ପରମଧ୍ୟରେ ବଙ୍ଗଳା-ଭାଷାରେ କଥା କହୁଅଛନ୍ତି । ଏପରି ଅସ୍ୱାଭାବିକ ଦୃଶ୍ୟ ଓଡ଼ିଶାମଧ୍ୟରେ ସୁଦ୍ଧା ଦେଖାଯାଉଅଛି । ଉତ୍କଳର କୌଣସି କୌଣସି କୃତୀ ସନ୍ତାନ ସଭା-ମଣ୍ଡନ ନିମନ୍ତେ ବହୁ ଆୟାସରେ ମାତୃଭାଷା ଶିକ୍ଷା କରି-ଅଛନ୍ତି । ମାତ୍ର ଏତାଦୃଶ ନରପୁଙ୍ଗବଙ୍କ ଗୃହରୁ ସେ ଭାଷା ନିର୍ବାସିତ ହୋଇ ପୁରବାସିନୀରେ ତାହାଙ୍କର ମାତୃଭାଷା-ବାତ୍ସଲ୍ୟର ମହିମା କୀର୍ତ୍ତିନକରୁଅଛି । ଅନ୍ୟ ପ୍ରଦେଶର ଲୋକେ ଓଡ଼ିଶାର ବକ୍ଷଉପରେ ବସି ସପ୍ତଦଶ ଉପଚାରରେ ଓଡ଼ିଆମାନଙ୍କର ଶ୍ରାଦ୍ଧ କରି ଶିଷ୍ଟାଚାରରେ ପରାକାଷ୍ଠା ପ୍ରଦର୍ଶନ କରନ୍ତି ; ମାତ୍ର ଏହାର ପ୍ରତିକାର ତେଣିକି ଥାଉ, ପ୍ରତିବାଦ ସୁଦ୍ଧା କଲେ ନବ୍ୟ ସ୍ମୃତିରେ ଅନୁଦାରତା ରୂପକ ମହାପାତକର କୃଚ୍ଛ୍ର ଚାନ୍ଦ୍ରାୟଣ-ପ୍ରାୟଶ୍ଚିତ୍ତ ଲେଖେ । ଜଣେ ମାନନୀୟ ବନ୍ଧୁ ଆଳାପଦ୍ୱାରା ପ୍ରଦେଶାନ୍ତରାଗତ ଜଣେ ପଣ୍ଡିତ ଅତିଥିଙ୍କର ସମ୍ବର୍ଦ୍ଧନା ନିମନ୍ତେ ସ୍ଥାନୀୟ କତିପୟ ଭଦ୍ରବ୍ୟକ୍ତିଙ୍କୁ ନିମନ୍ତ୍ରଣ କରିଥିଲେ । ଏହି ଉପଲକ୍ଷରେ ମୁଁ ସେଠାରେ ଉପସ୍ଥିତ ଥିଲି । ଅଭ୍ୟାଗତ ଜଣେ ବୈଦେଶିକ ଏହିପରି ସୁରୁଚିର ବଂଶୀବାଦନ କଲେ । ଯେ ଆମ୍ଭମାନଙ୍କୁ ନିମନ୍ତ୍ରଣ କରିଥିଲେ ସେ ଇଙ୍ଗିତରେ ବା ଗୋପନରେ ସୁଦ୍ଧା ଏ ଦୁର୍ବ୍ୟବହାର ନିବାରଣ କଲେ ନାହିଁ । ଏବଂବିଧ ଅପ୍ରିୟ ଘଟଣା ଏଠାରେ ବର୍ଣ୍ଣନାକରିବା ବାଞ୍ଛନୀୟ ବା ପ୍ରୟୋଜନୀୟ ନୁହେଁ । ଏତାଦୃଶ ହୀନତା ଏକ ସମୟରେ ବଙ୍ଗ-ଦେଶରେ ମଧ୍ୟ ଶିକ୍ଷିତ ଲୋକ-ମାନଙ୍କ ମଧ୍ୟରେ କଥିଞ୍ଚ ପରିମାଣରେ ଦେଖାଯାଇଥିଲା । ତନ୍ମଧ୍ୟରୁ କେହି ପରିଣତ ବୟସରେ "ଆଶାର ଛଳନେ ଭୁଲି କି କରିନୁ ହାୟ !" ବୋଲି ଉଚ୍ଚରୋଳରେ ଅନୁତାପ କରିଅଛନ୍ତି । ସରସ୍ୱତୀଙ୍କର ଜଣେ ଇଂଲଣ୍ଡୀୟ ବରପୁତ୍ର ସ୍ୱରଚିତ ମହାଗ୍ରନ୍ଥର ପାଣ୍ଡୁଲିପି ସମାପନ କରି ତାହା ଇଂରେଜୀ-ଭାଷାରେ ପ୍ରକାଶ କରିବେ କି ଫରାସୀଭାଷାରେ ପ୍ରକାଶକରିବେ ସ୍ଥିର କରି ନ ପାରି କ୍ଷଣକାଳ ସନ୍ଦେହଦୋଳାୟମାନଚିତ୍ତବୃତ୍ତି ହେଲେ । ତାହାଙ୍କର ଆଶଙ୍କା, ମାତୃଭାଷାରେ ପ୍ରକାଶିତ ହେଲେ ତଦୀୟ ପ୍ରବନ୍ଧର ଗୌରବ ହୃଦୟଙ୍ଗମ କରିବା ଲୋକମାନଙ୍କର ସଂଖ୍ୟା ଅତି ବିରଳ ହେବ । ଦୃଷ୍ଟାନ୍ତର ଦେଖିବା ହେଉ । ଆଧୁନିକ କବିକୁଳରବି ସ୍ୱର୍ଗତ ରାଧାନାଥ ରାୟଙ୍କର ଶିଷ୍ୟ ଓ ଶିଷ୍ୟାନୁଶିଷ୍ୟ ଆମ୍ଭମାନଙ୍କ ମଧ୍ୟରେ ଅନେକ ଅଛନ୍ତି । ତାହାଙ୍କର ପରଲୋକ-ଗମନ ଉତ୍ତାରେ ପ୍ରକାଶ୍ୟ ସଭାରେ ଶୋକାଶ୍ରୁ ବିସର୍ଜନ ଓ ସ୍ମୃତିସଂରକ୍ଷଣର ପ୍ରସ୍ତାବ କେତେ ହେଲା । ମାତ୍ର ଅଦ୍ୟାପି କଥା ଓ

କାର୍ଯ୍ୟର ସମନ୍ୱୟ ଦୃଷ୍ଟିଗୋଚର ହେଉ ନାହିଁ । କେହି କେହି ସଂସ୍କାରର ଧୂପ ଓ ଧୂଆଁରେ ମୁଗ୍ଧ ହୋଇ ରହିଅଛନ୍ତି, ତଣ୍ଡୁଳ ସ୍ପର୍ଶ କରିବାର ପ୍ରୟାସ ଦେଖାଯାଉ ନାହିଁ । ବିଧବାମାନଙ୍କର ନାନାପ୍ରକାର ଦୁର୍ଗତି ନେତ୍ରପଥବର୍ତ୍ତୀ ହେଲେ ହେଁ ସମାଜର ନେତାମାନେ ତାହାର ଯଥୋଚିତ ପ୍ରତିକାର ନ କରି ବ୍ରହ୍ମଚର୍ଯ୍ୟମୟୂର-ପୁଚ୍ଛରେ କଳଙ୍କ କାକପକ୍ଷ-କାଳିମା ସଙ୍ଗୋପନ କରୁଅଛନ୍ତି । ଶିକ୍ଷାହିଁର ଅବନତି ଅତିଭୂମି ସ୍ପର୍ଶ କଲେ ହେଁ ଗଲ୍ପରେ ହିଁ ପୁନରୁନ୍ନତି ସାଧିତ ହେଉଅଛି । ସଂକ୍ଷେପରେ, ବର୍ତ୍ତମାନ ଓଡ଼ିଆମାନଙ୍କମଧ୍ୟରେ ମନୁଷ୍ୟର ଉଚ୍ଚ ଆଦର୍ଶ ପ୍ରାୟ ଦୃଷ୍ଟିଗୋଚର ହେଉନାହିଁ । ଏତାଦୃଶ ଓଡ଼ିଆମାନଙ୍କର ପୂର୍ବପୁରୁଷମାନଙ୍କର ମନୁଷ୍ୟତ୍ୱର ବା କୃତିତ୍ୱର ଆଖ୍ୟାନ ଦେଖିଲେ ଲୋକେ ତାହାକୁ ରୂପକ ବୋଲି ମଣିବେ । ଏଥିରେ ବିସ୍ମୟର କିଛି ନାହିଁ । ରାଣୀ ଦୁର୍ଗାବତୀ ନାମକ ପ୍ରବନ୍ଧରେ ଆଧୁନିକ ନାରୀମାନଙ୍କ ବିଷୟରେ ଉତ୍କଳର ଜଣେ କୃତୀ ଲେଖକଙ୍କର ମନ୍ତବ୍ୟ ସ୍ମରଣ କରନ୍ତୁ ।

ବର୍ତ୍ତମାନ ପ୍ରସ୍ତୁତ ଆଲୋଚନା ପ୍ରତି ଆପଣମାନଙ୍କର ଅବଧାନ ଆହ୍ୱାନ କରୁଅଛି । ସଂସ୍କୃତଭାଷାରେ ଏ ଅଞ୍ଚଳରେ ଯେତେଗୁଡ଼ିଏ ଅଲଙ୍କାର-ଗ୍ରନ୍ଥ ଦେଖାଯାଏ ତନ୍ମଧ୍ୟରେ କାବ୍ୟାଦର୍ଶ, କାବ୍ୟପ୍ରକାଶ ଏବଂ ସାହିତ୍ୟଦର୍ପଣ ପ୍ରଧାନ ଅଟେ । ଏତନ୍ମଧ୍ୟରେ ଆଦର୍ଶ ଖଣ୍ଡିକ ଦଣ୍ଡୀଙ୍କର, ପ୍ରକାଶ ମମ୍ମଟ ଭଟ୍ଟଙ୍କର ଏବଂ ଦର୍ପଣ ବିଶ୍ୱନାଥ କବିରାଜଙ୍କର କୃତି ଅଟେ । ଏହି ବିଶ୍ୱନାଥ କବିରାଜ ଉତ୍କଳୀୟ । ଖ୍ରୀଷ୍ଟୀୟ ଊନବିଂଶ ଶତାବ୍ଦୀର ଚତୁର୍ଥପାଦରେ ଦର୍ପଣ ସହିତ ପ୍ରଥମ ସାକ୍ଷାତ୍କାର କାଳରେ ସ୍ୱରଚୋଲଙ୍କାରରେ "ରାଘବାନନ୍ଦ ମହାପାତ୍ରାସ୍ତୁ ବୈସାଦୃଶ୍ୟେନାପି ସ୍ମରଣମିଛନ୍ତି" ଏହି ବାକ୍ୟପ୍ରତି ମୋହର ଦୃଷ୍ଟି ଆକୃଷ୍ଟ ହେଲା । ରାଘବାନନ୍ଦ ମହାପାତ୍ର ନାମର ଉଲ୍ଲେଖ ଏବଂ ଗୌରବାର୍ଥରେ ବହୁବଚନ ପ୍ରୟୋଗ ଦେଖି ମନେ କଲି ଦର୍ପଣକାର ସ୍ୱୟଂ ଉତ୍କଳୀୟ, ଅଥବା ତାହାଙ୍କର ଅଲଙ୍କାରଗୁରୁ ଉତ୍କଳୀୟ । ଭଣିତା ନବ୍ୟ ରୁଚି-ସମ୍ମତ ନୁହେଁ, ତେଣୁ ଅନେକେ ଏହା ପ୍ରତି ଅନାସ୍ଥା ପ୍ରକାଶ କରିଥାନ୍ତି । ସାହିତ୍ୟଦର୍ପଣର ପରିଚ୍ଛେଦ ଶେଷରେ ଯେଉଁ ଭଣିତା ଅଛି, ବହୁବର୍ଷ ଯାଏ ମୁଁ ତାହା ଉପେକ୍ଷା କରିଥିଲି । ଦର୍ପଣକାର କେଉଁ ଦେଶର ଲୋକ, ଏ ବିଷୟରେ ନାନାପ୍ରକାର ଚର୍ଚ୍ଚା ହେଉଁ ହେଉଁ ପୁରୀ ସଂସ୍କୃତ ବିଦ୍ୟାଳୟର ପ୍ରଧାନ ଅଧ୍ୟାପକ ସାମନ୍ତ ଶ୍ରୀ ବିଶ୍ୱନାଥ ମହାପାତ୍ର ଶର୍ମା ଅଳ୍ପଦିନ ପୂର୍ବେ ଉକ୍ତ ଭଣିତା ପ୍ରତି ମୋହର ଦୃଷ୍ଟି ଆକର୍ଷଣ କଲେ । ସେଥିରେ ଦେଖାଯାଏ "ଇତି ଶ୍ରୀମନ୍ନାରାୟଣ ଚରଣାରବିନ୍ଦ ମଧୁ ବ୍ରତ ସାହିତ୍ୟାର୍ଣ୍ଣବ କର୍ଣ୍ଣଧାର ଧ୍ୱନି ପ୍ରସ୍ଥାପନ ପରମାଚାର୍ଯ୍ୟକବିସୂକ୍ତି-ରତ୍ନାକରାଷ୍ଟାଦଶଭାଷାବାରବିଳାସିନୀଭୁଜଙ୍ଗ ସନ୍ଧିବିଗ୍ରହିକମହାପାତ୍ର ଶ୍ରୀ ବିଶ୍ୱନାଥ-କବିରାଜକୃତୌ ସାହିତ୍ୟଦର୍ପଣେ କାବ୍ୟସ୍ୱରୂପ ନିରୂପଣୋନାମ ପ୍ରଥମଃ ପରିଚ୍ଛେଦଃ । ସନ୍ଧିବିଗ୍ରହିକ ଓ ମହାପାତ୍ର ଉତ୍କଳର ରାଜଦତ୍ତ ଉପାଧି । ତନ୍ମଧ୍ୟରୁ ସନ୍ଧିବିଗ୍ରହିକ

ଉପାଧି ଆଜକାଲି ଆଦୌ ଦୃଷ୍ଟି ଗୋଚର ହେଉନାହିଁ । ମୁକୁର ନାମକ ମାସିକ-ପତ୍ରର ୧୩୨୮ ସାଲ ଏକାଦଶ ଓ ଦ୍ୱାଦଶ ସଂଖ୍ୟାରେ ସୁହୃଦ୍‌ବର ଶ୍ରୀ ମୃତ୍ୟୁଞ୍ଜୟ ରଥ ନରସିଂହଦେବ ସମ୍ବନ୍ଧୀ ଯେଉଁ ତାମ୍ରଲେଖ ବା ତାମ୍ରଶାସନର ପ୍ରତିଲିପି ପ୍ରକାଶ କରିଅଛନ୍ତି ସେଥିରୁ ଜଣାଯାଏ ଯେ ସେ ସମୟରେ ରାଜକର୍ମଚାରୀମାନଙ୍କୁ ସନ୍ଧିବିଗ୍ରହିକ ମହାପାତ୍ର, ସାନ୍ଧିବିଗ୍ରହିକ ପାତ୍ର, ସନ୍ଧିବିଗ୍ରହିକ, ସନ୍ଧିବିଗ୍ରହ ଏହି ଉପାଧିଗୁଡ଼ିକ ଗୁଣକର୍ମାନୁସାରେ ପ୍ରଦତ୍ତ ହେଉଥିଲା । ଏତନ୍ମଧ୍ୟରୁ କେବଳ ଶେଷୋକ୍ତ ଉପାଧି ଅପଭ୍ରଷ୍ଟ ହୋଇ ଆଜକାଲି ବାଲେଶ୍ୱର ଜିଲାରେ ହିଁ 'ରେମୁଣା-କଟକ'ରୁ ଅଦୂରବର୍ତ୍ତୀ ଗ୍ରାମମାନଙ୍କରେ "ସନ୍ଧିବିଗ୍ରହି" ଆକାରରେ କ୍ୱଚିତ୍ ଦେଖାଯାଏ । ରାଜଦତ୍ତ ସାମରିକ ଉପାଧି ଓଡ଼ିଶାରେ ସୁଲଭ । ବାହିନୀପତି, ଚମୂପତି, ସେନାପତି ଅନେକ ବଂଶରେ କୌଳିକ ହୋଇଅଛି । ପୁରୀ ଜିଲାର କୋମଳ କଳାନିପୁଣ ଶାସନୀବ୍ରାହ୍ମଣମାନଙ୍କଠାରେ ପୁଣ୍ଡା ଏହା ପ୍ରତି ପକ୍ଷପାତ ଦୃଷ୍ଟିଗୋଚର ହୁଏ । ଉତ୍ତରକବାଟ, ପଶ୍ଚିମକବାଟ ପରି ଉପାଧି ଉତ୍କଳ ପ୍ରଦେଶରେ ଅଲଭ୍ୟ ନୁହେଁ । ଆଜକାଲି ଅନେକେ ମହାପାତ୍ର ଉପାଧିରେ ସ୍ୱନାମ ଅଳଙ୍କୃତ କଲେ ହେଁ ଉତ୍କଳରେ 'ପତି' ସତ୍କୁଳୋଦ୍‌ଭବ ଗୁଣୀ ବ୍ରାହ୍ମଣଙ୍କୁ ପୂର୍ବକାଳରେ ଏହି ଉପାଧି ଦେଉଥିଲେ । କଳାକୁଶଳତାର ନିଦର୍ଶନ ସ୍ୱରୂପ ଏହା ଲବ୍‌ଧପ୍ରତିଷ୍ଠ ଶିଳ୍ପୀପ୍ରଭୃତିଙ୍କୁ ମଧ୍ୟ କ୍ୱଚିତ୍ ପ୍ରଦତ୍ତ ହେଉଥିଲା । ମାତ୍ର ସନ୍ଧିବିଗ୍ରହିକ ଓ ମହାପାତ୍ର ଏ ଦୁଇ ଉପାଧି ଏକାଧାରରେ ବ୍ରାହ୍ମଣେତର ଜାତିଠାରେ ଦେଖାଯାଉ ନାହିଁ । ଅନୁଲ୍ଲିଖିତ ବାକ୍-ପଟୁତା, ବୁଦ୍ଧିମତ୍ତା ଓ ବିବେକିତା ହେତୁରୁ ବ୍ରାହ୍ମଣମାନେ ବହୁସ୍ଥଳରେ ନାନାପ୍ରକାର ଦୌତକାର୍ଯ୍ୟ ଓ ମନ୍ତ୍ରଣାକାର୍ଯ୍ୟରେ ନିଯୁକ୍ତ ହେଉଥିଲେ ଏବଂ ଅଦ୍ୟାପି ନିଯୁକ୍ତ ହେଉଅଛନ୍ତି । ଆଲୋଚ୍ୟ ଉପାଧିଦ୍ୱୟର ପ୍ରଥମଟି ତାହାର ନିଦର୍ଶନ ଅଟେ । ସନ୍ଧିବିଗ୍ରହିକ ଓ ମହାପାତ୍ର ଉପାଧିଯୁଗଳରୁ ପ୍ରତୀତ ହୁଏ ବିଶ୍ୱନାଥ ସତ୍କୁଳୋଦ୍‌ଭବ ବ୍ରାହ୍ମଣ ଥିଲେ । ସେ କିମ୍ବା ତାଙ୍କ ପୂର୍ବପୁରୁଷରେ କେହି ସନ୍ଧିବିଗ୍ରହ ରୂପ ସାମରିକ ଦୌତକାର୍ଯ୍ୟରେ ଅଥବା ମନ୍ତ୍ରୀପଦରେ ନିଯୁକ୍ତ ଥିଲେ ; ନଚେତ୍ ରାଜା ବିଶ୍ୱନାଥ-ଙ୍କର ଓ ତାହାଙ୍କର ପିତାଙ୍କର ଗୁଣରେ ମୋହିତ ହୋଇ ଏହି ସାମରିକ ଉପାଧି ଅଳଙ୍କାର ସ୍ୱରୂପ ପ୍ରଦାନ କରିଥିଲେ । ଜୟପୁର ରାଜ୍ୟ ସଂସ୍କୃତ ବିଦ୍ୟାଳୟର ପ୍ରଧାନ ଅଧ୍ୟାପକ ଶ୍ରୀଦୁର୍ଗାପ୍ରସାଦ ଦ୍ୱିବେଦଙ୍କର ଯେଉଁ ମହାର୍ହ ଟିପ୍ପଣୀ ବୋମ୍ବାଇରେ ପ୍ରତିଷ୍ଠିତ "ନିର୍ଣ୍ଣୟସାଗର" ମୁଦ୍ରାଯନ୍ତ୍ରରେ ମୁଦ୍ରିତ ସାହିତ୍ୟଦର୍ପଣର ସଂସ୍କରଣରେ ନିହିତ ଦେଖାଯାଏ, ସେଥିରେ ଟିପ୍ପଣୀକାର ବିଶ୍ୱନାଥଙ୍କୁ ଉତ୍କଳଦେଶବାସୀ ସ୍ମାର୍ତ୍ତ ବୈଷ୍ଣବ ବୋଲି ନିର୍ଦ୍ଦେଶ କରିଅଛନ୍ତି । ବିଶ୍ୱନାଥଙ୍କର ବୈଷ୍ଣବତ୍ୱର ପ୍ରମାଣ ଉକ୍ତ ଟିପ୍ପଣୀରେ ବା ଅନ୍ୟତ୍ର ଦୃଷ୍ଟିଗୋଚର ହୋଇନାହିଁ । ଟିପ୍ପଣୀକାରଙ୍କର ଏହି ଅନୁମାନ ସର୍ବାଂଶରେ ଗ୍ରହଣୀୟ କି ନାହିଁ ସ୍ଥିର କରାଯାଇପାରୁ ନାହିଁ । ତଥାପି

ଯତ୍ନ ଓ ଶ୍ରମ ନିମନ୍ତେ ସେ ଅଶେଷ ଧନ୍ୟବାଦର ପାତ୍ର । ବିଶ୍ୱନାଥ ଯେ ଉତ୍କଳୀୟ, ତାହାର ଗୋଟିଏ କ୍ଷୁଦ୍ର ପ୍ରମାଣ ଏହି ଯେ ଶବ୍ଦର ଲକ୍ଷଣାଶକ୍ତିର ଉଦାହରଣରେ "କଳିଙ୍ଗଃ ସାହସିକଃ" ଏହି ସ୍ୱରଚିତ ବାକ୍ୟ ସେ ଦେଇଅଛନ୍ତି । ଏ ଉଦାହରଣ ଅନ୍ୟ ଗ୍ରନ୍ଥରେ ଦେଖାଯାଏ ନାହିଁ ।

ବିଶ୍ୱନାଥ ଉତ୍କଳର କେଉଁ ଅଞ୍ଚଳରେ ଓ କେଉଁ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ ତାହା ନିର୍ଣ୍ଣୟ କରିବାର କୌଣସି ଉପାୟ ଦେଖାଯାଏ ନାହିଁ । ଆଜିକାଲି ସଂସ୍କୃତଭାଷାରେ କାବ୍ୟ ଅଳଙ୍କାର ପ୍ରଭୃତିର ଚର୍ଚ୍ଚା ଓଡ଼ିଶାରେ ଯାହା ଦେଖାଯାଏ ତାହାର ଅଧିକାଂଶ ଆଧୁନିକ ପୁରୀଜିଲ୍ଲାରେ । ଅନ୍ୟତ୍ର ଯେ ଏ ଚର୍ଚ୍ଚା ନାହିଁ, ତାହା ନୁହେଁ । କଟକ ଓ ବାଲେଶ୍ୱର ଜିଲ୍ଲାରେ, ମେଦିନୀପୁର ଜିଲ୍ଲାର ଦକ୍ଷିଣାଂଶରେ ଏବଂ ଖଣ୍ଡପଡ଼ା, ଢେଙ୍କାନାଳ ପ୍ରଭୃତି ରାଜ୍ୟରେ ମଧ୍ୟ ସଂସ୍କୃତଭାଷାର ଚର୍ଚ୍ଚା ରହିଅଛି । ପ୍ରାଚୀନ କାଳରେ ଉତ୍କଳର କେଉଁ କେଉଁ ଅଂଶ ସଂସ୍କୃତଚର୍ଚ୍ଚା ନିମନ୍ତେ ବିଖ୍ୟାତ ଥିଲା ତାହାର ଉଲ୍ଲେଖ କୁତ୍ରାପି ଦୃଷ୍ଟିଗୋଚର ହୁଏ ନାହିଁ । ତେବେ ଯାଜପୁର ଯେ ସର୍ବାପେକ୍ଷା ପ୍ରାଚୀନ ସ୍ଥାନ ଏବଂ ସେଠାରେ ପୂର୍ବକାଳରେ ଯେ ବର୍ତ୍ତମାନ ଅପେକ୍ଷା ଅଧିକ ସଂସ୍କୃତଚର୍ଚ୍ଚା ଥିଲା, ଏଥିରେ ସନ୍ଦେହ ନାହିଁ । ଶ୍ରୋତାମାନଙ୍କ ମଧ୍ୟରୁ ଅନେକ ଅବଗତ ଥିବେ ଯେ ଚୈତନ୍ୟଦେବଙ୍କର ପିତାମହ ଯାଜପୁରବାସୀ ଜଣେ ପ୍ରସିଦ୍ଧ ଉତ୍କଳ-ବ୍ରାହ୍ମଣ ପଣ୍ଡିତ ଥିଲେ । ଉତ୍କଳର ବନପର୍ବତ-ସଙ୍କୁଳ ଅଞ୍ଚଳରେ ବର୍ତ୍ତମାନ ଯେଉଁ ରାଜ୍ୟଗୁଡ଼ିକ ଦେଖାଯାଉଅଛି ପ୍ରାଚୀନକାଳରେ ସେଗୁଡ଼ିକର ଅସ୍ତିତ୍ୱ ନ ଥିଲା । ସୁତରାଂ ତେତେବେଳେ ସେଠାରେ ବ୍ରାହ୍ମଣାଦି ଆର୍ଯ୍ୟ ଜାତିମାନଙ୍କର ଅବସ୍ଥାନ ବା ସଂସ୍କୃତଭାଷାର ଚର୍ଚ୍ଚାର ସମ୍ଭାବନା ନାହିଁ । ଅତଏବ ବିଶ୍ୱନାଥଙ୍କର ଜନ୍ମସ୍ଥାନ ଅନ୍ୱେଷଣ କଲାବେଳେ ଯାହାକୁ ଆଜିକାଲି ମୋଗଲବନ୍ଦି କହନ୍ତି, ତଦାନୀନ୍ତନ ଓଡ଼ିଶାର ସେହି ଅଂଶରେ ଅଥବା ତାହାର ନେଦିଷ୍ଟ ଅପର ସ୍ଥାନରେ ତାହା ଅନ୍ୱେଷଣ କରିବାକୁ ହେବ । ପୁରୀ ଜିଲ୍ଲାରେ ଅନେକଗୁଡ଼ିଏ ଶାସନ ଅଛି । ଶ୍ରୀକ୍ଷେତ୍ରଠାରୁ ସାତକୋଶ ମଧ୍ୟରେ ପୂର୍ବକାଳରେ ରାଜା ବା ରାଜପୁରୁଷମାନଙ୍କ କର୍ତ୍ତୃକ ଭିନ୍ନ ଭିନ୍ନ ସମୟରେ ସ୍ଥାପିତ କେତେଗୁଡ଼ିଏ ପ୍ରସିଦ୍ଧ ବ୍ରାହ୍ମଣଶାସନ ଅଛି । ଏପରି ଶୃଙ୍ଖଳାବଦ୍ଧ ସୁଦୃଶ୍ୟ ଶାସନ ଭାରତବର୍ଷରେ ଅନ୍ୟ କୁତ୍ରାପି ଅଛି ବୋଲି ମୋତେ ଜଣାନାହିଁ । ଏହି ଶାସନମାନଙ୍କ ମଧ୍ୟରେ ପୁରୀର ଉପକଣ୍ଠବର୍ତ୍ତୀ ବୀରପ୍ରତାପ-ପୁର ନାମାନ୍ତର ପରିଚିତ ଗୋପୀନାଥପୁର ଶାସନକୁ ଛାଡ଼ି ଦେଲେ ବୀରହରକୃଷ୍ଣପୁର ପୁରୀନଗରୀର ସର୍ବାପେକ୍ଷା ନିକଟବର୍ତ୍ତୀ । ସେଠାରେ ଏବଂ ସତ୍ୟବାଦୀର ସନ୍ନିହିତ ଶ୍ରୀରାମଚନ୍ଦ୍ରପୁର ଶାସନରେ ଦାସ-ସଞ୍ଜ୍ଞକ ବ୍ରାହ୍ମଣମାନଙ୍କ ବାସ ଦେଖାଯାଏ । ମାତ୍ର ଏ ପ୍ରବନ୍ଧର ଉତ୍ତରାଂଶରେ ଲକ୍ଷିତବ୍ୟ ନରସିଂହଦେବ ନାମଧାରୀ କଳିଙ୍ଗାଧିଶ୍ୱର-ମାନଙ୍କର ରାଜତ୍ୱ ବେଳକୁ ଏ ଦୁଇଟି ଶାସନ ବା ତନ୍ମଧ୍ୟରୁ କୌଣସି ଗୋଟିକର

ପ୍ରତିଷ୍ଠାନ ହୋଇଥିଲା କି ନାହିଁ ଏବଂ ତେତେବେଳେ କଳିଙ୍ଗ ଦେଶର ବା ତାହାର ନିକଟବର୍ତ୍ତୀ କେଉଁ କେଉଁ ସ୍ଥାନରେ ଦାସପଙ୍କ୍ତିକ ବ୍ରାହ୍ମଣମାନଙ୍କର ବସତି ଥିଲା, ତାହା କୌଣସି ସୂତ୍ରରୁ ଅଦ୍ୟାପି ଜଣାଯାଇ ନାହିଁ । ପ୍ରବନ୍ଧର ଏହି ଅଂଶ ଲିଖିତ ହେବା ଉତ୍ତାରେ ବିଶ୍ୱସ୍ତ ସୂତ୍ରରୁ ଅବଗତ ହେଲି ଯେ ବୀରହରକୃଷ୍ଣପୁର ଶାସନର ବୟଃକ୍ରମ ସ୍ୱୀରଶତ ବର୍ଷରୁ ଅନଧିକ ଅଟେ । ଶ୍ରୀରାମଚନ୍ଦ୍ରପୁରରେ ଯେଉଁ ଦାସମାନେ ବାସ କରନ୍ତି ସେମାନଙ୍କ ମଧ୍ୟରେ କିମ୍ବା ସଙ୍କ୍ରାନ୍ତର-ଶାସିତ ତଦନ୍ତ୍ୟ ଅନ୍ୟ ବ୍ରାହ୍ମଣ-ମାନଙ୍କଠାରେ ମହାପାତ୍ର ଉପାଧି ବର୍ତ୍ତମାନ ସମୟରେ ଆଦୌ ଦୃଷ୍ଟିଗୋଚର ହୁଏ ନାହିଁ । କିନ୍ତୁ ବୀରହରକୃଷ୍ଣପୁରବାସୀ ଅନେକଗୁଡ଼ିଏ ଦାସକୁଳ କ୍ରମାଗତ ମହାପାତ୍ର ଉପାଧିରେ ମଣ୍ଡିତ ।

ବିଶ୍ୱନାଥ ସ୍ୱୟଂ ମହାପଣ୍ଡିତ ଏବଂ ପଣ୍ଡିତ ବଂଶରେ ଜନ୍ମଗ୍ରହଣ କରିଥିଲେ । ସାହିତ୍ୟଦର୍ପଣ ପରିଚ୍ଛେଦାନ୍ତବର୍ତ୍ତୀ ଯେଉଁ ଭଣିତା ପୂର୍ବେ ଉଦ୍ଧୃତ ହୋଇଅଛି ସେଥିରୁ ପ୍ରତୀୟମାନ ହେବ ଯେ ବିଶ୍ୱନାଥ ଅଷ୍ଟାଦଶ ଭାଷାରେ ପାରଦର୍ଶିତା ଲାଭ କରିଥିଲେ । ଏପରି ଭାଷାଜ୍ଞାନ ନ ଥିଲେ ସାହିତ୍ୟଦର୍ପଣ ପରି ଉତ୍କୃଷ୍ଟ ଅଳଙ୍କାର-ଗ୍ରନ୍ଥ ତାହାଙ୍କର ଲେଖନୀରୁ ନିର୍ଗତ ହୋଇଥାନ୍ତା କି ? ତଦ୍‌ଭିନ୍ନ ରାଘବ-ବିଳାସ ମହାକାବ୍ୟ, କୁବଳୟାଶ୍ୱ ଚରିତ ନାମକ ପ୍ରାକୃତ ମହାକାବ୍ୟ, ଚନ୍ଦ୍ରକଳା ନାଟିକା, ପ୍ରଭାବତୀ ନାଟିକା, ପ୍ରଶସ୍ତିରତ୍ନାବଳୀ, ନରସିଂହବିଜୟ, କାବ୍ୟପ୍ରକାଶକ-ଦର୍ପଣ ଏହି ସାତ ଖଣ୍ଡି ଗ୍ରନ୍ଥ ସେ ପ୍ରଣୟନ କରିଥିଲେ । ବିଶ୍ୱନାଥଙ୍କର ଆଠଖଣ୍ଡ ଗ୍ରନ୍ଥମଧ୍ୟରୁ ନରସିଂହବିଜୟ ନାଟକ ଓ କାବ୍ୟପ୍ରକାଶ ଦର୍ପଣ ଗ୍ରନ୍ଥଦ୍ୱୟ ସାହିତ୍ୟଦର୍ପଣ ପରେ ରଚିତ ବୋଲି ନିର୍ଦ୍ଦିଷ୍ଟ ହୋଇଅଛି । ପ୍ରଶସ୍ତିରତ୍ନାବଳୀ ବିଶ୍ୱନାଥଙ୍କର ବହୁଭାଷାଜ୍ଞାନର ଅପର ନିଦର୍ଶନ । କବିରାଜ ଉପାଧି ବିଶ୍ୱନାଥଙ୍କର ପାଣ୍ଡିତ୍ୟର ପ୍ରକୃଷ୍ଟ ପ୍ରମାଣ ଅଟେ । ଆଜିକାଲି ଚିକିତ୍ସା-ବ୍ୟବସାୟୀ ମାନେ କବିରାଜ ପଦବାଚ୍ୟ । ମାତ୍ର ତେତେବେଳେ ଏହି ଉପାଧି ଆଧୁନିକ ବ୍ୟାପକତା ଓ ହୀନତା ପ୍ରାପ୍ତ ହୋଇଥିଲା ବୋଲି ବୋଧ ହୁଏ ନାହିଁ । ଉତ୍କଳେତର ପ୍ରଦେଶରେ ଦେଶୀୟ ଚିକିତ୍ସା-ବ୍ୟବସାୟୀ ଅନେକେ ସ୍ୱଦତ୍ତ ବା ତତ୍ତୁଲ୍ୟ କବିରଞ୍ଜନ ପ୍ରଭୃତି ଉପାଧିରେ ଆପଣା ନାମକୁ ମଣ୍ଡିତ କରୁଅଛନ୍ତି । କିନ୍ତୁ ବିଶ୍ୱନାଥଙ୍କର ଉପାଧି ମହାମଣି, ତାହା କାଚମୂଲ୍ୟରେ ବିକ୍ରୟ ନୁହେଁ । ତଦାନୀନ୍ତନ ପଣ୍ଡିତମାନେ ଅଥବା ରାଜା ତାହାଙ୍କର ଅସାଧାରଣ କାବ୍ୟଜ୍ଞାନ ଓ କବିତ୍ୱ ଦେଖି ତାହାଙ୍କୁ ଏହି ଅନନ୍ୟ-ସାଧାରଣ ଉପାଧିରେ ଅଳଂକୃତ କରିଥିଲେ । ତାହାଙ୍କର ପିତା ମହାପାତ୍ର ଚନ୍ଦ୍ରଶେଖର ସନ୍ଧିବିଗ୍ରହିକ ମଧ୍ୟ ମହାପଣ୍ଡିତ ଥିଲେ । ଦର୍ପଣର ଦ୍ୱିତୀୟ ପରିଚ୍ଛେଦରେ ଅଭିଧାମୂଳ ବ୍ୟଞ୍ଜନା ଉଦାହରଣରେ ବିଶ୍ୱନାଥ ଆପଣାର ପିତା ଚତୁର୍ଦ୍ଦଶ ଭାଷାରେ ପାରଦର୍ଶୀ ବୋଲି ପରିଚୟ ଦେଇଅଛନ୍ତି ।

ବିଶ୍ୱନାଥ ଲେଖିଅଛନ୍ତି—"ମମ ତାତପାଦାନାଂ ମହାପାତ୍ର ଚତୁର୍ଦ୍ଦଶ ଭାଷାବିଳାସିନୀଭୁଜଙ୍ଗ ମହାକବୀଶ୍ୱର ଶ୍ରୀ ଚନ୍ଦ୍ରଶେଖର ସାନ୍ଧିବିଗ୍ରହିକାଣାଂ ।" ଗ୍ରନ୍ଥଶେଷରେ ପୁଣି ବିଶ୍ୱନାଥ ଲେଖିଅଛନ୍ତି—

"ଶ୍ରୀ ଚନ୍ଦ୍ରଶେଖର ମହାକବି ଚନ୍ଦ୍ରସୂନୁ
ଶ୍ରୀ ବିଶ୍ୱନାଥ କବିରାଜକୃତଂ ପ୍ରବନ୍ଧଂ ।
ସାହିତ୍ୟ ଦର୍ପଣମମୁଂ ସୁଧିୟୋ ବିଲୋକ୍ୟ
ସାହିତ୍ୟତତ୍ତ୍ୱମଖିଳଂ ସୁଖମେବ ବିତ୍ତ ॥"

ଚନ୍ଦ୍ରଶେଖର ପୁଷ୍ପମାଳା ଓ ଭାଷାର୍ଣ୍ଣବ ଏହି ଗ୍ରନ୍ଥଦ୍ୱୟର ପ୍ରଣେତା ଥିଲେ । ବିଶ୍ୱନାଥଙ୍କର ପିତାମହଙ୍କ ବିଷୟରେ ପ୍ରାମାଣିକ କୌଣସି ଉଲ୍ଲେଖ ଦୃଷ୍ଟିଗୋଚର ହୋଇନାହିଁ । ମାତ୍ର ଚଣ୍ଡୀଦାସ ମମ୍ମଟଭଟ୍ଟଙ୍କ କୃତ କାବ୍ୟପ୍ରକାଶ ନାମକ ପ୍ରସିଦ୍ଧ ଅଳଙ୍କାର-ଗ୍ରନ୍ଥର ଟୀକା ତାହାଙ୍କର ଅନୁଜ କରିଥିଲେ । ବିଶ୍ୱନାଥଙ୍କର ପ୍ରପିତାମହଙ୍କର ମଧ୍ୟ କୌଣସି ଉଲ୍ଲେଖ ପ୍ରଚଳିତ ଗ୍ରନ୍ଥମାନଙ୍କରେ ଦେଖାଯାଏ ନାହିଁ । ବୃଦ୍ଧ ପ୍ରପିତାମହ ନାରାୟଣ ଦାସ ତତ୍କାଳରେ କଳିଙ୍ଗ ନାମରେ ଆଖ୍ୟାତ ଓଡ଼ିଶାର ଚକ୍ରବର୍ତ୍ତୀ ନରସିଂହଦେବଙ୍କ ସଭାରେ ପ୍ରଧାନ ପଣ୍ଡିତ ଥିଲେ । ସେତେବେଳେ ଧର୍ମଦତ୍ତ ନାମକ ଜଣେ ପଣ୍ଡିତ କଳିଙ୍ଗରାଜସଭାରେ ପ୍ରତିଷ୍ଠା ଲାଭ କରିଥିଲେ । ନାରାୟଣ ପାଣ୍ଡିତ୍ୟରେ ଯେ ଧର୍ମଦତ୍ତଙ୍କୁ ଜିଣିଥିଲେ, ତାହା ସାହିତ୍ୟଦର୍ପଣର ତୃତୀୟ ପରିଚ୍ଛେଦରେ ଧର୍ମଦତ୍ତଙ୍କର ଗ୍ରନ୍ଥରୁ ଉଦ୍ଧୃତ ନିମ୍ନଲିଖିତ ଶ୍ଲୋକରୁ ଜଣାଯାଏ—

"ରସେସାରଶ୍ଚମତ୍କାରଃ ସର୍ବତ୍ରାପ୍ୟନୁଭୂୟତେ
ତଚ୍ଚମତ୍କାରସାରତ୍ୱେ ସର୍ବତ୍ରାପ୍ୟଦ୍ଭୁତୋ ରସଃ
ତସ୍ମାଦଦ୍ଭୁତ ମେବାହକୃତୀ ନାରାୟଣୋରସଃ ।"

ଉପର୍ଯ୍ୟୁକ୍ତ ବିବରଣରୁ ଅନୁମାନ କରାଯାଏ ବିଶ୍ୱନାଥଙ୍କର କୌଳିକ ସଂଜ୍ଞା ଦାସ ଥିଲା । ବିଶ୍ୱନାଥ ଓ ତତ୍ପିତା ଚନ୍ଦ୍ରଶେଖରଙ୍କର ସମୟରେ ରାଜଦତ୍ତ ମହାର୍ହ ଉପାଧିଯୁଗଳ ସନ୍ଧିବିଗ୍ରହିକ ଓ ମହାପାତ୍ରରେ ତାହା ଲୀନ ହୋଇଗଲା । ବିଶ୍ୱନାଥ କୌଳିକ ଦାସ କି ଗୋତ୍ରାନ୍ତର-ସମ୍ଭୂତ ଦାସ, ତାହା ଏପର୍ଯ୍ୟନ୍ତ ନିର୍ଣ୍ଣୀତ ହୋଇନାହିଁ । ଉତ୍କଳ ବ୍ରାହ୍ମଣମାନଙ୍କ ମଧ୍ୟରେ ଦାସ ସଂଜ୍ଞା ପ୍ରଚଳିତ ଅଛି । ଏହା ଜାଣିଥିଲେ ପୂର୍ବୋକ୍ତ ଟିପ୍‌ପଣୀକାର ଦ୍ୱିବେଦ ମହାଶୟ ବିଶ୍ୱନାଥଙ୍କୁ ଶ୍ରାଦ୍ଧବୈଷ୍ଣବ ବୋଲି ତର୍କଣା କରି ନ ଥାନ୍ତେ । ଏହି ପ୍ରବନ୍ଧର ପୂର୍ବାଂଶରେ ପରିଲକ୍ଷିତ ରାଘବାନନ୍ଦ ମହାପାତ୍ରଙ୍କ ସହିତ ବିଶ୍ୱନାଥଙ୍କର ସମ୍ବନ୍ଧ ଅନିର୍ଦ୍ଦିଷ୍ଟ ହୋଇ ରହିଲା ।

ଓଡ଼ିଆ ଭାଷାରେ ବା ଭାଷାନ୍ତରରେ ଲିଖିତ ଓଡ଼ିଶାର ପ୍ରାମାଣିକ ଇତିହାସ ଦେଖାଯାଏ ନାହିଁ । ଏହାର ପ୍ରଧାନ କାରଣ ଏ ଦେଶରେ ଇତିହାସ ପ୍ରତି ଆଦରାଭାବ । ଇଂରାଜମାନଙ୍କର ରାଜତ୍ୱରେ ଇଂରାଜୀଭାଷାରେ ଯେଉଁ ତିନିଗୋଟି ଖଣ୍ଡ ଓଡ଼ିଶାର

ଇତିହାସ ଦେଖାଯାଏ, ତନ୍ମଧ୍ୟରେ ହଣ୍ଟର ସାହେବ ମହାଶୟଙ୍କ ପ୍ରଣୀତ ଓଡ଼ିଶାର ଇତିହାସ ଏବଂ ରାଜେନ୍ଦ୍ରଲାଲ ମିତ୍ରଙ୍କ ପ୍ରଣୀତ ଓଡ଼ିଶାର ପୁରାତତ୍ତ୍ୱ ଉଲ୍ଲେଖଯୋଗ୍ୟ ଅଟେ । ଏ ଦୁଇଶ୍ରେଣି ବିଭିନ୍ନ ପ୍ରଣାଳୀରେ ଲିଖିତ । ଓଡ଼ିଆଭାଷାରେ ମୁଦ୍ରିତ ଦୁଇଖଣ୍ଡ ମାତ୍ର ଇତିହାସ ଦେଖାଯାଏ । ତନ୍ମଧ୍ୟରୁ ଖଣ୍ଡିଏ ଖ୍ରୀଷ୍ଟିଆନ୍ ପାଦ୍ରି ସଟନ୍‌ଙ୍କ କୃତ, ଅପର ଖଣ୍ଡିକ ମହାତ୍ମା ପ୍ୟାରୀମୋହନ ଆଚାର୍ଯ୍ୟଙ୍କ କର୍ତ୍ତୃକ ସଂକଳିତ । ମାଦଳାପାଞ୍ଜି ସର୍ବାପେକ୍ଷା ଅଧିକ ପ୍ରାମାଣିକ ବୋଲି ଅନୁମାନ କରାଯାଏ । ତାହାକୁ ସ୍ପର୍ଶ କରିବା ତେଣିକି ଥାଉ, ଦର୍ଶନ କରିବା ମଧ୍ୟ କୋଟିକ ମଧ୍ୟରୁ ଗୋଟିକ ଭାଗ୍ୟରେ ଘଟିଥିବ ବୋଲି ବୋଧ ହେଉନାହିଁ । ଏପରି ସ୍ଥଳରେ ବିଶ୍ୱନାଥଙ୍କର କାଳନିର୍ଦ୍ଦେଶ ଯେ କୃଚ୍ଛ୍ର-ସାଧ୍ୟ ହେବ, ସେଥିରେ ସନ୍ଦେହ ନାହିଁ । କାବ୍ୟପ୍ରକାଶ ଦର୍ପଣ ନାମକ ବିଶ୍ୱନାଥଙ୍କର କୃତ ଯେଉଁ ଗ୍ରନ୍ଥର ଉଲ୍ଲେଖ ଏଥିପୂର୍ବେ ହୋଇଅଛି ସେଥିରେ ସେ ଲେଖିଅଛନ୍ତି "ଶ୍ରୀକଳିଙ୍ଗ ଭୂମଣ୍ଡଳାଖଣ୍ଡଳମହାରାଜାଧିରାଜଶ୍ରୀନରସିଂହଦେବସଭାୟାଂ ଧର୍ମଦତ୍ତଂ ସ୍ଥଗୟନ୍ତଃ ସକଳ ସହୃଦୟ ଗୋଷ୍ଠୀଗରିଷ୍ଠ କବିପଣ୍ଡିତାଷ୍ଟଦିବୃଦ୍ଧପ୍ରପିତାମହଶ୍ରୀମନ୍-ନାରାୟଣଦାସପାଦା······ଇତ୍ୟାଦି । ଏଥିରୁ ଜଣାଯାଏ ଯେ ବିଶ୍ୱନାଥଙ୍କର ବୃଦ୍ଧ ପ୍ରପିତାମହ ନାରାୟଣ ଦାସ କଳିଙ୍ଗରାଜ (ଓଡ଼ିଶାର ରାଜା) ନରସିଂହଦେବଙ୍କ ସମସାମୟିକ ଥିଲେ । ଏ ଦେଶରେ ଗଙ୍ଗବଂଶରେ ନରସିଂହ ନାମଧାରୀ ପାଞ୍ଚଜଣ ରାଜାଙ୍କର ଉଲ୍ଲେଖ ଦେଖାଯାଏ । ତନ୍ମଧ୍ୟରୁ ପ୍ରଥମ ଜଣକ ଲାଙ୍ଗୁଲା ନରସିଂହଦେବ ଖ୍ରୀଷ୍ଟୀୟ ୧୨୩୭ରୁ ୧୨୮୨ ଅବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ବୋଲି ହଣ୍ଟରଙ୍କ ଓ ଓ ପ୍ୟାରୀମୋହନଙ୍କ ଇତିହାସରୁ ଜଣାଯାଏ । ଏହାଙ୍କ ରାଜତ୍ୱର ପ୍ରଧାନ କୀର୍ତ୍ତି କୋଣାର୍କ ଦେଉଳ । ଅନ୍ତ୍ୟ ବା ଉପାନ୍ତ୍ୟ ଜଣକ ପ୍ରତାପ ନରସିଂହ । ତାହାଙ୍କ ରାଜତ୍ୱକାଳ ୧୩୦୯ରୁ ୧୩୨୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ହୋଇଅଛି । ଏ ଦିଗ୍‌ବିଜୟ ନିମନ୍ତେ ପ୍ରସିଦ୍ଧ ଥିଲେ । ଦାକ୍ଷିଣାତ୍ୟରେ ଯେଉଁ ନଗର ବର୍ତ୍ତମାନ ବରାଙ୍ଗୁଲ ବୋଲି ପରିଚିତ, ପ୍ରତାପ ନରସିଂହ ଦିଲ୍ଲୀର ମୁସଲମାନ ସମ୍ରାଟ୍ ଆଲାଉଦ୍ଦିନଙ୍କ ସେନାପତି ମାଲିକ କାଫୁରଙ୍କ ସାହାଯ୍ୟରେ ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀର ପ୍ରାରମ୍ଭରେ ତାହା ଜୟ କରିଥିଲେ । ସମ୍ଭବତଃ ଏହି ଘଟନାକୁ ଅବଲମ୍ବନ କରି ବିଶ୍ୱନାଥ ନରସିଂହ-ବିଜୟ ନାଟକ ରଚନା କରିଥିଲେ । ନରସିଂହ ନାମଧାରୀ ମଧ୍ୟବର୍ତ୍ତୀ ରାଜାମାନଙ୍କର ରାଜତ୍ୱକାଳରେ ଉଲ୍ଲେଖଯୋଗ୍ୟ କୌଣସି ଘଟନା ଦେଖାଯାଏ ନାହିଁ । ନାରାୟଣ ଦାସ ଲାଙ୍ଗୁଲା ନରସିଂହଦେବଙ୍କର ସଭାରେ ପଣ୍ଡିତ ଥିଲେ ବୋଲି ପ୍ରତୀତ ହେଉଅଛି । ତାହା ହେଲେ ବିଶ୍ୱନାଥ ପ୍ରତାପ ନରସିଂହ ଦେବଙ୍କ ସମସାମୟିକ ହେବା ସମ୍ଭାବ୍ୟ । ରାଜାମାନଙ୍କ ରାଜତ୍ୱକାଳ ନିର୍ଦ୍ଦେଶ କରିବା ବିଷୟରେ ଐତିହାସିକମାନଙ୍କ ମଧ୍ୟରେ କିୟତ୍ ପରିମାଣରେ ଅନୈକ୍ୟ ଲକ୍ଷିତ ହେଲେ ହେଁ ବିଶ୍ୱନାଥ ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀର ଶେଷ ପାଦ ଓ ଚତୁର୍ଦ୍ଦଶ ଶତାବ୍ଦୀର

ପ୍ରଥମ ପାଦ ବା ପ୍ରଥମାର୍ଦ୍ଧର ଲେକ ବୋଲି ନିଃସନ୍ଦେହରୂପେ ଅନୁମାନ କରାଯାଏ । ସୁତରାଂ ସାହିତ୍ୟ-ଦର୍ପଣର ବୟଃକ୍ରମ ପ୍ରାୟ ଛଅଶତ ବର୍ଷ ହେଲା । ପ୍ରବନ୍ଧର ପୂର୍ବାଂଶରେ ଉଦ୍ଧୃତ ବାକ୍ୟ "କଳିଙ୍ଗଃସାହସିକଃ", ସାହିତ୍ୟଦର୍ପଣର ବୟଃକ୍ରମର ବ୍ୟତିରେକୀ ପ୍ରମାଣ ଅଟେ ।

କାବ୍ୟାଦର୍ଶ, କାବ୍ୟପ୍ରକାଶ ଓ ସାହିତ୍ୟଦର୍ପଣ ଏହି ତିନିଖଣ୍ଡ ପୂର୍ଣ୍ଣାଙ୍ଗ ଅଳଙ୍କାରଗ୍ରନ୍ଥ ମଧ୍ୟରେ ଆଦର୍ଶ ବୟୋଜ୍ୟେଷ୍ଠ, ଦର୍ପଣ କନିଷ୍ଠ ମାତ୍ର ଗୁଣରେ ଗରିଷ୍ଠ । ଦର୍ପଣରେ ଆଦର୍ଶ ଓ ପ୍ରକାଶର ନାମୋଲ୍ଲେଖ ଦେଖାଯାଏ । କାବ୍ୟପ୍ରକାଶର ଆଧୁନିକ ଟୀକାକାର ମତାନ୍ତର ସ୍ଥଳରେ ଦର୍ପଣର ମତ ବ୍ୟକ୍ତ କରି 'ଇତିନବ୍ୟାଃ' ବୋଲି କଟାକ୍ଷ ବା ଉଲ୍ଲେଖ କଲେ ହେଁ ମୂଳ ଗ୍ରନ୍ଥରେ ଏପରି ଉଲ୍ଲେଖ ଦେଖାଯାଏ ନାହିଁ । ପ୍ରସିଦ୍ଧ ପ୍ରତ୍ନତତ୍ତ୍ୱବିତ୍ ରାଜେନ୍ଦ୍ରଲାଲ ମିତ୍ର କୋଣାର୍କର ଇତିବୃତ୍ତରେ କାବ୍ୟ-ପ୍ରକାଶ ଖ୍ରୀଷ୍ଟୀୟ ନବମ ଶତାବ୍ଦୀର ଗ୍ରନ୍ଥ ବୋଲି ଅବାନ୍ତର ଭାବରେ ଉଲ୍ଲେଖ କରି-ଅଛନ୍ତି । ଏହି କାଲୋଲ୍ଲେଖ ସମୀଚୀନ ହେଉ ବା ନ ହେଉ, କାବ୍ୟପ୍ରକାଶ ଯେ ଦର୍ପଣର ପୂର୍ବବର୍ତ୍ତୀ ତାହା ଅଭ୍ୟନ୍ତର ପ୍ରମାଣ-ସିଦ୍ଧ । ଏ ତିନୋଟି ଅଳଙ୍କାର-ଗ୍ରନ୍ଥର ପରିଚ୍ଛେଦ ତୁଳନା କଲେ ଦେଖାଯିବ ଆଦର୍ଶର ପ୍ରଣାଳୀ ଏକପ୍ରକାର, ପ୍ରକାଶ ଓ ଦର୍ପଣର ପ୍ରଣାଳୀ ଆଉ ଏକପ୍ରକାର । ଆଦର୍ଶର ଭାଷା ସାଧାରଣତଃ ପ୍ରସାଦଗୁଣ-ବିଶିଷ୍ଟ, ପାରିଭାଷିକ ଶବ୍ଦର ବ୍ୟୁତ୍ପତ୍ତି-ଲବ୍ଧ ଅର୍ଥ ସହିତ ପରିଭାଷାର ସାମଞ୍ଜସ୍ୟ ରକ୍ଷିତ ହୋଇଅଛି, ମାତ୍ର ଉଦାହରଣଗୁଡ଼ିକ ପ୍ରାୟ ସବୁଗୁଡ଼ିକ ଗଢ଼ା ହୋଇଅଛି । ଆଦର୍ଶକାର ଶିଷ୍ଟ କାବ୍ୟରୁ ଉଦାହରଣ ଦେଇନାହାନ୍ତି । ପ୍ରକାଶ ଓ ଦର୍ପଣର ଲେଖା ଏକ ପ୍ରଣାଳୀର ବୋଲି ଉକ୍ତ ହୋଇଅଛି । ଦର୍ପଣର ଭାଷା ଅପେକ୍ଷାକୃତ ଅବିଶଦ ହେଲେ ହେଁ ପରିଭାଷା ଅଧିକ ନ୍ୟାୟସଙ୍ଗତ ବା ବୈଜ୍ଞାନିକ । ଏଥିପାଇଁ ଆର୍ଯ୍ୟାବର୍ତ୍ତର ସର୍ବତ୍ର ସାହିତ୍ୟଦର୍ପଣର ଆଦର ଏତେ ଅଧିକ । ଏତଦ୍‌ଭିନ୍ନ ଅନ୍ୟ କେତେଗୁଡ଼ିଏ ଅଳଙ୍କାର ଗ୍ରନ୍ଥ ସଂସ୍କୃତଭାଷାରେ ଅଛି । ଯଥା—(୧) ଶୌଦ୍ଧୋଦନି ସୂତ୍ର, (୨) ବାଗ୍‌ଭଟାଳଙ୍କାର (୩) ବାମନସୂତ୍ରବୃତ୍ତି (୪) ଭୋଜଦେବକୃତ ସରସ୍ୱତୀ କଣ୍ଠାଭରଣ, (୫) ମହିମଭଟ୍ଟକୃତ ବ୍ୟକ୍ତିବିବେକ, (୬) ଅଭିନବ ଗୁପ୍ତକୃତ ଧ୍ୱନ୍ୟାଲୋକ-ଲୋଚନ, (୭) ପୀୟୂଷବର୍ଷକୃତ ଚନ୍ଦ୍ରାଲୋକ, (୮) ଆପ୍ୟଦୀକ୍ଷିତକୃତ କୁବଳୟାନନ୍ଦ, (୯) ଗୋବିନ୍ଦଠକ୍‌କର କୃତ କାବ୍ୟପ୍ରଦୀପ, (୧୦) ଜଗନ୍ନାଥକୃତ ରସଗଙ୍ଗାଧର, (୧୧) କେଶବ ମିଶ୍ରକୃତ ଅଳଙ୍କାରଶେଖର, (୧୨) ପ୍ରଭାକରକୃତ ଅଳଙ୍କାର-ରହସ୍ୟ ।

କାବ୍ୟର ପରିଭାଷା କିଏ କିପରି ଲେଖିଅଛନ୍ତି ଦେଖିବା ହେଉନ୍ତୁ—

ବାମନ— ଗୁଣାଲଙ୍କାରଯୁକ୍ତୌ ଶବ୍ଦାର୍ଥୌ କାବ୍ୟଂ ।

ମମ୍ମଟ ଓ ପ୍ରଭାକର— ଅଦୋଷାଦ୍ୟଧିକ ବିଶେଷଣଯୁକ୍ତୌ ତୌ

ସରସ୍ୱତୀ କଣ୍ଠାଭରଣରେ ଭୋଜ— ନିର୍ଦ୍ଦୋଷଂ ଗୁଣାଲଙ୍କାରରସବନ୍ତ୍
ବାକ୍ୟଂ କାବ୍ୟଂ

ବାଗ୍ଭଟ— ଗୁଣାଲଙ୍କରଣ୍ଠିତ ରସୋପେତଃ ସାଧୁଶବ୍ଦାର୍ଥସନ୍ଦର୍ଭଃ କାବ୍ୟଂ

ଚନ୍ଦ୍ରାଲୋକରେ ପୀୟୂଷବର୍ଷ— ନିର୍ଦ୍ଦୋଷଂ ଗୁଣାଲଙ୍କାରଲକ୍ଷଣସ୍ତିତବୃତ୍ତିମତ୍
ବାକ୍ୟଂକାବ୍ୟଂ

ଶୌଦ୍ଧୋଦନୀ— ରସାଦିମଦ୍ ବାକ୍ୟଂ କାବ୍ୟଂ

କାବ୍ୟାଦର୍ଶରେ ଦଣ୍ଡୀ— ଇଷ୍ଟାର୍ଥୋପେତା ପଦାବଳୀ କାବ୍ୟଂ

ରସଗଙ୍ଗାଧରରେ ଜଗନ୍ନାଥ— ରମଣୀୟାର୍ଥପ୍ରତିପାଦକଃ ଶବ୍ଦଃ କାବ୍ୟଂ

ବ୍ୟକ୍ତିବିବେକରେ ମହିମଭଟ୍ଟ— ଧ୍ୱନ୍ୟାତ୍ମକଂ ବାକ୍ୟଂ କାବ୍ୟଂ

ଅଲଙ୍କାରଶେଖରରେ କେଶବ ମିଶ୍ର— ରସାଲଙ୍କାରଯୁକ୍ତଂ ସୁଖବିଶେଷ-
ସାଧନଂ ବା କାବ୍ୟଂ

ସାହିତ୍ୟଦର୍ପଣରେ— ବାକ୍ୟଂ ରସାତ୍ମକଂ କାବ୍ୟଂ

ଏ ପ୍ରଦେଶରେ ସଂସ୍କୃତ କାବ୍ୟ, ଅଲଙ୍କାର, ବ୍ୟାକରଣ, ଦର୍ଶନ ପ୍ରଭୃତିର ଚର୍ଚ୍ଚା ବହୁକାଳରୁ ଅଛି । ଏ ଦୁର୍ଦ୍ଦିନରେ ମଧ୍ୟ ସଂସ୍କୃତଭାଷାରେ କାବ୍ୟାଲଙ୍କାର ପ୍ରଭୃତି ବିଷୟରେ ଗ୍ରନ୍ଥରଚନା ଦେଖାଯାଉଅଛି । ଜ୍ୟୋତିର୍ବିଦ୍ୟାରେ ପରଲୋକଗତ ସାମନ୍ତ ଚନ୍ଦ୍ରଶେଖର ସିଂହଙ୍କର ଖ୍ୟାତି ପ୍ରାଚ୍ୟ ମହାଦେଶ ଅତିକ୍ରମ କରି ପାଶ୍ଚାତ୍ୟ ମହାଦେଶର ପଶ୍ଚିମ ସୀମା ସ୍ପର୍ଶ କରିଅଛି । ଶ୍ରୀ ମୁକୁନ୍ଦପୁର ଶାସନର ସ୍ୱର୍ଗତ ସାମନ୍ତ ରାଜଗୁରୁ ମହାପାତ୍ରଙ୍କ ପ୍ରଣୀତ ଅଲଙ୍କାର ଚିନ୍ତାମଣି ନାମଧେୟ ଅଲଙ୍କାର ଗ୍ରନ୍ଥ, ପୁରୀ ସଂସ୍କୃତ ବିଦ୍ୟାଳୟର ପ୍ରଧାନ ଅଧ୍ୟାପକ ସାମନ୍ତ ବିଶ୍ୱନାଥ ମହାପାତ୍ରଙ୍କ କୃତ ସାବିତ୍ରୀପରିଣୟ ନାଟକ, କାଞ୍ଚୀବିଜୟ କାବ୍ୟ, ସରସ୍ୱତୀବିଳାସ ଅଲଙ୍କାର, ଏବଂ ମହାମହୋପାଧ୍ୟାୟ ସଦାଶିବ ମିଶ୍ରଙ୍କ ସ୍ମୃତି ଏଠାରେ ଉଲ୍ଲେଖଯୋଗ୍ୟ । ବୀର-ହରକୃଷ୍ଣପୁରବାସୀ ଶ୍ରୀ ଭୁବନେଶ୍ୱର ରଥଶର୍ମାଙ୍କ କାବ୍ୟରଚନା ମଧ୍ୟ ପ୍ରଶଂସାର୍ହ । ସାହିତ୍ୟ ଦର୍ପଣରେ ଅଲଙ୍କାର ଶାସ୍ତ୍ରର ଏବଂ ସିଦ୍ଧାନ୍ତଦର୍ପଣରେ ଜ୍ୟୋତିଃଶାସ୍ତ୍ରର ଅନୁଶୀଳନର ପରାକାଷ୍ଠା ପ୍ରତିବିମ୍ବିତ ରହିଅଛି । ଏ ଦୁଇ କ୍ଷେତ୍ରରେ ବିଶ୍ୱନାଥ ଓ ଚନ୍ଦ୍ରଶେଖର କ୍ଷେତ୍ରପାଳ ରୂପେ ସମାସୀନ । ଅମର ଇଂରେଜ କବି ବାଇରନ୍ ଏ ସଭାରେ ଉପସ୍ଥିତ ଥିଲେ ସେ ଏହି ଦୁଇ କ୍ଷେତ୍ର ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି କହନ୍ତେ—

"These fields, their stories not unknown
Arise, and make again your own."

ଆଧୁନିକ ଉତ୍କଳ ପ୍ରଦେଶରେ ଓ ଉତ୍କଳଭାଷୀ ଅନ୍ୟ ପ୍ରଦେଶରେ ଜୀବନର ବସନ୍ତକାଳ ଯେଉଁମାନଙ୍କର ଉଦ୍ୟମ ଓ ଉଦୟର ଅନୁକୂଳ, ସେମାନଙ୍କୁ ମୋହର

ନିବେଦନ—ବ୍ରହ୍ମ ଉପାସନା ଓ ବିଶ୍ୱପ୍ରୀତି ତୁଳକ୍ୟ ସ୍ୱଦେଶବତ୍ସଲତା କଳ୍ପବୃକ୍ଷର ଗୋଟିଏ ମହାଶାଖା । ଆପଣମାନେ ଏହି ମହାଶାଖା ଅବଲମ୍ବନ ଓ ହୃଦୟରେ ଉଚ୍ଚାକାଙ୍‌କ୍ଷା ପୋଷଣ କରି ଏବଂ ଉଚ୍ଚ ଆଦର୍ଶ ପ୍ରତି ସ୍ଥିର ଲକ୍ଷ୍ୟ ରଖି ଅଧ୍ୟବସାୟ ସହକାରେ କର୍ମକ୍ଷେତ୍ରରେ ଅଗ୍ରସର ହେଉନ୍ତୁ । ସଦ୍‌ଗୁଣ ପୁଣ୍ୟ ବା ଗୁଣକୁ ଆଦର, ଏବଂ ଅପୁଣ୍ୟ ବା ଦୋଷକୁ ଉପେକ୍ଷା କରିବା ପାଇଁ ପତଞ୍ଜଳି ଉପଦେଶ ଦେଇ-ଅଛନ୍ତି । ଯେଉଁମାନେ ଗୁରୁ ବା ଆଦର୍ଶସ୍ଥାନୀୟ, ସେମାନଙ୍କର ଦୋଷ ଉପେକ୍ଷଣୀୟ ଓ ଗୁଣ ଗ୍ରହଣୀୟ, ଏହା ବୋଲିବା ବାହୁଲ୍ୟ ମାତ୍ର । ଯଦି ଏହି ଅଭିଶପ୍ତ ଉତ୍କଳ ଭୂମିରେ ମର୍ତ୍ତ୍ୟ ମଧ୍ୟରେ ଆପଣମାନଙ୍କୁ ଆଦର୍ଶ ନ ମିଳେ ତେବେ ଆପଣାର ହୃଦୟବେଦୀକୁ ନିର୍ମଳ ଓ ପବିତ୍ର କରି ମାନସୀ ଦେବତା ସମ୍ମୁଖରେ ତାହା ସ୍ଥାପନ କରନ୍ତୁ ଏବଂ "ଅତ୍ରାଗଚ୍ଛ ଅତ୍ରାଗଚ୍ଛ ଇହତିଷ୍ଠ ଇହତିଷ୍ଠ" ଏହି ମନ୍ତ୍ରଦ୍ୱାରା ଦେବତାଙ୍କର ଆବାହନ କରି ଫଳୋଦୟ ପର୍ଯ୍ୟନ୍ତ ତାହାଙ୍କର ଧ୍ୟାନ, ଧାରଣା ଓ ଆରାଧନାରେ ନିଯୁକ୍ତ ରହନ୍ତୁ । ତାହା କଲେ ଉତ୍କଳରେ ଦ୍ୱିତୀୟୋଦ୍ଧବ ଦର୍ପଣର ପ୍ରକାଶ ମାନବମଣ୍ଡଳୀର ଦୃଷ୍ଟିଗୋଚର ହେବ ଏବଂ ଉତ୍କଳର ଲୁପ୍ତ ଗୌରବର ଉଦ୍ଧାର କିୟତ୍ ପରିମାଣରେ ହେଲେ ସାଧିତ ହେବ ।

(ଉତ୍କଳ ସାହିତ୍ୟ ସମାଜର ନବମ ବର୍ଷର ଦ୍ୱିତୀୟ ଅଧିବେଶନରେ ପଠିତ ଏବଂ ଆଲୋଚିତ । ତା ୧୬-୧୨-୧୯୨୧)

---

## ୧୨—ଅଭିଭାଷଣ

ଉତ୍କଳଭାଷୀ ଭୂଖଣ୍ଡ ରାଜନୈତିକ ଓଡ଼ିଶା ଅପେକ୍ଷା ଯେ ବୃହତ୍ତର, ଏହା ସମସ୍ତେ ଅବଗତ ଅଛନ୍ତି । ଗଞ୍ଜାମ ଜିଲ୍ଲା ପ୍ରାକୃତିକ ଉତ୍କଳର ଗୋଟିଏ ପ୍ରଧାନ ଅଂଶ । ତଦ୍‌ଭିନ୍ନ ଜୟପୁର, ବାଲାସପୁର, ସିଂହଭୂମ, କାନ୍ଥି, ସଂକ୍ଷେପରେ ମେଦିନୀପୁର ଜିଲ୍ଲାର ଦକ୍ଷିଣାଂଶ ପ୍ରଭୃତିର ଅଧିବାସୀବର୍ଗ ଓଡ଼ିଆ ବା ପ୍ରଧାନତଃ ଓଡ଼ିଆ । ପ୍ରାକୃତିକ ଉତ୍କଳର ଏହି ଅଙ୍ଗଚ୍ଛେଦ ଓଡ଼ିଆ ଜାତିର ଉନ୍ନତିର ଗୋଟିଏ ଅନ୍ତରାୟ ହୋଇଅଛି । ଗଞ୍ଜାମ ଜିଲ୍ଲାରେ ଆମ୍ଭମାନଙ୍କର ଯେଉଁ ଭାଇମାନେ ବାସ-କରୁଅଛନ୍ତି, ସେମାନେ ଆମ୍ଭମାନଙ୍କ ସହିତ ଏକ ଶାସନାଧୀନ ହୋଇ ବାସକରିବା ପାଇଁ ବହୁକାଳରୁ ସର୍ବଦା ବ୍ୟାକୁଳ । ଏ ଅବସ୍ଥାର ପରିବର୍ତ୍ତନ ଆମ୍ଭମାନଙ୍କ ହାତରେ ନାହିଁ, ଶାସନକର୍ତ୍ତାମାନଙ୍କ ହାତରେ ଅଛି । ଏହି ପରିବର୍ତ୍ତନ ପାଇଁ ଅନେକ

ସମୟରେ ଆନ୍ଦୋଳନ ହୋଇଅଛି ; ବର୍ତ୍ତମାନ ସୁଦ୍ଧା ଆନ୍ଦୋଳନ ଚାଲିଅଛି । ଏହି ଆନ୍ଦୋଳନ ପ୍ରୋକ୍ତ ବ୍ୟାକୁଳତାର ସାକ୍ଷ୍ୟ ପ୍ରଦାନକରୁଅଛି । *

ଜାଗରଣର ଓ ଅଧ୍ୟବସାୟର ଅଭାବ ଆଉ ଯୋଡ଼ାଏ ଅନ୍ତରାୟ । ଏହି ଅନ୍ତରାୟ ମାତୃଭାଷା ପକ୍ଷରେ ଯେପରି ଅନ୍ୟ ଯାବତୀୟ ବିଷୟର ଉନ୍ନତି ପକ୍ଷରେ ସେହିପରି । ମୋହ ଆଳସ୍ୟର ସନ୍ତାନ ଅଥବା ଜନକ । ତମୋଗୁଣ ସୁତରାଂ ଉନ୍ନତିର ଘୋର ଶତ୍ରୁ । ଏହା ମନୁଷ୍ୟର ମନକୁ ତମିସ୍ରାଚ୍ଛନ୍ନ କରିରଖେ । କୃପାମୟଙ୍କ କୃପାରୁ ମାତୃଭାଷାର ଉନ୍ନତିରେ ଜାଗରଣର ଲକ୍ଷଣ ବର୍ତ୍ତମାନ ଦେଖା ଯାଉଅଛି । ଏହି ମହାସଭାରେ ଉପସ୍ଥିତ ଉତ୍କଳ-ଜନନୀର କୃତୀ ସନ୍ତାନମାନେ ଏହି ଜାଗରଣର ସହାୟ ଅଟନ୍ତି ।

ଏହି ଜାଗରଣର ଶ୍ରେଷ୍ଠ ସାକ୍ଷୀ ଏହି ପବିତ୍ର ଓ ମହତ୍ ଅନୁଷ୍ଠାନ, ଏହି ଉତ୍କଳ ସାହିତ୍ୟ ସମାଜ । ଏହାଙ୍କ ଆହ୍ୱାନରେ ମୋପରି ଅଯୋଗ୍ୟ ବ୍ୟକ୍ତି ଆଜି ଏହି ଆସନ ଗ୍ରହଣ କରି ଯଥାଶକ୍ତି କର୍ତ୍ତବ୍ୟ ପାଳନ କରିବାକୁ ସାହସୀ ହୋଇଅଛି । ଏହି ସମାଜର ବୟଃକ୍ରମ ବିଂଶତି ବର୍ଷ, ସୁତରାଂ ଏହା ତାରୁଣ୍ୟରେ ପଦାର୍ପଣ କରିଅଛି ମାତ୍ର । ଏହାର ଅଗ୍ରଜ 'ଆଲୋଚନା ସଭା' କଟକ ଟ୍ରେନିଂ ସ୍କୁଲ ସହିତ ସଂଲଗ୍ନ ଥିଲା । କାର୍ଯ୍ୟ ଓ ପରିସର ବିଷୟରେ ଏ ଦୁଇ ସଭା ମଧ୍ୟରେ ବିସ୍ତୀର୍ଣ୍ଣ ପ୍ରଭେଦ ପରିଲକ୍ଷିତ ହୁଏ । ସମ୍ପୃକ୍ତ ଏତିକି ମାତ୍ର ଯେ 'ଆଲୋଚନା ସଭା'ରେ (ଅବଶ୍ୟ କ୍ଷୁଦ୍ର ସୀମା ମଧ୍ୟରେ) ଉତ୍କଳ ସାହିତ୍ୟ ଚର୍ଚ୍ଚା ହେଉଥିଲା ।

ସାହିତ୍ୟ ସମାଜରେ ଏହି ଚର୍ଚ୍ଚା ବୃହଦାକାର ଧାରଣ କରିଅଛି । ଏବଂ ଯେଉଁମାନେ ପ୍ରଥମୋକ୍ତ ସଭାର ଆଦ୍ୟ ସଭ୍ୟ ସେମାନଙ୍କ ମଧ୍ୟରୁ ଅଧିକାଂଶ ଏହି ସମାଜର ମଧ୍ୟ ଆଦ୍ୟ ସଭ୍ୟ । ଏହି ସମାଜର କତିପୟ ସଭ୍ୟ ଏହାର କାର୍ଯ୍ୟକୁ ଜୀବନରେ ଗୋଟିଏ ବ୍ରତ କରି ଜ୍ୱଳନ୍ତ ଉତ୍ସାହରେ କର୍ମକ୍ଷେତ୍ରରେ ଅଗ୍ରସର ହେଉ-ଅଛନ୍ତି । 'ଆଲୋଚନା ସଭା'ର ସୃଷ୍ଟି ସମୟରେ ସେମାନଙ୍କର ଧୂଳିଖେଳ ସମାପ୍ତ ହୋଇ ନ ଥିବ ।

'ସାହିତ୍ୟ' ଶବ୍ଦର ଅର୍ଥ ଏକ ନୁହେଁ । ପୂର୍ବେ ଏହି ଶବ୍ଦର ଅର୍ଥ ଥିଲା କାବ୍ୟ । ବହୁ ଆଲୋଚନାଶୀଳ ପଣ୍ଡିତ ସଭା ବର୍ତ୍ତମାନ ଏହି ଅର୍ଥରେ ହିଁ ସାହିତ୍ୟ ଶବ୍ଦକୁ ଗ୍ରହଣ କରୁଅଛନ୍ତି । ପୂର୍ବକାଳରେ ଆଳଙ୍କାରିକ ପଣ୍ଡିତମାନେ ମଧ୍ୟ ସେହି ଅର୍ଥରେ ହିଁ ଏ ଶବ୍ଦକୁ ଗ୍ରହଣ କରୁଥିଲେ । ପୂର୍ବେ ଅନ୍ୟ ଭାଷାରେ ଯେପରି, ଓଡ଼ିଆ ଭାଷାରେ

---

* ୧୯୨୭ ଖ୍ରୀଷ୍ଟାବ୍ଦରେ ଗଞ୍ଜାମ ଜିଲା ମାନ୍ଦ୍ରାଜ ପ୍ରଦେଶର ଅନ୍ତର୍ଗତ ଥିଲା ।

ସଙ୍କଳନକର୍ତ୍ତା

ମଧ୍ୟ ସେହିପରି, କାବ୍ୟ ବ୍ୟତିରେକେ ଅନ୍ୟ କୌଣସି ପ୍ରକାର ସାହିତ୍ୟ ନ ଥିଲା । ଭାବ ଭାଷାର ଜନକ ; ଇନ୍ଦ୍ରିୟ-ଲବ୍ଧ ଜ୍ଞାନ ଭାବର ଉଦ୍ଦୀପକ । ଆବିଷ୍କାର ଓ ଉଦ୍ଭାବନ ଦ୍ୱାରା ନୂତନ ଜ୍ଞାନ ଲବ୍ଧ ହେବାରୁ ତାହା ମାନବମନରେ ନାନାଭାବର ଉଦ୍ଦୀପନା କରେ । ଏହାଦ୍ୱାରା ଭାଷାରାଜ୍ୟ ବିସ୍ତୀର୍ଣ୍ଣ ହୁଏ ଏବଂ ନୂତନ ସାହିତ୍ୟର ସୃଷ୍ଟି ହୁଏ । ଏହି ଉକ୍ତି ସବୁ ଭାଷା ପ୍ରତି ପ୍ରଯୋଜ୍ୟ । ମାତ୍ର, ସାହିତ୍ୟସେବୀ ନାନା ଶାସ୍ତ୍ରାନୁଶୀଳନରେ ବ୍ରତୀ ଓ ଲେଖନୀ-ଧାରଣରେ କ୍ଷମ ମୁଷ୍ଟିମେୟ ଓଡ଼ିଆ ଏ ପର୍ଯ୍ୟନ୍ତ ଓଡ଼ିଶାର ଚତୁଃସୀମା ଭେଦକରି, ବିଦେଶ-ଗମନ କରି ନ ଥିବାରୁ କାବ୍ୟାତିରିକ୍ତ ଉତ୍କଳ ସାହିତ୍ୟ ବିରଳ ପରିଲକ୍ଷିତ ହୁଏ ।

ଅନେକଗୁଡ଼ିଏ ଭାଷାର ଆଦିକାବ୍ୟମାନ ଆଦିରସାତ୍ମକ ବା ଆଦିରସ-ପ୍ରଧାନ । ରାମାୟଣ-ମହାଭାରତ ମହାକାବ୍ୟଦ୍ୱୟ ବିଶେଷ ବିଧିର ଅନ୍ତର୍ଗତ । ଉତ୍ତରକାଳରେ କାବ୍ୟମାନଙ୍କରୁ ଆଦିରସ ଯେ ତିରୋହିତ ହୋଇଅଛି, ତାହା ନୁହେଁ । ବର୍ତ୍ତମାନ ସୁଦ୍ଧା କବି-ଲେଖନୀ ଆଦିରସ-କାବ୍ୟ ପ୍ରସବ କରୁଅଛି । କବି-ଲେଖନୀ ଆଦି-ରସରେ ଭାସି ଯାଇ ସମୟସମୟରେ ସତ୍ୟର ସୀମା, ମର୍ଯ୍ୟାଦାର ସୀମା ଲଙ୍ଘନ କରେ । ଜୟଦେବ ଲାଳିତ୍ୟରେ କବିକୁଳତିଳକ ହେଲେହେଁ ସତ୍ୟର ସୀମା ବହୁପରିମାଣରେ ଲଙ୍ଘନ କରିଅଛନ୍ତି ବୋଲି ପ୍ରତୀତ ହୁଏ । ଭଞ୍ଜକବି ମର୍ଯ୍ୟାଦାର ସୀମା ଲଙ୍ଘନ କରିବାର ଗୋଟିଏ ପ୍ରଧାନ ଉଦାହରଣ । ସୀମା ମଧ୍ୟରେ ଆଦିରସ ଉପାଦେୟ, ସନ୍ଦେହ ନାହିଁ । ତାହା ହୋଇ ନ ଥିଲେ, ଏହା ରସ ମଧ୍ୟରେ ସ୍ଥାନ ପ୍ରାପ୍ତ ହୋଇ ନ ଥାନ୍ତା । ମାତ୍ର ସୀମା ଅତିକ୍ରମ କଲେ ତାହା ଅଶ୍ଳୀଳତାରେ ପରିଣତ ହୁଏ । ଖର୍ଜ୍ଜୁର-ରସ ଆଦରଣୀୟ, ମାତ୍ର ବିକୃତ ହେଲେ ତାହା ତାଡ଼ି ଆଖ୍ୟା-ପ୍ରାପ୍ତ ଓ ଘୃଣ୍ୟ ହୁଏ ।

କାଳ ପରିବର୍ତ୍ତନଶୀଳ; ସବୁ ବିଷୟରେ କାଳ ପରିବର୍ତ୍ତନ ସଂଘଟନ କରେ । ଏହି କାଳ ମାନବର, ମାନବଜାତିର ରୁଚିରେ ପରିବର୍ତ୍ତନ ଘଟାଇ ଆସୁଅଛି । ଏକ ସମୟରେ ଯାହା ପରମାଦର ଲାଭ କରୁଥିଲା, କାଳକ୍ରମେ ତତ୍ପ୍ରତି ଅନାଦର ବା ଅନାସ୍ଥା ଦୃଷ୍ଟିଗୋଚର ହୁଏ । ବିଭିନ୍ନ ଶ୍ରେଣୀରେ ସାହିତ୍ୟ ପ୍ରତି ପାଠକ-ମଣ୍ଡଳୀର ଆଦରର ସେହିପରି ପରିବର୍ତ୍ତନ ଦୃଷ୍ଟିଗୋଚର ହୋଇଆସୁଅଛି । ଶକ୍ତିଶାଳୀ ଲେଖକ ବ୍ୟକ୍ତିବିଶେଷର ରୁଚିରେ ଯେପରି ପରିବର୍ତ୍ତନ ସମ୍ପାଦନ କରନ୍ତି, ଜାତି-ବିଶେଷର ରୁଚିରେ ସେହିପରି ନବଯୁଗର ପ୍ରବର୍ତ୍ତନ କରନ୍ତି । ଇଂରେଜ-ମାନଙ୍କ ଦେଶରେ ପଦ୍ୟ-କାବ୍ୟରେ ଲବ୍ଧ ପ୍ରତିଷ୍ଠ ସାର୍ ଓ୍ୱାଲ୍ଟର୍ ସ୍କଟ୍ ଏହାର ଉଦାହରଣ ସ୍ଥଳ । ସେ ଉଦୀୟମାନ ଯୁବା କବି ବାଇରନଙ୍କ ପ୍ରତିଭାରେ ହ୍ରାସ-ପ୍ରାପ୍ତ ହୋଇ ପଦ୍ୟକାବ୍ୟରଚନା ପରିତ୍ୟାଗପୂର୍ବକ ଲବ୍ଧ ହସ୍ତତାରେ ବହୁ ଗଦ୍ୟ ଉପନ୍ୟାସ ପ୍ରଣୟନ ଓ ପ୍ରକାଶ କରି ତତ୍କାଳୀନ ପାଠକ ସାଧାରଣଙ୍କର ରୁଚି

ଜନ୍ମାଇବାରେ କୃତୀ ହେଲେ ଏବଂ ତତ୍ସଙ୍ଗେ ଲକ୍ଷ ଲକ୍ଷ ଟଙ୍କା ଋଣ ପରିଶୋଧ କରିବାକୁ ସମର୍ଥ ହେଲେ । ଉତ୍କଳ ସାହିତ୍ୟରେ ଆଜଯାଏ ତାଦୃଶ ହିବସର ପ୍ରଭାତ ଦୃଷ୍ଟିପଥାରୂଢ଼ ହୋଇନାହିଁ । ମାତ୍ର କରୁଣାମୟ ବିଧାତାଙ୍କର କୃପା ହେଲେ ଉତ୍ତର-ପୁରୁଷ ପ୍ରଭାତ-ତାରାର ସୁମଧୁର ଜ୍ୟୋତି ଅବଲୋକନ କରିବେ ।

ସକଳଯୁଗରେ ସର୍ବଦେଶରେ ଧର୍ମରେ ହେଉ, କାବ୍ୟରେ ହେଉ, ସୁକୁମାର ଶିଳ୍ପରେ ହେଉ, ଯେ କୌଣସି ବିଷୟରେ ହେଉ, ଯେଉଁମାନେ କୃତୀ, ସେମାନେ କଳା ପେନ ଜନ୍ମଗ୍ରହଣ କରିଥାନ୍ତି । ଅମର କବି ରାଧାନାଥ ରାୟ ଥରେ କଥା-ପ୍ରସଙ୍ଗରେ କହିଲେ—**A good teacher like a good poet is born, not made.**" ଅର୍ଥାତ୍, ସୁ-କବି ପରି ସୁ-ଅଧ୍ୟାପକ (କଳା ପେନ) ଜନ୍ମିଥାନ୍ତି ; ତାଙ୍କୁ, କେହି ଗଢ଼ିପାରେ ନାହିଁ । ଏହି ମନ୍ତବ୍ୟ କେବଳ ଅଧ୍ୟାପନା ଓ କାବ୍ୟରଚନାରେ ନୁହେଁ, ସକଳ ବିଷୟରେ ପ୍ରଯୋଜ୍ୟ ଅଟେ । କବି କହନ୍ତୁ, ଦାର୍ଶନିକ କହନ୍ତୁ, ବକ୍ତା କହନ୍ତୁ, ଶିଳ୍ପନିପୁଣ ବ୍ୟକ୍ତି କହନ୍ତୁ, ବୈଜ୍ଞାନିକ କହନ୍ତୁ, ଧର୍ମ-ପ୍ରବର୍ତ୍ତକ କହନ୍ତୁ—ସର୍ବବିଧ କୃତୀ ଯୁଗଜନ୍ମା ଓ ଯୁଗପ୍ରବର୍ତ୍ତକ ଅଟନ୍ତି । ସାହିତ୍ୟରେ ଯେଉଁମାନେ କୃତୀ, ସେମାନେ ଏ ନିୟମର ବହିର୍ଭୂତ ନୁହନ୍ତି । ଉତ୍କଳ ସାହିତ୍ୟରେ ଏପରି ବ୍ୟକ୍ତି ଜନ୍ମଗ୍ରହଣ କରିଅଛନ୍ତି କି ନାହିଁ, ଶ୍ରୋତୃବର୍ଗ ତାହାର ବିଚାର କରିବେ । ଜନ୍ମ ଗ୍ରହଣ କରି ନ ଥିଲେ ଆବିର୍ଭାବର ଅନୁକୂଳ କାଳ ଉପସ୍ଥିତ ହେଲେ ସେ ନିଶ୍ଚୟ ଜନ୍ମଗ୍ରହଣ କରିବେ ।

ଉତ୍କଳ ସାହିତ୍ୟର ଧାରାବାହିକ ପୂର୍ଣ୍ଣାଙ୍ଗ ଇତିହାସ ଏପର୍ଯ୍ୟନ୍ତ ପ୍ରକାଶିତ ହୋଇନାହିଁ । ତଥାପି ଯେଉଁମାନେ ଏହି ସାହିତ୍ୟର ଅନୁଶୀଳନରେ ବ୍ରତୀ, ସେମାନେ ଜାଣନ୍ତି, ଆମ୍ଭମାନଙ୍କ ମାତୃଭାଷାର ସାହିତ୍ୟରେ କ'ଣ ଅଛି ଏବଂ କି ଅଭାବ ଅଛି । ଅଭାବ କାହିଁକି, ବହୁତ ଅଭାବ ଯେ ଅଛି, ଏଥିରେ ଅଣୁ ମାତ୍ର ସନ୍ଦେହ ନାହିଁ । ଆଜିକାଲି ଏ ଦେଶର ପ୍ରାୟ ଯାବତୀୟ ଶିକ୍ଷିତ ବ୍ୟକ୍ତି ନ୍ୟୂନାଧିକ ପରିମାଣରେ ଇଂରାଜୀ ଭାଷାରେ ଅଭିଜ୍ଞତା ଲାଭ କରିଅଛନ୍ତି । ଶିକ୍ଷିତ ଓଡ଼ିଆମାନେ ଅନେକ ବଙ୍ଗଳା ଭାଷାର ଚର୍ଚ୍ଚା କରିଥାନ୍ତି । କତିପୟ ଶିକ୍ଷିତ ବ୍ୟକ୍ତି ସଂସ୍କୃତଭାଷାର ଅନୁରାଗୀ ହୋଇ ତଦ୍‌ଭାଷାରେ ରଚିତ କାବ୍ୟ-ଅଲଙ୍କାର-ଦର୍ଶନ ଶାସ୍ତ୍ରାଦିର ଚର୍ଚ୍ଚାରେ ମଧ୍ୟ ରତ । ଏହି ଭାଷାମାନଙ୍କର ଆଲୋଚନାରୁ ଶିକ୍ଷିତ ଓଡ଼ିଆମାନେ ମାତୃଭାଷାରେ ଅଭାବ ଅନାୟାସରେ ଅନୁଭବ କରିପାରୁଥିବେ । ଏହି ଅଭାବ ପୂରଣ କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ । ଏହି ଅଭାବ-ପୂରଣକୁ ଜୀବନର ଗୋଟିଏ ବ୍ରତ କରିଥିବାର ଲକ୍ଷଣ କୌଣସି କୌଣସି ବ୍ୟକ୍ତିଙ୍କଠାରେ ଦୃଷ୍ଟିଗୋଚର ହେଲାଣି ।

କେହି କେହି ପୁରାତନର ପକ୍ଷପାତୀ ; ତନ୍ମଧ୍ୟରୁ କେହି ଅନ୍ଧଭାବରେ ପକ୍ଷପାତୀ । ପକ୍ଷାନ୍ତରେ, କେହି କେହି ପୁରାତନକୁ ହେୟ ମନେ କରି ଅବଜ୍ଞାର

ଚକ୍ଷୁରେ ଦେଖନ୍ତି ଏବଂ ନୂତନର ଏକାନ୍ତ ପକ୍ଷପାତୀ ଅଟନ୍ତି । ବିଜ୍ଞ ବ୍ୟକ୍ତି ଏ ଉଭୟ କୋଟୀ ପରିତ୍ୟାଗ କରି ଧୀର ଚିତ୍ତରେ ଯୋଗ୍ୟ ମଧ୍ୟମ ଭାବ ଅବଲମ୍ବନ କରନ୍ତି । ଯେଉଁମାନେ ପୁରାତନର ପକ୍ଷପାତରେ ଅଭିଭୂତ, ସେମାନେ କହନ୍ତି, "ଆମ୍ଭମାନଙ୍କର ନ ଥିଲା କଅଣ ?" ସେମାନଙ୍କ ମତରେ ଆମ୍ଭମାନଙ୍କର ଅଭାବ ନାହିଁ । ମାତ୍ର ଏତାଦୃଶ ଅନ୍ଧ ପକ୍ଷପାତର ସମୟ ଓଡ଼ିଶାରେ ବୋଧହୁଏ ଆଉ ନାହିଁ । ବର୍ତ୍ତମାନ ଚକ୍ଷୁ ଫିଟିଲାଣି ; ଶିକ୍ଷିତ ଓଡ଼ିଆମାନେ ମାତୃଭାଷାରେ ଅଭାବ ଉତ୍ତମରୂପେ ହୃଦୟଙ୍ଗମ କଲେଣି । କର୍ମକ୍ଷେତ୍ରରେ ପ୍ରବେଶ କରି ଅଧ୍ୟବସାୟ ସହକାରେ ଅଭାବ ପୂରଣକରିବାପାଇଁ ମାତୃଭାଷା ବର୍ତ୍ତମାନ ସନ୍ତାନଙ୍କୁ ଆହ୍ୱାନ କଲାଣି ।

କାବ୍ୟକୁ ସଂସ୍କୃତ ଭାଷାର ଆଲଙ୍କାରିକମାନେ ଚତୁର୍ବର୍ଗ-ଫଳଦାୟୀ ବୋଲି ଉଲ୍ଲେଖ କରିଅଛନ୍ତି । ଏହି ଉକ୍ତିର ଯାଥାର୍ଥ୍ୟ ବିଚାର କରିବାର ପ୍ରୟୋଜନ ବର୍ତ୍ତମାନ ନାହିଁ । ତେବେ ଏଥିରେ ଅନ୍ତତଃ ଏତିକି ସତ୍ୟ ନିହିତ ଅଛି ଯେ, ସତ୍‌କାବ୍ୟ-ପ୍ରଣୟନରେ ସିଦ୍ଧହସ୍ତ ବ୍ୟକ୍ତି ସୁକୌଶଳରେ ସ୍ୱ କାବ୍ୟରେ ଅତି ଉପାଦେୟ ଉପଦେଶମାନ ଯଥାଯୋଗ୍ୟ ସ୍ଥାନରେ ସନ୍ନିବେଶିତ କରି ମାନବ-ହୃଦୟକୁ ବିମଳ ଆନନ୍ଦରେ ପୂର୍ଣ୍ଣ କରିବା ସଙ୍ଗେ ସଙ୍ଗେ ତାହାର ଆଧ୍ୟାତ୍ମିକ ଉନ୍ନତି ସାଧନ କରନ୍ତି । କାବ୍ୟର ଏହି ମାନଦଣ୍ଡ ପ୍ରୟୋଗ କଲେ ଇଂରାଜୀ ଭାଷାର ଅନେକଗୁଡ଼ିଏ, ବଙ୍ଗଳାଭାଷାର କେତେଗୁଡ଼ିଏ କାବ୍ୟ ଆବର୍ଜନାରେ ନିକ୍ଷିପ୍ତ ହେବ । ସଂସ୍କୃତଭାଷାରେ ପ୍ରଥମେ ବେଦ ଓ ଉପନିଷଦ୍ ରଚିତ ହୋଇଥିଲା ଏବଂ ପଣ୍ଡିତମାନେ ତାହାର ଚର୍ଚ୍ଚା ଓ ଅଧ୍ୟାପନାରେ ସମୟ ଅତିବାହିତ କରିଥିଲେ । ଯୁଗଜନ୍ମା ଓ ଯୁଗପ୍ରବର୍ତ୍ତକ ବାଲ୍ମୀକି ବେଦଉପନିଷଦ୍‌କୁ ଜନ-ସାଧାରଣର ଅତି ଦୁର୍ବୋଧ ଜାଣି, ଆଦିକାବ୍ୟ ରାମାୟଣ-ପ୍ରଣୟନରେ ବ୍ରତୀ ହେଲେ ।

ଓଡ଼ିଶାରେ ଅଦ୍ୟାପି କାବ୍ୟାଦରିର ସ୍ଥାୟୀ ଲେଖା ପ୍ରାୟ ଦୃଷ୍ଟିଗୋଚର ହୁଏ ନାହିଁ । ସେଥିରେ ପୁଣି କୌଣସି କାବ୍ୟ ବାଲ୍ମୀକିରାମାୟଣର ସମାନ ସ୍ଥାନ ଅଧିକାର କରିଥିବା ମୋତେ ଜଣା ନାହିଁ । ତାହାର କାରଣ ଏହି ଯେ, ପ୍ରାଚୀନ ଓଡ଼ିଆ କାବ୍ୟପ୍ରଣେତା ସମସ୍ତେ ଅଥବା ସେମାନଙ୍କର ଅଧିକାଂଶ ପ୍ରଥମାବସ୍ଥାରେ ସଂସ୍କୃତଭାଷାର ଚର୍ଚ୍ଚା କରି, ପଶ୍ଚାଦ୍ ଓଡ଼ିଆ ଭାଷାରେ ଲେଖନୀ ଧାରଣ କଲେ । ସୁତରାଂ ସଂସ୍କୃତଭାଷାରେ ଯାହାର ଯେଉଁ ଆଦର୍ଶ ଥିଲା, ତାହାକୁ ସେ ଅନ୍ତଶ୍ଚକ୍ଷୁର ସମକ୍ଷରେ ରଖି ଆପଣା କାବ୍ୟ ରଚନା କଲେ । ଏହାର ଯେ ବିଶେଷ-ବାଧ ନାହିଁ, ତାହା ମୁଁ ଅବଶ୍ୟ କହୁ ନାହିଁ । ଭଞ୍ଜକବି ନୈଷଧକାରଙ୍କର ପଟ୍ଟଶିଷ୍ୟ ; ତେଣୁ ବୈଦେହୀଶବିଳାସରେ ନୈଷଧର ଛାୟା ପଡ଼ିଅଛି । ତାହା ବୋଲି ଭଞ୍ଜେ ଯେ ପ୍ରସାଦଗୁଣସମ୍ପନ୍ନ ପଦାବଳୀ ରଚନା କରିବାକୁ କ୍ଷମ ନ ଥିଲେ, ତାହା ନୁହେଁ । ତାଙ୍କ ପ୍ରଣୀତ "କୋଟି ବ୍ରହ୍ମାଣ୍ଡସୁନ୍ଦରୀ" ପ୍ରଭୃତି କତିପୟ କାବ୍ୟର କୌଣସି

କୌଣସି ସ୍ଥାନରେ ପ୍ରସାଦଗୁଣ ସନ୍ଦର୍ଶନ କଲେ ତାହା ଆଧୁନିକ ଲେଖା ବୋଲି ପାଠକଙ୍କର ଭ୍ରମ ହେବ । ବିଦଗ୍ଧଚିନ୍ତାମଣିର ପ୍ରଣେତା ବୈଷ୍ଣବ କବି ; ତାଙ୍କ କାବ୍ୟରେ ବୈଷ୍ଣବ ଧର୍ମଶାସ୍ତ୍ରର ବା ବୈଷ୍ଣବ-ଦର୍ଶନର ଗ୍ରନ୍ଥି ପତିତ ହୋଇଅଛି । ପକ୍ଷାନ୍ତରେ, ଦୀନକୃଷ୍ଣ ଏପରି ଆଦର୍ଶର ପକ୍ଷପାତୀ ନୁହନ୍ତି ବୋଲି ତାଙ୍କର ପଦାବଳୀ ସୁବୋଧ ହୋଇଅଛି । ଜଗନ୍ନାଥ ଦାସ ସ୍ୱତନ୍ତ୍ର ଶ୍ରେଣୀର ଲେଖକ । ସେ ସ୍ୱୟଂ ବୈଷ୍ଣବ ; ବ୍ୟାସଦେବଙ୍କ ପ୍ରଣୀତ ସଂସ୍କୃତଭାଷାର ଶ୍ରୀମଦ୍‌ଭାଗବତକୁ ସେ ଓଡ଼ିଆ ପଦ୍ୟାକାରରେ ଲିପିବଦ୍ଧ କରିଯାଇଅଛନ୍ତି । ସଂସ୍କୃତ ଶ୍ରୀମଦ୍‌ଭାଗବତର ପ୍ରାଣ ଜଗନ୍ନାଥ ଦାସଙ୍କ ଭାଗବତରେ ଅଛି । କିନ୍ତୁ ଅସ୍ଥି, ମଜ୍ଜା ପ୍ରଭୃତି ବିଭିନ୍ନ । ଅନେକଙ୍କ ମତରେ ଓଡ଼ିଆଭାଷାର ଏହି ଭାଗବତ ଇଂରାଜୀ ଭାଷାର ଷ୍ଟାଣ୍ଡାର୍ଡ଼ ବାଇବଲ୍‌ (Standard Bible)ର ସ୍ଥାନ ଅଧିକାର କରିଅଛି । ଭଞ୍ଜ, ଦୀନକୃଷ୍ଣ, ସାରଳା ଦାସ, ଜଗନ୍ନାଥ ଦାସ, ସାମନ୍ତସିଂହାର ପ୍ରଭୃତିଙ୍କ ପୂର୍ବବର୍ତ୍ତୀ ଯୁଗର ଲେଖକମାନଙ୍କର ଲେଖା ଆଜି ଯାଏ ମୁଦ୍ରିତ ଓ ପ୍ରକାଶିତ ହୋଇ ନାହିଁ । କେବେ ତାହା ପ୍ରକାଶିତ ହେଲେ, ତତ୍‌ ସହିତ ଟୀକା ବା ଅନୁବାଦ ଆବଶ୍ୟକ ହେବ ।

ସାହିତ୍ୟ ଦର୍ପଣ-ସ୍ୱରୂପ । ସେଥିରେ ଆମ୍ଭେମାନେ ସମାଜର ଓ ସମସାମୟିକ ଘଟନାବଳୀର ପ୍ରତିବିମ୍ବ ଅବଲୋକନ କରୁଁ । କୌଣସି ଭାଷାର ଧାରାବାହିକ ସାହିତ୍ୟ ଲିପିବଦ୍ଧ ଓ ପ୍ରକାଶିତ ହେଲେ, ସେଥିରୁ ତୀକ୍ଷ୍ଣଧୀ ପାଠକ ଅନେକ ବିଷୟ ଅବଗତ ହୋଇପାରିବେ । ଭାଷାର ଇତିହାସ, ବ୍ୟାକରଣ ଓ କୋଷର ପ୍ରଣୟନରେ ଏହା ପ୍ରଧାନ ସହାୟ । ସମାଜର ରୀତିନୀତି, ବୈଷୟିକ, ମାନସିକ, ଆଧ୍ୟାତ୍ମିକ ନାନାବିଷୟରେ ପ୍ରଧାନ ପ୍ରଧାନ ଅନୁଷ୍ଠାନ ଓ ଯୁଗୋଚିତ ସଂସ୍କାର ବା ପରିବର୍ତ୍ତନ ସାହିତ୍ୟରେ ନ୍ୟୂନାଧିକ ପରିମାଣରେ ପ୍ରତିବିମ୍ବିତ ହୁଏ । ଜାତୀୟ ସାହିତ୍ୟ ଗୋଟିଏ ମହାଭଣ୍ଡାର ଏବଂ ଏହି ମହାଭଣ୍ଡାରରେ ଅନେକ ରତ୍ନ ସହିତ ଅନେକ ଚିହ୍ନ ସଂରକ୍ଷିତ ହୋଇଥାଏ । ବ୍ୟାସପ୍ରଣୀତ ମହାଭାରତ ଖଣ୍ଡିଏ ମହାକାବ୍ୟ ମାତ୍ର ଗୋଟିଏ ଜାତିର ସମଗ୍ର ସାହିତ୍ୟ ନୁହେଁ । ଏହି ମହାକାବ୍ୟ ଖଣ୍ଡିକରୁ ହିଁ ତତ୍କାଳୀନ ସମାଜର ଅବସ୍ଥା, ରୀତିନୀତି, ଶସ୍ତ୍ରବିଦ୍ୟା ଓ ଶାସ୍ତ୍ରରେ ପାରଦର୍ଶିତା, ଆଧ୍ୟାତ୍ମିକ ଚର୍ଚ୍ଚା, ମନୁଷ୍ୟମାନଙ୍କର ରୁଚି ପ୍ରଭୃତି ନାନାବିଷୟ ଆମ୍ଭେମାନେ ଅବଗତ ହେଉଁ । ଏହି ମହାସମୁଦ୍ରରୁ ଚୁଳୁଏ ଚୁଳୁଏ ଜଳ ଗ୍ରହଣ କରି ପୂର୍ବକାଳର ଓ ଏ କାଳର ଅନେକ ସୁଲେଖକ ମହାକବି ଆଖ୍ୟା ପ୍ରାପ୍ତ ହୋଇ ଅଛନ୍ତି ।

ଦେହ ନଶ୍ୱର, ଦେହୀ ଅନଶ୍ୱର । ସ୍ଥୂଳ ଶରୀର କ୍ଷୟପ୍ରାପ୍ତ ହୋଇ ନଷ୍ଟ ହୋଇଯାଏ ; ଆତ୍ମାର ବିନାଶ ନାହିଁ । ଏହା ଦାର୍ଶନିକ ପଣ୍ଡିତମାନଙ୍କର ମତ ।

ଜନସାଧାରଣ ମଧ୍ୟ ଏ ମତ ଗ୍ରହଣ କରନ୍ତି । ପ୍ରାୟ ପ୍ରତ୍ୟେକେ ଅପର କୌଣସି ବ୍ୟକ୍ତିଙ୍କର ଆଧିପତ୍ୟ ସ୍ୱୀକାର କରିଥାନ୍ତି, ଯେଉଁ ବ୍ୟକ୍ତିଙ୍କ ଦ୍ୱାରା ଶାସିତ ହୁଅନ୍ତି । ଏକ ଗୃହରେ ଏକାନ୍ନରେ ଯେଉଁମାନେ ବାସକରନ୍ତି, ସେମାନେ ଗୃହକର୍ତ୍ତାଙ୍କର ଅଧୀନ ହୋଇଥାନ୍ତି । ରାଜ୍ୟରେ ବାସ କଲେ ରାଜାର ଅଧୀନ ହେବାକୁ ହୁଏ । ଯେ ବ୍ୟକ୍ତି କୌଣସି ସମାଜର ଅନ୍ତର୍ଗତ, ସେ ସେହି ସମାଜର ନେତାଙ୍କର ନେତୃତ୍ୱ ସ୍ୱୀକାର କରେ । ଯେଉଁଠାରେ ଦୀକ୍ଷାଗ୍ରହଣପ୍ରଥା ପ୍ରଚଳିତ ଅଛି, ସେଠାରେ ଶିଷ୍ୟ-ମାନଙ୍କୁ ଦୀକ୍ଷାଗୁରୁଙ୍କର ଅଧୀନ ହେବାକୁ ହୁଏ । ବ୍ୟକ୍ତିର ଜୀବନରେ, ସମଷ୍ଟି, ଜାତି ବା ସମାଜରେ ଜଣଜଣଙ୍କର ପ୍ରଭାବ ବା କର୍ତ୍ତୃତ୍ୱ ପରିଲକ୍ଷିତ ହୋଇଥାଏ । ମାନବଜୀବନରେ ଧର୍ମ-ପ୍ରବର୍ତ୍ତକଙ୍କ ପ୍ରଭାବ ସର୍ବାପେକ୍ଷା ଅଧିକ ଓ ସ୍ପଷ୍ଟ । ଧର୍ମପ୍ରବର୍ତ୍ତକଙ୍କ ପରେ କବିଙ୍କର, ସାହିତ୍ୟରଥୀଙ୍କର ଆସନ । ମାତ୍ର କବି ବା ସାହିତ୍ୟରଥୀଙ୍କର ପ୍ରଭାବ ଧର୍ମ-ପ୍ରବର୍ତ୍ତକଙ୍କ ପ୍ରଭାବ ପରି ସୁସ୍ପଷ୍ଟ ନୁହେଁ । ବାଗ୍ମୀ ଓ କବି ପ୍ରାୟ ସମଶ୍ରେଣୀର ଲୋକ ; ପ୍ରଭେଦ ଏହି ଯେ ବାଗ୍ମୀଙ୍କ ପ୍ରଭାବ ଶ୍ରୋତାଙ୍କ ଧମନୀରେ ତଡ଼ିତ୍‌ଗତିରେ କାର୍ଯ୍ୟ କରେ, କିନ୍ତୁ ତାହା କ୍ଷଣପ୍ରଭା ତୁଲ୍ୟ ଅଚିରସ୍ଥାୟୀ ; ସୁକବିଙ୍କ ପ୍ରଭାବ ଯୁଗଯୁଗାନ୍ତରସ୍ଥାୟୀ । ତେବେ ଯେଉଁ ବାଗ୍ମୀଙ୍କ ବକ୍ତୃତା ଜାତୀୟ ସାହିତ୍ୟରେ ସ୍ଥାନପ୍ରାପ୍ତ ହୁଏ, ତାହା ଜାତୀୟ ସମ୍ପତ୍ତି ହୁଏ ଓ ସ୍ଥାୟୀ ହୋଇ ରହେ । କବିଙ୍କର, ମହାକବିଙ୍କର ପ୍ରଭାବ ଯେ ସ୍ଥାୟୀ, ଏଥିରେ ବୋଧହୁଏ ମତଭେଦ ହେବ ନାହିଁ । ସେହି ପ୍ରଭାବ ତାଙ୍କର ନଶ୍ୱର ଶରୀରରେ ନ ଥାଏ ; ଥାଏ ତାଙ୍କର ଅମର ଆତ୍ମାରେ, ତାଙ୍କ କାବ୍ୟରେ, ଉତ୍କୃଷ୍ଟ ସାହିତ୍ୟ-ଗ୍ରନ୍ଥରେ । ତାଙ୍କ ଲେଖାବଳୀରେ ତାହାଙ୍କର ଆତ୍ମା ପ୍ରତିବିମ୍ବିତ ବା ଅନୁସ୍ୟୂତ ହୋଇଥାଏ । ସେହି ଲେଖା, ସେହି କାବ୍ୟ, ସେହି ସାହିତ୍ୟରେ ସେ ଅମର ହୋଇ ରହନ୍ତି । ବାଲ୍ମୀକି, ବ୍ୟାସ, ଭାରବି, କାଳିଦାସ, ଉପେନ୍ଦ୍ର, ଦୀନକୃଷ୍ଣ, ସାରଳାଦାସ, ହୋମର୍, ଭର୍ଜିଲ୍, ଶେକ୍ସପିଅର, ମିଲ୍‌ଟନ୍, ସର୍ଭେଣ୍ଟିସ୍, କବିସୂର୍ଯ୍ୟ ପ୍ରଭୃତି "ଯଶୋଦେହରେ ଅବସ୍ଥାନ୍" ହୋଇ ରହିଅଛନ୍ତି । ଶ୍ମଶାନ ସେମାନଙ୍କର କେବଳ ନଶ୍ୱର କଳେବରକୁ ଗ୍ରାସ କରିଅଛି । ଏମାନେ ଯେଉଁ ଯେଉଁ ଜାତିରେ ଜନ୍ମଗ୍ରହଣ କରିଥିଲେ, ସେହି ସେହି ଜାତିର ସାହିତ୍ୟ ଧରଣୀ ପୃଷ୍ଠରେ ଯାବତ୍ ବିଦ୍ୟମାନ ଥିବ, ତାବତ୍ ଏମାନେ ଅମର ହୋଇ ରହିବେ ।

ଦୁଇ ବସ୍ତୁ ପରସ୍ପର ସନ୍ନିହିତ ହେଲେ କିଛିଅଂଶରେ ହେଲେହେଁ ଦୁହିଙ୍କର ମିଳନ ହୁଏ । ଦୁଇ ଜାତି କୌଣସି ସୂତ୍ରରେ ଅନ୍ୟୋନ୍ୟ ସନ୍ନିହିତ ହେଲେ ଭାବର ବିନିମୟ ହୁଏ, ଭାଷାର ଆଦାନପ୍ରଦାନ ହୁଏ, ସାହିତ୍ୟର ବିନିମୟ ହୁଏ । ସଂସ୍କୃତ ଭାଷା ଯେଉଁ ଭାଷାମାନଙ୍କର ଜନନୀ, ସେ ଭାଷାଗୁଡ଼ିକ ପ୍ରଥମତଃ କଳେବର ରୂପୀ ଶବ୍ଦାବଳୀ ସଂସ୍କୃତଭାଷାରୁ ପ୍ରାପ୍ତ ହେଲେ । ସଂସ୍କୃତଭାଷାରେ ରଚିତ ଗ୍ରନ୍ଥମାନ ପଶ୍ଚାତ୍ ଉକ୍ତ ଭାଷାମାନଙ୍କରେ ଅନୂଦିତ ହେଲା । ମୁସଲମାନମାନେ ଭାରତବର୍ଷକୁ

ଆଗମନ କରି ଏ ଦେଶରେ ବାସ କରିବାରୁ ସେମାନଙ୍କ ମାତୃଭାଷା ପାରସୀ ଓ ଆର୍ଯ୍ୟାବର୍ତ୍ତର ଯେଉଁ ପ୍ରଦେଶରେ ସେମାନେ ପ୍ରଥମତଃ ବାସକଲେ ସେହି ପ୍ରଦେଶର ଭାଷାର ଅନ୍ୟୋଽନ୍ୟ ବନ୍ଧନମଧ୍ୟରେ ଗୋଟିଏ ନୂତନ ଭାଷାର ସୃଷ୍ଟି ହେଲା । ତାହାର ନାମ ଉର୍ଦ୍ଦୁ । ଉର୍ଦ୍ଦୁଭାଷୀମାନେ ତତ୍ପରେ ଆର୍ଯ୍ୟାବର୍ତ୍ତର ଯେଉଁ ଅଞ୍ଚଳରେ ବହୁ-ପରିମାଣରେ ବାସ କଲେ, ସେ ଅଞ୍ଚଳର ଭାଷା ଓ ଉର୍ଦ୍ଦୁର ପରସ୍ପର ମିଳନରେ ହିନ୍ଦୀ ନାମରେ ଆଉ ଗୋଟିଏ ସଙ୍କର ଭାଷାର ଉତ୍ପତ୍ତି ହେଲା । ଉର୍ଦ୍ଦୁ ଭାଷାରେ ସଂସ୍କୃତ ଓ ପାରସୀ ଶବ୍ଦର ପରିମାଣ ଭାଷାନ୍ତରଗତ ଶବ୍ଦର ପରିମାଣ ଅପେକ୍ଷା ଅଧିକ ଅଟେ । ଉର୍ଦ୍ଦୁ ଭାଷାରେ କତିପୟ ଆରବୀ ଶବ୍ଦ ମଧ୍ୟ ସ୍ଥାନ ପାଇଅଛି । ମୁସଲ-ମାନମାନଙ୍କ ସହିତ ଓଡ଼ିଶାର ସମ୍ପର୍କରେ ଉର୍ଦ୍ଦୁ ଶବ୍ଦ କତିପୟ ପରିମାଣରେ ଓଡ଼ିଆ ଭାଷାରେ ପ୍ରବେଶ ଲାଭ କରିଅଛି । ଓଡ଼ିଆ ହିନ୍ଦୁ ଓ ମୁସଲମାନ ବାଳକ-ବାଳିକା-ମାନଙ୍କ କଥା ଦୂରେ ଥାଉ, ଅଧ୍ୟାପନା-କାର୍ଯ୍ୟରେ ନିଯୁକ୍ତ କେହି କେହି ମୁସଲମାନ ମଧ୍ୟ ଜାଣନ୍ତି ନାହିଁ ଯେ, 'କଲମ' ଓ 'ସୁରେଇ' ବା ସୁରାହି ପରି ଆରବୀ ଶବ୍ଦ ପ୍ରଥମେ ଉର୍ଦ୍ଦୁ ଭାଷାର ଶବ୍ଦକୋଷରେ ସ୍ଥାନପ୍ରାପ୍ତ ହୋଇ ପଶ୍ଚାତ୍ ଓଡ଼ିଆ ଶବ୍ଦ ମଧ୍ୟରେ ପରିଗଣିତ ହେଲାଣି । କାଳକ୍ରମେ ଏପରି ଶବ୍ଦ ସ୍ଥାୟୀ ସାହିତ୍ୟରେ ସ୍ଥାନ ପ୍ରାପ୍ତ ହେବ, ଏଥିରେ ସନ୍ଦେହ ନାହିଁ । ପ୍ରାଚୀନ ଗ୍ରୀକ୍ ଭାଷାର ଗଣିତ-ଜ୍ୟୋତିଷ ଶାସ୍ତ୍ରରେ ବ୍ୟବହୃତ କତିପୟ ଶବ୍ଦ ସଂସ୍କୃତଭାଷାର ଜ୍ୟୋତିଷଶାସ୍ତ୍ରରେ ପ୍ରବେଶ କରିଅଛି । ଉତ୍କଳଭାଷାର ଜ୍ୟୋତିଷଶାସ୍ତ୍ରରେ ଏହି ଶବ୍ଦଗୁଡ଼ିକ ସ୍ଥାନ ଲାଭ କରିବା ସ୍ୱାଭାବିକ ଅଟେ ।

ପୃଥିବୀର ଯାବତୀୟ ଭାଷାରେ ଏହିପରି ଅପର ନାନା ଭାଷାରୁ ଆଗତ ଶବ୍ଦମାନ ଦୃଷ୍ଟ ହୁଏ । ଏ ତ ଗଲା ଶବ୍ଦ ସମ୍ବନ୍ଧରେ । ବର୍ତ୍ତମାନ ଆଲୋଚ୍ୟ ସାହିତ୍ୟ ବିଷୟ ଦେଖାଯାଉ । ଆଧୁନିକ କାଳରେ ଇଂରେଜମାନଙ୍କ ରାଜତ୍ୱରେ ପ୍ରତିବେଶିନୀ ବଙ୍ଗଳା ଭାଷାରେ ସଂସ୍କୃତ ରାମାୟଣ ପ୍ରଭୃତିର ଗୋଟିଏ ଗୋଟିଏ ବିଷୟ ନେଇ କାବ୍ୟ ଓ ଗଦ୍ୟ ପ୍ରବନ୍ଧମାନ ରଚିତ ହେଲା ଏବଂ କତିପୟ ଇଂରାଜୀ ଗ୍ରନ୍ଥର ଅନୁବାଦ ହେଲା ଏବଂ ମୁଦ୍ରାଯନ୍ତ୍ର ସାହାଯ୍ୟରେ ଏଗୁଡ଼ିକର ପ୍ରକାଶ ଓ ପ୍ରଚାର ହେଲା । ଅନନ୍ତର ବଙ୍ଗଳା-ଭାଷାରେ ମୌଳିକ ସାହିତ୍ୟ-ଗ୍ରନ୍ଥର ସୃଷ୍ଟି ହେଲା । ବର୍ତ୍ତମାନ ସେହି ଭାଷାରେ ଗ୍ରନ୍ଥପରିମାଣ ଏତେ ଯେ, ପାଠକ ସବୁଗୁଡ଼ିକର ନାମ କହିପାରିବେ କି ନାହିଁ, ତାହା ସନ୍ଦେହର ସ୍ଥଳ ।

ଆଧୁନିକ ଯୁଗର ପ୍ରଥମ ଅବସ୍ଥାରେ ବଙ୍ଗଦେଶରେ ପାଠକସଂଖ୍ୟା ମୁଷ୍ଟିମେୟ ଥିଲା ଏବଂ ଗ୍ରନ୍ଥପଠନରେ ଲୋକମାନଙ୍କର ରୁଚି ଓ ଆଗ୍ରହ ଜନ୍ମି ନ ଥିଲା । ସୁତରାଂ ଅର୍ଥନୀତିଶାସ୍ତ୍ରର ନିୟମାନୁସାରେ ଗ୍ରନ୍ଥ-ସଂଖ୍ୟା ମଧ୍ୟ ଅତ୍ୟଳ୍ପ ଥିଲା । ଦାମୋଦର

ମୁଖୋପାଧ୍ୟାୟ ନାମକ ଉପନ୍ୟାସ-ପ୍ରଣେତା ଉପନ୍ୟାସ-ପାଠରେ ପାଠକମାନଙ୍କର ରୁଚି ଜନ୍ମାଇବାପାଇଁ ସୁପ୍ରଣୀତ ଉପନ୍ୟାସ ପ୍ରକାଶ କରି ପ୍ରଥମତଃ ତାହା ବିନା-ମୂଲ୍ୟରେ ବିତରଣ କଲେ । ବଙ୍ଗଳାଭାଷାର ସେ ଦିନ ଓ ଏ ଦିନ ମଧ୍ୟରେ ଅନ୍ତ କେତେ ପ୍ରଭେଦ ! ଆଧୁନିକ ଉତ୍କଳ ସାହିତ୍ୟ ଏପର୍ଯ୍ୟନ୍ତ ଶୈଶବାବସ୍ଥା ଅତିକ୍ରମ କରିନାହିଁ । ସୁତରାଂ ବଙ୍ଗଳା ଭାଷାର ବର୍ତ୍ତମାନ ଅବସ୍ଥା, ଓଡ଼ିଆ ଭାଷାର ହେବା ସମୟସାପେକ୍ଷ ଅଟେ । ବଙ୍ଗଳା ଭାଷା ପରି ଓଡ଼ିଆଭାଷାରେ ମଧ୍ୟ ଭାଷାନ୍ତର-ରଚିତ କତିପୟ ଗ୍ରନ୍ଥର ଅନୁବାଦ ହୋଇଅଛି । ତନ୍ମଧ୍ୟରେ ବିଦ୍ୟାଳୟର ପାଠ୍ୟପୁସ୍ତକମାନଙ୍କର ସଂଖ୍ୟା ହିଁ ଅଧିକ ଅଟେ । ମୁଷ୍ଟିମେୟ ମୌଳିକ ସାହିତ୍ୟଗ୍ରନ୍ଥ ମଧ୍ୟ ରଚିତ ଓ ପ୍ରକାଶିତ ହୋଇଅଛି । ମାତ୍ର ସ୍ଥାୟୀ ସାହିତ୍ୟରେ ସ୍ଥାନ ପାଇବାର ଯୋଗ୍ୟ ଗ୍ରନ୍ଥମାନଙ୍କର ସଂଖ୍ୟା ଅଦ୍ୟାପି ଅତ୍ୟଳ୍ପ ଅଟେ । ଯେପରି ଲକ୍ଷଣ ଦେଖାଯାଉଅଛି, ଅଦୂର ଭବିଷ୍ୟତରେ ଓଡ଼ିଆଭାଷାର ଏ ଅବସ୍ଥାର ସୁପରିବର୍ତ୍ତନ ହେବ ; ଏ ଅପବାଦ ଘୁଞ୍ଚିବ । ମାତୃଭାଷାର ପୁଷ୍ଟି-ସାଧନରେ ବ୍ରତୀ ଉତ୍କଳ-ଜନନୀଙ୍କର ସନ୍ତାନମାନଙ୍କ ଅଧ୍ୟବସାୟରେ ଓଡ଼ିଆ ଭାଷାର ଅଭାବମାନଙ୍କର ପୂରଣ କ୍ରମେ କ୍ରମେ ହେବ ବୋଲି ଆଶା କରାଯାଏ ।

ଏଥିପୂର୍ବେ ବୋଲିଆଇଅଛି, ପୂର୍ବକାଳରେ ସାହିତ୍ୟ ଶବ୍ଦରେ କାବ୍ୟ ହିଁ ବୁଝିବାକୁ ହେଉଥିଲା । ମାତ୍ର ସାହିତ୍ୟର କ୍ଷେତ୍ର ବର୍ତ୍ତମାନ ବହୁ ପରିମାଣରେ ପ୍ରଶସ୍ତତର ହୋଇଅଛି । ସଂସ୍କୃତଭାଷାରେ କାବ୍ୟ ତିନି ଶ୍ରେଣୀରେ ବିଭକ୍ତ ହେଉଥିଲା—ପଦ୍ୟମୟ, ଗଦ୍ୟମୟ, ଗଦ୍ୟପଦ୍ୟମୟ । ରାମାୟଣ, ମହାଭାରତ, ନୈଷଧ, କିରାତାର୍ଜ୍ଜୁନୀୟ, ରଘୁବଂଶ ପ୍ରଭୃତି ପଦ୍ୟମୟ କାବ୍ୟ । କାଦମ୍ବରୀ, ଦଶକୁମାରଚରିତ ପ୍ରଭୃତି ଗଦ୍ୟମୟ କାବ୍ୟ । ଶକୁନ୍ତଳା, ମୃଚ୍ଛକଟିକ, ମୁଦ୍ରାରାକ୍ଷସ ପ୍ରଭୃତି ଗଦ୍ୟପଦ୍ୟମୟ କାବ୍ୟ । ଆଜିକାଲି କାବ୍ୟରେ ଓଡ଼ିଆ ଭାଷାରେ ତଥା ବଙ୍ଗଳା ଭାଷାରେ ଏ ବିଭାଗ ଆଉ ନାହିଁ । ବର୍ତ୍ତମାନ କାବ୍ୟ କହିଲେ ପଦ୍ୟମୟ କାବ୍ୟ ହିଁ ବୁଝିବାକୁ ହେବ । ଯାହାର ଅଭିନୟ ପ୍ରଦର୍ଶିତ ହୁଏ, ସଂସ୍କୃତ ଅଲଙ୍କାର-ଶାସ୍ତ୍ରରେ ଯାହାର ସାଧାରଣ ନାମ ଥିଲା ଅଭିନେୟ, ତାହା ନାଟକ ଆଖ୍ୟା ପ୍ରାପ୍ତ ହୋଇଅଛି । ଯାହାକୁ ପୂର୍ବେ ଗଦ୍ୟକାବ୍ୟ ବୋଲି ଯାଉଥିଲା, ତନ୍ମଧ୍ୟରୁ ଗୋଟିଏ ଶ୍ରେଣୀର ନାମ ଉପନ୍ୟାସ ହୋଇଅଛି । ପଦ୍ୟ-କାବ୍ୟ ଓ ନାଟକର ପୂର୍ବପ୍ରଚଳିତ ବିଭାଗ ପ୍ରାୟ ତିରୋହିତ ହୋଇଅଛି । ନାଟକ ମଧ୍ୟରେ ଯହିଁରେ କେବଳ ଗୀତର ବ୍ୟବହାର ଥାଏ, ଗଦ୍ୟର ବ୍ୟବହାର ଆଦୌ ନ ଥାଏ, ବଙ୍ଗଳା ଭାଷାରେ ଆଧୁନିକ ନାଟ୍ୟକାରମାନେ ତାହାକୁ ଗୀତନାଟ୍ୟ ଆଖ୍ୟା ପ୍ରଦାନ କରିଅଛନ୍ତି ଏବଂ ଅଭିନୟ-ଯୋଗ୍ୟ କ୍ଷୁଦ୍ରାବୟବ ଯେଉଁ ନାଟକ ହାସ୍ୟୋଦ୍ଦୀପକ, ତାହା ପ୍ରହସନ ନାମରେ ଅଭିହିତ ହେଉଅଛି । ଉତ୍କଳ ଭାଷାରେ ଏ ପର୍ଯ୍ୟନ୍ତ ଗୀତନାଟ୍ୟର ସୃଷ୍ଟି ହୋଇ-

ନାହିଁ, କାଳକ୍ରମେ ସେହି ଶ୍ରେଣୀର ଲେଖା ଜନ୍ମିଲେ, ତାହା ସେହି ଆଖ୍ୟା ପ୍ରାପ୍ତ ହେବ । ପ୍ରହସନ ଓଡ଼ିଆ ଭାଷାରେ ଖଣ୍ଡିଏ ଦୁଇଖଣ୍ଡି ରଚିତ, ମୁଦ୍ରିତ ଓ ପ୍ରକାଶିତ ହେଲାଣି । ସଂସ୍କୃତଭାଷାରେ ଯାହାକୁ ନାଟିକା କହନ୍ତି ତାହା ଓଡ଼ିଆ ଭାଷାରେ ତ ଆଦୌ ନାହିଁ ; ଉନ୍ନତ ବଙ୍ଗଳା-ଭାଷାରେ ମଧ୍ୟ ନାହିଁ ? ସଂସ୍କୃତଭାଷାରେ ମଧ୍ୟ ନାଟିକା-ସଂଖ୍ୟା ଅଳ୍ପତମ । ନାଟିକା ମଧ୍ୟରେ ମୁଁ କେବଳ ରତ୍ନାବଳୀ ଦେଖିଅଛି । ସଂସ୍କୃତଭାଷାର ଅଳଙ୍କାରଶାସ୍ତ୍ରରେ ଯାହାକୁ ନାଟକ କହନ୍ତି, ଓଡ଼ିଆ ସାହିତ୍ୟରେ ତାହାର ସଂଖ୍ୟା ଅଳ୍ପ । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ମୁଁ କେବଳ ଗୋପୀନାଥବଲ୍ଲଭ ନାଟକ ଦେଖିଅଛି । ଅଳଙ୍କାର-ଶାସ୍ତ୍ରର ମାନଦଣ୍ଡ ପକାଇଲେ ଏହାକୁ ନାଟକ ମଧ୍ୟରେ ସ୍ଥାନ ଦିଆଯାଇ ପାରିବ ନାହିଁ, ମୋର ଏହି ମତ । ପ୍ରାଚୀନ ଉତ୍କଳ ସାହିତ୍ୟରେ ପଦ୍ୟ କାବ୍ୟ ହିଁ ଅପେକ୍ଷାକୃତ ଅଧିକ ପରିମାଣରେ ଦୃଷ୍ଟିଗୋଚର ହୁଏ । ସଂସ୍କୃତ-ଅଳଙ୍କାର ଶାସ୍ତ୍ରରେ ମହାକାବ୍ୟର ଯେଉଁ ଲକ୍ଷଣ-ମାନ ନିର୍ଦ୍ଦିଷ୍ଟ ହୋଇଅଛି, ତଦନୁସାରେ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ମହାକାବ୍ୟ-ସଂଖ୍ୟା କାବ୍ୟାନ୍ତର-ସଂଖ୍ୟା ଅପେକ୍ଷା ଅଧିକ ଅଟେ । ମୁଦ୍ରିତ ଓ ପ୍ରକାଶିତ ଓଡ଼ିଆ ଗ୍ରନ୍ଥାବଳୀରେ କତିପୟ ଖଣ୍ଡକାବ୍ୟ ମଧ୍ୟ ଦୃଷ୍ଟିଗୋଚର ହୁଏ । ପ୍ରାଚୀନ ଉତ୍କଳ ସାହିତ୍ୟରେ ମୌଳିକ ଉପନ୍ୟାସ ଗ୍ରନ୍ଥ ନ ଥିଲା । ଅଧୁନା ସଂସ୍କୃତଭାଷାରେ ବାଣଭଟ୍ଟପ୍ରଣୀତ କାଦମ୍ବରୀର ଉତ୍କଳାନୁବାଦ ପ୍ରକାଶିତ ହୋଇଅଛି । ଅମର ଗ୍ରାସ୍ତ କବିଙ୍କର "ଇତାଲୀୟ ଯୁବା" ପ୍ରଥମେ ମାସିକ ଉତ୍କଳ ଦର୍ପଣରେ ପ୍ରକାଶିତ ହେଲା ।

ଇଂରେଜମାନଙ୍କର ଏ ଦେଶର ରାଜତ୍ୱରେ ଓ୍ୱାରେନ୍ ହେଷ୍ଟିଂସ୍ ଯେତେବେଳେ କଲିକତାରେ ପ୍ରଥମ ଗଭର୍ଣ୍ଣର ଜେନେରାଲ ହେଲେ, ସେହି ସମୟରେ ଦିନେ ତାଙ୍କ ସଭାରେ ଏ ଦେଶର ଲୋକମାନଙ୍କୁ ଶିକ୍ଷାଦେବାର ପ୍ରସ୍ତାବ ଧାର୍ଯ୍ୟ ହେଲା । ତଦନନ୍ତର ଭାରତୀୟ ପ୍ରାଚୀନ ରୀତିରେ ଶିକ୍ଷା ଦିଆଯିବ ଅଥବା ଆଧୁନିକ ଇଉରୋପୀୟ ପଦ୍ଧତିରେ ଶିକ୍ଷା ପ୍ରଦତ୍ତ ହେବ, ଏହା ନେଇ ଉକ୍ତ ସଭାରେ ମତ-ଭେଦ ହେଲା । ସେ ସମୟରେ ଅମର ମେ'କଲେ ସାହେବ ବଡ଼ଲାଟ୍ ସଭାର ପାରିଷଦ (Council Member) ଥିଲେ । ବହୁ ଯୁକ୍ତିତର୍କ ପରେ ତାଙ୍କର ଜୟ ହେଲା । ଭାରତବାସୀମାନଙ୍କୁ ଶିକ୍ଷା ଦେବାରେ ଆଧୁନିକ ଇଉରୋପୀୟ ରୀତି ଅନୁସୃତ ହେବ, ଏହି ପ୍ରସ୍ତାବ ପରିଶେଷରେ ବଡ଼ଲାଟ୍-ସଭାରେ ଗୃହୀତ ହେଲା, ସେ ଦିନ ଭାରତବର୍ଷ ପକ୍ଷରେ ମହା ଶୁଭଦିନ । ଭାରତର ସନ୍ତାନମାନଙ୍କ ଶିକ୍ଷାରେ ସେହି ଦିନ ନବଯୁଗର ଆବିର୍ଭାବ ହେଲା । ଭାରତରେ ଇଂରେଜ ଅଧିକାରଭୁକ୍ତ ପ୍ରଦେଶମାନଙ୍କରେ ବିଦ୍ୟାଳୟମାନଙ୍କର ପ୍ରତିଷ୍ଠା-ବୀଜ ଉପ୍ତ ହେଲା । ମାତ୍ର ବିଦ୍ୟାଳୟରେ ବାଳକବାଳିକାମାନେ ପଢ଼ିବେ କ'ଣ ? ସେତେବେଳାକୁ

ଓଡ଼ିଆରେ ବର୍ଣ୍ଣବୋଧକ ଏବଂ ବଙ୍ଗଳାରେ ବିଦ୍ୟାସାଗରଙ୍କର ବର୍ଣ୍ଣ-ପରିଚୟର ଯୁଡ଼ା କଳ୍ପନା କାହାର ମନରେ ନାହିଁ । ସେ ସମୟରେ ଓଡ଼ିଆ କିମ୍ବା ବଙ୍ଗଳା ଭାଷାରେ ବିଦ୍ୟାଳୟରେ ବାଳକମାନଙ୍କର ପାଠୋପଯୋଗୀ ସାହିତ୍ୟ, ବ୍ୟାକରଣ ପ୍ରଭୃତି ବିଷୟରେ କୌଣସି ପୁସ୍ତକ ନ ଥିଲା । କ୍ରମେ କ୍ରମେ କେତେଗୁଡ଼ିଏ ବିଷୟରେ ପାଠ୍ୟପୁସ୍ତକ ରଚିତ ଓ ପ୍ରକାଶିତ ହେଲା । ମାତ୍ର ବ୍ୟାକରଣ ପୁସ୍ତକର ଅଭାବରେ ବିଦ୍ୟାସାଗର-ରଚିତ ସଂସ୍କୃତଭାଷାର ଉପକ୍ରମଣିକା 'ଛାତ୍ରବୃତ୍ତି' ପରୀକ୍ଷା ପାଇଁ ବ୍ୟାକରଣର ପାଠ୍ୟପୁସ୍ତକରୂପେ ନିର୍ବାଚିତ ହେଲା । ମୋର ଯେତେ ଦୂର ସ୍ମରଣ ହେଉଅଛି, ସର୍ବପ୍ରଥମେ ବାଲେଶ୍ୱର-ନିବାସୀ ରଘୁନାଥ ଭୂୟାଁ ଅତି କ୍ଷୁଦ୍ରାବୟବ ଶ୍ରେଣୀପାଠ ନାମ୍ନୀ ପୁସ୍ତିକା ଖଣ୍ଡିଏ ପ୍ରକାଶ କଲେ । ତାହା ହିଁ 'ଛାତ୍ରବୃତ୍ତି' ପରୀକ୍ଷାର ସାହିତ୍ୟ ନିର୍ବାଚିତ ହେଲା । ଅନନ୍ତର କଟକର ଜଗମୋହନ ଲାଲଙ୍କ କର୍ତ୍ତୃକ ଇଂରାଜୀ ଭାଷାରୁ ଅନୂଦିତ 'ଭ୍ରମ-ଭଞ୍ଜନ' କବିତାଟି ପ୍ରକାଶିତ ହେବାରୁ ତାହା ଉକ୍ତ ପରୀକ୍ଷାର ପଦ୍ୟ ପାଠ୍ୟପୁସ୍ତକ ଏବଂ ବିଦ୍ୟାସାଗରଙ୍କ ପ୍ରଣୀତ 'ଶକୁନ୍ତଳା ଉପାଖ୍ୟାନ'ର ଉତ୍କଳାନୁବାଦ ଗଦ୍ୟ ପାଠ୍ୟପୁସ୍ତକରୂପେ ଗୃହୀତ ହେଲା । ଶେଷୋକ୍ତ ଖଣ୍ଡିକ ସ୍ଥାୟୀ ଓଡ଼ିଆ ସାହିତ୍ୟ ମଧ୍ୟରେ ସ୍ଥାନ ପାଇବାର ଯୋଗ୍ୟ । ତଦନନ୍ତର ଗୁରୁ-ଶିଷ୍ୟ ରାୟଦ୍ୱୟ କବିଯୁଗଳଙ୍କ ପ୍ରଣୀତ 'କବିତାବଳୀ' ବିଦ୍ୟାଳୟର ପାଠ୍ୟ ପୁସ୍ତକ କ୍ଷେତ୍ରରେ ଅବତୀର୍ଣ୍ଣ ହେଲା । ଏ ଖଣ୍ଡିକ କ୍ଷୁଦ୍ରାବୟବ ହେଲେ ହେଁ ମୌଳିକ ସାହିତ୍ୟ ପୁସ୍ତକର ଏବଂ ଉତ୍କଳସାହିତ୍ୟରେ ନବଯୁଗର କାବ୍ୟତାରା । ଏହିରୂପେ ବିଦ୍ୟାଳୟ ପାଠ୍ୟପୁସ୍ତକର ଅଭାବ କ୍ରମଶଃ ପୂର୍ଣ୍ଣ ହେଲା ଏବଂ ବିଦ୍ୟା ଅର୍ଥକରୀ ସୀମା ମଧ୍ୟରେ ଆବଦ୍ଧ ରହିଲା । ମାତ୍ର ସେ ପର୍ଯ୍ୟନ୍ତ ସାହିତ୍ୟରସ-ପିପାସୁମାନଙ୍କ "ନ ଚ ପ୍ରସୋହାଭି ମୁଣ୍ଡୋଽପି ଦୃଶ୍ୟତେ" । ୧୮୮୭ ମସିହାରେ ଆଧୁନିକ କବି-କୁଳଗୁରୁ ରାୟ-କବିଙ୍କର 'କେଦାରଗୌରୀ' ନାମ୍ନୀ କ୍ଷୁଦ୍ର କବିତାଟି ମୁଦ୍ରିତ ଓ ପ୍ରକାଶିତ ହୋଇ ଉତ୍କଳ ସାହିତ୍ୟରେ ନବଯୁଗର ପ୍ରଥମ ବାଲାର୍କକିରଣର ସୂଚନା ଦେଲା । ଅନନ୍ତର ଉକ୍ତ କବିଙ୍କର ଅମୃତମୟୀ ଲେଖନୀରୁ ପ୍ରସୂତ "ଚନ୍ଦ୍ରଭାଗା" ସାହିତ୍ୟର ପ୍ରାଚ୍ୟ ଦିଗ୍‌ବଳୟରେ ବାଲାର୍କରୂପେ ପ୍ରତିଭାତ ହେଲା । ଯାବତ୍ ଉତ୍କଳ ସାହିତ୍ୟର ଅସ୍ତିତ୍ୱ ଥିବ, ତାବତ୍ ସାହିତ୍ୟ-ରସିକମାନେ—

ଲୁଚି ଯାଏ ଯଥା ପ୍ରଭାତ
                    ତାରା ରବି-କିରଣେ,
ଲୁଚିଯାଏ ଯଥା ଜୀବାତ୍ମା
                    ବିଶ୍ୱ ଆତ୍ମା ଭରଣେ,
ଲୁଚିଯାଏ ଯଥା ସୌଦାମିନୀ
                    ନୀଳ ଜଳଦ ଅଙ୍ଗେ,

ଲୁଟଗଲା ତଥା ଅବଲା
ନୀଳ ଜଳ-ତରଙ୍ଗେ ”

ଚନ୍ଦ୍ରଭାଗା କବିତାର ଏହି ସୁମଧୁର ମାଲୋପମା ଭୁଲି ପାରିବେ ନାହିଁ । ଏହି କ୍ଷୁଦ୍ର କବିତାଦ୍ୱୟ ସାହିତ୍ୟ-ସେବାର ଦ୍ରବିଷ୍ଣ କଳେବରରେ କି ମଧୁର ତଡ଼ିଦ୍‌ଗତି ଜନ୍ମାଇଲା, ସାହିତ୍ୟସେବୀମାନଙ୍କ ହୃଦୟରେ କି ବିମଳ ଆନନ୍ଦ ଜନ୍ମାଇଲା, ତେବେବେଳେ ଯେଉଁମାନେ ଶିଶୁ ଅଥବା ଅଲବ୍ଧଜନ୍ମା, ବର୍ତ୍ତମାନ ସେମାନେ ତାହା ଅନୁମାନ ସୁଦ୍ଧା କରିପାରିବେ ନାହିଁ । ଏହିରୂପେ ଉତ୍କଳ ସାହିତ୍ୟରେ ନବଯୁଗର ପ୍ରଭାତ ହେଲା । ତଦନନ୍ତର ରାଧାନାଥଙ୍କ ଲେଖନୀରୁ ଅସମ୍ପୂର୍ଣ୍ଣ 'ପାର୍ବତୀ' କାବ୍ୟର ଉଦ୍ଭବ ହେଲା । ଅବ୍ୟବହିତ ପରେ ବାଲେଶ୍ୱରର ଖଣ୍ଡିଏ ସାପ୍ତାହିକ ପତ୍ରିକାରେ ଏହାର ବେନାମୀ ସମାଲୋଚନା ପ୍ରକାଶିତ ହେଲା । ଏହା ହିଁ ଉତ୍କଳ ସାହିତ୍ୟ କ୍ଷେତ୍ରରେ ପ୍ରଥମ ସମାଲୋଚନା । କବି ତେତେବେଳେ ପୁରୀରେ ଅବସ୍ଥାନ କରୁଥିଲେ । ସମାଲୋଚନା-ପାଠରେ ପ୍ରୀତ ହୋଇ ଲେଖକଙ୍କୁ ସେ ପତ୍ର ଲେଖିଲେ. "ତୁମର ସମାଲୋଚନା ଓଡ଼ିଶାରେ ପାଠକମାନଙ୍କ ଚକ୍ଷୁ ଫିଟାଇବ ।" ଏଥିପୂର୍ବେ ବିଦ୍ୟାଳୟର ଗଦ୍ୟପାଠ୍ୟ ପୁସ୍ତକ 'ପ୍ରବନ୍ଧମାଳା'ର ଯେଉଁ ସମାଲୋଚନା ଉକ୍ତ ପତ୍ରିକାରେ ପ୍ରକାଶିତ ହୋଇଥିଲା ତାହାର ଇତିହାସ ଅବଗତ ହେଲେ ଉତ୍କଳ ସାହିତ୍ୟାନୁରାଗୀମାନେ ମର୍ମାହତ ହେବେ । ତେତେବେଳେ ଉତ୍କଳ ସାହିତ୍ୟ ଏଡ଼େ ସଙ୍କୀର୍ଣ୍ଣ, ବିଷୟରେ ଓଡ଼ିଆ-ଭାଷା-ଲେଖକ ଏଡ଼େ ହୀନ ଯେ, ସ୍ୱୟଂ ଗ୍ରନ୍ଥକାର ଲେଖନୀ ଧାରଣ କଲେ ଏବଂ ଗୁରୁଦେବଙ୍କ ମୁଖରୁ ଯାହା ନିଃସୃତ ହେଲା, ତାହା ଲିପିବଦ୍ଧ କରି ପ୍ରକାଶ ନିମନ୍ତେ ସମ୍ବାଦ-ପତ୍ରକୁ ପ୍ରେରଣ କଲେ । ସେ ସମୟରେ ଏ ପ୍ରଦେଶରେ ମାସିକ ପତ୍ରିକା ଆଦୌ ନ ଥିଲା । 'ଉତ୍କଳ ସାହିତ୍ୟ' କାହାରି କଳ୍ପନାରେ ସୁଦ୍ଧା ନ ଥିଲା । ପୂର୍ବବର୍ତ୍ତୀ କତିପୟ ମାସିକ ପତ୍ରିକା କ୍ଷଣପ୍ରଭାର ଆୟୁ ଲାଭ କରି ଧରାଧାମରୁ ତିରୋହିତ ହୋଇଥିଲେ । ପ୍ରୋକ୍ତ କାବ୍ୟ-ପ୍ରକାଶର ଅଳ୍ପକାଳ ପରେ ଉତ୍କଳ ଭାଷାରେ ପ୍ରଥମ ନାଟକ ପ୍ରଣୀତ ଓ ପ୍ରକାଶିତ ହେଲା । ଲାଲଙ୍କ 'ବାବାଜୀ' ନାଟକ ଆଲଂକାରିକମାନଙ୍କର ମାନଦଣ୍ଡପ୍ରୟୋଗରେ ନାଟକ ମଧ୍ୟରେ ଗଣ୍ୟ ହେବାର ଯୋଗ୍ୟ ନୁହେଁ । କେତେକ ବର୍ଷ ଉତ୍ତାରେ ସେନାପତିଙ୍କ ଲେଖନୀପ୍ରସୂତ 'ରେବତୀ' ନାମ୍ନୀ ଓଡ଼ିଆ ଭାଷାର କ୍ଷୁଦ୍ରକଳେବର ପ୍ରଥମ ଉପନ୍ୟାସ-ପୁସ୍ତିକା ପ୍ରକାଶିତ ହେଲା । ସେତେବେଳକୁ ଓଡ଼ିଶାର ପାଠକ ଓ ଲେଖକର ଅଭାବ କଥଞ୍ଚିତ୍ ପରିମାଣରେ ତିରୋହିତ ହେଲାଣି । ଇଂରାଜୀ-ଭାଷାଭିଜ୍ଞ ଓଡ଼ିଆ ଯୁବକମଣ୍ଡଳୀରୁ କାହାରି କାହାରି ମାତୃଭାଷା ପ୍ରତି ଅନୁରାଗ ଜନ୍ମିଲାଣି । ଶାସନ-ବିଭାଗର ରାଜକାର୍ଯ୍ୟରେ ନିଯୁକ୍ତ ଜଣେ ଉତ୍କଳୀୟ ଯୁବା ଅଳ୍ପକାଳ ନିମନ୍ତେ କଟକକୁ ଆଗମନ କରି ମୋ ସହିତ ଏକତ୍ର ଅବସ୍ଥାନ କରୁଥିଲେ । ସେ ସାହିତ୍ୟ-

ରସିକ, ମାତ୍ର ମାତୃଭାଷାର ସାହିତ୍ୟ ପ୍ରତି ତାଙ୍କର ଅବଜ୍ଞା ନ ଥାଉ, ଅନାସ୍ଥା ଥିଲା । ଏହା ଅବଗତ ହୋଇ ଦିନେ ମୁଁ ତାଙ୍କ ସମ୍ମୁଖରେ ମଧୁସୂଦନଙ୍କ ମଙ୍ଗଳର ଗୋଟିଏ ସୁନ୍ଦର ଆବୃତ୍ତି ଗୁଣୁଗୁଣୁ ସ୍ୱରରେ କଲି । ଏହା ତାଙ୍କର ଦୃଷ୍ଟି ଆକର୍ଷଣ କଲା ; ତାଙ୍କର ମୋହ ଭାଙ୍ଗିଲା । ସେହିଦିନ ସେ ମାତୃଭାଷା ପ୍ରତି ଅନୁରାଗରେ ଦୀକ୍ଷିତ ହେଲେ ଏବଂ ଅଧ୍ୟବସାୟ-ବଳରେ ଅଳ୍ପକାଳ ମଧ୍ୟରେ ଲେଖକ-ଶ୍ରେଣୀର ସ୍ଥାନ ପ୍ରାପ୍ତ ହେଲେ । ଏ ପ୍ରକାରର ପରିବର୍ତ୍ତନ ଆଉ ଘଟିଅଛି କି ନାହିଁ, ମୋତେ ଜଣା ନାହିଁ । ଏ ପ୍ରକାରର ପରିବର୍ତ୍ତନ ଯେ ସୁପରିବର୍ତ୍ତନ ଏବଂ ମାତୃଭାଷାର ଶ୍ରୀବୃଦ୍ଧିର ଅନୁକୂଳ, ଏଥିରେ ସଂଶୟର ଲେଶ ନାହିଁ । ବର୍ତ୍ତମାନ ଓଡ଼ିଶାରେ ହାକମ ଶ୍ରେଣୀର ଲୋକେ, କଲେଜର ଅଧ୍ୟାପକ, ସ୍କୁଲମାଷ୍ଟର ପ୍ରଭୃତି ଲେଖକ ଶ୍ରେଣୀରେ ଗଣ୍ୟ ହେବାକୁ ଗୌରବର ବିଷୟ ମଣୁଅଛନ୍ତି । ଏହାକୁ ମୁଁ ଜାଗରଣ ବୋଲି କହୁଅଛି । ଏମାନେ ମାସିକ ପତ୍ରିକାରେ ସ୍ୱରଚିତ ପ୍ରବନ୍ଧମାନ ପ୍ରକାଶ କରୁଅଛନ୍ତି । ଏହା ଏତଦ୍‌ବିଧ ପତ୍ରିକାର ସ୍ଥାୟିତ୍ୱର ଗୋଟିଏ ନୈମିତ୍ତିକ କାରଣ ଅଟେ । ଯେଉଁ କତିପୟ ମାସିକ ପତ୍ରିକା ଓଡ଼ିଆ ଭାଷାରେ ବିଦ୍ୟମାନ ଅଛି, ସେଥିରେ କବିତା, ଗଦ୍ୟ, ପ୍ରବନ୍ଧ, ସାମୟିକ ପ୍ରସଙ୍ଗ ପ୍ରଭୃତି ପ୍ରକାଶିତ ହୋଇଥାଏ । ମାତ୍ର ବିଜ୍ଞାନ, ଗଣିତ, ପ୍ରଭୃତିର ଚର୍ଚ୍ଚା ପାଇଁ ସ୍ୱତନ୍ତ୍ର ମାସିକ ବା ତ୍ରୈମାସିକ ପତ୍ରିକା ଅଦ୍ୟାପି ଓଡ଼ିଆ ଭାଷାରେ ଦୃଷ୍ଟି-ପଥାରୂଢ଼ ହୋଇନାହିଁ ।

ମୁଦ୍ରାଯନ୍ତ୍ର ଗ୍ରନ୍ଥ-ପ୍ରଣୟନ ଏବଂ ପୁସ୍ତକ, ସମ୍ବାଦପତ୍ର ଓ ମାସିକ ପତ୍ରିକାମାନଙ୍କର ପ୍ରଚାରର ବିଶେଷ ସହାୟ ଏବଂ ମାନବ-ଜାତିର ନାନାବିଧ ଉନ୍ନତି ଓ ଶ୍ରୀବୃଦ୍ଧିର ଅନୁକୂଳ ହୋଇଅଛି । ଯେଉଁ ମହାତ୍ମା ସର୍ବାଦୌ ମୁଦ୍ରଣ-କୌଶଳର ଉଦ୍ଭାବନା କଲେ, ସେ ଆମ୍ଭମାନଙ୍କର ନମସ୍ୟ ଏବଂ ସମଗ୍ର ଜାତି ତାଙ୍କଠାରେ ଚିର ଋଣୀ । ତାହା ଉତ୍ତାରେ କଲ୍ୟାଣକର ଅଭିନବ କୌଶଳର ଓ ମୁଦ୍ରାଯନ୍ତ୍ରର ବହୁ ପରିବର୍ତ୍ତନ ଓ ଉନ୍ନତି ଉତ୍ତର-କାଳବର୍ତ୍ତୀ ମହାପୁରୁଷମାନଙ୍କ ହସ୍ତରେ ସମ୍ପାଦିତ ହୋଇଅଛି । ଖ୍ରୀଷ୍ଟିଆନ୍ ପାଦ୍ରିମାନେ ବଙ୍ଗ-ଦେଶ ଓ ଓଡ଼ିଶାକୁ ସର୍ବପ୍ରଥମେ ମୁଦ୍ରାଯନ୍ତ୍ର ଆଣିଲେ । ଏଥିପାଇଁ ଆମ୍ଭେମାନେ ସେମାନଙ୍କଠାରେ ଋଣୀ ଅଟୁଁ । ଅନେକ ଦିନଯାଏ ବଙ୍ଗଦେଶସ୍ଥ ଶ୍ରୀରାମପୁର-ନିବାସୀ ପାଦ୍ରିମାନଙ୍କର ମୁଦ୍ରା-ଯନ୍ତ୍ରାଳୟ ଏ ଦୁଇ ପ୍ରଦେଶର ମୁଦ୍ରାଯନ୍ତ୍ରମାନଙ୍କୁ type ବା ଅକ୍ଷର ଯୋଗାଉ-ଥିଲା । ତଦନନ୍ତର ବଙ୍ଗଳାର ପ୍ରସିଦ୍ଧ ଶିଳ୍ପୀ ଅଧର କର୍ମକାର କିଛିକାଳ ଉତ୍କଳର ମୁଦ୍ରାଯନ୍ତ୍ରମାନଙ୍କର ଏହି ଅଭାବ ପୂରଣ କଲେ । ବର୍ତ୍ତମାନ ଆମ୍ଭମାନଙ୍କର ଏଥିପାଇଁ ଅନ୍ୟର ଦ୍ୱାରସ୍ଥ ହେବାର ପ୍ରୟୋଜନ ନାହିଁ । ଯାହାକୁ 'ପଥର ଛାପା' କହନ୍ତି ବା କହୁଥିଲେ, ପ୍ରଦେଶରେ ପ୍ରଥମେ ସେହି ଉପାୟରେ ଭଞ୍ଜକବିଙ୍କର ବୈଦେହୀଶ-ବିଳାସ ପ୍ରଭୃତି ପ୍ରକାଶିତ ହେଲା । ଯେତେବେଳେ ମୁଁ ଶିକ୍ଷା-ବିଭାଗର ରାଜକାର୍ଯ୍ୟରେ ପ୍ରଥମେ ନିଯୁକ୍ତ ହେଲି, ସେହି ସମୟରେ ବାଲେଶ୍ୱର ଜିଲ୍ଲା ସ୍କୁଲର ଲାଇବ୍ରେରୀରେ

ଏବଂବିଧ ମୁଦ୍ରିତ ଓଡ଼ିଆ ଗ୍ରନ୍ଥ ଦର୍ଶନ କଲି । କିନ୍ତୁ ମୋର ସରକାରୀ କାର୍ଯ୍ୟରେ ଯବନିକା-ପତନର ଆସନ୍ନ କାଳରେ ଗଭୀର କ୍ଷୋଭରେ ଦେଖିଲି, ଉକ୍ତ ଲାଇବ୍ରେରୀରୁ କୌଣସି ଉତ୍କଳ-ମହାତ୍ମା ବ୍ୟକ୍ତିର ପ୍ରସାଦରୁ ହେଉ, ବା ଅନ୍ୟ କାରଣରୁ ହେଉ, ସେ ପୁସ୍ତକ ତିରୋହିତ ହୋଇଅଛି । ମୁଦ୍ରାଯନ୍ତ୍ର ଓ ମୁଦ୍ରଣ-କୌଶଳର କେତେ ଉନ୍ନତି ହୋଇଅଛି, କୌତୂହଳୀମାନେ ନିମ୍ନୋକ୍ତ ଗୋଟିଏ ବିଷୟରୁ ତାହାର ଆଭାସ ପ୍ରାପ୍ତ ହୋଇ ପାରିବେ । ବ୍ରିଟିଶ ସାମ୍ରାଜ୍ୟର ରାଜଧାନୀ ଲଣ୍ଡନ ମହାନଗରରେ "Times" ("ଟାଇମ୍‌ସ) ନାମକ ସୁବିଖ୍ୟାତ ଦୈନିକ ସମ୍ବାଦପତ୍ର ପ୍ରକାଶିତ ହୁଏ । ପ୍ରାୟ ପଞ୍ଚାଶ ବର୍ଷପୂର୍ବେ ଉକ୍ତ ସମ୍ବାଦପତ୍ର ପ୍ରତିଘଣ୍ଟାରେ ଦ୍ୱାଦଶ ସହସ୍ର ମୁଦ୍ରିତ ହେଉଥିଲା । କାଗଜଗୁଡ଼ିକ ଯଥାବିଧି ମୁଦ୍ରାଯନ୍ତ୍ର ନିକଟରେ ନିର୍ଦ୍ଦିଷ୍ଟ ସ୍ଥାନରେ ମନୁଷ୍ୟଙ୍କୁ ସ୍ଥାପନ କରିବାକୁ କେବଳ ହେଉଥିଲା । ଅପର ଯାବତୀୟ କାର୍ଯ୍ୟ କଳରେ ସାଧିତ ହେଲା ଉତ୍ତାରେ ମୁଦ୍ରିତ କାଗଜଗୁଡ଼ିକ କଳରୁ ଗୋଟିଏ ସ୍ଥାନରେ ନିକ୍ଷିପ୍ତ ହେଉଥିଲା । ଓଡ଼ିଶାକୁ ସେହିପରି ମୁଦ୍ରାଯନ୍ତ୍ର ଅଦ୍ୟାପି ଆସିନାହିଁ, କାରଣ "ନିମିତ୍ତସ୍ୟାଭାବାତ୍ତୁ ନୈମିତ୍ତିକସ୍ୟାପ୍ୟଭାବଃ ।"

ଏଥିପୂର୍ବେ ବୋଲି ଯାଇଅଛି ଯେ, ପୂର୍ବକାଳରେ ସାହିତ୍ୟ ଶବ୍ଦରେ କାବ୍ୟ ହିଁ ବୁଝିବାକୁ ହେଉଥିଲା । କାରଣ କାବ୍ୟାତିରିକ୍ତ ସାହିତ୍ୟ ସେ ସମୟରେ ନ ଥିଲା । 'ମାତ୍ର ସାହିତ୍ୟ' ଶବ୍ଦର ସେ ଅର୍ଥ ବର୍ତ୍ତମାନ ନାହିଁ; ସାହିତ୍ୟର କ୍ଷେତ୍ର ବର୍ତ୍ତମାନ ସୁବିସ୍ତୀର୍ଣ୍ଣ । ପ୍ରତ୍ୟେକ ଶବ୍ଦର ପ୍ରକୃତି-ପ୍ରତ୍ୟୟଗତ ଗୋଟିଏ ଅର୍ଥ ଥାଏ; ମାତ୍ର ଶବ୍ଦ ଚିରକାଳ ଏହି ଯୌଗିକ ଅର୍ଥରେ ଆବଦ୍ଧ ହୋଇ ରହେ ନାହିଁ । କାଳକ୍ରମେ ପ୍ରୟୋଗ ଅନୁସାରେ ସେହି ଅର୍ଥର ପରିବର୍ତ୍ତନ ହୁଏ । 'ସାହିତ୍ୟ' ଶବ୍ଦର ଯୌଗିକ ଅର୍ଥ କ'ଣ, ତାହାର ବିଚାର କରିବା ପାଇଁ ମୁଁ ବର୍ତ୍ତମାନ ଦଣ୍ଡାୟମାନ ନୁହେଁ । ସେ ଅର୍ଥର ବିଚାର କରିବା ତାଦୃଶ ପ୍ରୟୋଜନ ମଧ୍ୟ ମୁଁ ଦେଖୁନାହିଁ । ଉନ୍ନତ ଦେଶମାନଙ୍କରେ ଇଦାନୀଂ 'ସାହିତ୍ୟ' ଶବ୍ଦ ଯେଉଁ ଅର୍ଥରେ ଗୃହୀତ ହେଉଅଛି, ତାହା ହିଁ ବର୍ତ୍ତମାନ ଆଲୋଚ୍ୟ । ସାହିତ୍ୟ ଯେ ମାନବ-ସମାଜର ନାନାବିଧ ହିତ ସାଧନ କରୁଅଛି, ଏଥିରେ ମତଭେଦ ହୋଇ ନ ପାରେ । କାବ୍ୟ, ଉପନ୍ୟାସ, ନାଟକ ଏକ ଶ୍ରେଣୀର ସାହିତ୍ୟ ଶବ୍ଦଶକ୍ତି ଅଧିକାର କରିବାରେ ସହାୟ ହୁଏ, ଅସ୍ଥାୟୀ ସାଂସାରିକ ବିଷୟ ଅପେକ୍ଷା ଉଚ୍ଚତର ଆନନ୍ଦ ପ୍ରଦାନ କରେ ଏବଂ ବୁଦ୍ଧି-ବୃତ୍ତିର ବିକାଶ ସାଧନ କରେ । ଅଳଙ୍କାର-ଶାସ୍ତ୍ର ସମ୍ୟକ୍‌ରୂପେ ଅଧ୍ୟୟନ କରିବାକୁ ହେଲେ ନ୍ୟାୟଶାସ୍ତ୍ରରେ ପୂର୍ବାର୍ଜିତ ଜ୍ଞାନ ଥିବା ଆବଶ୍ୟକ ବୋଲି ସଂସ୍କୃତଭାଷାବିଜ୍ଞ ପଣ୍ଡିତମାନେ କହନ୍ତି । ଏହି ମତର ଯାଥାର୍ଥ୍ୟର ବିଚାର କରିବା ବର୍ତ୍ତମାନ ନିଷ୍ପ୍ରୟୋଜନ । ତେବେ ଏ ଶ୍ରେଣୀର ସାହିତ୍ୟ-ଚର୍ଚ୍ଚାରେ ବୁଦ୍ଧି ବୃତ୍ତିର ସମଧିକ ବିକାଶ ହୁଏ । ଇତିହାସ ଏବଂ ପ୍ରାଚୀନ କାଳର ପୁରାଣ ଅପର ଏକ ଶ୍ରେଣୀର ସାହିତ୍ୟ । ଇତିହାସରୁ ନାନା ଦେଶର ଭିନ୍ନ ଭିନ୍ନ ଯୁଗରେ ମାନବ-

ସମାଜର ଅବସ୍ଥା, ନାନା ବିଷୟରେ ଅଭିଜ୍ଞତା, ଉନ୍ନତ ଓ ପାରଦର୍ଶିତା ଆମ୍ଭେମାନେ ଅବଗତ ହେଉଁ । ପୁରାତନର ଜ୍ଞାନ ନୂତନ ଜ୍ଞାନ-ଲାଭରେ ସହାୟ ହୁଏ ଏବଂ ଉନ୍ନତିର ପ୍ରଥମ ଚିହ୍ନ ପ୍ରଦାନ କରେ । ଦର୍ଶନଶାସ୍ତ୍ର ଓ ବିଜ୍ଞାନ-ଶାସ୍ତ୍ର ଅନ୍ୟ ଦୁଇ ପ୍ରକାର ସାହିତ୍ୟ । ଏହା କାବ୍ୟାଦି ପରି ପାଠକ-ସାଧାରଣଙ୍କର ସୁବୋଧ୍ୟ ନୁହେଁ । ଏହାର ଆଲୋଚନା କରିବାପାଇଁ ତୀକ୍ଷ୍ଣ ବୁଦ୍ଧିର ପ୍ରୟୋଜନ ହୁଏ ଏବଂ ଆଲୋଚନାରେ ବୁଦ୍ଧିବୃତ୍ତି ପରିମାର୍ଜିତ ହୁଏ ଓ ତାହାର ଅଧିକତର ବିକାଶ ହୁଏ । କୃଷି-ଜ୍ଞାନ ନାନାପ୍ରକାର କୃଷି ବିଷୟରେ ଯେଉଁ ଜ୍ଞାନ ପ୍ରଦାନକରେ, ତାହା "ଜଗତ୍‌ଜୀବନଯଷ୍ଟି" ଧାନ୍ୟାଦିର ଉତ୍ପାଦନ ବିଷୟରେ ନାନା ଶ୍ରେଣୀର ଲୋକଙ୍କର, ବିଶେଷତଃ କୃଷକ-ଜାତିର, ଉପକାରୀ । ପଦାର୍ଥ-ବିଜ୍ଞାନ, ରସାୟନ-ବିଜ୍ଞାନ ବିଷୟରେ ଧାରାବାହିକ ପ୍ରବନ୍ଧ ମାନବ-ଜାତିର ବୁଦ୍ଧିବୃତ୍ତିର ବିକାଶରେ ତ ସହାୟ ହୁଏ, ଉପରନ୍ତୁ ବୈଷୟିକ ଉନ୍ନତିରେ ତଦପେକ୍ଷା ସହସ୍ର ଗୁଣରେ ଅଧିକ ସହାୟ ହୁଏ । ସମ୍ବାଦପତ୍ର ଓ ମାସିକ ପତ୍ରିକା ଗୋଟିଏ ସ୍ୱତନ୍ତ୍ର ଶ୍ରେଣୀର ସାହିତ୍ୟ । ପୃଥିବୀରେ ପ୍ରତିଦିନ ପ୍ରତିବର୍ଷ ଯାହା ଯାହା ଘଟୁଅଛି, କେଉଁଠାରେ କି ନୂତନ ଆବିଷ୍କାର ଓ ଉଦ୍ଭାବନ ହେଉଅଛି, କେତେବେଳେ ମନୁଷ୍ୟ କି ଆଶା, କି ଆଶଙ୍କା କରିପାରେ, ଏ ଶ୍ରେଣୀର ସାହିତ୍ୟରୁ ଆମ୍ଭେମାନେ ଅବଗତ ହେଉଁ । ଏତଦ୍‌ଭିନ୍ନ ଏଥିରେ ପାଠକମାନେ ଅଳ୍ପ ବା ସ୍ୱଳ୍ପ ବ୍ୟୟରେ କୃତୀ ଲେଖକମାନଙ୍କର ସୁ-ଲେଖନୀ-ନିସୃତ ସୁରସ ପାନ କରିବାକୁ ସମର୍ଥ ହୁଅନ୍ତି ଏବଂ ନୂତନ ଲେଖକମାନେ ହାତ ଫିଟାଇବାର ସୁବିଧା ପାଆନ୍ତି । ଉଦ୍ଭାବନ ଓ ଆବିଷ୍କାର ସମ୍ବନ୍ଧରେ ଧାରାବାହିକ ପ୍ରବନ୍ଧ ଅପର ଏକ ଶ୍ରେଣୀର ସାହିତ୍ୟ । ଏହା ଦେଶ-ପର୍ଯ୍ୟଟକଙ୍କର ତଦ୍‌ବିଷୟକ କୌତୂହଳ ଚରିତାର୍ଥ କରେ । ଏହିପରି ଦେଖାଯାଏ ଯେ, ସାହିତ୍ୟ ନାନା ପ୍ରକାର ହୋଇପାରେ । କେହି ଦମ୍ଭ କରି କହିପାରିବ ନାହିଁ ଯେ, କୌଣସି ଭାଷାରେ ସାହିତ୍ୟର ଶ୍ରେଣୀ ବା ପ୍ରକାରର ଇୟତ୍ତା କରାଯାଇଅଛି ଏବଂ ଭବିଷ୍ୟତରେ ସେହି ଭାଷାରେ ନୂତନ ପ୍ରକାର ସାହିତ୍ୟର ସୃଷ୍ଟି ହେବ ନାହିଁ । ମାନବର ଜ୍ଞାନବୃଦ୍ଧି ସଙ୍ଗେ ସଙ୍ଗେ ସାହିତ୍ୟର କଳେବର-ବୃଦ୍ଧି ହେବା ସ୍ୱାଭାବିକ ।

ପରିଶେଷରେ ଶ୍ରୋତୃବର୍ଗଙ୍କୁ ଆମ୍ଭମାନଙ୍କର କର୍ତ୍ତବ୍ୟ ତଥା ମାତୃଭାଷାର ଆହ୍ୱାନ କଥା ପୁନର୍ବାର ସ୍ମରଣ କରାଇ ଦେଇ ଅଦ୍ୟ ମୋର ବକ୍ତବ୍ୟର ଉପସଂହାର କରୁଅଛି । ସମସ୍ତେ ମନପ୍ରାଣ ଢାଳି ଦେଇ ଲାଗି ପଡ଼ିଲେ ନିଶ୍ଚୟ ମାତୃଭାଷାର ଉନ୍ନତି ହେବ । ମାତୃ-ଭାଷାରେ ଅଭାବମାନଙ୍କର ପୂରଣ ହେବ ଏବଂ ସଭ୍ୟ ଜଗତରେ ଉନ୍ନତ ଭାଷାମାନଙ୍କ ସହିତ ସମାନ ଆସନରେ ବସିବାକୁ ଉଦାସୀନ ଆମ୍ଭମାନଙ୍କର ଦୀନା ମାତୃଭାଷା ସମର୍ଥ ହେବ । (ତା ୫-୧୦-୧୯୨୭ ମସୀହାରେ ଉତ୍କଳ ସାହିତ୍ୟ ସମାଜର ଏକବିଂଶ ବାର୍ଷିକ ଅଧିବେଶନରେ ପ୍ରଦତ୍ତ ଅଭିଭାଷଣ)

———

# ଅଭିମତ

ପ୍ରିୟ ଗୋପାଳ !

ମୁଁ ତୁମ୍ଭଠାରେ ଗୋଟିଏ ମହାନ୍ ଅପରାଧରେ ଅପରାଧୀ, ଦୟା କରି କ୍ଷମା କରିବ । ଏହି ଅନୁରୋଧ ଦ୍ୱାରା ମୋହର ପତ୍ରିକାର ଉପକ୍ରମଣିକା ପ୍ରଦାନ କଲି । ତତ୍ପରେ ତୁମ୍ଭର ପୁସ୍ତକ ଖଣ୍ଡିକ ପାଇଁ କୃତଜ୍ଞତା ଜଣାଉଅଛି । "ଉତ୍କଳ ସାହିତ୍ୟରେ" ପ୍ରକାଶିତ ହେଲାବେଳେ ମୁଁ ତୁମ୍ଭର କାହାଣୀଗୁଡ଼ିକ ଆଗ୍ରହ ସହକାରେ ପାଠ କରି ଅତିଶୟ ଆନନ୍ଦିତ ଓ ତୃପ୍ତ ହୋଇଥିଲି । ସେଗୁଡ଼ିକ ପୁସ୍ତକାକାରେ ପ୍ରକାଶିତ ହେବା ଦେଖି ଅଧିକ ଆନନ୍ଦିତ ହେଲି । ତୁମ୍ଭର ପାଠ ପଢ଼ିବା ସାର୍ଥକ ହୋଇଅଛି । ତୁମ୍ଭେ ଅଧ୍ୟୟନରେ ହିଁ ପରିତୃପ୍ତ ନ ହୋଇ ଉତ୍କଳ ବାଳକବାଳିକା-ମାନଙ୍କର ଅଧ୍ୟାପକର ଆସନ ଗ୍ରହଣ କରିଅଛ । ଏହା ଅଧ୍ୟୟନର ଗୋଟିଏ ପ୍ରଧାନ ଉଦ୍ଦେଶ୍ୟ । ପୂର୍ବକାଳର ଷଟ୍‌କର୍ମୀମାନେ ଏହା କରି ଆପଣାକୁ ଅନୃଣ ମନେ କରୁଥିଲେ । ଉତ୍କଳ ସାହିତ୍ୟଭୂମିରେ ତୁମ୍ଭ ଦ୍ୱାରା ଗୋଟିଏ ନୂତନ କ୍ଷେତ୍ରକୁ ବାଟ ଫିଟିଲା । ଭବିଷ୍ୟତ୍ର ସାହିତ୍ୟସେବକ ଓ ଐତିହାସିକମାନେ ତୁମ୍ଭର "ଉତ୍କଳ-କାହାଣୀକୁ" ସ୍ୱୀୟ ଜୀବନାଦର୍ଶର ସମ୍ବଳ ସ୍ୱରୂପ ମଣିବେ । କେବଳ ଶିଶୁ ନୁହେଁ, ବର୍ଷୀୟାନ୍-ବର୍ଷୀୟସୀମାନେ ମଧ୍ୟ ତୁମ୍ଭ କାହାଣୀ ପଢ଼ି ଆନନ୍ଦ ଲାଭ କରିବେ । ତୁମ୍ଭର ଲେଖା ନୂତନ ପଦବୀ ଅବଲମ୍ବନ କଲେ ହେଁ ସେଥିରେ ସର୍ବତ୍ର କୃତିତ୍ୱର ଲକ୍ଷଣ ବିଦ୍ୟମାନ । ନବୀନ ଲେଖକ ପକ୍ଷରେ ଏହା ଅଳ୍ପ ଶ୍ଳାଘାର ବିଷୟ ନୁହେଁ । ଈଶ୍ୱର କରନ୍ତୁ ତୁମ୍ଭେ ଦୀର୍ଘାୟୁ ଲାଭ କରି ଏବଂ ଦରିଦ୍ର ମାତୃଭାଷାର ଭଣ୍ଡାରରେ ଏହିପରି ନାନା ରତ୍ନ ସଞ୍ଚୟ କରୁଥାଅ ।

( ପୁରୀ ଜିଲାର ଟାଙ୍ଗିରୁ ତା ୨୫-୧୧-୧୯୦୧ ମସିହାରେ ଶ୍ରୀ ଚନ୍ଦ୍ର-ମୋହନ ମହାରଣା ଶ୍ରୀ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କୁ ନର୍ମାଲ ସ୍କୁଲ ଗଲି, କଟକ ଠିକଣାରେ ଲେଖିଥିବା ପତ୍ରର ଅବିକଳ ନକଲ )—ସଂଗ୍ରାହକ ।

---

## "ବିବିଧ ସନ୍ଦର୍ଭ" ସମ୍ବନ୍ଧରେ ଅଭିମତ

ଶ୍ରୀମାନ୍ ବାବୁ ଆନନ୍ଦଚନ୍ଦ୍ର ପଟ୍ଟନାୟକ* ପ୍ରଣୀତ "ବିବିଧ ସନ୍ଦର୍ଭ" ନାମକ ଗଦ୍ୟ-ପ୍ରବନ୍ଧାତ୍ମକ ଗ୍ରନ୍ଥଖଣ୍ଡିକ ମନୋଯୋଗପୂର୍ବକ ପାଠ କରି ମୁଁ ପରମାପ୍ୟାୟିତ ହେଲି । ପ୍ରାୟ ଅର୍ଦ୍ଧ ଶତାବ୍ଦୀ ପୂର୍ବେ ଯେତେବେଳେ ଏହି ଶ୍ରେଣୀର ପୁସ୍ତକ "ପ୍ରବନ୍ଧମାଳା" ପ୍ରକାଶିତ ହେଲା, ଗୁରୁମୁଖନିଃସୃତ ତାହାର ସମାଲୋଚନା ଶ୍ରବଣ

---

* ଆନନ୍ଦବାବୁ ପୁରୀଜିଲା ସ୍କୁଲର ହେଡ୍‌ମାଷ୍ଟର ଥିଲେ । ତାଙ୍କର ଜନ୍ମସ୍ଥାନ ଦଣ୍ଡପୁରୀ ଗ୍ରାମରେ—ଫୁଲନଖରା ନିକଟରେ —ସଂଗ୍ରାହକ ।

କରି ସ୍ୱୟଂ ଗ୍ରନ୍ଥକାର ତାହା ଲିପିବଦ୍ଧ କଲେ । ପଶ୍ଚାତ୍ ତାହା ସମ୍ବାଦପତ୍ରରେ ପ୍ରକାଶିତ ହେଲା । ପ୍ରାୟ ଦ୍ୱାଦଶ ବର୍ଷ ପରେ ଅସମ୍ପୂର୍ଣ୍ଣ କାବ୍ୟ "ପାଟଣୀ" ଯେତେବେଳେ ମୁଦ୍ରିତ ଓ ପ୍ରଚାରିତ ହେଲା, ତାହାର କ୍ଷୁଦ୍ରାବୟବ ସମାଲୋଚନା କୌଣସି ସମ୍ବାଦ-ପତ୍ରରେ **'ବେନାମୀ'** † ଭାବରେ ପ୍ରକାଶିତ ହେଲା । କବି ତେତେବେଳେ ପୁରୀରେ ଅବସ୍ଥାନ କରୁଥିଲେ । ସେ ସମାଲୋଚକଙ୍କୁ ତାଙ୍କ ଲେଖାରୁ ଚିହ୍ନି ପାରି ତତ୍‌କ୍ଷଣାତ୍ ତାଙ୍କୁ ଖଣ୍ଡିଏ ପତ୍ର ଲେଖିଲେ । ସେଥିରେ ଅନ୍ୟାନ୍ୟ କଥା ମଧ୍ୟରେ ଏତକ ଥିଲା—'ତୁମ୍ଭର ସମାଲୋଚନା ପାଠ କଲେ ଓଡ଼ିଆଭାଷାର ପାଠକ-ମାନଙ୍କର ଚକ୍ଷୁ ଫିଟିବ ।' ଗ୍ରନ୍ଥକାର ଓ ସମାଲୋଚକର ଉଦାରାନ୍ତଃକରଣ ସୁନ୍ଦରଲତା ଏଥିରୁ ଅନାୟାସରେ ଉପଲବ୍ଧ ହୋଇପାରିବ । ବର୍ତ୍ତମାନ ଓଡ଼ିଆଭାଷାର ସେଦିନ ନାହିଁ ; ଯୁଗାନ୍ତର ଆରବ୍ଧ ହୋଇଛି । ପଦ୍ୟ, କାବ୍ୟ, ନାଟକ, ଗୀତନାଟ୍ୟ, ଉପନ୍ୟାସ, ଗଦ୍ୟପ୍ରବନ୍ଧ, ଭ୍ରମଣ-ବୃତ୍ତାନ୍ତ ପ୍ରଭୃତିର ଆଉ ଅଭାବ ନାହିଁ । ମାତ୍ର ଅନ୍ୟ ଭାଷାମାନଙ୍କ ପରି ଓଡ଼ିଆ ଭାଷାରେ ମଧ୍ୟ ସଦ୍‌ଗ୍ରନ୍ଥର ସଂଖ୍ୟା ଅତଶୟ ଅଳ୍ପ । ସେହି ସ୍ୱଳ୍ପତା "ବିବିଧ ସନ୍ଦର୍ଭ" ଗୋଟିଏ ଊଣା କରିଅଛି ।

ବ୍ୟାସଦେବଙ୍କ ମହାଭାରତ ଏବଂ ଅମର ଶିଳ୍ପୀ ଟଡ୍ ସାହେବଙ୍କ "ରାଜସ୍ଥାନ"ରୁ ଆନନ୍ଦବାବୁ ତାଙ୍କର ଉପାଦାନ ବହୁ ପରିମାଣରେ ଗ୍ରହଣ କରି-ଅଛନ୍ତି । ତାହା ବୋଲି "ବିବିଧ ସନ୍ଦର୍ଭ"ରେ ମୌଳିକ ପ୍ରବନ୍ଧର ଅଭାବ ନାହିଁ । ବିଷୟଗୌରବ, ସାଧୁଭାବ, ସଦ୍‌ଭାବ, ରଚନାକୌଶଳ ଓ ପ୍ରବନ୍ଧାଦିର ଅଙ୍ଗସୌଷ୍ଠବରେ ସନ୍ଦର୍ଭ ଖଣ୍ଡିକ ଉତ୍କଳ ଭାଷାର ମଧ୍ୟମଣିର ସ୍ଥାନ ଅଧିକାର କରିଅଛି । ଓଡ଼ିଆଭାଷା ଓ ତାହାର ବ୍ୟାକରଣରେ ଆନନ୍ଦବାବୁଙ୍କର ଜ୍ଞାନ ଅତି ଉଚ୍ଚ ଓ ଅନନ୍ୟ-ସାଧାରଣ । ତାଙ୍କର ଗୋଟିଏ ଯୋଡ଼ିଏ ପ୍ରୟୋଗରୁ ପାଠକ ମହାଶୟ ଏହି ଉକ୍ତିର ଯାଥାର୍ଥ୍ୟ ହୃଦୟଙ୍ଗମ କରିପାରିବେ । ପ୍ରାୟ ସମସ୍ତେ "ପ୍ରିୟପାତ୍ର" ଲେଖନ୍ତି ଓ କହନ୍ତି । ମୁଁ ମଧ୍ୟ ଗୋଟିଏ ସ୍ଥଳରେ ଏହି ଅପପ୍ରୟୋଗ କରିଅଛି । କିନ୍ତୁ ଆନନ୍ଦବାବୁଙ୍କର ଏ ପ୍ରମାଦ ଆଦୌ ଲକ୍ଷିତ ହେଲା ନାହିଁ । "ନିର୍ଲୋଭିତା", "ନିର୍ଦ୍ଦୋଷୀ", "ଅନାଥିନୀ" ପ୍ରଭୃତି ପ୍ରମାଦରେ ଅନେକେ ପଡ଼ିଅଛନ୍ତି । ମାତ୍ର ଆନନ୍ଦବାବୁଙ୍କ ଲେଖାରେ "ନିର୍ଲୋଭତା" ଲକ୍ଷିତ ହେଲା । ଉନ୍ନତତର ବଙ୍ଗଳା-ଭାଷାରେ ବଙ୍କିମଚନ୍ଦ୍ର ଓ ନମସ୍ୟ ବିଦ୍ୟାସାଗରଙ୍କ ବ୍ୟତୀତ ପ୍ରଥମ ଶ୍ରେଣୀର ଲେଖକ-ମାନଙ୍କର "ମନୋକଷ୍ଟ" ଓ "ନିଃସ୍ୱେପୀଡ଼ା" ଦେଖିଲେ କାଳିଦାସଙ୍କର "ଭବ ବାଧତି ବାଧତେ" ମନେ ପଡ଼େ । ଗ୍ରନ୍ଥକାରଙ୍କର ଆର୍ଜବ ବିସ୍ମୟକର । କାଳିଦାସ "ରଘୁବଂଶ"ର

---

† ସମ୍ଭବତଃ ଶ୍ରୀ ଚନ୍ଦ୍ରମୋହନ ମହାରଣା ଏହି ସମାଲୋଚନା ଲେଖିଥିଲେ— ପ୍ରକାଶକ

ଆରମ୍ଭରେ ଲେଖିଅଛନ୍ତି—"କ୍ୱ ସୂର୍ଯ୍ୟପ୍ରଭବୋ ବଂଶଃ; କ୍ୱ ଚାଲ୍ପବିଷୟା ମତିଃ । ତିତୀର୍ଷୁଂ ଦୁସ୍ତରଂ ମୋହାଦୁଡୁପେ ନାସ୍ମି ସାଗରମ୍" ତଥା ଯଦି କେହି କହେ ଯେ କାବ୍ୟ ଖଣ୍ଡିକ ଉତ୍କୃଷ୍ଟ ହୋଇଅଛି, କବି କହୁଅଛନ୍ତି,"ଅଥବା କୃତବାଗ୍‌ଦ୍ୱାରେ ବଂଶେଽସ୍ମିନ୍ ପୂର୍ବସୂରିଭିଃ । ମଣୌ ବଜ୍ର ସମୁତ୍କୀର୍ଣ୍ଣେ ସୂତ୍ରସ୍ୟେବା ମେ ମତିଃ ।" ବିବିଧ ସନ୍ଦର୍ଭର ୩୭ ପୃଷ୍ଠାର ଅନ୍ତ୍ୟ ଦୁଇ ପଙ୍‌କ୍ତି ପାଠ କଲେ କାଳିଦାସଙ୍କର ସେହି ଦୈନ୍ୟୋକ୍ତି ସ୍ମୃତି-ପଥାରୂଢ଼ ହୁଏ । ସଂସ୍କୃତଭାଷାର ଅଳଙ୍କାର-ଶାସ୍ତ୍ରରେ କାବ୍ୟ ଚତୁର୍ବର୍ଗ-ଫଳଦାୟୀ ବୋଲି ଉକ୍ତ ହୋଇଅଛି । ଏହି ଉକ୍ତିକୁ "ବିବିଧ ସନ୍ଦର୍ଭ" ପୂର୍ଣ୍ଣରୂପେ ସମର୍ଥନ କରୁଅଛି । "ରାଣା ସଂଗ୍ରାମ ସିଂହ" ନାମକ ଯେଉଁ ପ୍ରବନ୍ଧ ୯୭ ପୃଷ୍ଠାରେ ସମ୍ପୂର୍ଣ୍ଣ ହୋଇଅଛି, ତାହା ସାରବତ୍ତାରେ ଅନ୍ୟ ପ୍ରବନ୍ଧମାନଙ୍କର ସମକକ୍ଷ ନୁହେଁ ବୋଲି ମୋତେ ବୋଧ ହେଲା । ଯେଉଁ ଲେଖାଗୁଡ଼ିକ ଆବର୍ଜ୍ଜନା ତୁଲ୍ୟ, ସେଗୁଡ଼ାକ କାବ୍ୟ ବା କବିତା ନାମର ଅଯୋଗ୍ୟ । ଯେ କୌଣସି ଭାଷାରେ, ଆବର୍ଜ୍ଜନା ପରିମାଣ ଯେତେ ଅଳ୍ପ, ଏବଂ "ବିବିଧ ସନ୍ଦର୍ଭ" ତୁଲ୍ୟ ଗ୍ରନ୍ଥର ଯେତେ ବାହୁଲ୍ୟ ହୁଏ, ଭାଷାର ସେତେ ଗୌରବ-ବୃଦ୍ଧି ହୁଏ । ବର୍ତ୍ତମାନ ଅବସ୍ଥାରେ "ବିବିଧସନ୍ଦର୍ଭ" ସମ୍ପୂର୍ଣ୍ଣରୂପେ ନିର୍ଦ୍ଦୋଷ ନୁହେ । ଏଥିରେ ମୁଦ୍ରାପ୍ରମାଦ ବହୁ ପରିମାଣରେ ରହିଅଛି । ଓଡ଼ିଆ ମୁଦ୍ରାଯନ୍ତ୍ରଠାରୁ ଦୂରରେ ପୁସ୍ତକ ମୁଦ୍ରିତ କରାଇନେଲେ ଏ ଦୋଷ ଅପରିହାର୍ଯ୍ୟ । ଓଡ଼ିଶାରେ ସୁଯୋଗ୍ୟ 'ପ୍ରୁଫ୍‌ରିଡର୍' ଯେପରି ଦୁର୍ଲଭ, ପ୍ରୁଫ୍-ସଂଶୋଧନକାରୀ ମଧ୍ୟ ସେହିପରି । ଗ୍ରନ୍ଥକାରକୃତ ପ୍ରମାଦ ଅତିଶୟ ବିରଳ । ଯେଗୁଡ଼ିକ, ଅନ୍ତତଃ ଅଧିକାଂଶ, ଅନବଧାନ-ଜନିତ ବା କ୍ଷିପ୍ର-କାରଣ-ମୂଳକ ବୋଲି ପ୍ରତୀୟମାନ ହେଲା । କାଳ ଏହି ସନ୍ଦର୍ଭ-ଖଣ୍ଡିକ ରତ୍ନମଞ୍ଜୁଷା ମଧ୍ୟରେ ଅତି ଯତ୍ନରେ ସମାଦି ରଖିବ ।

ରେମୁଣା, ବାଲେଶ୍ୱର, ଚନ୍ଦ୍ରମୋହନ ମହାରଣା
ତା ୭-୩-୧୯୨୯ ମସିହା

---

# ଓଡ଼ିଆ ବ୍ୟାକରଣ

## ପ୍ରଥମ ସୋପାନ

ଲେଖକ—°ଚନ୍ଦ୍ରମୋହନ ମହାରଣା

ଓଡ଼ିଶା ଶିକ୍ଷା ବିଭାଗର ଡିରେକ୍ଟର ମହୋଦୟଙ୍କ ଦ୍ୱାରା ୧୧-୧-୪୪ ତାରିଖ ଗେଜେଟ୍‌ର ୯ ନମ୍ବର ନୋଟିଫିକେସନ୍‌ରେ ୪ର୍ଥ ଓ ୫ମ ଶ୍ରେଣୀ ପାଇଁ ନିର୍ବାଚିତ । ଏବଂ କଟକର ଓଡ଼ିଶା ବୁକ୍ ଏମ୍ପୋରିୟମ୍ ଦ୍ୱାରା ୧୯୫୦ରେ ପ୍ରକାଶିତ ହୋଇଥିଲା ।

—ସଂଗ୍ରାହକ

# ଓଡ଼ିଆ ବ୍ୟାକରଣ

## ପ୍ରଥମ ସୋପାନ

### ୧—ବର୍ଣ୍ଣମାଳା

ଓଡ଼ିଆ ଭାଷାରେ ଅ, ଆ, କ, ଖ, ପ୍ରଭୃତି ଅଣଚାଶଟି ବର୍ଣ୍ଣର ବ୍ୟବହାର ଦେଖାଯାଏ । ତନ୍ମଧ୍ୟରୁ ଅ, ଆ, ଇ, ଈ, ଉ, ଊ, ଋ, ୠ, ଌ, ଏ, ଐ, ଓ, ଔ, ଏହି ତେରଟି **ସ୍ୱରବର୍ଣ୍ଣ** ଏବଂ କ, ଖ, ଗ, ଘ, ଙ, ଚ, ଛ, ଜ, ଝ, ଞ, ଟ, ଠ, ଡ, ଢ, ଣ, ତ, ଥ, ଦ, ଧ, ନ, ପ, ଫ, ବ, ଭ, ମ, ଯ, ର, ଲ, ବ, ଶ, ଷ, ସ, ହ, ଂ, ଃ, ଁ —ଏହି ଛତିଶଟି **ବ୍ୟଞ୍ଜନବର୍ଣ୍ଣ** ।

ସ୍ୱରବର୍ଣ୍ଣମାନଙ୍କ ମଧ୍ୟରେ ଅ, ଇ, ଉ, ଋ, ଌ, ଏହି ପାଞ୍ଚଟି **ହ୍ରସ୍ୱ ସ୍ୱର** ଆ, ଈ, ଊ ୠ, ଏ, ଐ, ଓ, ଔ, ଏହି ଆଠଟି **ଦୀର୍ଘସ୍ୱର** ।

ବ୍ୟଞ୍ଜନବର୍ଣ୍ଣମାନଙ୍କ ମଧ୍ୟରେ କ ଠାରୁ ମ ପର୍ଯ୍ୟନ୍ତ ପଚିଶଟିକୁ **ସ୍ପର୍ଶବର୍ଣ୍ଣ** ବା **ବର୍ଗ୍ୟବର୍ଣ୍ଣ** ବୋଲିଯାଏ ।

| | |
|---|---|
| କ, ଖ, ଗ, ଘ, ଙ | ଏହି ପାଞ୍ଚଟି **କ** ବର୍ଗ । |
| ଚ, ଛ, ଜ, ଝ, ଞ | ଏହି ପାଞ୍ଚଟି **ଚ** ବର୍ଗ । |
| ଟ, ଠ, ଡ, ଢ, ଣ | ଏହି ପାଞ୍ଚଟି **ଟ** ବର୍ଗ । |
| ତ, ଥ, ଦ, ଧ, ନ | ଏହି ପାଞ୍ଚଟି **ତ** ବର୍ଗ । |
| ପ, ଫ, ବ, ଭ, ମ | ଏହି ପାଞ୍ଚଟି **ପ** ବର୍ଗ । |

ଯ ଠାରୁ (ଚନ୍ଦ୍ର ବିନ୍ଦୁ) ପର୍ଯ୍ୟନ୍ତ ଏଗାରଟିକୁ **ଅବର୍ଗ୍ୟବର୍ଣ୍ଣ** କହନ୍ତି ।

ସ୍ୱରବର୍ଣ୍ଣଗୁଡ଼ିକ ଆପେ ଉଚ୍ଚାରିତ ହୋଇ ପାରନ୍ତି, ମାତ୍ର ସ୍ୱରବର୍ଣ୍ଣର ସାହାଯ୍ୟ ବିନା ବ୍ୟଞ୍ଜନବର୍ଣ୍ଣ ଉଚ୍ଚାରିତ ହୋଇପାରେ ନାହିଁ ।

କ୍ ଅ ଲ୍ ଅ ଏହି ଚାରିବର୍ଣ୍ଣରେ **କଲ** ହେଲା ।
ଧ୍ ଇ କ୍ ଏହି ତିନିବର୍ଣ୍ଣରେ **ଧିକ୍** ହେଲା ।
ଶ୍ ଉ କ୍ ଲ୍ ଅ ଏହି ପାଞ୍ଚଟି ବର୍ଣ୍ଣରେ **ଶୁକ୍ଳ** ହେଲା ।
ଜ୍ ଆ ନ୍ ଅ କ୍ ଈ ଏହି ଛଅ ବର୍ଣ୍ଣରେ **ଜାନକୀ** ହେଲା ।

ଅନୁଶୀଳନୀ—କେଉଁ କେଉଁ ବର୍ଣ୍ଣ ମିଶିଲେ ମଧୁ, କୃତ୍ତି, ଦାସନ୍ତୀ, ଛୁରଅନା, କୌଶଲ୍ୟା, ବରଗଛ—ଏଗୁଡ଼ିକ ହେବ ?

## ୨—ଶବ୍ଦ

'ମା' କହିଲେ, ଜଣେ ମନୁଷ୍ୟ ବା ଅନ୍ୟ ପ୍ରାଣୀକୁ ବୁଝାଏ । 'ଖା' କହିଲେ ଗୋଟିଏ କାର୍ଯ୍ୟକୁ ବୁଝାଏ । 'ଏ' କହିଲେ, ଜଣକୁ ଡାକିବା ବୁଝାଏ । 'ଜଳ' କହିଲେ, ଏକ ପ୍ରକାର ତରଳ ପଦାର୍ଥକୁ ବୁଝାଏ । 'ବୃକ୍ଷ' କହିଲେ, ବଡ଼ ବଡ଼ ଗଛକୁ ବୁଝାଏ । 'କାଚ' କହିଲେ ଏକ ପ୍ରକାର ସ୍ୱଚ୍ଛ ପଦାର୍ଥକୁ ବୁଝାଏ । 'ମଣି' କହିଲେ, କେତେଗୁଡ଼ିଏ ସୁନ୍ଦର ପଥରକୁ ବୁଝାଏ । 'ମୟୂର' କହିଲେ ଏକ ଜାତି ପକ୍ଷୀକୁ ବୁଝାଏ ।

ମା, ଖା, ଏ, ଜଳ, ବୃକ୍ଷ, କାଚ, ମଣି, ମୟୂର—ଏଗୁଡ଼ିକ ଗୋଟିଏ ବା ଅଧିକ ବର୍ଣ୍ଣରେ ଗଢ଼ା ହୋଇଅଛି, ଏବଂ ଏଗୁଡ଼ିକର ଅର୍ଥ ଅଛି, ଏମାନେ ଗୋଟିଏ ଗୋଟିଏ ଶବ୍ଦ । ଏହିପରି ଆହୁରି ଅନେକ ଶବ୍ଦ ଅଛି । **ଅର୍ଥ ଥିଲେ ଗୋଟିଏ ବର୍ଣ୍ଣରେ ଅଥବା ଏକାଧିକ ବର୍ଣ୍ଣରେ ଶବ୍ଦ ହୁଏ ।**

ଅର୍ଥ ନ ଥିଲେ କେତେଗୁଡ଼ିଏ ବର୍ଣ୍ଣ ମିଳିଲେ ଶବ୍ଦ ହେବ ନାହିଁ । ପରଥ, ସାଛ, ଝରପ ଏମାନଙ୍କୁ ଶବ୍ଦ ବୋଲିଯିବ ନାହିଁ ।

## ୩—ବାକ୍ୟ

'ହରି ଆସୁଅଛି' ଏହା ଗୋଟିଏ ବାକ୍ୟ । ଏଥିରେ 'ହରି' ଗୋଟିଏ ପଦ 'ଆସୁଅଛି' ଗୋଟିଏ ପଦ, ଏପରି ଦୋଟିଏ ପଦ ଅଛି । 'ମେଘ ବର୍ଷିଲା' ଏହା ଗୋଟିଏ ବାକ୍ୟ । ଏଥିରେ 'ମେଘ' ଗୋଟିଏ ପଦ । 'ବର୍ଷିଲା' ଗୋଟିଏ ପଦ, ଏପରି ଯୋଡ଼ିଏ ପଦ ଅଛି । 'ମୁଁ ଭାତ ଖାଇବି' ଏହା ଗୋଟିଏ ବାକ୍ୟ । ଏଥିରେ 'ମୁଁ' ଗୋଟିଏ ପଦ, 'ଭାତ' ଗୋଟିଏ ପଦ, 'ଖାଇବି' ଗୋଟିଏ ପଦ—ଏପରି ତିନୋଟି ପଦ ଅଛି । 'ମାଙ୍କ କଥା ମାନ' ଏଥିରେ ମାଙ୍କ, କଥା, ମାନ ଏହି ତିନିଗୋଟି ପଦ ଅଛି ।

'ଆସୁଅଛି' କେବଳ ଏତିକି କହିଲେ ଅର୍ଥ ସମ୍ପୂର୍ଣ୍ଣରୂପେ ପ୍ରକାଶ, ପାଉନାହିଁ । ଏଣୁ କେବଳ ଏତିକିରେ ବାକ୍ୟ ହେଲାନାହିଁ । ହରି ଆସୁଅଛି' କହିଲେ, ଅର୍ଥ ସମ୍ପୂର୍ଣ୍ଣରୂପେ ପ୍ରକାଶ ପାଇଲା, ଏଣୁ ଏହା ବାକ୍ୟ । ସେହିପରି କେବଳ 'ମେଘ' କହିଲେ, ବାକ୍ୟ ହେବ ନାହିଁ । ମେଘ ବର୍ଷିଲା' କହିଲେ ବାକ୍ୟ ହେବ । 'ମାଙ୍କମାନ କହିଲେ, ବାକ୍ୟ ହେବ ନାହିଁ, 'ମାଙ୍କ କଥା ମାନ' କହିଲେ ବାକ୍ୟ ହେବ ।

**ଯହିଁରେ ଅର୍ଥ ସମ୍ପୂର୍ଣ୍ଣ ରୂପେ ପ୍ରକାଶ ପାଏ, ତାହାକୁ ବାକ୍ୟ କହନ୍ତି ।** ପ୍ରତ୍ୟେକ ବାକ୍ୟରେ ଦୁଇ ବା ତହିଁରୁ ଅଧିକ ପଦ ଥାଏ । **ଶବ୍ଦ ବାକ୍ୟରେ ବ୍ୟବହୃତ ହେଲେ ପଦ ବୋଲାଯାଏ ।**

ଅନୁଶୀଳନୀ—(୧) ଯୋଡ଼ିଏ ଯୋଡ଼ିଏ ପଦରେ ଗଢ଼ା ତିନୋଟି ବାକ୍ୟ ବୋଲ ।

(୨) ତିନ ତିନୋଟି ପଦରେ ଗଢ଼ା ଯୋଡ଼ିଏ ବାକ୍ୟ ବୋଲ ।

(୩) ଚାରି ଚାରି ଗୋଟି ପଦରେ ଗଢ଼ା ଯୋଡ଼ିଏ ବାକ୍ୟ ବୋଲ ।

## ୪—ବାକ୍ୟର ପ୍ରସାରଣ

ହାତୀ ଯାଉଅଛି ଏହା ଗୋଟିଏ ବାକ୍ୟ, ଏଥିରେ ଦୁଇଟି ପଦ ଅଛି ।

କିପରି ହାତୀ ଯାଉଅଛି ? ପ୍ରଶ୍ନ କଲେ ଉତ୍ତର ହୋଇପାରେ,

ବୁଢ଼ାହାତୀ ଯାଉଅଛି ?

ପ୍ରଶ୍ନ—କାହାର ବୁଢ଼ା ହାତୀ ଯାଉଅଛି ?

ଉତ୍ତର—ରାଜାଙ୍କର ବୁଢ଼ା ହାତୀ ଯାଉଅଛି ।

ପ୍ରଶ୍ନ—କେଉଁଠାକୁ ଯାଉଅଛି ?

ଉ—ରାଜାଙ୍କର ବୁଢ଼ା ହାତୀ ନଦୀକୁ ଯାଉଅଛି ।

ପ୍ର—କେଉଁଠାରୁ ନଦୀକୁ ଯାଉଅଛି ?

ଉ—ରାଜାଙ୍କର ବୁଢ଼ାହାତୀ ହାତୀଶାଳାରୁ ନଦୀକୁ ଯାଉଅଛି ।

ପ୍ର—କିପରି ଯାଉଅଛି ?

ଉ—ରାଜାଙ୍କର ବୁଢ଼ା ହାତୀ ହାତୀଶାଳାରୁ ନଦୀକୁ ଧୀରେ ଧୀରେ ଯାଉଅଛି ।

ଅତଏବ ଦେଖାଗଲା ଯେ 'ହାତୀ ଯାଉଅଛି' ଏହି କ୍ଷୁଦ୍ର ବାକ୍ୟଟି ନାନା ପଦ ଯୋଗେ କ୍ରମେ କ୍ରମେ ବଢ଼ି 'ରାଜାଙ୍କର ବୁଢ଼ା ହାତୀ ହାତୀଶାଳାରୁ ନଦୀକୁ ଧୀରେ ଧୀରେ ଯାଉଅଛି'—ଏହି ବଡ଼ ବାକ୍ୟଟି ହେଲା । ଏହି ବଡ଼ ବାକ୍ୟରେ ଯେତେଗୁଡ଼ିଏ ପଦ ଅଛି, ଏବଂ ଏପରି ବଡ଼ ବା ସାନ ବାକ୍ୟରେ ଯେତେଗୁଡ଼ିଏ ପଦ ଥାଏ, ତନ୍ମଧ୍ୟରେ କିଏ କି ପ୍ରକାର ପଦ, ଜାଣିବା ଆବଶ୍ୟକ ।

## ୫—ବିଶେଷ୍ୟ

"**ହରି** ଆସୁଅଛି' ଏହି ବାକ୍ୟରେ 'ହରି' ଗୋଟିଏ ବାଳକର ନାମ ; '**ଉମା** ପଢ଼ୁଅଛି' ଏଠାରେ 'ଉମା' ଗୋଟିଏ ବାଳିକାର ନାମ ; '**ଭୀମ** ଯାଉଅଛି' ଏଠାରେ ଭୀମ ଜଣେ ମନୁଷ୍ୟର **ନାମ** । **ଖଣ୍ଡଗିରି** ଦିଶୁଅଛି , ଏଠାରେ 'ଖଣ୍ଡଗିରି' ଗୋଟିଏ ପାହାଡ଼ର ନାମ । **ଆମ୍ବ** ପାଚିଲାଣି'—ଏଠାରେ 'ଆମ୍ବ' ଏକ ଜାତି ଫଳର ନାମ । '**ଗାଈ** ହମ୍ବାଳୁଅଛି'—ଏଠାରେ 'ଗାଈ' ଏକପ୍ରକାର ପଶୁର ନାମ ।

ହରି, ଉମା, ଭୀମ, ଖଣ୍ଡଗିରି, ଆମ୍ବ, ଗାଈ—ଏଗୁଡ଼ିକ ଗୋଟିଏ ଗୋଟିଏ ନାମ । ଏମାନଙ୍କୁ **ବିଶେଷ୍ୟ** ବୋଲାଯାଏ ।

ଅନୁଶୀଳନୀ—(କ) ନିମ୍ନଲିଖିତ ବାକ୍ୟମାନଙ୍କରେ ବିଶେଷ୍ୟ ଥିଲେ ଚିହ୍ନାଇ ଦିଅ—

(୧) ହରିଣ ଦୌଡ଼ୁଅଛି ।
(୨) ପାର୍ବତୀ ଶୋଇଲାଣି ।
(୩) ବାଛୁରି ଚରୁଅଛି ।
(୪) ଯଦୁ ଖେଳୁଥିଲା ।
(୫) ବିରାଡ଼ି ମୂଷା ଧରୁଅଛି ।
(୬) କାଲି ଧୂମକେତୁ ଦିଶୁଥିଲା ।

(ଖ) ନିମ୍ନଲିଖିତ ବିଶେଷ୍ୟ ପଦମାନଙ୍କରୁ ଗୋଟିଏ ଗୋଟିଏ ନେଇ ଗୋଟିଏ ଗୋଟିଏ ବାକ୍ୟ ଗଢ଼;—

ଜାମୁକୋଳି, ପଦ୍ମ, ତାଳଗଛ, ରାମ, ଲୁଗା, କାଠ, ପଣସ, ସୂର୍ଯ୍ୟ, କାକୁଡ଼ି ଆମ୍ବ ।

ସୁନା, ରୂପା, ଜଳ, ପଥର, ମୃତ୍ତିକା—ଏଗୁଡ଼ିକ ଗୋଟିଏ ଗୋଟିଏ ନାମ । ଏମାନଙ୍କୁ ବସ୍ତୁବାଚକ ବିଶେଷ୍ୟ ବୋଲଯାଏ ।

'ଗୋବିନ୍ଦ' କହିଲେ ଜଣକୁ ବୁଝାଇବ, 'ଗୋପାଳ' କହିଲେ ଜଣକୁ ବୁଝାଇବ, ସେହିପରି ଦାଶରଥି, ଅର୍ଜୁନ, ସାବିତ୍ରୀ, ଜଗୁ, ବିମଳା, ଜଣ ଜଣକୁ ବୁଝାଇବ । ମାତ୍ର ମନୁଷ୍ୟ କହିଲେ, ଗୋବିନ୍ଦ, ଗୋପାଳ ଜଗୁ, ସାବିତ୍ରୀ, ଅର୍ଜୁନ ପ୍ରଭୃତି ଅନେକଙ୍କୁ ବୁଝାଇବ । ଗୋବିନ୍ଦ ଜଣକର ବା ଗୋଟିଏ ବ୍ୟକ୍ତିର ନାମ, ଏଣୁ ଏହା **ବ୍ୟକ୍ତିବାଚକ** ବିଶେଷ୍ୟ । ସେହିପରି ଗୋପାଳ, ଜଗୁ, ଅର୍ଜୁନ, ସାବିତ୍ରୀ, ଗୋଟିଏ ଗୋଟିଏ ବ୍ୟକ୍ତିବାଚକ ବିଶେଷ୍ୟ । ମାତ୍ର ମନୁଷ୍ୟ ଗୋବିନ୍ଦ, ଗୋପାଳ, ସାବିତ୍ରୀ ପ୍ରଭୃତି ସମସ୍ତଙ୍କୁ ବୁଝାଉ ଥିବାରୁ ଏହା ଗୋଟିଏ ଜାତିର ନାମ । ଏଣୁ ମନୁଷ୍ୟ **ଜାତିବାଚକ** ବିଶେଷ୍ୟ । 'ନଦୀ' କହିଲେ ଗଙ୍ଗା, ଯମୁନା, କାଠଯୋଡ଼ି, ସାଳନ୍ଦୀ, ଭାର୍ଗବୀ ପ୍ରଭୃତି ସମସ୍ତଙ୍କୁ ବୁଝାଇବ । ଏଣୁ 'ନଦୀ' ଜାତିବାଚକ ବିଶେଷ୍ୟ । 'ବରଗଛ' ଜାତିବାଚକ ବିଶେଷ୍ୟ । ମାତ୍ର ଫାସିଦିଆବର ବ୍ୟକ୍ତିବାଚକ ବିଶେଷ୍ୟ । 'ନଗର' ଜାତିବାଚକ ବିଶେଷ୍ୟ, ମାତ୍ର କଟକ, ବାଲେଶ୍ୱର, କଲିକତା **ବ୍ୟକ୍ତିବାଚକ** ବିଶେଷ୍ୟ ।

ଦାସ୍ୟ, ବିନୟ, ଚଞ୍ଚଳତା, ବଡ଼ପଣିଆ—ଏଗୁଡ଼ିକ ଗୋଟିଏ ଗୋଟିଏ ଗୁଣର ନାମ । ଏଣୁ ଏଗୁଡ଼ିକ **ଗୁଣବାଚକ** ବିଶେଷ୍ୟ ।

'ଖାଇବା' କହିଲେ ଗୋଟିଏ କାର୍ଯ୍ୟ ବା କ୍ରିୟାକୁ ବୁଝାଏ । ସେହିପରି ଧାଇଁବା, ଗାଧିବା, କହିବା, ଶୟନ, ଭ୍ରମଣ କହିଲେ ଗୋଟିଏ ଗୋଟିଏ କାର୍ଯ୍ୟ ବା କ୍ରିୟାକୁ ବୁଝାଏ । ଖାଇବା, ଧାଇଁବା, ଗାଧିବା, କହିବା, ଶୟନ, ଭ୍ରମଣ, ଗମନ ପ୍ରଭୃତି ଗୋଟିଏ ଗୋଟିଏ କ୍ରିୟାର ନାମ ବା **କ୍ରିୟାବାଚକ** ବିଶେଷ୍ୟ ।

ବିଶେଷ୍ୟ ପାଞ୍ଚ ପ୍ରକାର—**ବସ୍ତୁବାଚକ ବିଶେଷ୍ୟ, ବ୍ୟକ୍ତିବାଚକ ବିଶେଷ୍ୟ, ଜାତିବାଚକ ବିଶେଷ୍ୟ, ଗୁଣବାଚକ ବିଶେଷ୍ୟ, କ୍ରିୟା-ବାଚକ ବିଶେଷ୍ୟ ।**

ବସ୍ତୁର ନାମକୁ **ବସ୍ତୁବାଚକ** ବିଶେଷ୍ୟ ବୋଲଯାଏ । ବ୍ୟକ୍ତିର ନାମ ଅର୍ଥାତ୍ ମନୁଷ୍ୟ, ଅନ୍ୟପ୍ରାଣୀ, ଉଦ୍ଭିଦ, ନଦୀ, ପର୍ବତ, ନଗର ପ୍ରଭୃତି ମଧ୍ୟରେ ଜଣ ଜଣକର ବା ଗୋଟି ଗୋଟିକର ନାମକୁ **ବ୍ୟକ୍ତିବାଚକ** ବିଶେଷ୍ୟ ବୋଲଯାଏ । ଜାତିର ନାମକୁ **ଜାତିବାଚକ** ବିଶେଷ୍ୟ କହନ୍ତି । ଗୁଣର ନାମକୁ **ଗୁଣବାଚକ** ବିଶେଷ୍ୟ କହନ୍ତି । କ୍ରିୟା ବା କାର୍ଯ୍ୟର ନାମକୁ **କ୍ରିୟାବାଚକ** ବିଶେଷ୍ୟ କହନ୍ତି ।

ଅନୁଶୀଳନୀ—(କ) ନିମ୍ନଲିଖିତ ବିଶେଷ୍ୟମାନଙ୍କ ମଧ୍ୟରେ କେଉଁଟି କି ପ୍ରକାର ବିଶେଷ୍ୟ ବୋଲ :—

ମହାନଦୀ, ଚିଲିକା, ଲୁହା, ମାଛ, ଜାଲ, ଟାଣିବା, ପଣ୍ଡିତ, ମଲ୍ଲୀ, ଭୁବନେଶ୍ୱର, ଘୋଡ଼ା, ସହଦେବ, ଫୁଲ, ପଣସ, ମୟୂର, କ୍ଷମା, ଆଗମନ ।

(ଖ) ନିମ୍ନଲିଖିତ ବାକ୍ୟମାନଙ୍କରେ ଥିବା ବିଶେଷ୍ୟ ପଦ ବାଛିଦିଅ ଏବଂ କେଉଁଟି କି ପ୍ରକାର ବିଶେଷ୍ୟ ବୋଲ :—

(୧) ରୁପାରେ ଅଳଙ୍କାର ଗଢ଼ାହୁଏ । (୨) ଆମ୍ବଠାରୁ ପଣସ ବଡ଼ ଅଟେ । (୩) ଚିଲିକାରେ ବହୁତ ମାଛ ଅଛନ୍ତି । (୪) ଭାତ ଖାଇ ଧାଇଁବା ଭଲ ନୁହେଁ । (୫) ବ୍ରାହ୍ମଣମାନେ ଭୋଜନକୁ ଭଲ ପାଆନ୍ତି । (୬) ଉମା ମେଣ୍ଢାଛୁଆ ସଙ୍ଗେ ଖେଳୁଅଛି । (୭) ସାଲନ୍ଦୀର ଜଳ ଅତି ନିର୍ମଳ । (୮) କଳାମୁଣ୍ଡ ଜଳେ ଛଟକେ ଦେଖାଇ, ବୁଲଇ ମଗର ଏଣେତେଣେ ଧାଇଁ । (୯) ହରିଣ ସହଜେ ଧରା ହୁଏ ନାହିଁ । (୧୦) ବର୍ଷାକାଳରେ ସବୁନଦୀ ବଢ଼େ । (୧୧) କହିବା ସହଜ, ମାତ୍ର ସହିବା କଠିନ ଅଟେ । (୧୨) ଜ୍ୟେଷ୍ଠେ କଦଳୀ ଆଷାଢ଼େ କିଆ, ପୋତ ନ ପୋତ ହୁଅଇ ଠିଆ । (୧୩) ଆଉ ସବୁ ଫଳର ଭିତରେ ମଞ୍ଜି ମାତ୍ର ଲଙ୍କା ଆମ୍ବର ବାହାରେ ମଞ୍ଜିଥାଏ । (୧୪) ଦୂର ପର୍ବତ ସୁନ୍ଦର । (୧୫) ମାଘମାସରେ ଅଧିକ ଶୀତ ହୁଏ ।

(ଗ) (୧) ଗୋଟିଏ ବସ୍ତୁବାଚକ ବିଶେଷ୍ୟ ବ୍ୟବହାର କରି ଗୋଟିଏ ବାକ୍ୟ ରଚନା କର ।

(୨) ଏକ ବାକ୍ୟରେ ଗୋଟିଏ ଜାତିବାଚକ ଓ ଗୋଟିଏ ବ୍ୟକ୍ତିବାଚକ ବିଶେଷ୍ୟ ବ୍ୟବହାର କର ।

(୩) ଗୋଟିଏ ବ୍ୟକ୍ତିବାଚକ ଓ ଗୋଟିଏ ଗୁଣବାଚକ ବିଶେଷ୍ୟ ବ୍ୟବହାର କରି ଗୋଟିଏ ବାକ୍ୟ ରଚନା କର ।

(୪) ଦୁଇଟି କ୍ରିୟାବାଚକ ବିଶେଷ୍ୟପଦ ବ୍ୟବହାର କରି ଗୋଟିଏ ବାକ୍ୟ ଗଢ଼ ।

## ୭—ଲିଙ୍ଗ

'ରାମ' ଗୋଟିଏ ପୁରୁଷର ନାମ ; ଗୋବିନ୍ଦ, ଅର୍ଜୁନ, ଗୋପାଳ, ମଧୁ—ଏଗୁଡ଼ିକ ମଧ୍ୟ ଗୋଟିଏ ଗୋଟିଏ ପୁରୁଷର ନାମ । 'ସାବିତ୍ରୀ' ଜଣେ ସ୍ତ୍ରୀର ନାମ ; ଦୁର୍ଗା, ବିମଳା କୃଷ୍ଣା, ଉମା, ସୀତା—ଏଗୁଡ଼ିକ ମଧ୍ୟ ଗୋଟିଏ ଗୋଟିଏ ସ୍ତ୍ରୀର ନାମ ।

'ମୟୂର'—ପୁରୁଷର ନାମ, 'ମୟୂରୀ'—ସ୍ତ୍ରୀର ନାମ ।

ରାମ, ଅର୍ଜୁନ, ଗୋବିନ୍ଦ, ଗୋପାଳ, ମଧୁ, ମୟୂର—ଏହି ବିଶେଷ୍ୟ ପଦ-ଗୁଡ଼ିକ **ପୁଂଲିଙ୍ଗ**, ସାବିତ୍ରୀ, ଦୁର୍ଗା, କୃଷ୍ଣା, ସୀତା, ମୟୂରୀ—ଏହି ବିଶେଷ୍ୟ ପଦଗୁଡ଼ିକ **ସ୍ତ୍ରୀଲିଙ୍ଗ** ।

ବନ—ଏହା ପୁରୁଷର ନାମ ନୁହେଁ କି ସ୍ତ୍ରୀର ନାମ ନୁହେଁ । ଲୁଣ, ସୁନା, ଦୁଧ, କାଠ, ବସ୍ତ୍ର, ଫୁଲ—ଏଗୁଡ଼ିକ ମଧ୍ୟ ପୁରୁଷର ନାମ ନୁହେଁ କି ସ୍ତ୍ରୀର ନାମ ନୁହେଁ । ଏଣୁ ଏହି ବିଶେଷ୍ୟ ପଦଗୁଡ଼ିକ **କ୍ଳୀବଲିଙ୍ଗ** ।

ବିଶେଷ୍ୟ ପଦମାନଙ୍କ ମଧ୍ୟରେ ଯେଉଁଟି ପୁରୁଷର ନାମ ତାହା **ପୁଂଲିଙ୍ଗ** । ଯେଉଁଟି ସ୍ତ୍ରୀର ନାମ ତାହା **ସ୍ତ୍ରୀଲିଙ୍ଗ**, ଯେଉଁଟି ପୁରୁଷର ନାମ ନୁହେଁ କି ସ୍ତ୍ରୀର ନାମ ନୁହେଁ ତାହା **କ୍ଳୀବଲିଙ୍ଗ** ।

ରାମ, ଲକ୍ଷ୍ମଣ ଏବଂ ସୀତା ବନକୁ ଗଲେ—ଏହି ବାକ୍ୟରେ 'ରାମ' ଓ 'ଲକ୍ଷ୍ମଣ' ଏ ଦୁଇଟି ପୁଂଲିଙ୍ଗ, 'ସୀତା' ସ୍ତ୍ରୀ ଲିଙ୍ଗ, 'ବନ' କ୍ଳୀବଲିଙ୍ଗ ।

"ଦମୟନ୍ତୀ ନଳଙ୍କୁ ବରଣ କଲେ"—ଏଠାରେ 'ଦମୟନ୍ତୀ' ସ୍ତ୍ରୀଲିଙ୍ଗ, 'ନଳଙ୍କୁ' ପୁଂଲିଙ୍ଗ ।

ମା ଭାତ ରାନ୍ଧୁଅଛନ୍ତି—ଏଠାରେ 'ମା' ସ୍ତ୍ରୀଲିଙ୍ଗ, 'ଭାତ' କ୍ଳୀବଲିଙ୍ଗ ।

ଅନୁଶୀଳନୀ—ନିମ୍ନଲିଖିତ ବାକ୍ୟମାନଙ୍କରେ କେଉଁ ବିଶେଷ୍ୟ ପୁଂଲିଙ୍ଗ, କେଉଁଟି ସ୍ତ୍ରୀଲିଙ୍ଗ, କେଉଁଟି କ୍ଳୀବଲିଙ୍ଗ ଚିହ୍ନାଇ ଦିଅ :—

(୧) ରାମ ଓ ରାବଣର ଯୁଦ୍ଧ ହେଲା, (୨) ମାତା ଓ ପିତାଙ୍କର ବୋଲ ମାନିବ । (୩) ସାବିତ୍ରୀ ସତ୍ୟବାନଙ୍କୁ ବିବାହ କଲେ । (୪) ମୟୂରୀ ଅପେକ୍ଷା ମୟୂର ଅଧିକ ସୁନ୍ଦର । (୫) ଗାଈ ଦୁଧ ଦିଏ । (୬) ଗଉଡ଼ୁଣୀ ଦହି ବିକୁଥିଲା ।

ରାତ୍ରି, ଲତା ମତି, ବୁଦ୍ଧି, ଲଜ୍ଜା, ଶ୍ରେଣୀ, ଶୋଭା ପ୍ରଭୃତି କେତେଗୁଡ଼ିଏ ବିଶେଷ୍ୟ ପଦକୁ **ସାଧାରଣତଃ ସ୍ତ୍ରୀଲିଙ୍ଗ** କହନ୍ତି ।

## ୭—ବଚନ

'ଘୋଡ଼ା' ଦୌଡ଼ୁଅଛି କହିଲେ ଗୋଟିଏ ଘୋଡ଼ା ବୁଝିବାକୁ ହେବ । ଘୋଡ଼ା'ମାନେ' ଦୌଡ଼ୁଛନ୍ତି କହିଲେ ଏକରୁ ଅଧିକ ଘୋଡ଼ା ବୁଝିବାକୁ ହେବ ।

'ମାଙ୍କଡ଼' କହିଲେ ଗୋଟିଏ ମାଙ୍କଡ଼ ବୁଝିବାକୁ ହେବ । 'ମାଙ୍କଡ଼ମାନେ' କହିଲେ ଏକରୁ ଅଧିକ ମାଙ୍କଡ଼ ବୁଝିବାକୁ ହେବ ।

'କାଲୁଡ଼ିଟିଏ' କହିଲେ ଗୋଟିଏ କାକୁଡ଼ି ବୁଝିବାକୁ ହେବ । 'କାକୁଡ଼ିଗୁଡ଼ିଏ' କହିଲେ ଏକରୁ ଅଧିକ କାକୁଡ଼ି ବୁଝିବାକୁ ହେବ । ଘୋଡ଼ା, ମାଙ୍କଡ଼,କାକୁଡ଼ିଟିଏ— ଏହି ବିଶେଷ୍ୟଗୁଡ଼ିକର ଏକବଚନ । ଘୋଡ଼ାମାନେ, ମାଙ୍କଡ଼ମାନେ, କାକୁଡ଼ିଗୁଡ଼ିଏ —ଏହି ବିଶେଷ୍ୟ ପଦଗୁଡ଼ିକର ବହୁବଚନ ।

ବିଶେଷ୍ୟ ପଦର ଦୁଇଟି ବଚନ ଅଛି । **ଯେଉଁ ବିଶେଷ୍ୟ ପଦରେ ସଂଖ୍ୟା ଏକ ବୋଲି ଜଣାଯାଏ, ତାହାର ଏକବଚନ ଏବଂ ଯହିଁରେ ସଂଖ୍ୟା ଏକରୁ ଅଧିକ ବୋଲି ଜଣାଯାଏ ତାହାର ବହୁବଚନ ହୁଏ ।**

ଘୋଡ଼ା ଦୌଡ଼ୁଅଛି—ଏଠାରେ 'ଘୋଡ଼ା' ଏହି ବିଶେଷ୍ୟ ପଦର ଏକବଚନ । 'ଘୋଡ଼ାମାନେ ଦୌଡ଼ୁଅଛନ୍ତି'—ଏଠାରେ 'ଘୋଡ଼ାମାନେ' ଏହି ବିଶେଷ୍ୟ ପଦର ବହୁବଚନ ।

'ତିନି ଜଣ ଯାଉଥିଲେ'—ଏଠାରେ 'ଜଣ' ଏହି ବିଶେଷ୍ୟପଦର ବହୁବଚନ । 'ପଣେ ଆମ୍ବ','ତେରଟା ଗଛ', 'ବାର ବାଙ୍କ','ଚଉଦ ଭୁବନ', 'ସାତ ସମୁଦ୍ର', 'ଗୁରି ଦଗ'—ଏ ସ୍ଥଳମାନଙ୍କରେ ଆମ୍ବ, ଗଛ, ବାଙ୍କ, ଭୁବନ, ସମୁଦ୍ର, ଦଗ ଏହି ବିଶେଷ୍ୟପଦମାନଙ୍କର ବହୁବଚନ ।

## ୮—ବିଭକ୍ତି

ପ୍ରଥମା, ଦ୍ୱିତୀୟା, ତୃତୀୟା, ଚତୁର୍ଥୀ, ପଞ୍ଚମୀ, ଷଷ୍ଠୀ ଓ ସପ୍ତମୀ ଏହି ସାତୋଟି ବିଭକ୍ତି ଅଛି । ପ୍ରତ୍ୟେକ ବିଭକ୍ତିରେ ଏକବଚନ ଓ ବହୁବଚନ ଅଛି ।

ବିଭକ୍ତିମାନଙ୍କର ଆକାର ତଳେ ଦେଖାଇ ଦିଆଗଲା—

| ବିଭକ୍ତି | ଏକବଚନ | ବହୁବଚନ |
|---|---|---|
| ପ୍ରଥମା— | × | ମାନ, ମାନେ, ଏ, ଗୁଡ଼ିକ, ଗୁଡ଼ାକ, ଗୁଡ଼ିଏ, ଗୁଡ଼ାଏ । |
| ଦ୍ୱିତୀୟା— | କୁ, କି | ମାନଙ୍କୁ, ଙ୍କୁ । |
| ତୃତୀୟା— | ଦ୍ୱାରା, ଦେଇ ରେ, କର୍ତ୍ତୃକ | ମାନଙ୍କଦ୍ୱାରା, ମାନଙ୍କଦେଇ, ମାନଙ୍କରେ, ମାନଙ୍କକର୍ତ୍ତୃକ |

| | |
|---|---|
| ଚତୁର୍ଥୀ—କୁ , ଙ୍କୁ | ମାନଙ୍କୁ, ଙ୍କୁ । |
| ପଞ୍ଚମୀ—ରୁ, ଠାରୁ, ଉ | ମାନଙ୍କରୁ, ମାନଙ୍କଠାରୁ । |
| ଷଷ୍ଠୀ—ର, ଙ୍କ, ଙ୍କର, | ମାନଙ୍କ, ମାନଙ୍କର । |
| ସପ୍ତମୀ—ରେ, ଏ, ଠାରେ | ମାନଙ୍କରେ ମାନଙ୍କଠାରେ । |

ଗୌରବ ବା ସମ୍ମାନ ବୁଝାଇଲେ ପ୍ରଥମା ଏକବଚନରେ 'ଏ' ବିଭକ୍ତି ଯୋଗ କରାଯାଇଥାଏ । 'ମିଶ୍ରେ କହିଲେ'—ଏଠାରେ 'ମିଶ୍ରେ' ପଦର ପ୍ରଥମା ବିଭକ୍ତିର ଏକବଚନ । 'ଗୌଧୁରୀଏ ବସିଛନ୍ତି', 'ପଟ୍ଟନାୟକେ ଲେଖୁଥିଲେ' "ଦାଶେ ଆସିବେ'—ଏ ସ୍ଥଳମାନଂକରେ ବିଶେଷ୍ୟ ପଦର ପ୍ରଥମାର ଏକବଚନ ବୁଝିବାକୁ ହେବ ।

ଟି, ଟିଏ. ଟା, ଟାଏ—ଏହି ବିଭକ୍ତିଗୁଡ଼ିକ ଏକବଚନରେ କୌଣସି କୌଣସି ସ୍ଥଳରେ ବ୍ୟବହାର କରାଯାଏ । ପିଲାଟି, ଫୁଲଟି, ଘୁଷୁରିଟା, ଗୋରୁଟାଏ—ଏଗୁଡ଼ିକର ଏକବଚନ ।

ଭିନ୍ନ ଭିନ୍ନ ବିଭକ୍ତିରେ 'ମନୁଷ୍ୟ' ଶବ୍ଦର ରୂପ ତଳେ ଦେଖାଇ ଦିଆଗଲା ।

| ବିଭକ୍ତି | ଏକବଚନ | ବହୁବଚନ |
|---|---|---|
| ପ୍ରଥମା | ମନୁଷ୍ୟ | ମନୁଷ୍ୟମାନେ |
| ଦ୍ୱିତୀୟା | ମନୁଷ୍ୟକୁ | ମନୁଷ୍ୟମାନଙ୍କୁ |
| ତୃତୀୟା | ମନୁଷ୍ୟଦ୍ୱାରା | ମନୁଷ୍ୟମାନଂକଦ୍ୱାରା |
| ଚତୁର୍ଥୀ | ମନୁଷ୍ୟକୁ | ମନୁଷ୍ୟମାନଙ୍କୁ |
| ପଞ୍ଚମୀ | ମନୁଷ୍ୟଠାରୁ | ମନୁଷ୍ୟମାନଙ୍କଠାରୁ |
| ଷଷ୍ଠୀ | ମନୁଷ୍ୟର | ମନୁଷ୍ୟମାନଙ୍କର |
| ସପ୍ତମୀ | ମନୁଷ୍ୟଠାରେ | ମନୁଷ୍ୟମାନଙ୍କଠାରେ |

ଅନୁଶୀଳନୀ:—ନିମ୍ନଲିଖିତ ବାକ୍ୟମାନଙ୍କରେ ବିଶେଷ୍ୟର କେଉଁ ବିଭକ୍ତି ଓ ତାହାର କେଉଁ ବଚନ ବୋଲ:—୧ । ଋଷିମାନେ ବନରେ ବାସ କରନ୍ତି । (୨ ) ପଣ୍ଡିତେ ପାଠ ପଢ଼ାଉଅଛନ୍ତି । (୩) ବାପା କେବେ ଶ୍ରୀକ୍ଷେତ୍ରରୁ ଆସିବେ ? (୪) ବିନ୍ଦୁସାଗର ଜଳରେ ସାନ ସାନ ଶାଗୁଆ ପଦାର୍ଥ ଭାସୁଥାଏ । (୫) କେତକୀ ଫୁଲ ବହୁ ଦୂରରୁ ବାସେ । (୬) ପଣାସଙ୍କ୍ରାନ୍ତି ଠାରୁ ଖରା ସହି ହୁଏ ନାହିଁ । (୭) ବଣିଚଢ଼େଇଟିଏ ଗୁଉଳଗୁଡ଼ିଏ ଖୁଣ୍ଟି ଖାଉଅଛି ।

## ୪ - କାରକ

'ହରି ଆସୁଅଛି'—ଏଠାରେ 'ହରି' ଆସିବା କାର୍ଯ୍ୟ କରୁଅଛି । ଏଣୁ ଏ ବାକ୍ୟରେ 'ହରି' କର୍ତ୍ତୃପଦ । 'ହାତୀ ଝୁଲୁଅଛି' ଏହି ବାକ୍ୟରେ ହାତୀ ଝୁଲିବା କାର୍ଯ୍ୟ କରୁଅଛି ବୋଲି 'ହାତୀ' କର୍ତ୍ତାକାରକ । 'ପଣ୍ଡିତେ ଯାଉଥିଲେ' ଏହି ବାକ୍ୟରେ 'ପଣ୍ଡିତେ' ଯିବା କାର୍ଯ୍ୟ କରୁଥିଲେ ବୋଲି 'ପଣ୍ଡିତେ' କର୍ତ୍ତୃପଦ ।

**ଯେ କୌଣସି କାର୍ଯ୍ୟ କରେ ତାହାକୁ କର୍ତ୍ତା କହନ୍ତି ।**

'ବନମାଳୀ ଭାତ ଖାଉଅଛି'—ଏଠାରେ ଭାତ' କର୍ମକାରକ । 'ସାବିତ୍ରୀ ପରିବା କାଟୁଅଛି'—ଏଠାରେ 'ପରିବା' କର୍ମକାରକ । "ଗୋପାଳ ବାଘକୁ ଡରେ ନାହିଁ"—ଏହି ବାକ୍ୟରେ 'ବାଘକୁ' କର୍ମକାରକ ।

**ଯାହାକୁ ଖାଆନ୍ତି, ଘେନନ୍ତି, ଗ୍ରହାନ୍ତି ବା ଏହିପରି ଆଉ କିଛି କରନ୍ତି ବୋଲି ବାକ୍ୟରୁ ଜଣାଯାଏ, ତାହାକୁ କର୍ମକାରକ କହନ୍ତି ।**

"ମଧୁ ଛୁରିରେ କାଗଜ କାଟିଲି"—ଏଠାରେ 'କାଟିବା' କାର୍ଯ୍ୟ ଛୁରିଯୋଗୁ ହେଲା ବୋଲି ଜଣା ଯାଉଅଛି ।

'ଲୋକେ ନୌକାରେ ନଦୀ ପାର ହେଲେ'—ଏଠାରେ 'ନଦୀ ପାରି ହେବା କାର୍ଯ୍ୟ ନୌକା ଯୋଗେ ହେଲା ବୋଲି ଜଣାଯାଉଅଛି ।

"କୃଷୀମାନେ ବଳଦ ଦ୍ୱାରା ହଳ କରନ୍ତି"—ଏଠାରେ ହଳ କରିବା କାର୍ଯ୍ୟ ବଳଦଦ୍ୱାରା ହୁଏ ବୋଲି ଜଣାଯାଉଅଛି ।

ଛୁରିରେ, ନୌକାରେ, ବଳଦଦ୍ୱାରା—ଏଗୁଡ଼ିକ କରଣକାରକ । **କର୍ତ୍ତା ଯାହାଦ୍ୱାରା କାର୍ଯ୍ୟ ସାଧନ କରେ ବୋଲି ବାକ୍ୟରୁ ଜଣାଯାଏ, ତାହାକୁ କରଣ କାରକ କହନ୍ତି ।**

ଭିଖାରିକୁ ଭିକ ଦିଅ, ବୈଦ୍ୟ ରୋଗୀକୁ ଔଷଧ ଦେଉଅଛନ୍ତି—ଏହି ଦୁଇ ବାକ୍ୟରେ ଭିଖାରିକୁ ଓ ରୋଗୀକୁ କିଛି ଦିଆଯିବା ଜଣା ଯାଉଅଛି, 'ଭିଖାରିକୁ' 'ରୋଗୀକୁ'—ସମ୍ପ୍ରଦାନକାରକ ।

**ଯାହାକୁ କୌଣସି ବସ୍ତୁ ଦିଆଯିବା ବାକ୍ୟରୁ ଜଣାଯାଏ ତାହାକୁ ସମ୍ପ୍ରଦାନ କାରକ କହନ୍ତି ।**

"ବୃକ୍ଷରୁ ପତ୍ର ପଡ଼ିଲା"—ଏଠାରେ 'ପଡ଼ିଲା' କାର୍ଯ୍ୟ 'ବୃକ୍ଷ' ଠାରୁ ହେଲା ବୋଲି ଜଣା ଯାଉଅଛି ।

"ପର୍ବତରୁ ଝର ବହୁଅଛି"—ଏଠାରେ ବହିବାକାର୍ଯ୍ୟ 'ପର୍ବତ'ଠାରୁ ହେଉଅଛି ବୋଲି ଜଣା ଯାଉଅଛି ।

'ମଞ୍ଜିରୁ ଗଛ ବାହାରେ'—ଏଠାରେ ବାହାରିବା କାର୍ଯ୍ୟ 'ମଞ୍ଜି'ଠାରୁ ହୁଏ ବୋଲି ଜଣାଯାଉଅଛି ।

ବୃକ୍ଷରୁ, ପର୍ବତରୁ, ମଞ୍ଜିରୁ—ଏଗୁଡ଼ିକ ଅପାଦାନକାରକ । **ଯାହାଠାରୁ କୌଣସି କାର୍ଯ୍ୟ ହେବା ବାକ୍ୟରୁ ଜଣାଯାଏ, ତାହାକୁ ଅପାଦାନ-କାରକ କହନ୍ତି** ।

ଘିଅ, ଦୁଧ, ଜଳ ପ୍ରଭୃତି ଗିନା, ଠେକ, ଗରା, କଳସୀ ପ୍ରଭୃତିରେ ରଖାଯାଏ, ଏଣୁ ଗିନା ପ୍ରଭୃତିକୁ ପାତ୍ର ବା ଆଧାର କହନ୍ତି ।

ବିଲରେ ପିମ୍ପୁଡ଼ି ଅଛି—ଏଠାରେ 'ଅଛି' କ୍ରିୟାର **ଆଧାର** 'ବିଲ' ଗିନାରେ ତେଲ ରଖ—ଏଠାରେ 'ରଖ' କ୍ରିୟାର **ଆଧାର** 'ଗିନା' । ତିଳରେ ତେଲ ଥାଏ—ଏଠାରେ 'ଥାଏ' କ୍ରିୟାର **ଆଧାର** 'ତିଳ' ।

ବିଲରେ, ଗିନାରେ, ତିଳରେ—ଏଗୁଡ଼ିକ **ଅଧିକରଣ କାରକ** ।

ଆଜି ସକାଳେ ମିଶ୍ରେ ପହଞ୍ଚିଲେ—ଏଠାରେ 'ପହଞ୍ଚିବା' ଘଟଣାର **ସମୟ 'ସକାଳ'** । ରାତିରେ ଚନ୍ଦ୍ର ଉଏଁ—ଏଠାରେ 'ଉଇଁବା' ଘଟଣାର **ସମୟ** 'ରାତି' ଗ୍ରୀଷ୍ମକାଳରେ ଆମ୍ବ ପାଚେ—ଏଠାରେ 'ପାଚିବା' ଘଟଣାର **ସମୟ** 'ଗ୍ରୀଷ୍ମକାଳ' । ସକାଳେ, ରାତିରେ ଗୀଷ୍ମକାଳରେ ଏଗୁଡ଼ିକ **ଅଧିକରଣ କାରକ** ।

**କ୍ରିୟାର ଆଧାରକୁ ଏବଂ ଘଟଣାର ସମୟକୁ ଅଧିକରଣ-କାରକ କହନ୍ତି ।**

କର୍ତ୍ତା, କର୍ମ, କରଣ, ସମ୍ପ୍ରଦାନ, ଅପାଦାନ, ଅଧିକରଣ ଏହି ଛଅଟି କାରକ ବିଶେଷ୍ୟପଦର ହୁଏ ।

କର୍ତ୍ତାକାରକରେ ପ୍ରଥମା ବିଭକ୍ତି, କର୍ମକାରକରେ ଦ୍ୱିତୀୟା ବିଭକ୍ତି, କରଣ କାରକରେ ତୃତୀୟା ବିଭକ୍ତି, ସମ୍ପ୍ରଦାନ କାରକରେ ଚତୁର୍ଥୀ ବିଭକ୍ତି, ଅପାଦାନ କାରକରେ ପଞ୍ଚମୀ ବିଭକ୍ତି ଏବଂ ଅଧିକରଣ କାରକରେ ସପ୍ତମୀ ବିଭକ୍ତି ହୁଏ ।

ସମ୍ବନ୍ଧ ପଦରେ ଷଷ୍ଠୀ ବିଭକ୍ତି ଏବଂ ସମ୍ବୋଧନରେ ପ୍ରଥମା ବିଭକ୍ତି ହୁଏ ।

ଭିନ୍ନ ଭିନ୍ନ କାରକରେ 'ବାଳକ' ଓ 'ପଣ୍ଡିତ' ଏହି ଦୁଇ ବିଶେଷ୍ୟ ପଦର ରୂପ ତଳେ ଦେଖାଇ ଦିଆଗଲା ।

**୧ । ବାଳକ—**

| କାରକ | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ବାଳକ | ବାଳକମାନେ |
| କର୍ମ | ବାଳକକୁ | ବାଳକମାନଙ୍କୁ |
| କରଣ | ବାଳକଦ୍ୱାରା | ବାଳକମାନଙ୍କଦ୍ୱାରା |
| ସମ୍ପ୍ରଦାନ | ବାଳକକୁ | ବାଳକମାନଙ୍କୁ |
| ଅପାଦାନ | ବାଳକଠାରୁ | ବାଳକମାନଙ୍କଠାରୁ |
| ଅଧିକରଣ | ବାଳକଠାରେ | ବାଳକମାନଙ୍କଠାରେ |

(ଗୌରବ ଅର୍ଥରେ ଏକବଚନର ରୂପ ଦିଆଯାଇଛି—ସମ୍ପାଦକ)

**୨ । ପଣ୍ଡିତ—**

| | | |
|---|---|---|
| କର୍ତ୍ତା | ପଣ୍ଡିତ, ପଣ୍ଡିତେ | ପଣ୍ଡିତମାନେ |
| କର୍ମ | ପଣ୍ଡିତଙ୍କୁ | ପଣ୍ଡିତମାନଙ୍କୁ |
| କରଣ | ପଣ୍ଡିତଙ୍କଦ୍ୱାରା | ପଣ୍ଡିତମାନଙ୍କଦ୍ୱାରା |
| ସମ୍ପ୍ରଦାନ | ପଣ୍ଡିତଙ୍କୁ | ପଣ୍ଡିତମାନଙ୍କୁ |
| ଅପାଦାନ | ପଣ୍ଡିତଙ୍କଠାରୁ | ପଣ୍ଡିତମାନଙ୍କଠାରୁ |
| ଅଧିକରଣ | ପଣ୍ଡିତଙ୍କଠାରେ | ପଣ୍ଡିତମାନଙ୍କଠାରେ |

**୧ । ବାଳକ—**

| | | |
|---|---|---|
| ସମ୍ବନ୍ଧ | ବାଳକର | ବାଳକମାନଙ୍କ, ବାଳକମାନଙ୍କର |
| ସମ୍ବୋଧନ | ହେ ବାଳକ ! | ହେ ବାଳକମାନେ ! |

**୨ । ପଣ୍ଡିତ—**

| | | |
|---|---|---|
| **ସମ୍ବନ୍ଧ** | ପଣ୍ଡିତଙ୍କ, ପଣ୍ଡିତଙ୍କର | ପଣ୍ଡିତମାନଙ୍କ, ପଣ୍ଡିତମାନଙ୍କର । |
| ସମ୍ବୋଧନ | ହେ ପଣ୍ଡିତ ! ହେ ପଣ୍ଡିତେ ! | ହେ ପଣ୍ଡିତମାନେ । |

ଅନୁଶୀଳନୀ :—ନିମ୍ନଲିଖିତ ବାକ୍ୟଗୁଡ଼ିକରେ ଯେଉଁ ପଦର କି କାରକ ବା ପଦ ତାହା କୁହ :—

୧ । ଭୀମ ଗଦାଦ୍ୱାରା ଦୁର୍ଯ୍ୟୋଧନର ଉରୁ ଭାଙ୍ଗିଲେ ।

୨ । ଲଙ୍କାରେ ରାମ ରାବଣକୁ ବଧ କଲେ ।

୩ । ବାଳକବାଳିକାମାନେ ଫୁଲ ତୋଳି ଗୃହ ଗୁଡ଼ିରେ ରଖୁଅଛନ୍ତି ।

୪ । ଦରିଦ୍ର ଅକ୍ଷମ ଲୋକକୁ ଅନ୍ନ ଅଥବା ବସ୍ତ୍ର ଦାନ କଲେ ପୁଣ୍ୟ ହୁଏ ।

୫ । କଦଳୀପତ୍ରରେ ଖାଦ୍ୟ ଖିଆଯାଏ ଏବଂ କଦଳୀପତ୍ରରେ ଫୁଲ ଗୁନ୍ଥାଯାଏ ।
୬ । ଯେଉଁ ଲୋକ ହାତୀକୁ ଭୟ କରେ ନାହିଁ, ସେ ମଶାକୁ ଡରେ ।
୭ । ପଣେ ଆମ୍ବକୁ ଜଣେ ଖାଇ ପାରିବ କି ?
୮ । ସୂର୍ଯ୍ୟ କିରଣରେ ବୁଲିବା ଭଲ ନୁହେଁ, କିମ୍ବା ଚନ୍ଦ୍ର କିରଣରେ ପଢ଼ିବା ଭଲ ନୁହେଁ ।

## ୧୦—ସର୍ବନାମ

ଶଙ୍କର ସୁଶୀଳ ବାଳକ । ଶଙ୍କର କାହାରି ସଙ୍ଗରେ କଳି କରେ ନାହିଁ, କିମ୍ବା ନ କହି କାହାରି ପଦାର୍ଥ ନିଏ ନାହିଁ । ଶଙ୍କରକୁ ସମସ୍ତେ ଭଲ ପାଆନ୍ତି । ଏହି ବାକ୍ୟମାନଙ୍କରେ 'ଶଙ୍କର' ପଦ ବାରମ୍ବାର ରହିବାରୁ ଶୁଣିବାକୁ ଭଲ ଲାଗୁନାହିଁ । ଏପରି ନ କହି ଶଙ୍କର ସୁଶୀଳ ବାଳକ, ସେ କାହାରି ସଙ୍ଗରେ କଳିକରେ ନାହିଁ, କିମ୍ବା ନ କହି କାହାରି ପଦାର୍ଥ ନିଏ ନାହିଁ । ତାହାକୁ ସମସ୍ତେ ଭଲ ପାଆନ୍ତି । ଏପରି କହିଲେ ଶୁଣିବାକୁ ଭଲ ଲାଗେ । କେବଳ ପ୍ରଥମ ବାକ୍ୟରେ ଶଙ୍କର ପଦ ରଖି ପରବର୍ତ୍ତୀ ବାକ୍ୟମାନଙ୍କରୁ 'ଶଙ୍କର' ଓ 'ଶଙ୍କରକୁ' ଉଠାଇ ଦେଇ 'ସେ ଓ 'ତାହାକୁ' ବ୍ୟବହାର କରାଗଲା । 'ସେ' ଓ 'ତାହାକୁ' ଏବଂ ଏହିପରି ଅନ୍ୟ ପଦକୁ ସର୍ବନାମ କହନ୍ତି ।

**ବାକ୍ୟରେ ବିଶେଷ୍ୟ ପଦର ପରିବର୍ତ୍ତରେ ଯେଉଁ ପଦ ବ୍ୟବହାର କରାଯାଏ, ତାହାକୁ ସର୍ବନାମ କହନ୍ତି ।**

ସର୍ବନାମ ପଦର ଲିଙ୍ଗ, ବଚନ, ପୁରୁଷ ଓ କାରକ ଅଛି । ସର୍ବନାମ ପଦ ଯେଉଁ ବିଶେଷ୍ୟପଦ ପରିବର୍ତ୍ତରେ ବସେ, ତାହାର ଯେଉଁ ଲିଙ୍ଗ, ଯେଉଁ ବଚନ, ସର୍ବନାମ ପଦର ସେହି ଲିଙ୍ଗ ଓ ସେହି ବଚନ ହୁଏ । ସର୍ବନାମମାନଙ୍କ ମଧ୍ୟରେ 'ଆମ୍ଭେ' **ଉତ୍ତମ ପୁରୁଷ** ବା **ପ୍ରଥମ ପୁରୁଷ** 'ତୁମ୍ଭେ **ମଧ୍ୟମ ପୁରୁଷ**' ବା '**ଦ୍ୱିତୀୟ ପୁରୁଷ**' । ଆଉ ଯେତେ ସର୍ବନାମ ଅଛି ସେଗୁଡ଼ିକ **ତୃତୀୟ ପୁରୁଷ** ।

ଭିନ୍ନ ଭିନ୍ନ କାରକ ଓ ବିଭକ୍ତିରେ ବିଶେଷ୍ୟର ଯେପରି ରୂପ ହୁଏ, ସର୍ବ-ନାମରେ ମଧ୍ୟ ସେହିପରି ରୂପ ହୁଏ । ନିମ୍ନରେ ସଂସ୍କୃତ ଅସ୍ମଦ୍ ଶବ୍ଦର ଓଡ଼ିଆ ସର୍ବନାମର ରୂପ ଦେଖାଇ ଦିଆଗଲା—

| କାରକ ବା ପଦ | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ଆମ୍ଭେ, ମୁଁ | ଆମ୍ଭେମାନେ |
| କର୍ମ | ଆମ୍ଭକୁ, ଆମ୍ଭଙ୍କୁ, ମୋତେ | ଆମ୍ଭମାନଙ୍କୁ |
| କରଣ | ଆମ୍ଭଦ୍ୱାରା, ମୋଦ୍ୱାରା, ମୋହଦ୍ୱାରା | ଆମ୍ଭମାନଙ୍କଦ୍ୱାରା |

| | | |
|---|---|---|
| ସମ୍ପ୍ରଦାନ | ଆମ୍ଭକୁ, ଆମ୍ଭଙ୍କୁ, ମୋତେ | ଆମ୍ଭମାନଙ୍କୁ |
| ଅପାଦାନ | ଆମ୍ଭଠାରୁ, ମୋଠାରୁ, ମୋହଠାରୁ | ଆମ୍ଭମାନଙ୍କଠାରୁ |
| ଅଧିକରଣ | ଆମ୍ଭଠାରେ, ମୋଠାରେ, ମୋହଠାରେ | ଆମ୍ଭମାନଙ୍କଠାରେ |
| ସମ୍ବନ୍ଧ | ଆମ୍ଭର, ମୋର, ମୋହର | ଆମ୍ଭମାନଙ୍କର |

**ସମ୍ବୋଧନରେ ରୂପ ନାହିଁ ।**

| ମୂଳ ସଂସ୍କୃତ ଶବ୍ଦ | ଓଡ଼ିଆରେ ପ୍ରଥମା ଏକବଚନରେ ରୂପ | ମୂଳ ସଂସ୍କୃତ ଶବ୍ଦ | ଓଡ଼ିଆରେ ପ୍ରଥମା ଏକବଚନରେ ରୂପ |
|---|---|---|---|
| ଯୁଷ୍ମଦ୍ | ତୁମ୍ଭେ, ତୁ | ଏତଦ୍ | ଏ, ଏହା |
| ତଦ୍ | ସେ, ତାହା | କିମ୍ | କେ, କିଏ, କଅଣ |
| ଭବାନ୍ | ଆପଣ | ସର୍ବ | ସର୍ବ, ସବୁ |
| ଯଦ୍ | ଯେ, ଯାହା | ଅନ୍ୟ | ଅନ୍ୟ, ଆଉ, ଆନ |

ଅନୁଶୀଳନୀ—(କ) ନିମ୍ନଲିଖିତ ବାକ୍ୟମାନଙ୍କରେ ସର୍ବନାମ ପଦ ଚିହ୍ନାଇ ଦିଅ, ଏବଂ ତାହା ଯେଉଁ ବିଶେଷ୍ୟପଦ ପରିବର୍ତ୍ତେ ବସିଅଛି ଓ ତହିଁରେ କେଉଁ ବିଭକ୍ତି ଅଛି ବୋଲ—

୧ । ଗାଈ ତାହାର ଛୁଆକୁ ଭଲ ପାଏ ।

୨ । ନଦୀମାନେ ପର୍ବତରୁ ଜନ୍ମି ସାଗର ବା ହ୍ରଦମାନଙ୍କରେ ପଡ଼ନ୍ତି ହୁଅନ୍ତି । ସେମାନଙ୍କ ଦ୍ୱାରା ପ୍ରାଣୀ ଓ ଉଦ୍ଭିଦ୍‌ମାନଙ୍କର ବହୁତ ଉପକାର ହୁଏ ।

୩ । ପାର୍ବତୀ ଓ ସାବିତ୍ରୀ ମଧ୍ୟରେ କିଏ ବଡ଼ କହିବା ସହଜ ନୁହେଁ ।

୪ । ହରି ଦୁଷ୍ଟ ବୋଲି ତାକୁ କେହି ଭଲ ପାଆନ୍ତି ନାହିଁ । ସେ ଅନ୍ୟଠାରୁ ପଦାର୍ଥ ନେଲେ ତାହା ଫେରାଇ ଦେବାକୁ ଇଚ୍ଛା କରେ ନାହିଁ ।

୫ । ଗୁଣ୍ଡିଚି ମୂଷାଟିଏ ଯାଉଅଛି । ଏହାର ଦେହ ବଡ଼ କୋମଳ । ଏହାକୁ ମିଶ୍ରି ଦେଲେ କୁଟୁରୁ କୁଟୁରୁ କରି ଖାଏ ।

୬ । ସର୍ବେ ଚଳିବେ କାଳବଳେ,
ଦେବି ବୀଣାପାଣି !
କରୁଣା ତୋହର
ଯିଣି ରହିବ ମସ୍ତକଲେ ।
କେଉଁ ପାପଫଳେ,
ଊଣା ଏ ଉତ୍କଳେ ?

ନିମ୍ନଲିଖିତ ବାକ୍ୟମାନଙ୍କରେ ବିଶେଷ୍ୟପଦ ପରିବର୍ତ୍ତେ ଯେଉଁଠାରେ ସର୍ବନାମ ବସିବା ଉଚିତ, ସେଠାରେ ତାହା ବସାଅ—

୧ । ସୀତା ଜନକରାଜାଙ୍କର କନ୍ୟା ଥିଲେ । ସୀତା ରାମଚନ୍ଦ୍ରଙ୍କୁ ବିବାହ କଲେ ।

୨ । ପୁରୀ କଟକ ନଗରର ଦକ୍ଷିଣ ଦିଗରେ କଟକ ନଗରଠାରୁ ୨୫ କୋଶ ଦୂରରେ ଅଛି ।

୩ । କୁକୁର କୁକୁରର ସ୍ୱଭାବ ପରିତ୍ୟାଗ କରେ ନାହିଁ । କୁକୁର ପୋଷା ମାନେ ।

୪ । ରମା ଓ ମାଳତୀ କାହାଣୀ ଶୁଣୁଥିଲେ । କାଳୀ ଆସି ପହଞ୍ଚିଲା । କାଳୀକୁ କେହି ବସିବାକୁ କହିଲେ ନାହିଁ । କାଳୀ ଆପଣା ମନକୁ ବସି କାହାଣୀ ଶୁଣିଲା ।

## ୧୧—କ୍ରିୟା

'ହରି ଆସୁଅଛି'—ଏହି ବାକ୍ୟରେ 'ଆସୁଅଛି' ପଦ ଗୋଟିଏ କାର୍ଯ୍ୟ ବା କ୍ରିୟା ବୁଝାଉଅଛି । 'ଛେଳିଛୁଆ ଡେଉଁଅଛି'—ଏଠାରେ 'ଡେଉଁଅଛି' ଗୋଟିଏ କାର୍ଯ୍ୟ ବା କ୍ରିୟା ବୁଝାଇଅଛି ।

'ମେଘ ବର୍ଷିଲା'—ଏଠାରେ 'ବର୍ଷିଲା' ଗୋଟିଏ କାର୍ଯ୍ୟ ବା କ୍ରିୟା ବୁଝାଉଅଛି ।

ଆସୁଅଛି, ଡେଉଁଅଛି, ବର୍ଷିଲା—ଏଗୁଡ଼ିକ **କ୍ରିୟାପଦ । ଯେଉଁ ପଦରେ କୌଣସି କାର୍ଯ୍ୟ ବା କ୍ରିୟା ବୁଝାଏ, ତାହାକୁ କ୍ରିୟା କହନ୍ତି** ।

ଅନୁଶୀଳନୀ—(କ) ନିମ୍ନଲିଖିତ ବାକ୍ୟମାନଙ୍କରେ କ୍ରିୟାପଦ ଚିହ୍ନାଇ ଦିଅ—୧-ଗାଈ ଚରୁଅଛି । ୨-ହାତୀ ଝୁଲୁଅଛି । ୩-ସୂର୍ଯ୍ୟ ଉଇଁଲାଣି । ୪-ବୈଶାଖ ମାସରେ ଆମ୍ବ ପାଚେ । ୫-ବଗିଚାରେ ଫୁଲ ଫୁଟିଅଛି । ୬-ଅର୍ଜୁନ ନଦୀରେ ପହଁରିପାରେ । ୭-କ୍ଷେତ୍ରମଣି ମୋତେ ଏ ଛବିଟି ଦେଲା । ୮-ଧୀର ପାଣି ପଥର କାଟେ । ୯-ତୁଳସୀ ଦୁଇପତ୍ରରୁ ବାସେ । ୧୦-ମା ମୋତେ ଖାଇବାକୁ ଦେଲା ।

(ଖ) ନିମ୍ନଲିଖିତ କ୍ରିୟାମାନଙ୍କୁ ବ୍ୟବହାର କରି ଗୋଟିଏ ଗୋଟିଏ ବାକ୍ୟ ରଚନା କର:—

ଶୋଇଲେ, ବଢ଼ୁଅଛି, ଯାଉ, ମରୁଛି, ବାନ୍ଧୁଛି, ମାଇଲେ, ଦେଲା ।

'ବନମାଳୀ ଭାତ ଖାଇ ଶୋଇଲା'—ଏହି ବାକ୍ୟରେ 'ଖାଇ' ଗୋଟିଏ କ୍ରିୟାପଦ ଏବଂ 'ଶୋଇଲା' ଗୋଟିଏ କ୍ରିୟାପଦ । 'ବନମାଳୀ ଭାତ ଖାଇ' ଏତିକି କହିଲେ, ବାକ୍ୟ ଶେଷ ହେଉନାହିଁ । ଏଣୁ 'ଖାଇ' କ୍ରିୟାପଦକୁ **ଅସମାପିକା କ୍ରିୟା** ବୋଲାଯାଏ ।

'ବନମାଳୀ ଭାତ ଖାଇ ଶୋଇଲା'—ଏଠାରେ 'ଶୋଇଲା' ଏହି କ୍ରିୟା-ପଦରେ ବାକ୍ୟ ସମ୍ପୂର୍ଣ୍ଣ ହେଲା । ଏଣୁ 'ଶୋଇଲା' **ସମାପିକା କ୍ରିୟା** ।

'ସୀତା ଯାଉଁ ଯାଉଁ ଝୁଣ୍ଟିଲା' । ଏଠାରେ ଯାଉଁ ଯାଉଁ ଅସମାପିକା କ୍ରିୟା, 'ଝୁଣ୍ଟିଲା' ସମାପିକା କ୍ରିୟା । 'ମୁକୁନ୍ଦ' ନ ଗଲେ ମାଧବ ଯିବ—ଏଠାରେ 'ଗଲେ' ଅସମାପିକା କ୍ରିୟା, 'ଯିବ' ସମାପିକା କ୍ରିୟା ।

ଯେଉଁ କ୍ରିୟାରେ ବାକ୍ୟ ସମ୍ପୂର୍ଣ୍ଣ ହୁଏ, ତାହାକୁ **ସମାପିକା** କ୍ରିୟା କହନ୍ତି । ଯେଉଁ କ୍ରିୟାରେ ବାକ୍ୟ ସମ୍ପୂର୍ଣ୍ଣ ହୁଏ ନାହିଁ, ତାହାକୁ **ଅସମାପିକା କ୍ରିୟା** କହନ୍ତି ।

ଅନୁଶୀଳନୀ—ନିମ୍ନଲିଖିତ ବାକ୍ୟମାନଙ୍କରେ ସମାପିକା ଓ ଅସମାପିକା କ୍ରିୟା ଚିହ୍ନାଇ ଦିଅ:—

୧-ଦୀନବନ୍ଧୁ ହସି କହିଲା । ୨-ଗୋପାଳ ଶୋଇ ଉଠିଲାଣି । ୩-ରାତି ପାହିଲେ ଅନ୍ଧାର ନ ଥିବ । ୪-ମଧୁ ଯାଇଥିଲେ ମୁଁ ଯାଇଥାନ୍ତି । ୫-ସେ ଗଛରୁ ପଡ଼ି ମଲା । ୬-ରଘୁଙ୍କ ଗୁଣ କହିଲେ ସରିବ ନାହିଁ । ୭-ମନ ଦେଇ କଥା ଶୁଣ ୮-ଭୋକ କଲେ ଖାଇବ ।

## ୧୨—ସକର୍ମକ ଓ ଅକର୍ମକ କ୍ରିୟା

'ବନମାଳୀ **ଭାତ** ଖାଉଅଛି'—ଏହି ବାକ୍ୟରେ ଭାତ 'ଖାଉଅଛି' କ୍ରିୟାର **କର୍ମ** । 'ରମା ମୁଣ୍ଡ କୁଣ୍ଡାଉଅଛି' - ଏଠାରେ **ମୁଣ୍ଡ** କୁଣ୍ଡାଉଅଛି କ୍ରିୟାର **କର୍ମ** । 'ଗୋବିନ୍ଦ **ଘରକୁ** ଗଲା'—ଏଠାରେ **ଘରକୁ** 'ଗଲା' କ୍ରିୟାର **କର୍ମ** । ଖାଉଅଛି, କୁଣ୍ଡାଉଅଛି, ଗଲା—ଏଗୁଡ଼ିକ **ସକର୍ମକ** କ୍ରିୟା ।

**ଯେଉଁ କ୍ରିୟାର କର୍ମ ଥାଏ, ତାହାକୁ ସକର୍ମକ କ୍ରିୟା କହନ୍ତି ।**

'ମାଧବ ଉଠିଲା' ଏଠାରେ 'ଉଠିଲା' କ୍ରିୟାର **କର୍ମ** ନାହିଁ । 'ମଧୁ ଶୋଇବ'—ଏଠାରେ ଶୋଇବା କ୍ରିୟାର **କର୍ମ** ନାହିଁ । ରାତି ପାହିଲାଣି—ଏଠାରେ 'ପାହିଲାଣି' କ୍ରିୟାର **କର୍ମ** ନାହିଁ । ଉଠିଲା, ଶୋଇବ, ପାହିଲାଣି—ଏଗୁଡ଼ିକ ଅକର୍ମକ କ୍ରିୟା ।

**ଯେଉଁ କ୍ରିୟାର କର୍ମ ନ ଥାଏ ତାହାକୁ ଅକର୍ମକ କ୍ରିୟା କହନ୍ତି ।**

'ସେହି ଅନ୍ଧ ଲୋକଟି ଯଦୁକୁ ଖଣ୍ଡିଏ ବସ୍ତ୍ର ମାଗୁଅଛି'—ଏଠାରେ 'ମାଗୁଅଛି', କ୍ରିୟାର ଗୋଟିଏ କର୍ମ 'ବସ୍ତ୍ର', ଆଉ ଗୋଟିଏ କର୍ମ 'ଯଦୁକୁ' । 'ବସ୍ତ୍ର'

**ପ୍ରଧାନକର୍ମ** 'ଯଦୁକୁ' **ଅପ୍ରଧାନ କର୍ମ**। 'ପଣ୍ଡିତେ ଗୋବନ୍ଦକୁ ବ୍ୟାକରଣ ପଢ଼ାଉଅଛନ୍ତି'—ଏହି ବାକ୍ୟରେ 'ପଢ଼ାଉଅଛନ୍ତି' କ୍ରିୟାର ଗୋଟିଏ କର୍ମ 'ବ୍ୟାକରଣ', ଆଉ ଗୋଟିଏ 'କର୍ମ' 'ଗୋବନ୍ଦକୁ'। ବ୍ୟାକରଣ **ପ୍ରଧାନ କର୍ମ**, ଗୋବନ୍ଦକୁ ଅପ୍ରଧାନ କର୍ମ । ମାଗୁଅଛୁ, ପଢ଼ାଉଅଛନ୍ତି—ଏଗୁଡ଼ିକ **ଦ୍ୱି କର୍ମକ କ୍ରିୟା**।

**ଯେଉଁ କ୍ରିୟାର ଯେତିଏ କର୍ମ ଥାଏ, ତାହାକୁ ଦ୍ୱିକର୍ମକ କ୍ରିୟା କହନ୍ତି** । କର୍ମଯୋଡ଼ିକ ମଧ୍ୟରୁ ଗୋଟିଏ **ପ୍ରଧାନ କର୍ମ**, ଅନ୍ୟଟି **ଅପ୍ରଧାନ କର୍ମ** ।

[ ଯେଉଁ ବ୍ୟକ୍ତିକୁ ବସ୍ତୁ ଦିଆଯାଏ ସେହି ବସ୍ତୁକୁ ପ୍ରଧାନ କର୍ମ ଓ ବ୍ୟକ୍ତିକୁ ଅପ୍ରଧାନ କର୍ମ କୁହାଯାଏ ।] —ସମ୍ପାଦକ

ଅନୁଶୀଳନୀ—ନିମ୍ନଲିଖିତ ବାକ୍ୟମାନଙ୍କର କ୍ରିୟା ସକର୍ମକ କି ଅକର୍ମକ ବୋଲ ଏବଂ କ୍ରିୟା ସକର୍ମକ ହୋଇଥିଲେ, ତାହାର କର୍ମପଦ ଚିହ୍ନାଇ ଦିଅ ଏବଂ କେଉଁ କର୍ମ ପ୍ରଧାନ ତାହା କୁହ ।

୧-ପର୍ବତରେ ମାଳତୀ ଫୁଟିଅଛି । ୨- ପାର୍ବତୀ ମାଙ୍କ କଥା ଶୁଣିଲେ ନାହିଁ । ୩-କୋଇଲି ବରଫଳ ଖାଏ । ୪-ଏହି ଗଛରେ ବହୁତ ଆମ୍ବ ଧରିଅଛି । ୫-ଉମା ଶୁଆକୁ ଦୁଧ ପିଆଇଲା । ୬-ରାମଚନ୍ଦ୍ର ସୀତାଙ୍କୁ ବନକୁ ପଠାଇଲେ । ୭-ନଦୀ ଦୁଇକୂଳ ଖାଉଅଛି । ୮-ନିଆଁ ନ ଥିଲେ ଧୂଆଁ ବାହାରେ ନାହିଁ । ୯-ଦିଅଁ ଗଢ଼ୁ ଗଢ଼ୁ ମାଙ୍କଡ଼ ହେଲା । ୧୦-ଲୋଭୀକୁ ଯେତେ ଧନ ଦିଅ ତେତେ ତାହାର ଲୋଭ ବଢ଼ିବ । ୧୧-ଧନୀଲୋକ ଶୀତକୁ ଭୟକରେ ନାହିଁ । ୧୨-ବାଉଁଶ ଫୁଲିଲେ ମରେ ।

## ୧୩—କ୍ରିୟାର କାଳ

କ୍ରିୟାର କେତେଗୁଡ଼ିଏ କାଳ ଅଛି । ରାମ ଆସୁଅଛି, ବନମାଳୀ ଭାତ ଖାଉଅଛି, ବାୟୁ ବହେ—ଏହି ବାକ୍ୟମାନଙ୍କରେ ଆସୁଅଛି, ଖାଉଅଛି, ବହେ **ବର୍ତ୍ତମାନ କାଳର କ୍ରିୟା** ।

ମାଧବ ଆସିଲା, ନଈ ବଢ଼ିଲା, ପକ୍ଷୀ ରାବିଲା—ଏହି ବାକ୍ୟମାନଙ୍କରେ ଆସିଲା, ବଢ଼ିଲା, ରାବିଲା **ଭୂତକାଳର କ୍ରିୟା** । ଭୂତ କାଳକୁ **ଅତୀତକାଳ** ମଧ୍ୟ କହନ୍ତି ।

ପଣସ ପାଚିବ, ମଧୁ ନାଚିବ, ସାପ ମରିବ, ହାଟ ଭାଙ୍ଗିବ, ଯଦୁ ଶୋଇବ—ଏହି ବାକ୍ୟମାନଙ୍କରେ ପାଚିବ, ନାଚିବ, ମରିବ, ଭାଙ୍ଗିବ, ଶୋଇବ—**ଭବିଷ୍ୟତ କାଳର କ୍ରିୟା** ।

ଗୋଟିଏ କ୍ରିୟାର କାଳ ଭୂତ ହେଲେ ତାହାର ପୂର୍ବବର୍ତ୍ତୀ କ୍ରିୟାର କାଳକୁ ପ୍ରାଗ୍‌ଭୂତ ବୋଲଯାଏ । ସନ୍ଧ୍ୟାବେଳେ ବର୍ଷା ହେଲ, ଦୁଇ ପହରେ ଖରା ହୋଇଥିଲା—ଏଠାରେ 'ହେଲ' ଭୂତକାଳର କ୍ରିୟା, 'ହୋଇଥିଲ' ପ୍ରାଗ୍‌ଭୂତ କାଳର କ୍ରିୟା ।

**ଗୋଟିଏ କ୍ରିୟାର କାଳ ଭବିଷ୍ୟତ ହେଲେ, ତାହାର ପୂର୍ବବର୍ତ୍ତୀ କ୍ରିୟାର କାଳକୁ ପ୍ରାଗ୍‌ଭବିଷ୍ୟତ୍ ବୋଲଯାଏ ।** ରବିବାର ଦିନ ମାଧବ ଆସିବ । ତାହା ପୂର୍ବରୁ ମୁକୁନ୍ଦ ଆସିଥିବ—ଏଠାରେ 'ଆସିବ' ଭବିଷ୍ୟତ୍ କାଳର କ୍ରିୟା, 'ଆସିଥିବ' ପ୍ରାଗ୍‌ଭବିଷ୍ୟତ୍ କାଳର କ୍ରିୟା ।

**ଯେଉଁ କ୍ରିୟାରେ ଆଦେଶ, ଆଶୀର୍ବାଦ ବା ପ୍ରାର୍ଥନା ଜଣାଯାଏ, ତାହାକୁ ଅନୁଜ୍ଞା ବୋଲଯାଏ ।** ଦରିଦ୍ରକୁ ବସ୍ତ୍ର ଦିଅ, ଦୀର୍ଘାୟୁ ହୁଅ', 'କୃଷ୍ଣକୁ ଗୋଟିଏ ଟଙ୍କା ଦିଅନ୍ତୁ'—ଏହି ବାକ୍ୟମାନଙ୍କରେ ଦିଅ, ହୁଅ, ଦିଅନ୍ତୁ—ଏହି କ୍ରିୟାଗୁଡ଼ିକ **ଅନୁଜ୍ଞା** ।

ଅନୁଶୀଳନୀ—(କ) ନିମ୍ନଲିଖିତ ବାକ୍ୟମାନଙ୍କରେ କ୍ରିୟାର କାଳ ବୋଲ ।

୧-ଶ୍ରାବଣ ମାସରେ ବର୍ଷା ହୁଏ । ୨-ମଧୁକୁ ଡର ମାଡ଼ୁଛି । ୩-ଗୁଡ଼ରୁ ଚିନି ହୁଏ । ୪-ମଲ୍ଲୀଫୁଲରେ ସୁଗନ୍ଧ ଅଛି । ୫-ଶ୍ରାବଣମାସରେ ଯେଉଁ ବନ୍ୟା ହୋଇଥିଲା ସେଥିରେ କେତେଗୁଡ଼ିଏ ମହିଷ ଭସିଗଲେ । ୬-ରାମ କେତେବେଳେ ଆସିବ, ମୁଁ ଜାଣେ ନାହିଁ । ୭-ଅବଧାନେ ଯାହା କହୁଅଛନ୍ତି, ମନ ଦେଇ ତାହା ଶୁଣ । ୮-ସନ୍ଧ୍ୟାବେଳକୁ ମୁଁ ଆସିଥିବ । ୯-ଆଖୁରୁ ଯେଉଁ ଚିନି ହୁଏ, ସେଥିରେ ଲଡ଼ୁ ତିଆରି ହେଉଛି ।

(ଖ) ୧ । ଭୂତ କାଳର କ୍ରିୟା ବ୍ୟବହାର କରି ଗୋଟିଏ ବାକ୍ୟ ରଚନା କର ।

୨ । ପ୍ରାଗ୍‌ଭୂତ ଓ ଭୂତ ଉଭୟ କାଳର କ୍ରିୟା ବ୍ୟବହାର କରି ଗୋଟିଏ ବାକ୍ୟ ରଚନା କର ।

୩ । ଭବିଷ୍ୟତ୍ ଓ ପ୍ରାଗ୍-ଭବିଷ୍ୟତ କାଳର କ୍ରିୟା ବ୍ୟବହାର କରି ଗୋଟିଏ ବାକ୍ୟ ରଚନା କର ।

୪ । ଭୂତ ଓ ବର୍ତ୍ତମାନ କାଳର କ୍ରିୟା ବ୍ୟବହାର କରି ଗୋଟିଏ ବାକ୍ୟ ରଚନା କର ।

୫ । ଭବିଷ୍ୟତ୍ କାଳର କ୍ରିୟା ବ୍ୟବହାର କରି ଗୋଟିଏ ବାକ୍ୟ ରଚନା କର ।

୬ । ଭୂତ କାଳର କ୍ରିୟା ବ୍ୟବହାର କରି ଗୋଟିଏ ପ୍ରଶ୍ନ ପଚାର ।

## ୧୪—କ୍ରିୟାର ପୁରୁଷ ଓ ବଚନ

କ୍ରିୟାର ତିନୋଟି ପୁରୁଷ ଓ ଦୁଇଟି ବଚନ ଅଛି ।

ଆମ୍ଭେ, ମୁଁ ବା ଆମ୍ଭେମାନେ ଯେଉଁ କ୍ରିୟାର କର୍ତ୍ତା, ତାହା **ଉତ୍ତମ** ବା **ପ୍ରଥମ** ପୁରୁଷର କ୍ରିୟା; ତୁମ୍ଭେ, ତୁ, ତୁମ୍ଭେମାନେ ଯେଉଁ କ୍ରିୟାର କର୍ତ୍ତା, ତାହା **ମଧ୍ୟମ** ବା **ଦ୍ୱିତୀୟ** ପୁରୁଷର କ୍ରିୟା; ଆମ୍ଭେ, ତୁମ୍ଭେ, ମୁଁ, ତୁ, ଆମ୍ଭେମାନେ, ତୁମ୍ଭେମାନେ—ଏଗୁଡ଼ିକ ଭିନ୍ନ ଅନ୍ୟ ପଦ ଯେଉଁ କ୍ରିୟାର କର୍ତ୍ତା, ତାହା **ତୃତୀୟ** ପୁରୁଷର କ୍ରିୟା ।

ଆମ୍ଭେ କହିଲୁଁ—ଏଠାରେ 'କହିଲୁଁ' ଉତ୍ତମ ପୁରୁଷର କ୍ରିୟା', ତୁମ୍ଭେ ଦେଖୁଅଛ—ଏଠାରେ 'ଦେଖୁଅଛ' ମଧ୍ୟମ ପୁରୁଷର କ୍ରିୟା, ମାଧବ ବୁଲୁଅଛି—ଏଠାରେ ବୁଲୁଅଛି ତୃତୀୟ ପୁରୁଷର କ୍ରିୟା ।

**କର୍ତ୍ତାର ଏକବଚନ ହେଲେ କ୍ରିୟାର ଏକବଚନ, କର୍ତ୍ତାର ବହୁବଚନ ହେଲେ କ୍ରିୟାର ବହୁବଚନ ହୁଏ ।** 'ଗୋରୁ ଚରୁଅଛି—ଏଠାରେ 'ଚରୁଅଛି' ଏକବଚନର କ୍ରିୟା । 'ଗୋରୁଗୁଡ଼ିକ ଚରୁଅଛନ୍ତି'—ଏଠାରେ 'ଚରୁଅଛନ୍ତି' ବହୁବଚନର କ୍ରିୟା ।

ଅନୁଶୀଳନୀ—ନିମ୍ନଲିଖିତ ବାକ୍ୟମାନଙ୍କର କ୍ରିୟାର ପୁରୁଷ ଓ ବଚନ ବୋଲ—

୧) ପଣ୍ଡିତ ସଭାରେ ବସିଅଛନ୍ତି ।
୨) ଦଶରଥ ଅଯୋଧ୍ୟାର ରାଜା ଥିଲେ ।
୩) ବାଳୁଙ୍ଗାଗୁଡ଼ିଏ ବୁଲୁଛନ୍ତି ।
୪) ପୁରୀରୁ ଫେରିଲାବେଳେ ମୁଁ ଦେଖିଲି ସଡ଼କ ପାଖରେ କେତେଗୁଡ଼ିଏ ପାନବରଜ ଅଛି ।
୫) ତୁମ୍ଭେମାନେ ଯେତେବେଳେ ପହଞ୍ଚିଥିଲ ତେତେବେଳକୁ ମଧୁ ଆସି ନ ଥିଲା ।
୬) କେ ଅବା ଅଛି କେଉଁ ମତେ, ତାହା ମୁଁ ଜାଣିବ କେମନ୍ତେ ।
୭) ଆପଣ ଯେପରି ଆଦେଶ କଲେ ଆମ୍ଭେମାନେ ସେପରି କଲୁଁ ।

ଭିନ୍ନ ଭିନ୍ନ କାଳ, ପୁରୁଷ ଓ ବଚନରେ **ଦେବା** କ୍ରିୟାର ରୂପ ପର ପୃଷ୍ଠାରେ ଦେଖାଇ ଦିଆଗଲା—

### ବର୍ତ୍ତମାନ

| କାଳ | ପୁରୁଷ | ଏକବଚନ | ବହୁବଚନ |
|---|---|---|---|
| | ଉତ୍ତମ | ଦେଉଛି, ଦେଉଅଛି | ଦେଉଛୁ, ଦେଉଅଛୁଁ |

| | | |
|---|---|---|
| ମଧ୍ୟମ | ଦେଉଅଛ, ଦେଉଛ | ଦେଉଛ, ଦେଉଅଛ |
| ତୃତୀୟ | ଦେଉଅଛି, ଦେଉଅଛନ୍ତି | ଦେଉଅଛନ୍ତି |

### ଭୂତ

| | | |
|---|---|---|
| ଉତ୍ତମ | ଦେଲୁଁ, ଦେଲି | ଦେଲୁଁ |
| ମଧ୍ୟମ | ଦେଲ, ଦେଲୁ | ଦେଲ |
| ତୃତୀୟ | ଦେଲା, ଦେଲେ | ଦେଲେ |

### ପ୍ରାଗ୍‌ଭୂତ

| | | |
|---|---|---|
| ଉତ୍ତମ | ଦେଇଥିଲୁଁ, ଦେଇଥିଲି | ଦେଇଥିଲୁଁ |
| ମଧ୍ୟମ | ଦେଇଥିଲ, ଦେଇଥିଲୁ | ଦେଇଥିଲ |
| ତୃତୀୟ | ଦେଇଥିଲା, ଦେଇଥିଲେ | ଦେଇଥିଲେ |

### ଭବିଷ୍ୟତ୍

| | | |
|---|---|---|
| ଉତ୍ତମ | ଦେବୁଁ, ଦେବି | ଦେବୁଁ |
| ମଧ୍ୟମ | ଦେବ, ଦେବୁ | ଦେବ |
| ତୃତୀୟ | ଦେବ, ଦେବେ | ଦେବେ |

### ପ୍ରାଗ୍ ଭବିଷ୍ୟତ୍

| | | |
|---|---|---|
| ଉତ୍ତମ | ଦେଇଥିବୁଁ, ଦେଇଥିବି | ଦେଇଥିବୁଁ |
| ମଧ୍ୟମ | ଦେଇଥିବ, ଦେଇଥିବୁ | ଦେଇଥିବ |
| ତୃତୀୟ | ଦେଇଥିବ, ଦେଇଥିବେ | ଦେଇଥିବେ |

### ଅନୁଜ୍ଞା

| | | |
|---|---|---|
| ଉତ୍ତମ | ଦେଉଁ, ଦିଏ | ଦେଉଁ |
| ମଧ୍ୟମ | ଦିଅ, ଦେ | ଦିଅ |
| ତୃତୀୟ | ଦେଉ, ଦିଅନ୍ତୁ, ଦେଉନ୍ତୁ, ଦେଉ ଦେଉନ୍ତୁ, ଦିଅନ୍ତୁ | |

## ୧୫—ପ୍ରେରଣାର୍ଥ କ୍ରିୟା

ମଧୁ ପଢ଼ୁଅଛି । ଅବଧାନେ ମଧୁକୁ ପଢ଼ାଉଅଛନ୍ତି । ଏଠାରେ ପ୍ରଥମ ବାକ୍ୟରେ ଜଣେ କାର୍ଯ୍ୟ କରୁଅଛି ବୋଲି ପ୍ରକାଶ ପାଉଅଛି, ଦ୍ୱିତୀୟ ବାକ୍ୟରେ ଜଣେ କାର୍ଯ୍ୟ କରାଉଅଛି ବୋଲି ଜଣା ଯାଉଅଛି । ଦ୍ୱିତୀୟ ବାକ୍ୟରେ 'ପଢ଼ାଉ-ଅଛନ୍ତି' '**ପ୍ରେରଣାର୍ଥ କ୍ରିୟା**' ।

ଏହିପରି ଯେଉଁ କ୍ରିୟାରେ କେହି କରାଉଅଛି ବୋଲି ପ୍ରକାଶ ପାଏ, ସେହିପରି କ୍ରିୟାକୁ **ପ୍ରେରଣାର୍ଥ କ୍ରିୟା** କହନ୍ତି ।

'ଉମା ଶୁଆଙ୍କୁ ଦୁଧ ପିଆଉଅଛି'—ଏହି ବାକ୍ୟରେ 'ପିଆଉଅଛି' ପ୍ରେରଣାର୍ଥକକ୍ରିୟା ।

| ମୂଳକ୍ରିୟା | ପ୍ରେରଣାର୍ଥକକ୍ରିୟା |
|---|---|
| ଆଣୁଅଛି | ଅଣାଉଅଛି |
| କହୁଅଛି | କୁହାଉଅଛି |
| ଖାଉଅଛି | ଖୁଆଉଅଛି |
| ଟାଣୁଅଛି | ଟଣାଉଅଛି |
| ଡରୁଅଛି | ଡରାଉଅଛି |
| ଦେଉଅଛି | ଦିଆଉଅଛି |
| ଦେଖୁଅଛି | ଦେଖାଉଅଛି |
| ଧୋଇବେ | ଧୁଆଇବେ |
| ନାଚିଲା | ନଚାଇଲା |
| ଶୋଇବା | ଶୁଆଇବା |

ଭିନ୍ନ ଭିନ୍ନ କାଳ, ପୁରୁଷ ଓ ବଚନରେ ଅନ୍ୟ କ୍ରିୟାମାନଙ୍କର ଯେପରି ରୂପ ହୁଏ, ପ୍ରେରଣାର୍ଥ କ୍ରିୟାମାନଙ୍କର ମଧ୍ୟ ସେହିପରି ହୁଏ ।

**ସକର୍ମକ କ୍ରିୟାକୁ ପ୍ରେରଣାର୍ଥ କଲେ ତାହା ଦ୍ୱିକର୍ମକ ହୁଏ, ଅକର୍ମକ କ୍ରିୟାକୁ ପ୍ରେରଣାର୍ଥ କଲେ ସକର୍ମକ ହୁଏ ।**

ଅନୁଶୀଳନୀ—(କ) ନିମ୍ନଲିଖିତ ବାକ୍ୟମାନଙ୍କରେ କ୍ରିୟା ଅକର୍ମକ, ସକର୍ମକ କି ଦ୍ୱିକର୍ମକ ବୋଲି ଏବଂ ପ୍ରେରଣାର୍ଥ କ୍ରିୟା ଥିଲେ, ଚିହ୍ନାଇ ଦିଅ ।

୧ । ଜ୍ୟେଷ୍ଠ ମାସରେ ଟାଣ ଖରା ହୁଏ ୨ । ବ୍ରାହ୍ମଣମାନେ ମିଷ୍ଟାନ୍ନ ଭୋଜନ କରୁଅଛନ୍ତି ୩ । ନାବିକ ଧୀରେ ନୌକା ଚଳାଇଲା ୪ । ତମାଲ ଫଳ ଆମ୍ବିଳା ଅଟେ ୫ । ବାପା ମୁକୁନ୍ଦକୁ କୋଇଲି ଦେଖାଇଲେ । ୬ । ମା କାଲି ମାମୁଘରୁ ପାଟଣିକୁ ଅଣାଇବେ ୭ । କବି ରାଧାନାଥ ଚିଲିକା କାବ୍ୟ ରଚନା କଲେ ୮ । ଗୋବିନ୍ଦ ଗୋପାଳଦ୍ୱାରା ଟଙ୍କା ଗଣାଉଅଛି ୯ । ବଗିଚାରେ ଅନେକ ଫୁଲ ଫୁଟି ଅଛି ।

(ଖ) ନିମ୍ନଲିଖିତ ବାକ୍ୟମାନଙ୍କରେ ଯେଉଁ କ୍ରିୟାପଦଗୁଡ଼ିକ ଅଛି, ସେଗୁଡ଼ିକୁ ପ୍ରେରଣାର୍ଥ କ୍ରିୟା କରି ତଦନୁସାରେ ବାକ୍ୟ ପରିବର୍ତ୍ତନ କର—

| | |
|---|---|
| ୧ । ଶିଶୁ ଗିଳୁଅଛି । | ୬ । ପଦାରେ ଗୋରୁ ଚରିବ । |
| ୨ । ପିଲା ଶୋଇଅଛି । | ୭ । ଆମ୍ବ ପଡ଼ିଲା । |
| ୩ । ପତଙ୍ଗ ଉଡ଼ିଲା । | ୮ । ଗୋପାଳି ଖାଇଲା । |

୪ । ଘଣ୍ଟା ବାଜିବ । ୯ । ଘୋଡ଼ା ଦୌଡ଼ିବ ।
୫ । ଲୋକନାଥ ଲୁଗା ପିନ୍ଧିବ । ୧୦ । ଧୋବଣୀ ଲୁଗା ଧୋଇଲା ।

## ୧୭—ବିଶେଷଣ

'ଦୟାଳୁ ଲୋକ ସମସ୍ତଙ୍କର ଉପକାର କରେ'—ଏହି ବାକ୍ୟରେ ଲୋକ, ଗୋଟିଏ ବିଶେଷ୍ୟ ପଦ, **'ଦୟାଳୁ'** ଏହି ପଦ ଲୋକର ଗୋଟିଏ **ଗୁଣ** ପ୍ରକାଶ କରୁଅଛି । 'ସୁନ୍ଦର ପୁଷ୍ପ ଦେଖିଲେ ଆନନ୍ଦ ଜନ୍ମେ'—ଏହି ବାକ୍ୟରେ 'ସୁନ୍ଦର' ପଦଟି ପୁଷ୍ପର ଗୋଟିଏ **ଗୁଣ** ପ୍ରକାଶ କରୁଅଛି । 'ପାଚିଲା ପଣସ ମିଠା ଲାଗେ'—ଏହି ବାକ୍ୟରେ 'ପାଚିଲା' ଏହି ପଦ ପଣସର **ଅବସ୍ଥା** ପ୍ରକାଶ କରୁଅଛି, ଏବଂ 'ମିଠା ଏହି ପଦ ପଣସର **ଗୁଣ** ପ୍ରକାଶ କରୁଅଛି । 'ସେହି ଅନ୍ଧ ଲୋକକୁ ଭିକ୍ଷା ଦିଅ'—ଏହି ବାକ୍ୟରେ 'ଅନ୍ଧ' ଏହି ପଦ ଲୋକର **ଅବସ୍ଥା** ପ୍ରକାଶ କରୁଅଛି । 'ସାତଦିନରେ ସପ୍ତାହ ହୁଏ 'ସାତ ପଦ ଦିନର **ସଂଖ୍ୟା** ପ୍ରକାଶ କରୁଅଛି । 'ମାଣେ ଜମିରେ ଧାନ ରୁଆ ହୋଇଅଛି'—ଏହି ବାକ୍ୟରେ 'ମାଣେ' ଜମିର **ପରିମାଣ** ପ୍ରକାଶ କରୁଅଛି ।

ଉପରଲିଖିତ ବାକ୍ୟମାନଙ୍କରେ ଦୟାଳୁ, ସୁନ୍ଦର, ପାଚିଲା, ମିଠା, ଅନ୍ଧ, ସାତ, ମାଣେ—ଏଗୁଡ଼ିକ ବିଶେଷଣ ପଦ ।

'ଶ୍ୟାମ ଶୀଘ୍ର ଆସୁଅଛି'—ଏହି ବାକ୍ୟରେ 'ଶୀଘ୍ର' ଏହି ପଦ 'ଆସିବା' କାର୍ଯ୍ୟର **ଗୁଣ** ପ୍ରକାଶ କରୁଅଛି । ଏଠାରେ 'ଶୀଘ୍ର' ବିଶେଷଣ ପଦ । 'ହାତୀ ଧୀରେ ଝୁଲୁଅଛି'—ଏହି ବାକ୍ୟରେ 'ଧୀରେ' ଏହି ପଦ' ଝୁଲିବା' କାର୍ଯ୍ୟର **ଗୁଣ ପ୍ରକାଶ** କରୁଅଛି । ଏଠାରେ 'ଧୀରେ' ବିଶେଷଣ ପଦ । 'ଯଷ୍ଟିମଧୁ' ଅତିଶୟ ମଧୁର ଅଟେ'—ଏହି ବାକ୍ୟରେ 'ମଧୁର' ଏହି ପଦ ଦ୍ୱାରା ଯେଉଁ **ଗୁଣ** ପ୍ରକାଶ ପାଉଅଛି, **'ଅତିଶୟ'** ଏହି ପଦ ତାହାର ପରିମାଣ ଜଣାଉଅଛି । ଏଠାରେ **'ଅତିଶୟ'** ବିଶେଷଣ ପଦ ।

**ଯେଉଁ ପଦ ଅନ୍ୟ ପଦ ଦ୍ୱାରା ସୂଚିତ ପଦାର୍ଥ, ପ୍ରାଣୀ, କାର୍ଯ୍ୟ, ଗୁଣ, ପ୍ରଭୃତିର ଗୁଣ, ଅବସ୍ଥା, ସଂଖ୍ୟା ବା ପରିମାଣ ପ୍ରକାଶ କରେ, ତାହାକୁ ବିଶେଷଣ ପଦ କହନ୍ତି** ।

'ଦୟାଳୁ ଲୋକ ସମସ୍ତଙ୍କର ଉପକାର କରେ'—ଏଠାରେ 'ଦୟାଳୁ' ଏହି ପଦ 'ଲୋକ' ଏହି ବିଶେଷ୍ୟର **ବିଶେଷଣ**' ଅଟେ । 'ବୃଦ୍ଧ ମନୁଷ୍ୟମାନେ ଅଳ୍ପ ଖାଆନ୍ତି'—ଏଠାରେ 'ବୃଦ୍ଧ' ଏହି ପଦ ମନୁଷ୍ୟମାନେ ଏହି ବିଶେଷ୍ୟର **ବିଶେଷଣ** ।' ବାପା ମୋତେ ତିନି ଟଙ୍କା ଦେଇଅଛନ୍ତି'—ଏଠାର 'ତିନି' ଏହିପଦ 'ଟଙ୍କା' ଏହି ବିଶେଷ୍ୟର **ବିଶେଷଣ** ଅଟେ । 'ପଣେ ଆମ୍ବରୁ ଅଧେ ପାଚିଲା'-ଏଠାରେ 'ପଣେ' ଏହି ପଦ 'ଆମ୍ବରୁ' ଏହି **ବିଶେଷ୍ୟର ବିଶେଷଣ** ଅଟେ ।

'ହାତୀ ଧୀରେ ଝୁଲୁ ଅଛି'—ଏଠାରେ 'ଧୀରେ' ଏହି ପଦ ଝୁଲୁଅଛି' ଏହି **କ୍ରିୟାର ବିଶେଷଣ** । 'ଦୀପ ମିଞ୍ଜି ମିଞ୍ଜି ଜଳୁଅଛି—ଏଠାରେ 'ମିଞ୍ଜି ମିଞ୍ଜି' ଏହି ପଦ 'ଜଳୁଅଛି' ଏହି **କ୍ରିୟାର ବିଶେଷଣ** ।

'ଯଷ୍ଟିମଧୁ ଅତିଶୟ ମଧୁର ଅଟେ'—ଏହି ବାକ୍ୟରେ 'ଅତିଶୟ' ଏହି ପଦ ମଧୁର ଏହି **ବିଶେଷଣର ବିଶେଷଣ** ଅଟେ । ସିଂହଠାରୁ ସିଂହୀ ଅଧିକ ସୁନ୍ଦର ଅଟେ'—ଏଠାରେ 'ଅଧିକ' ଏହିପଦ ସୁନ୍ଦର ଏହି **ବିଶେଷଣର ବିଶେଷଣ** ଅଟେ ।

ବିଶେଷଣ ତିନି ପ୍ରକାର—**ବିଶେଷ୍ୟର ବିଶେଷଣ, କ୍ରିୟା ବିଶେଷଣ, ବିଶେଷଣର ବିଶେଷଣ** ।

ଯେଉଁ ବିଶେଷଣ ପଦ ବିଶେଷ୍ୟ ପଦଦ୍ୱାରା ସୂଚିତ ପ୍ରାଣୀ, ପଦାର୍ଥ, ଗୁଣ ବା କାର୍ଯ୍ୟର ଗୁଣ, ଅବସ୍ଥା, ସଂଖ୍ୟା ବା ପରିମାଣ ବୁଝାଏ ତାହାକୁ **ବିଶେଷ୍ୟର ବିଶେଷଣ** କହନ୍ତି ।

ଯେଉଁ ବିଶେଷଣ ପଦ କୌଣସି କ୍ରିୟା ବା କାର୍ଯ୍ୟର ଗୁଣ, ପରିମାଣ ବା ଅବସ୍ଥା ପ୍ରକାଶ କରେ ତାହାକୁ **କ୍ରିୟା ବିଶେଷଣ** କହନ୍ତି ।

ଯେଉଁ ବିଶେଷଣ ଅନ୍ୟ ବିଶେଷଣ ଦ୍ୱାରା ସୂଚିତ ଗୁଣ ପ୍ରଭୃତିର ପରିମାଣ ବୁଝାଏ, ତାହାକୁ **ବିଶେଷଣର ବିଶେଷଣ** କହନ୍ତି ।

ଅନୁଶୀଳନୀ—ନିମ୍ନଲିଖିତ ବାକ୍ୟମାନଙ୍କରେ ବିଶେଷଣ ଥିଲେ ଚିହ୍ନାଇ ଦିଅ । ଏବଂ ତାହା କି ପ୍ରକାର ବିଶେଷଣ ବୋଲ—

୧ । କମଳା ଖଣ୍ଡିଏ ହଳଦିଆ ଶାଢ଼ୀ ପିନ୍ଧିଅଛି ।

୨ । ସେରେ ସୋରିଷରେ ମାଣେ ଜମି ବୁଣାଯାଇପାରେ ।

୩ । ଶ୍ୱେତପଦ୍ମ ଅପେକ୍ଷା ରକ୍ତପଦ୍ମ ଅଧିକ ସୁନ୍ଦର ।

୪ । ଖଞ୍ଜ ଲୋକ ଦୌଡ଼ିପାରେ ନାହିଁ ।

## ୧୭—ଅବ୍ୟୟ

ବିଶେଷ୍ୟ, ସର୍ବନାମ, କ୍ରିୟା ଓ ବିଶେଷଣକୁ ଛାଡ଼ି ଆଉ ଯେତେ ପଦ ଅଛି ସେଗୁଡ଼ିକ **ଅବ୍ୟୟ** ।

ଓ, ଏବଂ, ପୁଣି, ଆଉ, ଆହୁରି—ଏଗୁଡ଼ିକ **ସଂଯୋଜକ ଅବ୍ୟୟ** ।

କିନ୍ତୁ, ମାତ୍ର, ନଚେତ୍—ଏଗୁଡ଼ିକ **ବିଯୋଜକ ଅବ୍ୟୟ** ।

ଆହା, ଓହୋ, ଓଃ, ହାୟ—ଏଗୁଡ଼ିକ **ବିସ୍ମୟାଦି ସୂଚକ ଅବ୍ୟୟ** ।

କୁ, ରେ, ର, ଠାରୁ, ଦ୍ୱାରା ପ୍ରଭୃତି **ବିଭକ୍ତିରୂପକ ଅବ୍ୟୟ** ।

କି, ତ, କିକି, କି—ଏଗୁଡ଼ିକ **ପ୍ରଶ୍ନସୂଚକ ଅବ୍ୟୟ** ।

ହଁ, ସିନା, ତ, ଶି, ଅବଶ୍ୟ ଏଗୁଡ଼ିକ **ନିଶ୍ଚୟବୋଧକ ଅବ୍ୟୟ** ।

ଏହାଛଡ଼ା ଆହୁରି ଅନେକ ପ୍ରକାର ଅବ୍ୟୟ ଅଛି ।

## ୧୮—ବାକ୍ୟ ଅନ୍ୱୟ

**ବାକ୍ୟ ମଧ୍ୟରେ ଥିବା ଗୋଟିଏ ପଦ ସହିତ ଅନ୍ୟ ଗୋଟିଏ ପଦର ସମ୍ବନ୍ଧକୁ ଅନ୍ୱୟ କହନ୍ତି** ।

ଦୁଇଟିରୁ ଊଣା ପଦରେ ବାକ୍ୟ ହୋଇ ନ ପାରେ । ଏହି ଦୁଇଟିରୁ ଗୋଟିଏ ପଦର ନାମ **କର୍ତ୍ତା**, ଅପରଟିର ନାମ **କ୍ରିୟା** ।

'ବିମଳା ଶୋଇଅଛି'—ଏଠାରେ 'ବିମଳା **କର୍ତ୍ତା**, ଶୋଇଅଛି' **କ୍ରିୟା** ; 'ମେଘ ବର୍ଷିଲା—ଏହି ବାକ୍ୟରେ 'ମେଘ' **କର୍ତ୍ତା** 'ବର୍ଷିଲା' **କ୍ରିୟା**; 'ଯାଅ'—ଏହି ବାକ୍ୟରେ 'ତୁମ୍ଭେ' ଏହି **କର୍ତ୍ତୃପଦ** ଉହ୍ୟ ଅଛି; 'ଯାଅ' **କ୍ରିୟାପଦ** ।

ବାକ୍ୟର ପ୍ରଧାନ ଅଂଶ **କ୍ରିୟା** । କ୍ରିୟାପଦ ସହିତ କର୍ତ୍ତା ଓ ଅନ୍ୟ କାରକ -ମାନଙ୍କର ଏବଂ କ୍ରିୟାବିଶେଷଣର ଅନ୍ୱୟ ଥାଏ । କର୍ତ୍ତା ସହିତ ତାହାର ବିଶେଷଣର ଏବଂ କର୍ତ୍ତୃପଦର ପୂର୍ବବର୍ତ୍ତୀ ସମ୍ବନ୍ଧ-ପଦର ଅନ୍ୱୟ ଥାଏ ।

ରାଜାଙ୍କର ବୁଢ଼ାହାତୀ ହାତୀଶାଳାରୁ ନଦୀକୁ ଧୀରେ ଧୀରେ ଯାଉଅଛି— ଏହି ବାକ୍ୟରେ ହାତୀ ଏବଂ ଯାଉଅଛି ଏହି ଦୁଇଟି ପ୍ରଧାନ ଅଂଶ, 'ହାତୀ' **କର୍ତ୍ତା** 'ଯାଉଅଛି' **କ୍ରିୟା** । 'ହାତୀ' ଏହି କର୍ତ୍ତୃପଦ ସହିତ ବିଶେଷଣ 'ବୁଢ଼ା' ଏବଂ ସମ୍ବନ୍ଧ ପଦ 'ରାଜାଙ୍କର' ଏହି ଦୁଇପଦର ଅନ୍ୱୟ ଅଛି । 'ଯାଉଅଛି' କ୍ରିୟାପଦ ସହିତ କର୍ତ୍ତାକାରକ 'ହାତୀ', ଅପାଦାନକାରକ 'ହାତୀଶାଳାରୁ', କର୍ମକାରକ 'ନଦୀକୁ' ଏବଂ କ୍ରିୟା ବିଶେଷଣ 'ଧୀରେ ଧୀରେ' ଏହି ପଦମାନଙ୍କର ଅନ୍ୱୟ ଅଛି ।

ଅନୁଶୀଳନୀ—ନିମ୍ନଲିଖିତ ବାକ୍ୟମାନଙ୍କରେ ଯେଉଁ ପଦର ଅନ୍ୟ ଯେଉଁ ପଦ ସହିତ ଅନ୍ୱୟ ଅଛି, ବୋଲ ।

୧ । ବାଘୁଆ ମଧୁ ଦାଣ୍ଡରେ ବୁଲୁଅଛି ।

୨ । ବର୍ଷରେ ବାର ମାସ ଅଛି ।

୩ । ଶ୍ୟାମକୁର୍ ହାଡ଼ିରେ ଅମୃତଗଛରୁ ଗୋଟିଏ ଡାଳ କାଟିଲା ।

## ୧୯—ସନ୍ଧି

**ପରସ୍ପର ନିକଟବର୍ତ୍ତୀ ଯୋଡ଼ିଏ ବର୍ଣ୍ଣ ମିଶିଲେ ଯଦି ଉଭୟର ଅଥବା ଦୁଇଟି ମଧ୍ୟରୁ ଗୋଟିକର କିଛି ପରିବର୍ତ୍ତନ ହୁଏ, ତେବେ ସେହି ମିଳନକୁ ସନ୍ଧି କହନ୍ତି ।**

### (କ) ସ୍ୱରସନ୍ଧି

ଗୋଟିଏ ସ୍ୱରବର୍ଣ୍ଣ ସହିତ ଆଉ ଗୋଟିଏ ସ୍ୱରବର୍ଣ୍ଣ ମିଳିଗଲେ—ଯଦି ଉଭୟର ବା ଦୁଇଟି ମଧ୍ୟରୁ ଗୋଟିକର କିଛି ପରିବର୍ତ୍ତନ ହୁଏ, ତେବେ ସେହି ମିଳନକୁ **ସ୍ୱରସନ୍ଧି** କହନ୍ତି ।

**ମନ ଅନ୍ତର** ଏଠାରେ ମନର 'ନ'ରେ ସ୍ୱରବର୍ଣ୍ଣ ଅ ଅଛି, 'ଅନ୍ତର' ଏହାର ପ୍ରଥମରେ ସ୍ୱରବର୍ଣ୍ଣ ଅ ଅଛି, ଏହି ଦୁଇ ଅ ମିଳି **ଆ** ହେଲା । ଆ 'ନ'ରେ ମିଶିଲା । ମନ + ଅନ୍ତର = ମନାନ୍ତର । ସେହିପରି କୁଶ + ଅଙ୍କୁର = କୁଶାଙ୍କୁର ।

**ଅ, ଉତ୍ତାରେ ଅ ଥିଲେ ଦୁଇଟି ମିଶି ଆ ହୁଅନ୍ତି, ଆ ପୂର୍ବ-ବର୍ଣ୍ଣରେ ଯୁକ୍ତ ହୁଏ ।**

**କୁଶ ଆସନ** ଏଠାରେ 'କୁଶ' ଏହାର ଶେଷରେ ଅ ଅଛି । 'ଆସନ' ଏହାର ପ୍ରଥମରେ ଆ ଅଛି, ଏହି **ଅ** ଓ **ଆ** ମିଳି **ଆ** ହେଲା, **ଆ** 'ଶ୍'ରେ ଯୁକ୍ତ ହେଲା । କୁଶ + ଆସନ = କୁଶାସନ । ସେହିପରି ଗୁଣ + ଆକର = ଗୁଣାକାର, ହିମ + ଆଳୟ = ହିମାଳୟ ।

**ଅ ଉତ୍ତାରୁ ଆ ଥିଲେ ଦୁଇଟି ମିଶି ଆ ହୁଅନ୍ତି । ଆ ପୂର୍ବ-ବର୍ଣ୍ଣରେ ଯୁକ୍ତ ହୁଏ ।**

**ମହା ଅରଣ୍ୟ** ଏଠାରେ 'ମହା' ଏହାର ଶେଷରେ ଆ ଅଛି, ଅରଣ୍ୟ ଏହାର ପ୍ରଥମରେ **ଅ** ଅଛି, **ଆ** ଓ **ଅ** ମିଳି ଆ ହେଲା, **ଆ** 'ହ୍'ରେ ଯୁକ୍ତ ହେଲା । ବିଦ୍ୟା + ଆଳୟ = ବିଦ୍ୟାଳୟ । ସେହିପରି, ଦୟା + ଆର୍ଦ୍ର = ଦୟାର୍ଦ୍ର, ମହା + ଆଶୟ = ମହାଶୟ ।

**ଆ ଉତ୍ତାରୁ ଆ ଥିଲେ ଦୁହେଁ ମିଳି ଆ ହୁଅନ୍ତି । ଆ ପୂର୍ବ-ବର୍ଣ୍ଣରେ ଯୁକ୍ତ ହୁଏ ।**

**ମୁନି ଇନ୍ଦ୍ର** ଏଠାରେ 'ମୁନି' ଏହାର ଶେଷରେ **ଇ** ଅଛି, ଇନ୍ଦ୍ର ଏହାର ପ୍ରଥମରେ **ଇ** ଅଛି ; **ଇ** ଓ **ଇ** ମିଳି **ଈ** ହେଲା, ଈ 'ନ୍' ର ଯୁକ୍ତ ହେଲା । ମୁନି + ଇନ୍ଦ୍ର = ମୁନୀନ୍ଦ୍ର ।

ପରି ଈକ୍ଷା ଏଠାରେ 'ପରି' ଏହାର ଶେଷରେ 'ଇ' ଅଛି, 'ଈକ୍ଷା' ଏହାର ପ୍ରଥମରେ 'ଈ' ଅଛି, ଇ ଓ ଈ ମିଳି ଈ ହେଲା ଈ 'ର୍'ରେ ଯୁକ୍ତ ହେଲା । ପରି + ଈକ୍ଷା = ପରୀକ୍ଷା ।

ମହୀ ଇନ୍ଦ୍ର, ଏଠାରେ 'ମହୀ' ଏହାର ଶେଷରେ 'ଈ' ଅଛି, 'ଇନ୍ଦ୍ର' ଏହାର ପ୍ରଥମରେ ଇ ଅଛି, ଈ ଓ ଇ ମିଳି ଈ' ହେଲା, ଈ'ହ୍'ରେ ଯୁକ୍ତ ହେଲା । ମହୀ + ଇନ୍ଦ୍ର = ମହୀନ୍ଦ୍ର ।

ପାର୍ବତୀ ଈଶ୍ୱର, ଏଠାରେ 'ପାର୍ବତୀ' ଏହାର ଶେଷରେ 'ଈ' ଅଛି, 'ଈଶ୍ୱର' ଏହାର ପ୍ରଥମରେ 'ଈ' ଅଛି, ଈ ଓ 'ଈ' ମିଳି ଈ ହେଲା, ଈ 'ତ୍'ରେ ଯୁକ୍ତ ହେଲା । ପାର୍ବତୀ + ଈଶ୍ୱର = ପାର୍ବତୀଶ୍ୱର ।

**ଉ କମ୍ବା ଊ ଉତ୍ତାରୁ ଉ କମ୍ବା ଊ ଥିଲେ ଦୁହେଁ ମିଶି ଊ ହୁଅନ୍ତି । ଊ ପୂର୍ବ ବର୍ଣ୍ଣରେ ଯୁକ୍ତ ହୁଏ ।**

କଟୁ ଉକ୍ତି, ଏଠାରେ କଟୁ' ଏହାର ଶେଷରେ ଉ ଅଛି 'ଉକ୍ତି' ଏହାର ପ୍ରଥମରେ ଉ ଅଛି, ଉ ଓ ଉ ମିଳି ଊ ହେଲା, ଊ 'ଟ୍'ରେ ଯୁକ୍ତ ହେଲା । କଟୁ + ଉକ୍ତି = କଟୂକ୍ତି ।

ସିନ୍ଧୁ ଊର୍ମି ଏଠାରେ 'ସିନ୍ଧୁ' ଏହାର ଶେଷରେ ଉ ଅଛି, 'ଊର୍ମି' ଏହାର ପ୍ରଥମରେ ଊ ଅଛି, ଉ ଓ ଊ ମିଳି ଊ ହେଲା । ଊ 'ଧ୍'ରେ ଯୁକ୍ତ ହେଲା । ସିନ୍ଧୁ + ଊର୍ମି = ସିନ୍ଧୂର୍ମି ।

ଭୂ ଉଦର, ଏଠାରେ'ଭୂ' ଏହାର ଶେଷରେ ଊ ଅଛି, 'ଉଦର' ଏହାର ପ୍ରଥମରେ ଉ ଅଛି, ଭୂ ଓ ଉ ମିଳି ଊ ହେଲା, ଊ 'ଭ୍'ରେ ଯୁକ୍ତ ହେଲା । ଭୂ + ଉଦର = ଭୂଦର ।

'ଭୂଊର୍ଦ୍ଧ୍ୱ' ଏଠାରେ 'ଭୂ' ଏହାର ଶେଷରେ ଊ ଅଛି, 'ଊର୍ଦ୍ଧ୍ୱ' ଏହାର ପ୍ରଥମରେ ଊ ଅଛି, ଊ ଓ ଊ ମିଳି ଊ ହେଲା, ଊ 'ଭ୍'ରେ ଯୁକ୍ତ ହେଲା । ଭୂ + ଊର୍ଦ୍ଧ୍ୱ = ଭୂର୍ଦ୍ଧ୍ୱ ।

**ଋ କମ୍ବା ୠ ଉତ୍ତାରୁ ଋ କମ୍ବା ୠ ଥିଲେ ଦୁହେଁ ମିଶି ୠ ହୁଅନ୍ତି । ୠ ପୂର୍ବ ବର୍ଣ୍ଣରେ ଯୁକ୍ତ ହୁଏ ।**

ପିତୃ ଋଣ, ଏଠାରେ "ପିତୃ' ଏହାର ଶେଷରେ ଋ ଅଛି । 'ଋଣ' ଏହାର ପ୍ରଥମରେ 'ଋ ଅଛି', ଋ ଓ ଋ ମିଳି ୠ ହେଲା, ୠ 'ତ୍'ରେ ଯୁକ୍ତ ହେଲା । ପିତୃ + ଋଣ = ପିତୄଣ ।

**ଉ ଭିନ୍ନ ର ଥିଲେ ଦୁହେଁ ଉ ହୁଅନ୍ତି । ଉ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ।**

ବାଲ ଇନ୍ଦୁ ଏଠାରେ 'ବାଲ' ଏହାର ଶେଷରେ **ଅ** ଅଛି, ଇନ୍ଦୁ ଏହାର ପ୍ରଥମରେ **ଇ** ଅଛି, **ଅ** ଓ **ଇ** ମିଳି **ଏ** ହେଲା । **ଏ** 'ଲ୍' ରେ ଯୁକ୍ତ ହେଲା । ବାଲ + ଇନ୍ଦୁ = ବାଲେନ୍ଦୁ ।

ଗଣ ଈଶ ଏଠାରେ 'ଗଣ' ଏହାର ଶେଷରେ **ଅ** ଅଛି 'ଈଶ' ଏହାର ପ୍ରଥମରେ **ଈ** ଅଛି **ଅ** ଓ **ଈ** ମିଳି ଏ ହେଲା ; ଏ "ଣ୍' ରେ ଯୁକ୍ତ ହେଲା । ଗଣ + ଈଶ = ଗଣେଶ ।

ଯଥା ଇଷ୍ଟ ଏଠାରେ ଯଥା ଏହାର ଶେଷରେ **ଆ** ଅଛି, 'ଇଷ୍ଟ' ଏହାର ପ୍ରଥମରେ **ଇ** ଅଛି, **ଆ** ଓ **ଇ** ମିଳି ଏ ହେଲା, ଏ 'ଥ୍' ରେ ଯୁକ୍ତ ହେଲା । ଯଥା + ଇଷ୍ଟ = ଯଥେଷ୍ଟ ।

ମହା ଈଶ୍ୱର ଏଠାରେ 'ମହା' ଏହାର ଶେଷରେ **ଆ** ଅଛି; ଈଶ୍ୱର ଏହାର ପ୍ରଥମରେ **ଈ** ଅଛି, **ଆ** ଓ **ଈ** ମିଳି ଏ ହେଲା, ଏ 'ହ୍'ରେ ଯୁକ୍ତ ହେଲା । ମହା + ଈଶ୍ୱର = ମହେଶ୍ୱର ।

**ଅ ବା ଆ ଉତ୍ତାରୁ ଉ ବା ଊ ଥିଲେ ଦୁହେଁ ମିଶି ଓ ହୁଅନ୍ତି । ଓ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ।**

ଲମ୍ବ ଉଦର ଏଠାରେ 'ଲମ୍ବ' ଏହାର ଶେଷରେ **ଅ** ଅଛି । 'ଉଦର' ଏହାର ପ୍ରଥମରେ **ଉ** ଅଛି । **ଅ** ଓ **ଉ** ମିଳି **ଓ** ହେଲା, **ଓ** 'ମ୍ବ୍' ରେ ଯୁକ୍ତ ହେଲା । ଲମ୍ବ + ଉଦର = ଲମ୍ବୋଦର ।

ସାଗର ଊର୍ମି, ଉଠାରେ 'ସାଗର' ଏହାର ଶେଷରେ **ଅ** ଅଛି, 'ଊର୍ମି' ଏହାର ପ୍ରଥମରେ **ଊ** ଅଛି, **ଅ** ଓ **ଊ** ମିଳି **ଓ** ହେଲା, **ଓ** 'ର' ରେ ଯୁକ୍ତ ହେଲା । ସାଗର + ଊର୍ମି = ସାଗରୋର୍ମି ।

ଗଙ୍ଗା ଉଦକ, ଏଠାରେ 'ଗଙ୍ଗା' ଏହାର ଶେଷରେ **ଆ** ଅଛି, 'ଉଦକ' ଏହାର ପ୍ରଥମରେ **ଉ** ଅଛି, **ଆ** ଓ **ଉ** ମିଳି **ଓ** ହେଲା, **ଓ** 'ଙ୍ଗ୍' ରେ ଯୁକ୍ତ ହେଲା । ଗଙ୍ଗ + ଉଦକ = ଗଙ୍ଗୋଦକ ।

ରମ୍ଭା ଊରୁ ଏଠାରେ 'ରମ୍ଭା' ଏହାର ଶେଷରେ **ଆ** ଅଛି, 'ଊରୁ' ଏହାର ପ୍ରଥମରେ **ଊ** ଅଛି, **ଆ** ଓ **ଊ** ମିଳି **ଓ** ହେଲା, **ଓ** 'ମ୍ଭ୍' ରେ ଯୁକ୍ତ ହେଲା । ରମ୍ଭା + ଊରୁ = ରମ୍ଭୋରୁ ।

**ଅ ବା ଆ ଉତ୍ତାରୁ ଇ କମ୍ବା ଉ ଥିଲେ ଦୁହେଁ ମିଶି ଓ ହୁଅନ୍ତି । ଓ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ।**

ଦେବ ଋଷି ଏଠାରେ 'ଦେବ' ଏହାର ଶେଷରେ 'ଅ' ଅଛି, 'ଋଷି' ଏହାର ପ୍ରଥମରେ ଋ ଅଛି, **ଅ** ଓ **ଋ** ମିଳି ଅ ର୍ ହେଲା, **ଅ** 'ବ୍'ରେ ଯୁକ୍ତ ହେଲା, ଏବଂ 'ର୍' 'ଷ' ସଙ୍ଗରେ ମିଶି ତାହା ଉପରେ ରେଫ୍ ହେଲା । ଦେବ+ଋଷି= ଦେବର୍ଷି ।

**ଅ ଉତ୍ତାରେ ଋ ଥିଲେ ଦୁହେଁ ମିଶି ଅର୍ ହୁଅନ୍ତି ।**

ଅ ପୂର୍ବ ବର୍ଣ୍ଣରେ ଯୁକ୍ତ ହୁଏ, 'ର୍' ପର ବର୍ଣ୍ଣରେ ରେଫ୍ ହୋଇ ଯୁକ୍ତ ହୁଏ ।

**ଜନ ଏକ** ଏଠାରେ 'ଜନ' ଏହାର ଶେଷରେ 'ଅ' ଅଛି । ଏକ ଏହାର ପ୍ରଥମରେ ଏ ଅଛି, **ଅ** ଓ ଏ ମିଳି ଐ ହେଲା, **ଐ** 'ନ୍' ରେ ଯୁକ୍ତ ହେଲା । ଜନ+ଏକ=ଜନୈକ ।

**ମତ ଐକ୍ୟ** ଏଠାରେ 'ମତ' ଏହାର ଶେଷରେ **ଅ** ଅଛି, 'ଐକ୍ୟ' ଏହାର ପ୍ରଥମରେ ଐ ଅଛି, **ଅ** ଓ **ଐ** ମିଳି **ଐ** ହେଲା । ଐ 'ତ୍'ରେ ଯୁକ୍ତ ହେଲା । ମତ+ଐକ୍ୟ=ମତୈକ୍ୟ ।

**ତଥା ଏବ** ଏଠାରେ 'ତଥା' ଏହା ଶେଷରେ **ଆ** ଅଛି । 'ଏବ' ଏହାର ପ୍ରଥମରେ ଏ ଅଛି, **ଆ** ଓ ଏ ମିଳି **ଐ** ହେଲା, ଐ 'ଥ୍'ରେ ଯୁକ୍ତ ହେଲା । ତଥା+ଏବ=ତଥୈବ ।

**ମହା ଐଶ୍ୱର୍ଯ୍ୟ** ଏଠାରେ 'ମହା' ଏହାର ଶେଷରେ **ଆ** ଅଛି । 'ଐଶ୍ୱର୍ଯ୍ୟ' ଏହାର ପ୍ରଥମରେ 'ଐ ଅଛି, **ଆ** ଓ **ଐ** ମିଳି **ଐ** ହେଲା, ଐ 'ହ୍' ରେ ଯୁକ୍ତ ହେଲା । ମହା+ଐଶ୍ୱର୍ଯ୍ୟ=ମହୈଶ୍ୱର୍ଯ୍ୟ ।

**ଅ କମ୍ବା ଆ ଉତ୍ତାରୁ ଏ କମ୍ବା ଐ ଥିଲେ ଦୁହେଁ ମିଶି ଐ ହୁଅନ୍ତି । ଐ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ।**

**ଜଳ ଓକ** ଏଠାରେ 'ଜଳ' ଏହାର ଶେଷରେ **ଅ** ଅଛି 'ଓକ' ଏହାର ପ୍ରଥମରେ ଓ ଅଛି, **ଅ** ଏବଂ **ଓ** ମିଳି **ଔ** ହେଲା, ଔ 'ଳ୍'ରେ ଯୁକ୍ତ ହେଲା । ଜଳ+ଓକ=ଜଳୌକ ।

**ନବ ଔଷଧ** ଏଠାରେ 'ନବ' ଏହାର ଶେଷରେ **ଅ** ଅଛି, 'ଔଷଧ' ଏହାର ପ୍ରଥମରେ ଔ ଅଛି; **ଅ** **ଔ** ମିଳି **ଔ** ହେଲା, **ଔ** 'ବ୍'ରେ ଯୁକ୍ତ ହେଲା । ନବ+ ଔଷଧ=ନବୌଷଧ ।

**ମହା ଓଜ** ଏଠାରେ 'ମହାର' ଶେଷରେ **ଆ** ଅଛି, 'ଓଜ' ଏହାର ପ୍ରଥମରେ ଓ ଅଛି, **ଆ** ଏବଂ **ଓ** ମିଳି **ଔ** ହେଲା, ଔ 'ହ୍'ରେ ଯୁକ୍ତ ହେଲା। ମହା + ଓଜ = ମହୌଜ।

**ମହା ଔଷଧ** ଏଠାରେ 'ମହା' ଏହାର ଶେଷରେ **ଆ** ଅଛି, 'ଔଷଧ' ଏହାର ପ୍ରଥମରେ ଔ ଅଛି, **ଆ** ଓ **ଔ** ମିଳି **ଔ** ହେଲା, ଔ 'ହ୍'ରେ ଯୁକ୍ତ ହେଲା। ମହା + ଔଷଧ = ମହୌଷଧ।

ଅ କିମ୍ବା ଆ ଉତ୍ତାରୁ ଓ କିମ୍ବା ଔ ହେଲେ ଦୁହେଁ ମିଳି ଔ ହୁଅନ୍ତି। ଔ ପୂର୍ବ ବର୍ଣ୍ଣରେ ଯୁକ୍ତ ହୁଏ।

**ଅତି ଅଳ୍ପ** ଏଠାରେ 'ଅତି' ଏହାର ଶେଷରେ **ଇ** ଅଛି, 'ଅଳ୍ପ' ଏହାର ପ୍ରଥମରେ **ଇ ଈ** ଭିନ୍ନ ସ୍ୱରବର୍ଣ୍ଣ **ଅ** ଅଛି; **ଇ** ଠାରେ **ଯ୍** ହେଲା, **ଯ୍** ଓ **ଅ** 'ତ୍'ରେ ଯୁକ୍ତ ହେଲା। ଅତି + ଅଳ୍ପ = ଅତ୍ୟଳ୍ପ।

**ନଦୀ ଅମ୍ବୁ** ଏଠାରେ 'ନଦୀ' ଏହାର ଶେଷରେ **ଈ** ଅଛି, 'ଅମ୍ବୁ' ଏହାର ପ୍ରଥମରେ **ଇ ଈ** ଭିନ୍ନ ସ୍ୱରବର୍ଣ୍ଣ **ଅ** ଅଛି, ଈଠାରେ ଯ୍ ହେଲା, **ଯ୍** ଓ **ଅ** 'ଦ୍'ରେ ଯୁକ୍ତ ହେଲା। ନଦୀ + ଅମ୍ବୁ = ନଦ୍ୟମ୍ବୁ।

**ଅତି ଆଦର** ଏଠାରେ 'ଅତି' ଏହାର ଶେଷରେ **ଇ** ଅଛି, 'ଆଦର' ଏହାର ପ୍ରଥମରେ **ଇ ଈ** ଭିନ୍ନ ସ୍ୱରବର୍ଣ୍ଣ **ଆ** ଅଛି, ଇ ଠାରେ **ଯ୍** ହେଲା **ଯ୍** ଓ **ଅ** 'ତ୍' ରେ ଯୁକ୍ତ ହେଲା। ଅତି + ଆଦର = ଅତ୍ୟାଦର।

**ଦେବୀ ଆଳସ୍ୟ** ଏଠାରେ 'ଦେବୀ' ଏହାର ଶେଷରେ **ଈ** ଅଛି 'ଆଳସ୍ୟ' ଏହାର ପ୍ରଥମରେ **ଇ ଈ** ଭିନ୍ନ ସ୍ୱରବର୍ଣ୍ଣ **ଆ** ଅଛି, **ଈ** ଠାରେ **ଯ୍** ହେଲା, **ଯ୍** ଓ **ଆ** 'ବ୍' ରେ ଯୁକ୍ତ ହେଲା। ଦେବୀ + ଆଳସ୍ୟ = ଦେବ୍ୟାଳସ୍ୟ। ସେହିପରି ଅତି + ଉଚ୍ଚ = **ଅତ୍ୟୁଚ୍ଚ**, ନଦୀ + ଉଦକ = ନଦ୍ୟୁଦକ, ନି + ଊନ = ନ୍ୟୂନ, ପ୍ରତି + ଏକ = ପ୍ରତ୍ୟେକ, ଅତି + ଔଦାର୍ଯ୍ୟ = ଅତ୍ୟୌଦାର୍ଯ୍ୟ।

**ଇ କିମ୍ବା ଈ ଉତ୍ତାରୁ ଇ ଈ ଭିନ୍ନ ସ୍ୱରବର୍ଣ୍ଣ ଥିଲେ ଇ ଈ ଠାରେ ଯ୍ ହୁଏ। ଯ୍ ଓ ପରବର୍ତ୍ତୀ ସ୍ୱର ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ।**

**ଅନୁ ଅୟ** ଏଠାରେ 'ଅନୁ' ଏହାର ଶେଷରେ **ଉ** ଅଛି, 'ଅୟ' ଏହାର ପ୍ରଥମରେ **ଉ ଊ** ଭିନ୍ନ ସ୍ୱରବର୍ଣ୍ଣ **ଅ** ଅଛି, ଉଠାରେ **ବ୍** ହେଲା, **ବ୍** ଓ **ଅ** ନ୍ ରେ ଯୁକ୍ତ ହେଲା। ଅନୁ + ଅୟ = ଅନ୍ୱୟ।

**ବନ୍ଧୁ ଆଦର** ଏଠାରେ 'ବନ୍ଧୁ' ଏହାର ଶେଷରେ **ଉ** ଅଛି, 'ଆଦର' ଏହାର ପ୍ରଥମରେ **ଉ ଊ** ଭିନ୍ନ ସ୍ୱରବର୍ଣ୍ଣ **ଆ** ଅଛି, ଉ ଠାରେ ବ୍ ହେଲା, **ବ୍** ଓ **ଆ** 'ଧ୍' ରେ ଯୁକ୍ତ ହେଲା । ବନ୍ଧୁ + ଆଦର = ବନ୍ଧ୍ୱାଦର ।

**ବଧୂ ଆଗମନ** ଏଠାରେ 'ବଧୂ' ଏହାର ଶେଷରେ **ଊ** ଅଛି, 'ଆଗମନ' ଏହାର ପ୍ରଥମରେ **ଉ ଊ** ଭିନ୍ନ ସ୍ୱରବର୍ଣ୍ଣ **ଆ** ଅଛି, **ଊ** ଠାରେ **ବ୍** ହେଲା, **ବ୍** ଓ **ଆ** 'ଧ୍' ରେ ଯୁକ୍ତ ହେଲା । ବଧୂ + ଆଗମନ = ବଧ୍ୱାଗମନ । ସେହିପରି ଅନୁ + ଇତ = ଅନ୍ୱିତ, ସାଧୁ + ଈ = ସାଧ୍ୱୀ, ଅନୁ + ଏଷଣ = ଅନ୍ୱେଷଣ ।

**ଉ କମ୍ବା ଊ ଉତ୍ତାରୁ ଉ, ଊ ଭିନ୍ନ ସ୍ୱରବର୍ଣ୍ଣ ଥିଲେ ଉ କମ୍ବା ଊ ଠାରେ ବ୍ ହୁଏ । ବ୍ ଓ ପରବର୍ତ୍ତୀ ସ୍ୱର ପୂର୍ବ ବର୍ଣ୍ଣରେ ଯୁକ୍ତ ହୁଏ ।**

**ମାତୃ ଅନୁରୂପ** ଏଠାରେ 'ମାତୃ' ଏହାର ଶେଷରେ **ଋ** ଅଛି, 'ଅନୁରୂପ ଏହାର ପ୍ରଥମରେ **ଋ ଋ** ଭିନ୍ନ ସ୍ୱରବର୍ଣ୍ଣ **ଅ** ଅଛି, ଋ ଠାରେ ର୍ ହେଲା, **ର୍** ଓ **ଅ** 'ତ୍' ରେ ଯୁକ୍ତ ହେଲା । ମାତୃ + ଅନୁରୂପ = ମାତ୍ରନୁରୂପ ।

**ପିତୃ ଆଳସ୍ୟ** ଏଠାରେ 'ପିତୃ' ଏହାର ଶେଷରେ **ଋ** ଅଛି, 'ଆଳସ୍ୟ' ଏହାର ପ୍ରଥମରେ **ଋ, ଋ** ଭିନ୍ନ ସ୍ୱରବର୍ଣ୍ଣ ଆ ଅଛି, **ଋ** ଠାରେ **ର୍** ହେଲା, **ର୍** ଓ **ଆ** 'ତ୍'ରେ ଯୁକ୍ତ ହେଲା । ପିତୃ + ଆଳସ୍ୟ = ପିତ୍ରାଳସ୍ୟ, ସେହିପରି ଦାତୃ + ଐଶ୍ୱର୍ଯ୍ୟ = ଦାତ୍ରୈଶ୍ୱର୍ଯ୍ୟ, ମିତୃ + ଉପଦେଶ = ମିତ୍ରୁପଦେଶ ।

**ଋ ଉତ୍ତାରୁ ଋ ଋ ଭିନ୍ନ ସ୍ୱରବର୍ଣ୍ଣ ଥିଲେ ଋ ଠାରେ ର୍ ହୁଏ ର୍ ଓ ପରବର୍ତ୍ତୀ ସ୍ୱର ପୂର୍ବ ବର୍ଣ୍ଣରେ ଯୁକ୍ତ ହୁଏ ।**

## (ଖ)—ବ୍ୟଞ୍ଜନ ସନ୍ଧି

**ବ୍ୟଞ୍ଜନ ବର୍ଣ୍ଣ ସହିତ ବ୍ୟଞ୍ଜନ ବର୍ଣ୍ଣର କମ୍ବା ସ୍ୱରବର୍ଣ୍ଣର ମିଳନରେ ଯଦି ଉଭୟର ବା ତନ୍ମଧ୍ୟରୁ ଗୋଟିକର କଛି ପରିବର୍ତ୍ତନ ହୁଏ ତେବେ ସେହି ମିଳନକୁ ବ୍ୟଞ୍ଜନ ସନ୍ଧି କହନ୍ତି ।**

ସ୍ୱରବର୍ଣ୍ଣ, ବର୍ଗର ତୃତୀୟ ବା ଚତୁର୍ଥ ବର୍ଣ୍ଣ କମ୍ବା ଯ, ର, ବ, ପରେ ଥିଲେ ବର୍ଗର ପ୍ରଥମ ବର୍ଣ୍ଣଠାରେ ସେହି ବର୍ଗର ତୃତୀୟବର୍ଣ୍ଣ ହୁଏ—

'**ଦିକ୍ ଅନ୍ତ**' ଏଠାରେ 'ଦିକ୍' ଏହାର ଶେଷରେ ବର୍ଗର ପ୍ରଥମବର୍ଣ୍ଣ 'କ୍' ଅଛି' 'ଅନ୍ତ' ଏହାର ପ୍ରଥମରେ ସ୍ୱରବର୍ଣ୍ଣ **ଅ** ଅଛି । 'କ' ଠାରେ ସେହି ବର୍ଗର ତୃତୀୟ ବର୍ଣ୍ଣ ଗ୍' ହେଲା । ଦିକ୍ + ଅନ୍ତ = ଦିଗନ୍ତ । **ସତ୍ ଗତି** ଏଠାରେ 'ସତ୍'

ଏହାର ଶେଷରେ ବର୍ଗର ପ୍ରଥମ ବର୍ଣ୍ଣ ତ ଅଛି, 'ଗତ' ଏହାର ପ୍ରଥମରେ ବର୍ଗର ତୃତୀୟବର୍ଣ୍ଣ **ଗ** ଅଛି, **ତ୍** ଠାରେ ସେହି ବର୍ଗର ତୃତୀୟ ବର୍ଣ୍ଣ ଦ୍ ହେଲା । ସତ୍ + ଗତ = ସଦ୍‌ଗତ । **ସତ୍ ଭାବ** ଏଠାରେ 'ସତ୍'ଏହାର ଶେଷରେ ବର୍ଗର ପ୍ରଥମ ବର୍ଣ୍ଣ **ତ୍** ଅଛି, ଭାବ ଏହାର ପ୍ରଥମରେ ବର୍ଗର ଚତୁର୍ଥ ବର୍ଣ୍ଣ **ଭ** ଅଛି, **ତ୍** ଠାରେ ସେହିବର୍ଗର ତୃତୀୟ ବର୍ଣ୍ଣ ଦ୍ ହେଲା । ସତ୍ + ଭାବ = ସଦ୍‌ଭାବ । **ଉତ୍ ଯାପନ**, ଏଠାରେ 'ଉତ୍' ଏହାର ଶେଷରେ ବର୍ଗର ପ୍ରଥମ ବର୍ଣ୍ଣ **ତ୍** ଅଛି, 'ଯାପନ' ଏହାର ପ୍ରଥମରେ **ଯ୍** ଅଛି, **ତ** ଠାରେ ସେହି ବର୍ଗର ତୃତୀୟ ବର୍ଣ୍ଣ **ଦ୍** ହେଲା । ଉତ୍ + ଯାପନ = ଉଦ୍‌ଯାପନ । **ବାକ୍ ରୋଧ** ଏଠାରେ 'ବାକ୍' ଏହାର ଶେଷରେ ବର୍ଗର ପ୍ରଥମ **କ୍** ଅଛି, 'ରୋଧ' ଏହାର ପ୍ରଥମରେ **ର୍** ଅଛି କ୍ ଠାରେ ସେହି ବର୍ଗର ତୃତୀୟ ବର୍ଣ୍ଣ **ଗ** ହେଲା । ବାକ୍ + ରୋଧ = ବାଗ୍‌ରୋଧ । **ସତ୍ ବଂଶ** ଏଠାରେ 'ସତ୍' ଏହାର ଶେଷରେ ବର୍ଗର ପ୍ରଥମ ବର୍ଣ୍ଣ ତ୍ ଅଛି 'ବଂଶ' ଏହାର ପ୍ରଥମରେ ବ୍ ଅଛି, ତ୍ ଠାରେ ସେହି ବର୍ଗର ତୃତୀୟ ବର୍ଣ୍ଣ ଦ୍ ହେଲା । ସତ୍ + ବଂଶ = ସଦ୍‌ବଂଶ ।

**ନ୍** କିମ୍ବା **ମ୍** ପରେ ଥିଲେ, ବର୍ଗର ପ୍ରଥମ ବର୍ଣ୍ଣଠାରେ ସେହି ବର୍ଗର ପଞ୍ଚମ ବର୍ଣ୍ଣ ହୁଏ । ଯଥା—**ବାକ୍ ମୟ** ଏଠାରେ 'ବାକ୍' ଏହାର ଶେଷରେ ବର୍ଗର ପ୍ରଥମବର୍ଣ୍ଣ କ୍ ଅଛି, 'ମୟ' ଏହାର ପ୍ରଥମରେ ମ୍ ଅଛି, କ୍ ଠାରେ ସେହି ବର୍ଗର ପଞ୍ଚମ ବର୍ଣ୍ଣ ଙ୍ ହେଲା । ବାକ୍ + ମୟ = ବାଙ୍‌ମୟ । ସେହିପରି ଉତ୍ + ନତି = ଉନ୍ନତ, ତତ୍ + ମଧୁରୁ = ତନ୍ମଧୁରୁ, ଜଗତ୍ + ନାଥ = ଜଗନ୍ନାଥ ।

**ଚ** କିମ୍ବା **ଛ** ପରେ ଥିଲେ **ତ୍** ଠାରେ **ଚ୍** ହୁଏ । ଯଥା—**ଉତ୍ ଚାରଣ** ଏଠାରେ **ତ୍** ଉତ୍ତରେ **ଚ** ଥିବାରୁ **ତ୍** ଠାରେ **ଚ୍** ହେଲା । ଉତ୍ + ଚାରଣ = ଉଚ୍ଚାରଣ । ସେହିପରି, ଉତ୍ + ଛେଦ = ଉଚ୍ଛେଦ ।

**ଜ୍** ପରେ ଥିଲେ, **ତ୍** ଠାରେ **ଜ୍** ହୁଏ । ଯଥା—**ସତ୍ ଜନ** ଏଠାରେ **ଜ୍** ପରେ ଥିବାରୁ **ତ** ଠାରେ ଜ୍ ହେଲା । ସତ୍ + ଜନ = ସଜ୍ଜନ । ସେହିପରି ଉତ୍ + ଜ୍ୱଳ = ଉଜ୍ଜ୍ୱଳ ।

**ଡ୍** ପରେ ଥିଲେ **ତ୍** ଠାରେ ଡ୍ ହୁଏ । ଯଥା ଉତ୍ + ଡୀନ = ଉଡ୍‌ଡୀନ

**କ୍** କିମ୍ବା **ପ୍** ପରେ ଥିଲେ କୌଣସି କୌଣସି ସ୍ଥଳରେ ବିସର୍ଗ ଠାରେ ସ୍ ହୁଏ । ଯଥା—ମନଃ + କାମ = ମନସ୍କାମ୍, ବାଚଃ + ପତି = ବାଚସ୍ପତି ।

**ଚ** କିମ୍ବା **ଛ** ପରେ ଥିଲେ, **ବିସର୍ଗ** ଠାରେ **ଶ, ଟ** କିମ୍ବା **ଠ** ପରେ ଥିଲେ **ବିସର୍ଗ** ଠାରେ **ଷ୍**, **ତ** କିମ୍ବା ଥ ପରେ ଥିଲେ **ବିସର୍ଗ** ଠାରେ **ସ୍** ହୁଏ । ଯଥା = ତପଃ + ଚରଣ = ତପଶ୍ଚରଣ, ଧନୁଃ + ଟଙ୍କାର = ଧନୁଷ୍ଟଙ୍କାର, ମନଃ + ତାପ = ମନସ୍ତାପ, ନିଃ + ତାର = ନିସ୍ତାର ।

**ଚ୍** କମ୍ବା **ଜ୍** ଉତ୍ତରେ **ନ୍** ଥିଲେ **ନ୍** ଠାରେ **ଞ** ହୁଏ । ଯଥା—ଯାଚ୍ + ନ୍ଞା = ଯାଚଞ୍ଚା, ଯଜ୍ + ନ = ଯଜ୍ଞ ।

## ୨୦—ସମାସ

**ଦୁଇ ବା ତହିଁରୁ ଅଧିକ ପଦ ମିଳି ଗୋଟିଏ ପଦ ହେଲେ ସେଠାରେ ସମାସ ହେଲା ବୋଲି କହନ୍ତି ।**

### (କ) ଦ୍ୱନ୍ଦ୍ୱ ସମାସ

ସୀତା ଓ ରାମ = **ସୀତାରାମ,** ଫୁଲ ଓ ଫଳ = **ଫୁଲଫଳ,** ଘର ଓ ଦ୍ୱାର = **ଘରଦ୍ୱାର,** ବନ ଓ ଗଡ଼ = **ବନଗଡ଼,** ବା ଓ ପାଣି = **ବାପାଣି,** ଆମ୍ବ ଓ ପଣସ = **ଆମ୍ବପଣସ.** କଳ୍କି ଓ ଭେଣ୍ଡି = **କଳ୍କିଭେଣ୍ଡି,** ବାଟ ଓ ଘାଟ = **ବାଟଘାଟ,** ସୁଖ ଓ ଦୁଃଖ = **ସୁଖଦୁଃଖ,** ଗେଣ୍ଡା ଆଉ କୋଚଆ = **ଗେଣ୍ଡା-କୋଚଆ,** ପତ୍ର, ପୁଷ୍ପ ଓ ଫଳ = **ପତ୍ରପୁଷ୍ପଫଳ ।**

ଯେଉଁ ପଦଗୁଡ଼ିକରେ ଦ୍ୱନ୍ଦ୍ୱ ସମାସ ହୁଏ ସେଗୁଡ଼ିକ ବିଶେଷ୍ୟ ପଦ ।

### (ଖ) କର୍ମଧାରୟ ସମାସ

ନୀଳ ଉତ୍ପଳ = **ନୀଳୋତ୍ପଳ,** ପୂର୍ଣ୍ଣ ଚନ୍ଦ୍ର = **ପୂର୍ଣ୍ଣଚନ୍ଦ୍ର,** ବଡ଼ ଦେଉଳ = **ବଡ଼ଦେଉଳ,** ଲମ୍ବ ପଣତ = **ଲମ୍ବପଣତ ।**

ଯେଉଁ ଦୁଇ ପଦରେ ଏହି ସମାସ ହୁଏ, ତନ୍ମଧ୍ୟରୁ ଶେଷଟି ବିଶେଷ୍ୟ ଏବଂ ପ୍ରଥମଟି ବିଶେଷଣ ।

ମନ ରୂପ ରଥ = **ମନୋରଥ,** ବିଦ୍ୟା ରୂପ ଧନ = **ବିଦ୍ୟାଧନ,** ଗୁଣ ରୂପ ରତ୍ନ = **ଗୁଣରତ୍ନ** । ଏଠାରେ **ରୂପକ କର୍ମଧାରୟ ସମାସ ।**

### (ଗ) ବହୁବ୍ରୀହି ସମାସ

ଲମ୍ବ ଉଦର ଯାହାର ସେ **ଲମ୍ବୋଦର;** ବୀଣା ପାଣିରେ ଯାହାର ସେ **ବୀଣାପାଣି,** ଶଶ ଅଙ୍କରେ ଯାହାର ସେ **ଶଶାଙ୍କ** ଶୁଖିଲା ମୁହଁ ଯାହାର ସେ **ଶୁଖିଲାମୁହାଁ** । ବା **ଶୁଖିଲାମୁହାଁ ।**

### (ଘ) ତତ୍ପୁରୁଷ ସମାସ

#### (୧) ଦ୍ୱିତୀୟା ତତ୍ପୁରୁଷ

ହସ୍ତକୁ ଗତ = ହସ୍ତଗତ, ଅଙ୍କକୁ ଆଗତ = ଅଙ୍କାଗତ, ବୃଦ୍ଧିକୁ ପ୍ରାପ୍ତ = ବୃଦ୍ଧିପ୍ରାପ୍ତ, ଶରଣକୁ ଆଗତ = ଶରଣାଗତ ।

### (୨) ତୃତୀୟା ତତ୍ପୁରୁଷ

ହାତରେ ଲେଖା = **ହାତଲେଖା**, ମୂଷା ଦ୍ୱାରା ଖିଆ = **ମୂଷାଖିଆ**, କୁରାଢ଼ିଦ୍ୱାରା ହଣା = **କୁରାଢ଼ିହଣା**, କୁକୁର ଦ୍ୱାରା ଛୁଆଁ = **କୁକୁରଛୁଆଁ**, ଧନଦ୍ୱାରା ପୂର୍ଣ୍ଣ = **ଧନପୂର୍ଣ୍ଣ**; ବାତଦ୍ୱାରା ଆହତ = **ବାତାହତ**; ସ୍ୱହସ୍ତରେ ରଚିତ = **ସ୍ୱହସ୍ତରଚିତ**, ଶ୍ରୀଦ୍ୱାରା ଯୁକ୍ତ = **ଶ୍ରୀଯୁକ୍ତ** ।

### (୩) ଚତୁର୍ଥୀ ତତ୍ପୁରୁଷ

ବିପ୍ରଙ୍କୁ ଦତ୍ତ = **ବିପ୍ରଦତ୍ତ**, ବରକୁ ସମର୍ପିତ = **ବରସମର୍ପିତ**, ରାଜାଙ୍କୁ ଦେୟ = **ରାଜଦେୟ** ।

### (୪) ପଞ୍ଚମୀ ତତ୍ପୁରୁଷ

ସଂସାରରୁ ଛଡ଼ା = **ସଂସାରଛଡ଼ା**, କୃଷିରୁ ଜାତ = **କୃଷିଜାତ**, ହସ୍ତରୁ ଚ୍ୟୁତ = **ହସ୍ତଚ୍ୟୁତ** ପଥରୁ ଭ୍ରଷ୍ଟ = **ପଥଭ୍ରଷ୍ଟ**, ଗଛରୁ ପଡ଼ା = **ଗଛପଡ଼ା**, ମନରୁ ଗଢ଼ା = **ମନଗଢ଼ା**, ବୃକ୍ଷରୁ ପତିତ = **ବୃକ୍ଷପତିତ** ।

### (୫) ଷଷ୍ଠୀ ତତ୍ପୁରୁଷ

ନଈର ପାଣି = **ନଈପାଣି**, ବାଡ଼ିର ବାଇଗଣ = **ବାଡ଼ିବାଇଗଣ**, ମୂଳଆର ମୂଳ = **ମୂଳଆମୂଳ**, ଘରର ଭଡ଼ା = **ଘରଭଡ଼ା**, ଆଖିର ପତା = **ଆଖିପତା**, ବାଘର ଛାଲ = **ବାଘଛାଲ**, ଗାଁର ମୁଣ୍ଡ = **ଗାଁମୁଣ୍ଡ**, କର୍ମର ଫଳ = **କର୍ମଫଳ**, ପର୍ବତର ଶୃଙ୍ଗ = **ପର୍ବତଶୃଙ୍ଗ** ।

### (୬) ସପ୍ତମୀ ତତ୍ପୁରୁଷ

ବାଟରେ ଚଳ = **ବାଟଚଳ**, ଦାଣ୍ଡରେ ଗଳ = **ଦାଣ୍ଡଗଳ**, ନଈରେ ଗାଧୁଆ = **ନଈଗାଧୁଆ**, ବଣରେ ଭୋଜି = **ବଣଭୋଜି**, ଜଲରେ ମଗ୍ନ = **ଜଲମଗ୍ନ**, କ୍ରୀଡ଼ାରେ ଆସକ୍ତ = **କ୍ରୀଡ଼ାସକ୍ତ**, ପୁରୁଷମାନଙ୍କ ମଧ୍ୟରେ ଉତ୍ତମ = **ପୁରୁଷୋତ୍ତମ**, ଜଲରେ କେଳି = **ଜଲକେଳି**, ବିଦ୍ୟାରେ ଅନୁରାଗ = **ବିଦ୍ୟାନୁରାଗ** ।



# ଓଡ଼ିଆ ବ୍ୟାକରଣ

## [ଦ୍ୱିତୀୟ ସୋପାନ]

## ୧— ବର୍ଣ୍ଣମାଳା

ଓଡ଼ିଆ ଭାଷାରେ ଅଣଚାଶଟି ବର୍ଣ୍ଣ ବ୍ୟବହୃତ ହୁଏ । ଅ, ଆ, ଇ, ଈ, ଉ, ଊ, ଋ, ୠ, ଌ, ଏ, ଐ, ଓ ଔ—ଏହି ତେରଟିକୁ ସ୍ୱରବର୍ଣ୍ଣ, ଏବଂ କ ଖ ଗ ଘ ଙ ଚ ଛ ଜ ଝ ଞ ଟ ଠ ଡ ଢ ଣ ତ ଥ ଦ ଧ ନ ପ ଫ ବ ଭ ମ ଯ ର ଲ ଵ ଶ ଷ ସ ହ ଂ ଃ ଁ—ଏହି ଛତିଶଟିକୁ ବ୍ୟଞ୍ଜନବର୍ଣ୍ଣ କହନ୍ତି ।

ସ୍ୱରବର୍ଣ୍ଣ ମଧ୍ୟରେ ଅ ଇ ଉ ଋ ଌ — ଏହି ପାଞ୍ଚଟି ହ୍ରସ୍ୱସ୍ୱର, ଏବଂ ଆ ଈ ଊ ୠ ଏ ଐ ଓ ଔ—ଏହି ଆଠଟି ଦୀର୍ଘସ୍ୱର ।

ବ୍ୟଞ୍ଜନବର୍ଣ୍ଣମାନଙ୍କ ମଧ୍ୟରେ କ ଠାରୁ ମ ପର୍ଯ୍ୟନ୍ତ ପଚିଶଟିକୁ ବର୍ଗ୍ୟ ବର୍ଣ୍ଣ ବା ସ୍ପର୍ଶବର୍ଣ୍ଣ, ଯ ର ଲ ଵ—ଏହି ଚାରିଟିକୁ ଅନ୍ତଃସ୍ଥ ବର୍ଣ୍ଣ, ଶ ଷ ସ ହ – ଏହି ଚାରିଟିକୁ ଉଷ୍ମବର୍ଣ୍ଣ, ଂ, ଃ, ଁ – ଏହି ତିନୋଟିକୁ ଅଯୋଗବାହ ବର୍ଣ୍ଣ କହନ୍ତି ।

ବର୍ଗ୍ୟବର୍ଣ୍ଣମାନଙ୍କ ମଧ୍ୟରେ କ ଖ ଗ ଘ ଙ—ଏହି ପାଞ୍ଚଟି 'କ' ବର୍ଗ

ଚ ଛ ଜ ଝ ଞ—ଏହି ପାଞ୍ଚଟି 'ଚ'-ବର୍ଗ

ଟ ଠ ଡ ଢ ଣ– ଏହି ପାଞ୍ଚଟି 'ଟ'-ବର୍ଗ

ତ ଥ ଦ ଧ ନ—ଏହି ପାଞ୍ଚଟି 'ତ'-ବର୍ଗ

ପ ଫ ବ ଭ ମ—ଏହି ପାଞ୍ଚଟି 'ପ'-ବର୍ଗ

ଡ଼ ଢ଼ ୟ ଳ—ଏହି ଚାରିଟି ସ୍ୱତନ୍ତ୍ର ବର୍ଣ୍ଣ ନୁହନ୍ତି; ପ୍ରଥମଟି ଡ ର, ଦ୍ୱିତୀୟଟି ଢ ର, ତୃତୀୟଟି ଯ ର, ଚତୁର୍ଥଟି ଲ ର ରୂପାନ୍ତର ମାତ୍ର ।

ସ୍ୱରବର୍ଣ୍ଣମାନେ ଅନ୍ୟ ବର୍ଣ୍ଣର ସାହାଯ୍ୟ ବିନା ଉଚ୍ଚାରିତ ହୋଇପାରନ୍ତି, ମାତ୍ର ବ୍ୟଞ୍ଜନବର୍ଣ୍ଣ ସ୍ୱରବର୍ଣ୍ଣର ସାହାଯ୍ୟ ବିନା ଉଚ୍ଚାରିତ ହୋଇପାରନ୍ତି ନାହିଁ ।

## ୨—ବର୍ଣ୍ଣମାନଙ୍କର ଉଚ୍ଚାରଣ ସ୍ଥାନ

ଅ ଆ କ ଖ ଗ ଘ ଙ ହ—ଏଗୁଡ଼ିକ କଣ୍ଠ ସାହାଯ୍ୟରେ ଉଚ୍ଚାରିତ ହୁଅନ୍ତି ବୋଲି ଏମାନଙ୍କୁ **କଣ୍ଠ୍ୟ** ବର୍ଣ୍ଣ କହନ୍ତି । ଇ ଈ ଚ ଛ ଜ ଝ ଞ ଯ ଶ—ଏଗୁଡ଼ିକ

ତାଳୁ ସାହାଯ୍ୟରେ ଉଚ୍ଚାରିତ ହୁଅନ୍ତି ବୋଲି ଏମାନଙ୍କୁ **ତାଲବ୍ୟ** ବର୍ଣ୍ଣ କହନ୍ତି । ଋ ୠ ଟ ଠ ଡ ଢ ଣ ର ଳ ଷ—ଏଗୁଡ଼ିକ ମୂର୍ଦ୍ଧା ସାହାଯ୍ୟରେ ଉଚ୍ଚାରିତ ହୁଅନ୍ତି ବୋଲି ଏମାନଙ୍କୁ **ମୂର୍ଦ୍ଧଣ୍ୟ** ବର୍ଣ୍ଣ କହନ୍ତି । ଌ ତ ଥ ଦ ଧ ନ ଲ ସ—ଏଗୁଡ଼ିକ ଦନ୍ତ ସାହାଯ୍ୟରେ ଉଚ୍ଚାରିତ ହୁଅନ୍ତି ବୋଲି ଏମାନଙ୍କୁ **ଦନ୍ତ୍ୟ** ବର୍ଣ୍ଣ କହନ୍ତି । ଉ ଊ ଓ ପ ଫ ବ ଭ ମ—ଏଗୁଡ଼ିକ ଓଷ୍ଠ ସାହାଯ୍ୟରେ ଉଚ୍ଚାରିତ ହୁଅନ୍ତି ବୋଲି ଏମାନଙ୍କୁ **ଓଷ୍ଠ୍ୟ** ବର୍ଣ୍ଣ କହନ୍ତି । କଣ୍ଠ ଓ ତାଳୁର ସାହାଯ୍ୟରେ ଐ ଉଚ୍ଚାରିତ ହୁଏ ବୋଲି ଏହାକୁ **କଣ୍ଠତାଲବ୍ୟ** ବର୍ଣ୍ଣ କହନ୍ତି । କଣ୍ଠ ଓ ଓଷ୍ଠର ସାହାଯ୍ୟରେ ଔ ଉଚ୍ଚାରିତ ହୁଏ ବୋଲି ଏହାକୁ **କଣ୍ଠୌଷ୍ଠ୍ୟ** ବର୍ଣ୍ଣ କହନ୍ତି । ଦନ୍ତ ଓ ଓଷ୍ଠର ସାହାଯ୍ୟରେ ଉଚ୍ଚାରିତ ହୁଏ ବୋଲି ଅନ୍ତସ୍ଥ ବ କୁ **ଦନ୍ତୌଷ୍ଠ୍ୟ** ବର୍ଣ୍ଣ କହନ୍ତି; ମାତ୍ର ଅନ୍ୟ ବର୍ଣ୍ଣର ତଳେ ଯୁକ୍ତ ନ ହେଲେ ଓଡ଼ିଆ ଭାଷାରେ ଏହାର ଉଚ୍ଚାରଣ ବର୍ଗ୍ୟ ବ ର ଉଚ୍ଚାରଣ ପରି ହୋଇଥାଏ । ଙ ଞ ଣ ନ ମ ଂ ँ—ଏଗୁଡ଼ିକ ନାସିକା ସାହାଯ୍ୟରେ ଉଚ୍ଚାରିତ ହୁଅନ୍ତି ବୋଲି ଏମାନଙ୍କୁ **ଅନୁନାସିକ** ବର୍ଣ୍ଣ କୁହାଯାଏ ।

## ୩—ବର୍ଣ୍ଣ ଯୋଜନା

ବ୍ୟଞ୍ଜନ ବର୍ଣ୍ଣରେ ସ୍ୱରବର୍ଣ୍ଣ ଯୁକ୍ତ ନ ହେଲେ ବ୍ୟଞ୍ଜନ ବର୍ଣ୍ଣକୁ **ହଳନ୍ତ** ବା **ହସନ୍ତ** କହନ୍ତି ଏବଂ ତାହା ତଳେ '୍' ଏହି ଚିହ୍ନ ଥାଏ । 'କ୍' ଏହାକୁ ହଳନ୍ତ କ ବା ହସନ୍ତ କ ବୋଲି ପଢ଼ିବାକୁ ହୁଏ । ବ୍ୟଞ୍ଜନ ବର୍ଣ୍ଣରେ ସ୍ୱରବର୍ଣ୍ଣ ଯୁକ୍ତ ହେଲେ ହଳନ୍ତ ଚିହ୍ନ ରହେ ନାହିଁ । କ୍ ଅ ଲ୍ ଅ ଏହି ସ୍ୱରବର୍ଣ୍ଣ ବର୍ଣ୍ଣ ଯୋଗରେ 'କଲ' ହେବ । ସେହିପରି ଭ୍ + ଉ + ଲ୍ + ଆ = ଭୁଲା ; ବ୍ + ଋ + ଦ୍ + ଧ୍ + ଅ = ବୃଦ୍ଧ, ର୍ + ଆ + ଜ୍ + ଞ୍ + ଈ = ରାଜ୍ଞୀ ।

ଅନୁଶୀଳନୀ—କ କ ବର୍ଣ୍ଣ ଯୋଗରେ ହଂସ, ଉଇ, କେଲି, ନାହିଁ, ଲାବଣ୍ୟ, ଇନ୍ଦ୍ର, ପୂର୍ଣ୍ଣିମା, କାବ୍ୟ ହେବ ?

## ୪—ଶବ୍ଦ

ଅର୍ଥବୋଧକ ଏକ ବା ତହିଁରୁ ଅଧିକ ବର୍ଣ୍ଣରେ ଗୋଟିଏ ଗୋଟିଏ **ଶବ୍ଦ** ହୁଏ । ନଦୀ, ଫଳ, ଗୋ, ଶସ୍ୟ, ଏ, ରଥ, ଭୂଷଣ—ଏଗୁଡ଼ିକ ଗୋଟିଏ ଗୋଟିଏ ଶବ୍ଦ । ଅର୍ଥ ନ ଥିଲେ ଏକ ବା ତହିଁରୁ ଅଧିକ ବର୍ଣ୍ଣରେ ଶବ୍ଦ ହେବ ନାହିଁ ।

ଶବ୍ଦମାନଙ୍କ ମଧ୍ୟରେ ଭୂ, ସ୍ଥା, ଗମ୍, ଦୃଶ୍, ଦେଖ୍, ଯା ପ୍ରଭୃତିକୁ **ଧାତୁ** କହନ୍ତି । ଧାତୁ ଏବଂ ଅନ୍ୟ ଶବ୍ଦକୁ **ପ୍ରକୃତି** କହନ୍ତି । ଭିନ୍ନ ଭିନ୍ନ ଅର୍ଥରେ ପ୍ରକୃତିରେ ଯାହା ଯୋଗ କରାଯାଏ ତାହାକୁ **ପ୍ରତ୍ୟୟ** କହନ୍ତି ।

## ୫—ବାକ୍ୟ ଓ ପଦ

'ଗୋବିନ୍ଦ ଆସୁଅଛି'—ଏଥିରେ ଅର୍ଥ ସମ୍ପୂର୍ଣ୍ଣ ରୂପେ ପ୍ରକାଶ ପାଉଅଛି; ଏଣୁ ଏହା ଗୋଟିଏ ବାକ୍ୟ । 'ବାୟୁ ଧୀରେ ବହୁଅଛି'—ଏଥିରେ ଅର୍ଥ ସମ୍ପୂର୍ଣ୍ଣରୂପେ ପ୍ରକାଶ ପାଉଅଛି ବୋଲି ଏହା ମଧ୍ୟ ଗୋଟିଏ ବାକ୍ୟ ।

ଯହିଁରେ ଅର୍ଥ ସମ୍ପୂର୍ଣ୍ଣରୂପେ ପ୍ରକାଶ ପାଏ ତାହାକୁ **ବାକ୍ୟ** କହନ୍ତି । 'ବାୟୁ ଧୀରେ'—ଏଥିରେ ଅର୍ଥ ସମ୍ପୂର୍ଣ୍ଣରୂପେ ପ୍ରକାଶ ପାଉ ନାହିଁ ବୋଲି ଏହା ବାକ୍ୟ ନୁହେଁ । ସେହିପରି 'ଗ୍ରୀଷ୍ମକାଳରେ ଅତିଶୟ' ଏହା ବାକ୍ୟ ନୁହେଁ ।

'ଗୋବିନ୍ଦ ଆସୁଅଛି' ଏହି ବାକ୍ୟରେ 'ଗୋବିନ୍ଦ' ଗୋଟିଏ ପଦ, 'ଆସୁଅଛି' ଆଉ ଗୋଟିଏ ପଦ । 'ବାୟୁ ଧୀରେ ବହୁଅଛି' ଏଥିରେ 'ବାୟୁ' ଗୋଟିଏ ପଦ, 'ଧୀରେ' ଗୋଟିଏ ପଦ, 'ବହୁଅଛି' ଆଉ ଗୋଟିଏ ପଦ । 'ବର୍ଷାକାଳରେ ନଦୀରେ ବନ୍ୟା ହୁଏ' ଏଥିରେ ବର୍ଷାକାଳରେ, ନଦୀରେ, ବନ୍ୟା, ହୁଏ—ଏହି ଚାରିଟି ପଦ ଅଛି ।

'ବନ୍ୟା' ଗୋଟିଏ ଶବ୍ଦ, ବାକ୍ୟରେ ବ୍ୟବହୃତ ହେବାରୁ ଏହା ତାହାର ଗୋଟିଏ ପଦ ହେଲା । ଶବ୍ଦ ବାକ୍ୟରେ ବ୍ୟବହୃତ ହେଲେ ପଦ ବୋଲାଯାଏ । ବାକ୍ୟରେ ବ୍ୟବହୃତ ହେଲାବେଳେ କୌଣସି କୌଣସି ସ୍ଥଳରେ ଶବ୍ଦରେ ବିଭକ୍ତି ଯୁକ୍ତ ହୁଏ ।

ଅନୁଶୀଳନୀ—ନିମ୍ନଲିଖିତ ବାକ୍ୟମାନଙ୍କରୁ କାହିଁରେ କେତୋଟି ପଦ ଅଛି ବୋଲ—

(୧) ବସନ୍ତ କାଳରେ ଅନେକ ଫୁଲ ଫୁଟେ । (୨) କୋକିଳର ରବ ଅତି ମନୋହର ଅଟେ । (୩) ମାଛିମାନଙ୍କର ଛଅଟି ଗୋଡ଼ ଥାଏ । (୪) ଦୁର୍ଭିକ୍ଷ ହେଲେ ଅନେକ ଲୋକ ନଷ୍ଟ ହୁଅନ୍ତି । (୫) ସୀତା ଓ ଲକ୍ଷ୍ମଣଙ୍କୁ ସଙ୍ଗରେ ନେଇ ରାମଚନ୍ଦ୍ର ବନକୁ ଗଲେ ।

ପଦ ପାଞ୍ଚ ପ୍ରକାର :—ବିଶେଷ୍ୟ, ସର୍ବନାମ, କ୍ରିୟା, ବିଶେଷଣ, ଅବ୍ୟୟ ।

## ୭—ବିଶେଷ୍ୟ

ବସ୍ତୁ, ବ୍ୟକ୍ତି, ଜାତି, ଗୁଣ, ଅବସ୍ଥା ଓ କ୍ରିୟାର ନାମକୁ **ବିଶେଷ୍ୟ** କହନ୍ତି । ସୁନା, ପଥର, ଜଳ, କାଠ, ମାଟି, ବାୟୁ—ଏଗୁଡ଼ିକ ଗୋଟିଏ ଗୋଟିଏ ବସ୍ତୁର ନାମ; ଏଣୁ ଏଗୁଡ଼ିକ **ବସ୍ତୁବାଚକ** ବିଶେଷ୍ୟ ।

ଗୋବିନ୍ଦ, ବନମାଳୀ, ସାବିତ୍ରୀ, ପାର୍ବତୀ, ଶିବ—ଏଗୁଡ଼ିକ ଜଣ ଜଣଙ୍କର ନାମ; ଏଣୁ ଏଗୁଡ଼ିକ **ବ୍ୟକ୍ତିବାଚକ** ବିଶେଷ୍ୟ । ମନୁଷ୍ୟ କହିଲେ ଗୋବିନ୍ଦ, ବନମାଳୀ, ସାବିତ୍ରୀ, ପାର୍ବତୀ, ଶିବ ଏମାନଙ୍କୁ ଏବଂ ଏହିପରି ଆହୁରି ଅନେକଙ୍କୁ

ଝାଏ । ଏଣୁ 'ମନୁଷ୍ୟ' **ଜାତିବାଚକ** ବିଶେଷ୍ୟ । 'ଗଙ୍ଗା' ଗୋଟିଏ ନଦୀର ନାମ, 'ଖଣ୍ଡଗିରି' ଗୋଟିଏ ପାହାଡ଼ର ନାମ,' ଚିଲିକା' ଗୋଟିଏ ହ୍ରଦର ନାମ; ଏଣୁ ଗଙ୍ଗା, ଖଣ୍ଡଗିରି, ଚିଲିକା **ବ୍ୟକ୍ତିବାଚକ** ବିଶେଷ୍ୟ । ମାତ୍ର ନଦୀ, ପାହାଡ଼ ହ୍ରଦ **ଜାତିବାଚକ** ବିଶେଷ୍ୟ ।

ଦୟା, ବିନୟ, କ୍ଷମା, ବଡ଼ପଣିଆ, ସାଧୁତା—ଏଗୁଡ଼ିକ ଗୋଟିଏ ଗୋଟିଏ ଗୁଣର ନାମ; ଶୈଶବ, ବାର୍ଦ୍ଧକ୍ୟ, ଉଚ୍ଚତା, ପକ୍ୱତା—ଏଗୁଡ଼ିକ **ଗୁଣବାଚକ** ବିଶେଷ୍ୟ ।

ଗମନ, ଶୟନ, ଦେଖିବା, ହସିବା—ଏଗୁଡ଼ିକ ଗୋଟିଏ ଗୋଟିଏ କ୍ରିୟାର ନାମ; ଏଣୁ ଏଗୁଡ଼ିକ **କ୍ରିୟାବାଚକ** ବିଶେଷ୍ୟ ।

ବିଶେଷ୍ୟ ପାଞ୍ଚ ପ୍ରକାର—ବସ୍ତୁବାଚକ, ବ୍ୟକ୍ତିବାଚକ, ଜାତିବାଚକ, ଗୁଣବାଚକ ଓ କ୍ରିୟାବାଚକ । ବସ୍ତୁ ବା ପଦାର୍ଥର ନାମକୁ **ବସ୍ତୁବାଚକ** ବିଶେଷ୍ୟ କହନ୍ତି । ମନୁଷ୍ୟମାନଙ୍କ ମଧ୍ୟରେ, ଅପର ପ୍ରାଣୀମାନଙ୍କ ମଧ୍ୟରେ, ଉଦ୍ଭିଦମାନଙ୍କ ମଧ୍ୟରେ, ନଦୀ ପର୍ବତାଦି ମଧ୍ୟରେ ଜଣ ଜଣକର ବା ଗୋଟି ଗୋଟିକର ନାମକୁ **ବ୍ୟକ୍ତିବାଚକ** ବିଶେଷ୍ୟ କହନ୍ତି । ମନୁଷ୍ୟ, ପଶୁ, ପକ୍ଷୀ, ନଦୀ, ପର୍ବତ ପ୍ରଭୃତି ଗୋଟିଏ ଗୋଟିଏ ସାଧାରଣ ନାମକୁ **ଜାତିବାଚକ ବିଶେଷ୍ୟ** କହନ୍ତି । ଗୁଣ ବା ଅବସ୍ଥାର ନାମକୁ **ଗୁଣବାଚକ ବିଶେଷ୍ୟ** କହନ୍ତି । କ୍ରିୟା ବା କାର୍ଯ୍ୟର ନାମକୁ **କ୍ରିୟାବାଚକ** ବିଶେଷ୍ୟ କହନ୍ତି ।

ଅନୁଶୀଳନୀ—ନିମ୍ନଲିଖିତ ବିଶେଷ୍ୟମାନଙ୍କ ମଧ୍ୟରେ କିଏ କେଉଁ ପ୍ରକାର ବିଶେଷ୍ୟ କହ—ଆକାଶ, ହରିଣ, ଲୌହ, ବ୍ରାହ୍ମଣ, କ୍ଷମା, ମାଛ, ହିମାଳୟ, ପତନ, ହାତ, ଯୌବନ । ବିଶେଷ୍ୟର ଲିଙ୍ଗ ବଚନ ଓ କାରକ ଅଛି ।

## ୭—ଲିଙ୍ଗ

**ଯେଉଁ** ବିଶେଷ୍ୟ ପଦ ପୁରୁଷର ନାମ ତାହାକୁ **ପୁଂଲିଙ୍ଗ** କହନ୍ତି । ଗୋବିନ୍ଦ, ବ୍ରାହ୍ମଣ, ମୟୂର, କୁକ୍କୁଟ, ଷଣ୍ଢ—ଏଗୁଡ଼ିକ ପୁଂଲିଙ୍ଗ ।

ଯେଉଁ ବିଶେଷ୍ୟ ପଦ **ସ୍ତ୍ରୀର** ନାମ ତାହାକୁ ସ୍ତ୍ରୀଲିଙ୍ଗ କହନ୍ତି । ପାର୍ବତୀ, ଉମା, ବ୍ରାହ୍ମଣୀ, ମୟୂରୀ, ଗାଈ, କୁକ୍କୁଟୀ—ଏଗୁଡ଼ିକ ସ୍ତ୍ରୀଲିଙ୍ଗ ।

ଯେଉଁ ବିଶେଷ୍ୟ ପଦ ପୁରୁଷର ନାମ ନୁହେ କିମ୍ବା ସ୍ତ୍ରୀର ନାମ ନୁହେଁ, ତାହାକୁ କ୍ଳୀବଲିଙ୍ଗ କହନ୍ତି । ପଥର, ଦଳ, ବାଲି, ପତ୍ର—ଏଗୁଡ଼ିକ କ୍ଳୀବଲିଙ୍ଗ ।

ବିଦ୍ୟୁତ୍, ରାତ୍ରି, ଲଜ୍ଜା, ଲତା, ଶ୍ରେଣୀ, ଶୋଭା, ରୀତି, ମତି, ବୁଦ୍ଧି, ସାଧୁତା, ଉଚ୍ଚତା ପ୍ରଭୃତି ବିଶେଷ୍ୟମାନଙ୍କୁ **ସ୍ୱାଭାବିକ ସ୍ତ୍ରୀଲିଙ୍ଗ** କହନ୍ତି ।

ଅନୁଶୀଳନୀ—ନିମ୍ନଲିଖିତ ବିଶେଷ୍ୟ ପଦମାନଙ୍କର ଲିଙ୍ଗ ବୋଲ—ହରିଣ, କେଶ, ରାଧା, ଲୁଗା, ଘର, ଗୋପାଳ, ଫୁଲ, ଲତା ।

ପ୍ରତ୍ୟୟ ଦ୍ୱାରା କେତେଗୁଡ଼ିଏ ପୁଂଲିଙ୍ଗ ଶବ୍ଦକୁ ସ୍ତ୍ରୀଲିଙ୍ଗ କରାଯାଏ ।

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| ବ୍ରାହ୍ମଣ | ବ୍ରାହ୍ମଣୀ | ମାଳୀ | ମାଳୁଣୀ |
| କ୍ଷତ୍ରିୟ | କ୍ଷତ୍ରିୟା, କ୍ଷତ୍ରିୟାଣୀ | ଚମାର | ଚମାରୁଣୀ |
| ଭବ | ଭବାନୀ | ଗଉଡ଼ | ଗଉଡୁଣୀ |
| ଭଗବାନ୍ | ଭଗବତୀ | ପାଣ | ପାଲୁଣୀ |
| ପଣ୍ଡିତ | ପଣ୍ଡିତା | ବାଘ | ବାଘୁଣୀ |
| ପଣ୍ଡା | ପଣ୍ଡିଆଣୀ | ହରିଣ | ହରିଣୀ |
| ପାଟରା | ପାଟରାଣୀ | ଭଣ୍ଡାରି | ଭଣ୍ଡାରୁଣୀ |

ଗୋରୁ ପ୍ରଭୃତି କେତେକ ଶବ୍ଦ ଉଭୟ ଲିଙ୍ଗ । ତେଣୁ ଲିଙ୍ଗବୋଧକ ଶବ୍ଦ ପୂର୍ବରେ ଯୋଗ କଲେ ତାହା ପୁଂଲିଙ୍ଗ ବା ସ୍ତ୍ରୀଲିଙ୍ଗ ହୁଏ । ଯଥା—

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| ଅଣ୍ଡିରା ଗୋରୁ | ମାଈ ଗୋରୁ | ଅଣ୍ଡିରା ଛେଳି | ମାଈ ଛେଳି |
| ଅଣ୍ଡିରା ବାଛୁରି | ମାଈ ବାଛୁରି | ଅଣ୍ଡିରା ଗଛ | ମାଈ ଗଛ |
| ପୁରୁଷ ପଢ଼ିଆରି | ସ୍ତ୍ରୀ ପଢ଼ିଆରି | ପୁରୁଷ ଲୋକ | ସ୍ତ୍ରୀଲୋକ |
| ପୁରୁଷ ଯାତ୍ରୀ | ସ୍ତ୍ରୀ ଯାତ୍ରୀ | ପୁରୁଷ କର୍ମୀ | ମହିଳା କର୍ମୀ |

କେତେକ ସ୍ଥଳରେ ଭିନ୍ନ ଶବ୍ଦଦ୍ୱାରା ପୁଲିଙ୍ଗ ସ୍ତ୍ରୀଲିଙ୍ଗରେ ପରିଣତ ହୁଏ । ଯଥା—

| | | | | | |
|---|---|---|---|---|---|
| ଅଣ୍ଡିରା | ମାଈ | ପୁରୁଷ | ସ୍ତ୍ରୀ | ପିତା | ମାତା |
| ଶ୍ୱଶୁର | ଶାଶୁ | ବର | କନ୍ୟା | ବାପ | ମା |
| ପୁଅ | ବୋହୂ | ନର | ନାରୀ | ଜାମାତା | ଦୁହିତା |

## ୮—ବଚନ

ବିଶେଷ୍ୟ ପଦରେ ଦୁଇଟି ବଚନ ଅଛି—ଏକବଚନ ଓ ବହୁବଚନ । ଯେଉଁ ବିଶେଷ୍ୟ ପଦରୁ ପ୍ରାଣୀ ବା ପଦାର୍ଥର ସଂଖ୍ୟା ଏକ ବୋଲି ଜଣାଯାଏ, ତାହାର ଏକବଚନ ଏବଂ ଯେଉଁ ବିଶେଷ୍ୟରୁ ପ୍ରାଣୀ ବା ପଦାର୍ଥର ସଂଖ୍ୟା ଏକରୁ ଅଧିକ ବୋଲି ଜଣାଯାଏ, ତାହାର ବହୁବଚନ ହୁଏ । 'ଆମ୍ବଟି' କହିଲେ ଗୋଟିଏ ଆମ୍ବ ବୁଝିବାକୁ ହେବ, ଆମ୍ବଗୁଡ଼ିଏ' କହିଲେ ଏକରୁ ଅଧିକ ଆମ୍ବ ବୁଝିବାକୁ ହେବ । 'ଆମ୍ବଟି' ଏକବଚନ, 'ଆମ୍ବଗୁଡ଼ିଏ' ବହୁବଚନ । ମନୁଷ୍ୟ, ଘୋଡ଼ା, ଗଛ ଏହି

ବିଶେଷ୍ୟ ପଦଗୁଡ଼ିକର ଏକବଚନ; ମନୁଷ୍ୟମାନେ, ଘୋଡ଼ାଗୁଡ଼ିଏ, ଘରଗୁଡ଼ାକ ଏହି ବିଶେଷ୍ୟ ପଦଗୁଡ଼ିକର **ବହୁବଚନ** ।

## ୯—କାରକ

କ୍ରିୟା ସହିତ ଯାହାର ଅନ୍ୱୟ ଥାଏ, ତାହାକୁ କାରକ କହନ୍ତି । କାରକ ଛଅ ପ୍ରକାର—କର୍ତ୍ତା, କର୍ମ, କରଣ, ସଂପ୍ରଦାନ, ଅପାଦାନ ଓ ଅଧିକରଣ ।

କ୍ରିୟା ସହିତ ଅନ୍ୱୟ ନ ଥିବାରୁ ସମ୍ବନ୍ଧ ଓ ସମ୍ବୋଧନକୁ କାରକ ମଧ୍ୟରେ ଗଣନା କରାଯାଏ ନାହିଁ ।

## ୧୦—ବିଭକ୍ତି

ଭିନ୍ନ ଭିନ୍ନ କାରକ ଓ ବଚନରେ ବିଶେଷ୍ୟ ବା ଅନ୍ୟ ପଦରେ ମାନେ, କୁ, ଦ୍ୱାରା, ର, ରୁ, ଟି ପ୍ରଭୃତି ଯୋଗ କରାଯାଏ । ଏମାନଙ୍କୁ ବିଭକ୍ତି କହନ୍ତି । ବିଭକ୍ତି ସାତ ପ୍ରକାର—ପ୍ରଥମା, ଦ୍ୱିତୀୟା, ତୃତୀୟା, ଚତୁର୍ଥୀ, ପଞ୍ଚମୀ, ଷଷ୍ଠୀ ଓ ସପ୍ତମୀ ।

କର୍ତ୍ତୃକାରକରେ ସାଧାରଣତଃ ପ୍ରଥମା ବିଭକ୍ତି, କର୍ମକାରକରେ ସାଧାରଣତଃ ଦ୍ୱିତୀୟା ବିଭକ୍ତି, କରଣକାରକରେ ତୃତୀୟା ବିଭକ୍ତି, ସଂପ୍ରଦାନ-କାରକରେ ଚତୁର୍ଥୀ ବିଭକ୍ତି, ଅପାଦାନକାରକରେ ପଞ୍ଚମୀ ବିଭକ୍ତି ଏବଂ ଅଧିକରଣ-କାରକରେ ସପ୍ତମୀ ବିଭକ୍ତି ହୁଏ । ସମ୍ବନ୍ଧ-ପଦରେ ଷଷ୍ଠୀ ବିଭକ୍ତି ଏବଂ ସମ୍ବୋଧନ ପଦରେ ପ୍ରଥମା ବିଭକ୍ତି ହୁଏ । ବିଭକ୍ତିମାନଙ୍କର ଆକାର ନିମ୍ନରେ ଦେଖାଇ ଦିଆଗଲା—

| ବିଭକ୍ତି | ଏକବଚନ | ବହୁବଚନ |
|---|---|---|
| ପ୍ରଥମା | —— | ଏ, ମାନେ, ମାନ, ଗୁଡ଼ିକ<br>ଗୁଡ଼ାକ, ଗୁଡ଼ିଏ, ଗୁଡ଼ାଏ |
| ଦ୍ୱିତୀୟା | କୁ, ଙ୍କୁ | ମାନଙ୍କୁ, ଙ୍କୁ |
| ତୃତୀୟା | ଦ୍ୱାରା, ରେ,<br>କର୍ତ୍ତୃକ, ଦେଇ | ମାନଙ୍କଦ୍ୱାରା, ମାନଙ୍କରେ<br>ମାନଙ୍କ କର୍ତ୍ତୃକ, ମାନଙ୍କ ଦେଇ |
| ଚତୁର୍ଥୀ | କୁ, ଙ୍କୁ | ମାନଙ୍କୁ, ଙ୍କୁ । |
| ପଞ୍ଚମୀ | ରୁ, ଠାରୁ, ଉ, | ମାନଙ୍କରୁ, ମାନଙ୍କଠାରୁ |
| ଷଷ୍ଠୀ | ର, ଙ୍କ, ଙ୍କର | ମାନଙ୍କର, ମାନଙ୍କ |
| ସପ୍ତମୀ | ରେ, ଠାରେ | ମାନଙ୍କରେ, ମାନଙ୍କଠାରେ |

ଭିନ୍ନ ଭିନ୍ନ କାରକ ଓ ବିଭକ୍ତିରେ 'ମୁନି' ଓ 'ଘର' ଶବ୍ଦର ରୂପ ନିମ୍ନରେ ଦେଖାଇ ଦିଆଗଲା ।

### (୯) ମୁନି

| କାରକ | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ମୁନି | ମୁନିମାନେ |
| କର୍ମ | ମୁନିଙ୍କୁ | ମୁନିମାନଙ୍କୁ |
| କରଣ | ମୁନିଙ୍କଦ୍ୱାରା | ମୁନିମାନଙ୍କ ଦ୍ୱାରା |
| ସଂପ୍ରଦାନ | ମୁନିଙ୍କୁ | ମୁନିମାନଙ୍କୁ |
| ଅପାଦାନ | ମୁନିଙ୍କଠାରୁ | ମୁନିମାନଙ୍କଠାରୁ |
| ଅଧିକରଣ | ମୁନିଙ୍କଠାରେ | ମୁନିମାନଙ୍କଠାରେ |
| ସମ୍ବନ୍ଧ | ମୁନିଙ୍କର, ମୁନିଙ୍କ | ମୁନିମାନଙ୍କର, ମୁନିମାନଙ୍କ |
| ସମ୍ବୋଧନ | ହେ ମୁନି, ହେ ମୁନେ, ଭୋ ମୁନେ, | ହେ ମୁନିମାନେ ଭୋ ମୁନିମାନେ |

### (୬) ଘର

| | | |
|---|---|---|
| କର୍ତ୍ତା | ଘର | ଘରମାନ |
| କର୍ମ | ଘରକୁ | ଘରମାନଙ୍କୁ |
| କରଣ | ଘରଦ୍ୱାରା, ଘର ଦେଇ | ଘରମାନଙ୍କ ଦ୍ୱାରା ଘରମାନଙ୍କ ଦେଇ |
| ସଂପ୍ରଦାନ | ଘରକୁ | ଘରମାନଙ୍କୁ |
| ଅପାଦାନ | ଘରୁ, ଘରରୁ, ଘରଠାରୁ | ଘରମାନଙ୍କରୁ, ଘରମାନଙ୍କଠାରୁ |
| ଅଧିକରଣ | ଘରେ, ଘରଠାରେ | ଘରମାନଙ୍କଠାରେ |
| ସମ୍ବନ୍ଧ | ଘରର | ଘରମାନଙ୍କରେ |
| ସମ୍ବୋଧନ | ହେ ଘର | ହେ ଘରମାନ |

ପ୍ରଥମା ଏକବଚନରେ ବିଭକ୍ତିର କୌଣସି ଚିହ୍ନ ନ ଥାଏ । କୌଣସି କୌଣସି ସ୍ଥଳରେ ଟି, ଟା, ଏ ଯୋଗ କରାଯାଏ । ଗୌରବାର୍ଥରେ ଏ, ସ୍ନେହାର୍ଥରେ ଏବଂ ଅନାଦର ଅର୍ଥରେ ଟା ବ୍ୟବହାର କରାଯାଏ । ଯଥା—ମିଶ୍ରେ, ପଣ୍ଡିତେ, ପିଲାଟି, ପକ୍ଷୀଟି, ଚୋରଟା । କୌଣସି କୌଣସିଠାରେ କର୍ମକାରକରେ ଦ୍ୱିତୀୟା ବିଭକ୍ତି ଲୁପ୍ତ ଥାଏ । ହରି ଭାତ ଖାଉଅଛି—ଏଠାରେ ଭାତ ଏହି ପଦରେ ଦ୍ୱିତୀୟା ବିଭକ୍ତି ଲୁପ୍ତ ଅଛି ।

### କର୍ତ୍ତା

ଯେ କ୍ରିୟା ବା କାର୍ଯ୍ୟ ସାଧନ କରେ, ତାହାକୁ **କର୍ତ୍ତା** କହନ୍ତି । ଗୋବିନ୍ଦ ଖାଉଅଛି, ଗୋରୁ ଚରୁଅଛି, ହରିଣ ଦୌଡ଼ୁଅଛି—ଏ ସ୍ଥଳମାନଙ୍କରେ ଗୋବିନ୍ଦ, ଗୋରୁ, ହରିଣ—ଏଗୁଡ଼ିକ କର୍ତ୍ତା ।

## କର୍ମ

ଯାହାକୁ ଖାନ୍ତି, ଶୁହାନ୍ତି, ଘେନନ୍ତି ବା ଏହିପରି ଆଉ କିଛି କରନ୍ତି ବୋଲି ବାକ୍ୟରୁ ଜଣାଯାଏ, ତାହାକୁ **କର୍ମ** କହନ୍ତି । ଯଦୁ ଭାତ ଖାଉଅଛି, ଗୋପାଳ ପାଣି ପିଉଅଛି—ଏ ସ୍ଥଳରେ ଭାତ, ପାଣି ଏ ଦୁଇଟି କର୍ମକାରକ, ବା କର୍ମପଦ ।

## କରଣ

ଯାହାଦ୍ୱାରା କ୍ରିୟା ସାଧନ କରାଯାଏ, ତାହାକୁ **କରଣ** କହନ୍ତି । ଧୋବା କୁର୍‌ହାଡ଼ରେ କାଠ ହାଣୁଅଛି, ତାଳପତ୍ରରେ ଲେଖନଦ୍ୱାରା ଲେଖାଯାଏ, ଗୋପାଳ ଘୋଡ଼ାରେ ପୁରୀ ଗଲା— ଏ ସ୍ଥଳମାନଙ୍କରେ କୁର୍‌ହାଡ଼ରେ, ଲେଖନଦ୍ୱାରା, ଘୋଡ଼ାରେ—ଏଗୁଡ଼ିକ କରଣକାରକ ।

## ସଂପ୍ରଦାନ

ଯାହାକୁ କୌଣସି ବସ୍ତୁ ଦିଆଯିବା ବାକ୍ୟରୁ ଜଣାଯାଏ, ତାହାକୁ **ସଂପ୍ରଦାନ** କହନ୍ତି । ବୈଦ୍ୟ ରୋଗୀକୁ ଔଷଧ ଦେଲେ, ଭିକାରୀକୁ ଭିକ ଦିଅ, ରାଜା ବ୍ରାହ୍ମଣମାନଙ୍କୁ ଭୂମି ଦାନ କଲେ—ଏ ସ୍ଥଳମାନଙ୍କରେ ରୋଗୀକୁ, ଭିକାରୀକୁ, ବ୍ରାହ୍ମଣମାଙ୍କୁ ସଂପ୍ରଦାନ କାରକ ।

## ଅପାଦାନ

ଯାହାଠାରୁ କୌଣସି କାର୍ଯ୍ୟ ହେବା ବାକ୍ୟରୁ ଜଣାଯାଏ, ତାହାକୁ **ଅପାଦାନ** କହନ୍ତି । ବୃକ୍ଷରୁ ଫଳ ପଡ଼ିଲା, ହରି ଆଜି ପୁରୀରୁ ଆସିଲା, ଗୋପାଳ ପିତାଙ୍କଠାରୁ ପାଞ୍ଚଟି ଟଙ୍କା ନେଲା—ଏ ସ୍ଥଳମାନଙ୍କରେ ବୃକ୍ଷରୁ, ପୁରୀରୁ, ପିତାଙ୍କ-ଠାରୁ ଅପାଦାନ କାରକ ।

## ଅଧିକରଣ

କ୍ରିୟାର ଆଧାରକୁ **ଅଧିକରଣ** କହନ୍ତି । ଅଧିକରଣ ଦୁଇ ପ୍ରକାର—ଦେଶାଧିକରଣ ଓ କାଳାଧିକରଣ । ପୁଷ୍କରିଣୀରେ ଜଳ ଅଛି—ଏଠାରେ 'ପୁଷ୍କରିଣୀ' ଦେଶାଧିକରଣ, ଶରତ୍‌କାଳରେ ଆକାଶ ନିର୍ମଳ ଥାଏ—ଏଠାରେ 'ଶରତ୍-କାଳରେ' କାଳାଧିକରଣ ।

## କାରକଭିନ୍ନ ସ୍ଥଳରେ ବିଭକ୍ତି-ଯୋଗ

"ବୋଲି" ଏହି ଅବ୍ୟୟ ଯୋଗେ ବିଶେଷ୍ୟ ପଦରେ ପ୍ରଥମା ବିଭକ୍ତି ହୁଏ । ଯଥା—କପିଳାସ ବୋଲି ଗୋଟିଏ ପାହାଡ଼ ଅଛି ।

'ଧିକ୍' ଏହି ଅବ୍ୟୟ ଯୋଗେ ଦ୍ୱିତୀୟା ବିଭକ୍ତି ହୁଏ । ଯଥା— ଚୋରକୁ ଧିକ୍ ।

ରୁଚିବା ଅର୍ଥରେ ଏବଂ ନିମିତ୍ତାର୍ଥରେ ଚତୁର୍ଥୀ ବିଭକ୍ତି ହୁଏ । ଯଥା, ରୋଗୀକୁ ଔଷଧ ରୁଚେ ନାହିଁ, ଖାଇବାକୁ ଘରେ ଅନ୍ନ ନାହିଁ, ସ୍ୱର୍ଗକୁ ନିଶୁଣୀ ନାହିଁ ।

ହେତୁ ଅର୍ଥରେ ଏବଂ **ଦୁଇ** ମଧ୍ୟରେ ଗୋଟିକର ଉତ୍କର୍ଷ ବା ଅପକର୍ଷ ବୁଝାଇଲେ ପଞ୍ଚମୀ ବିଭକ୍ତି ହୁଏ । ଯଥା—ବଳ ଅଭାବରୁ ବୃଦ୍ଧ ଲୋକ ଶୀଘ୍ର ଚାଲି-ପାରେ ନାହିଁ । ଆମ୍ବଠାରୁ ପଣସ ବହୁତ ବଡ଼ ।

'ବିନା' ଓ 'ପ୍ରତି' ଏହି ଦୁଇ ଅବ୍ୟୟ ଯୋଗେ ଷଷ୍ଠୀ ବିଭକ୍ତି ହୁଏ; ମାତ୍ର ସେହି ବିଭକ୍ତିର 'ର' ଲୁପ୍ତ ରହେ । ଯଥା—ଗୁରୁଙ୍କ ବିନା ମୋହର ଅନ୍ୟ ଗତି ନାହିଁ । ରାମଙ୍କ ପ୍ରତି ଲକ୍ଷ୍ମଣର ଅତିଶୟ ଭକ୍ତି ଥିଲା ।

**ଅନେକଙ୍କ** ମଧ୍ୟରେ ଗୋଟିକର ଉତ୍କର୍ଷ ବା ଅପକର୍ଷ ବୁଝାଇଲେ ସପ୍ତମୀ ବିଭକ୍ତି ହୁଏ । ଯଥା—ପଶୁମାନଙ୍କମଧ୍ୟରେ ସିଂହ ରାଜା ଅଟେ । ଅନୁଶୀଳନୀ :— ନିମ୍ନଲିଖିତ ସ୍ଥଳମାନଙ୍କରେ ବିଶେଷ୍ୟରେ କେଉଁ ବିଭକ୍ତି ଅଛି ଏବଂ କି ହେତୁରୁ ସେହି ବିଭକ୍ତି ହୋଇଅଛି ବୋଲ :—

(୧) ଶୀତ କାଳରେ ଅନେକ ଗଛରେ ପତ୍ର ନ ଥାଏ । (୨) ଚନ୍ଦ୍ରର କିରଣରେ ପଢ଼ିବା ଭଲ ନୁହେଁ । (୩) ମେଘରୁ ବୃଷ୍ଟି ହେଉଅଛି । (୪) ଜନକ ରାମଚନ୍ଦ୍ରଙ୍କୁ ସୀତାଙ୍କୁ ସମର୍ପଣ କଲେ । (୫) ମାଧବକୁ ସପୁରି ଭଲ ଲାଗେ ନାହିଁ । (୬) ଅତିଥିମାନଙ୍କୁ ଅନ୍ନ ନିଅଣ୍ଟ ହେଲା । (୭) ନୂଆ ଛୁରୀରେ କଲମ କାଟିଲାବେଳେ ସାବଧାନ ହେବ । (୮) "ପଥକୁ ତୋ ନାମ ସଙ୍ଗାତ ।" (୯) "ଶୁଖିଲା କାଠରୁ ବହୁଛି ପାଣି ।" (୧୦) ସ୍ଥଳଚର ପ୍ରାଣୀମାନଙ୍କ ମଧ୍ୟରେ ହସ୍ତୀ ବୃହତ୍ତମ ଅଟେ ।

## ୧୧—ସର୍ବନାମ

ବାକ୍ୟରେ ବିଶେଷ୍ୟ ପଦର ପରିବର୍ତ୍ତେ ଯେଉଁ ପଦ ବ୍ୟବହାର କରାଯାଏ, ତାହାକୁ **ସର୍ବନାମ** କହନ୍ତି । 'ଉମା କାଲି ତାହାର ମା'ଙ୍କ ସଙ୍ଗେ ମାମୁଁ ଘରକୁ ଗଲା'—ଏହି ବାକ୍ୟରେ 'ଉମାର' ଏହି ବିଶେଷ୍ୟ ପଦ ପରିବର୍ତ୍ତେ 'ତାହାର' ଏହି ପଦ ବ୍ୟବହାର କରାଯାଇଅଛି । 'ତାହାର' ସର୍ବନାମ ପଦ । 'ମଧୁ ଅଳ୍ପରେ ରାଗେ ବୋଲି ତାହାକୁ ବାଳକମାନେ କିଛି କହନ୍ତି ନାହିଁ'—ଏହି ବାକ୍ୟରେ 'ମଧୁକୁ' ଏହି ବିଶେଷ୍ୟ ପଦ ପରିବର୍ତ୍ତେ 'ତାହାକୁ' ଏହି ସର୍ବନାମପଦ ବ୍ୟବହାର କରାଯାଇଅଛି ।

ଏକ ବା ଏକାଧିକ ବାକ୍ୟରେ ଏକ ବିଶେଷ୍ୟ ପଦ ବାରମ୍ବାର ବ୍ୟବହାର କଲେ ଶ୍ରୁତିକଟୁ ହୁଏ । ସେହି ଶ୍ରୁତିକଟୁତା ପରିହାର କରିବାପାଇଁ ସର୍ବନାମ ପଦ ବ୍ୟବହାର କରାଯାଏ । 'ରାମ ସୁଶୀଳ ବାଳକ । ରାମ କାହାରି ସଙ୍ଗେ କଳି କରେ ନାହିଁ । ସେଥିପାଇଁ ରାମକୁ ସମସ୍ତେ ଭଲ ପାଆନ୍ତି । ଏହି ବାକ୍ୟମାନଙ୍କରେ 'ରାମ'

ଏହି ବିଶେଷ୍ୟ ପଦର ବାରମ୍ବାର ବ୍ୟବହାର ଶୁଣିବାକୁ ଭଲ ଲାଗୁ ନାହିଁ ବୋଲି 'ରାମ ସୁଶୀଲ ବାଳକ । ସେ କାହାର ସଙ୍ଗେ କଳି କରେ ନାହିଁ । ସେଥିପାଇଁ ତାକୁ ସମସ୍ତେ ଭଲ ପାନ୍ତି ।' ଏହିପରି କୁହାଯାଏ ।

ସର୍ବନାମ ପଦର ଲିଙ୍ଗ, ବଚନ, ପୁରୁଷ ଓ କାରକ ଅଛି । ସର୍ବନାମ ପଦ ଯେଉଁ ବିଶେଷ୍ୟ ପଦ ପରିବର୍ତ୍ତିରେ ବ୍ୟବହୃତ ହୁଏ, ତାହାର ଯେଉଁ ଲିଙ୍ଗ ଓ ଯେଉଁ ବଚନ, ସର୍ବନାମ ପଦର ସେହି ଲିଙ୍ଗ ଓ ସେହି ବଚନ ହୁଏ । ସର୍ବନାମମାନଙ୍କ ମଧ୍ୟରେ 'ଆମ୍ଭେ' **ଉତ୍ତମପୁରୁଷ** (ବା ପ୍ରଥମ ପୁରୁଷ), 'ତୁମ୍ଭେ' **ମଧ୍ୟମପୁରୁଷ** (ବା ଦ୍ଵିତୀୟ ପୁରୁଷ) । ଆଉ ଯେତେ ସର୍ବନାମ ଅଛି ସେସବୁ **ତୃତୀୟ ପୁରୁଷ** । ବିଶେଷ୍ୟ ପଦରେ ଯେପରି ବିଭକ୍ତି ଯୋଗ କରାଯାଏ, ସର୍ବନାମ ପଦରେ ମଧ୍ୟ ସେହିପରି ବିଭକ୍ତି ଯୋଗ କରାଯାଏ । ନିମ୍ନରେ ଦୁଇଟି ସର୍ବନାମ ଶବ୍ଦର ରୂପ ଦେଖାଇ ଦିଆଗଲା—

| କାରକ ବା ପଦ | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ଆମ୍ଭେ, ମୁଁ | ଆମ୍ଭେମାନେ |
| କର୍ମ୍ମ | ଆମ୍ଭଙ୍କୁ, ଆମ୍ଭଙ୍କୁ, ମୋତେ | ଆମ୍ଭମାନଙ୍କୁ |
| କରଣ | ଆମ୍ଭଦ୍ଵାରା, ମୋହଦ୍ଵାରା, ମୋଦ୍ଵାରା, ମୋଦେଇ | ଆମ୍ଭମାନଙ୍କଦ୍ଵାରା ଆମ୍ଭମାନଙ୍କଦେଇ |
| ସମ୍ପ୍ରଦାନ | ଆମ୍ଭଙ୍କୁ, ଆମ୍ଭକୁ, ମୋତେ | ଆମ୍ଭମାନଙ୍କୁ |
| ଅପାଦାନ | ଆମ୍ଭଠାରୁ, ମୋହଠାରୁ, ମୋଠାରୁ | ଆମ୍ଭମାନଙ୍କଠାରୁ |
| ଅଧିକରଣ | ଆମ୍ଭଠାରେ, ମୋହଠାରେ, ମୋଠାରେ | ଆମ୍ଭମାନଙ୍କଠାରେ |
| ସମ୍ବନ୍ଧ | ଆମ୍ଭର, ମୋହର, ମୋର | ଆମ୍ଭମାନଙ୍କର |

ସମ୍ବୋଧନରେ ରୂପ ନାହିଁ । 'ଆମ୍ଭେ' ଏହି ସର୍ବନାମ ଶବ୍ଦ ସଂସ୍କୃତ 'ଅସ୍ମଦ' ଶବ୍ଦରୁ ହୋଇଅଛି ।

| କାରକ ବା ପଦ | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ସେ, ତାହା | ସେମାନେ |
| କର୍ମ୍ମ | ତାଙ୍କୁ, ତାହାଙ୍କୁ, ତାକୁ, ତାହାକୁ | ସେମାନଙ୍କୁ |
| କରଣ | ତାଙ୍କଦ୍ଵାରା, ତାହାଙ୍କଦ୍ଵାରା ତାଦ୍ଵାରା, ତାହାଦ୍ଵାରା | ସେମାନଙ୍କଦ୍ଵାରା |
| ସମ୍ପ୍ରଦାନ | ତାଙ୍କୁ, ତାହାଙ୍କୁ, ତାକୁ, ତାହାକୁ | ସେମାନଙ୍କୁ |
| ଅପାଦାନ | ତାଙ୍କଠାରୁ, ତାହାଙ୍କଠାରୁ, ତାଠାରୁ, ତାହାଠାରୁ | ସେମାନଙ୍କଠାରୁ |
| ଅଧିକରଣ | ତାଙ୍କଠାରେ, ତାହାଙ୍କଠାରେ, ତାଠାରେ, ତାହାଠାରେ | ସେମାନଙ୍କଠାରେ |

| | | |
|---|---|---|
| ସମ୍ବନ୍ଧ | ତାଙ୍କର, ତାହାଙ୍କର, ତାର, ତାହାର | ସେମାନଙ୍କର |

ସମ୍ବୋଧନରେ ରୂପ ନାହିଁ ।

'ସେ' ବା 'ତାହା' ଏହି ସର୍ବନାମ ଶବ୍ଦ ସଂସ୍କୃତ 'ତଦ୍‌' ଶବ୍ଦରୁ ହୋଇଅଛି । ଓଡ଼ିଆ ଭାଷାରେ ପ୍ରଚଳିତ ସର୍ବନାମଗୁଡ଼ିକ ଏବଂ ସେମାନଙ୍କର ମୂଳ ସଂସ୍କୃତ ଶବ୍ଦ ନିମ୍ନରେ ପ୍ରଦର୍ଶିତ ହେଲା —

| ମୂଳ ସଂସ୍କୃତଶବ୍ଦ | ଓଡ଼ିଆରେ ପ୍ରଚଳିତ ସର୍ବନାମର ପ୍ରଥମା ବିଭକ୍ତି | ମୂଳ ସଂସ୍କୃତ ଶବ୍ଦ | ଓଡ଼ିଆରେ ପ୍ରଚଳିତ ପ୍ରଥମା ବିଭକ୍ତି |
|---|---|---|---|
| ଅସ୍ମଦ୍‌ | ଆମ୍ଭେ, ମୁଁ | ଯୁଷ୍ମଦ୍‌ | ତୁମ୍ଭେ, ତୁ |
| ତଦ୍‌ | ସେ, ତାହା | ଯଦ୍‌ | ଯେ, ଯାହା |
| ଏତଦ୍‌ | ଏ, ଏହା | କିମ୍‌ | କେ, କିଏ, କଅଣ |
| ସର୍ବ | ସର୍ବ, ସବୁ | ଅନ୍ୟ | ଅନ୍ୟ, ଆଉ |
| ଆତ୍ମନ୍‌ | ଆପେ | | |

ଅନୁଶୀଳନୀ :—ନିମ୍ନଲିଖିତ ବାକ୍ୟମାନଙ୍କରେ ସର୍ବନାମ ପଦ ଚିହ୍ନାଇ ଦିଅ, ଏବଂ ତାହା କେଉଁ ସଂସ୍କୃତଶବ୍ଦରୁ ହୋଇଅଛି ଓ କେଉଁ ବିଶେଷ୍ୟପଦ ପରିବର୍ତ୍ତିରେ ବ୍ୟବହୃତ ହୋଇଅଛି ବୋଲ :—

(୧) ଜଳ ବିନା ଲୋକେ ବଞ୍ଚି ପାରିବେ ନାହିଁ ବୋଲି ତାହାକୁ ଜୀବନ କହନ୍ତି । (୨) ମାଛମାନେ ଜଳରେ ବାସ କରନ୍ତି । ସେମାନଙ୍କୁ ଆଣି ସ୍ଥଳଉପରେ ରଖିଲେ ଅଳ୍ପକ୍ଷଣ ପରେ ମରିଯାନ୍ତି । (୩) ସାଧୁମାନେ ସମସ୍ତଙ୍କର ଉପକାର କରନ୍ତି । (୪) ପକ୍ଷୀର ଦୁଇ ଗୋଡ଼ ଓ ପଶୁମାନଙ୍କର ଚାରି ଗୋଡ଼ ଅଛି; ମାତ୍ର ସେମାନଂକର ହାତ ନାହିଁ । (୫) ରାମଚନ୍ଦ୍ର ଭରତ ଓ ଲକ୍ଷ୍ମଣଙ୍କୁ କହିଲେ, "ପ୍ରଜାରଞ୍ଜନ ଆମ୍ଭର ସର୍ବପ୍ରଧାନ କର୍ତ୍ତବ୍ୟ ଅଟେ । ତୁମ୍ଭେମାନେ ଆମ୍ଭଙ୍କୁ ସାହାଯ୍ୟ କର ।"

## ୧୨—କ୍ରିୟା

ଯେଉଁ ପଦ କାର୍ଯ୍ୟ ବୁଝାଏ ତାହାକୁ **କ୍ରିୟାପଦ** କହନ୍ତି । ହରି ବସିଅଛି, ଗୋପାଳ ଯାଉଥିଲା, ଘୋଡ଼ା ଦୌଡ଼ିବ— ଏହି ବାକ୍ୟମାନଂକରେ ବସିଅଛି, ଯାଉଥିଲା, ଦୌଡ଼ିବ—ଏଗୁଡ଼ିକ କ୍ରିୟାପଦ ।

କ୍ରିୟାର ମୂଳ ହେଉଛି ଧାତୁ । 'ବସିଅଛି' ଏହି କ୍ରିୟା ପଦଟି 'ବସ୍‌' ଧାତୁରୁ ହୋଇଅଛି ।

ଯେଉଁ କ୍ରିୟାରେ ବାକ୍ୟର ଅର୍ଥ ସମ୍ପୂର୍ଣ୍ଣରୂପେ ପ୍ରକାଶ ପାଏ, ତାହାକୁ **ସମାପିକା କ୍ରିୟା** କହନ୍ତି । ଯେଉଁ କ୍ରିୟାରେ ବାକ୍ୟର ଅର୍ଥ ସମ୍ପୂର୍ଣ୍ଣରୂପେ ପ୍ରକାଶପାଏ ନାହିଁ ତାହାକୁ **ଅସମାପିକା କ୍ରିୟା** କହନ୍ତି । 'ଗୋବିନ୍ଦ ଯାଉଁ ଯାଉଁ ଝୁଣ୍ଟିଲ,—ଏହି ବାକ୍ୟରେ 'ଝୁଣ୍ଟିଲ' ସମାପିକା କ୍ରିୟା, 'ଯାଉଁ ଯାଉଁ' ଅସମାପିକା କ୍ରିୟା ।

ଯେଉଁ କ୍ରିୟାର କର୍ମ ଥାଏ ତାହାକୁ **ସକର୍ମକ କ୍ରିୟା** କହନ୍ତି । ଯେଉଁ କ୍ରିୟାର କର୍ମ ନ ଥାଏ ତାହାକୁ **ଅକର୍ମକ କ୍ରିୟା** କହନ୍ତି । ବ୍ରାହ୍ମଣମାନେ ମିଷ୍ଟାନ୍ନ ଭୋଜନ କରୁଅଛନ୍ତି :—ଏଠାରେ 'ଭୋଜନ କରୁଅଛନ୍ତି' ଏହି କ୍ରିୟାଟି ସକର୍ମକ, 'ମିଷ୍ଟାନ୍ନ' ଏହି ପଦଟି ତାହାର କର୍ମ ।' 'ପକ୍ଷୀମାନେ ଉଡ଼ୁଅଛନ୍ତି'—ଏହି ବାକ୍ୟରେ 'ଉଡ଼ୁଅଛନ୍ତି' ଏହି କ୍ରିୟାପଦଟିର କର୍ମ ନ ଥିବାରୁ ଏହା ଅକର୍ମକ ।

କୌଣସି କୌଣସି କ୍ରିୟାର ଦୁଇଟି କର୍ମ ଥାଏ । ତନ୍ମଧ୍ୟରୁ ଗୋଟିଏ ପ୍ରଧାନ ବା ମୁଖ୍ୟକର୍ମ; ଅପରଟି ଅପ୍ରଧାନ ବା ଗୌଣକର୍ମ । 'ମାତା ଶିଶୁକୁ ଦୁଧ ପିଆଉଅଛି'—ଏହି ବାକ୍ୟରେ, 'ପିଆଉଅଛି' ଦ୍ୱିକର୍ମକ କ୍ରିୟା, 'ଦୁଧ' ମୁଖ୍ୟ ବା ପ୍ରଧାନ କର୍ମ, 'ଶିଶୁକୁ' ଗୌଣ ବା ଅପ୍ରଧାନ କର୍ମ ।

ବସ୍ତୁକୁ ବୁଝାଉଥିବା କର୍ମ ପ୍ରଧାନ ଏବଂ ପ୍ରାଣୀକୁ ବୁଝାଉଥିବା କର୍ମ ଅପ୍ରଧାନ ଅଟେ । କ୍ରିୟାର ଦୁଇଟି ବଚନ ଓ ତିନୋଟି ପୁରୁଷ ଅଛି । କର୍ତ୍ତାର ଯେଉଁ ବଚନ ଓ ଯେଉଁ ପୁରୁଷ, କ୍ରିୟାର ସେହି ବଚନ ଓ ସେହି ପୁରୁଷ ହୁଏ । 'ବାଳକମାନେ ଖେଳୁଅଛନ୍ତି'—ଏହି ବାକ୍ୟରେ, 'ଖେଳୁଅଛନ୍ତି' ଏହି କ୍ରିୟାର କର୍ତ୍ତା 'ବାଳକମାନେ' ବହୁବଚନ ଓ ତୃତୀୟ ପୁରୁଷ ବୋଲି କ୍ରିୟାର ମଧ୍ୟ ବହୁବଚନ ଓ ତୃତୀୟ ପୁରୁଷ ।

କ୍ରିୟାର ପ୍ରଧାନ ତିନୋଟି କାଳ—ବର୍ତ୍ତମାନ, ଭୂତ ଓ ଭବିଷ୍ୟତ୍ । 'ଗୋବିନ୍ଦ ଆସୁଅଛି'—ଏଠାରେ କ୍ରିୟାର ବର୍ତ୍ତମାନ କାଳ, 'ଗୋବିନ୍ଦ ଆସିଲା'—ଏଠାରେ କ୍ରିୟାର ଭୂତ କାଳ, 'ଗୋବିନ୍ଦ ଆସିବ'—ଏଠାରେ କ୍ରିୟାର ଭବିଷ୍ୟତ୍ କାଳ । ଏହି ତିନୋଟି କାଳକୁ ଯଥାକ୍ରମେ ବିଶୁଦ୍ଧ ବର୍ତ୍ତମାନ, ବିଶୁଦ୍ଧ ଭୂତ ଓ ବିଶୁଦ୍ଧ ଭବିଷ୍ୟତ୍ କହନ୍ତି । କ୍ରିୟାର ଏତଦ୍‌ଭିନ୍ନ ଆହୁରି ଅନେକ ଗୁଡ଼ିଏ କାଳ ଅଛି ।

କ୍ରିୟା ବା ଘଟନା ନିୟମିତରୂପେ ଘଟିଲେ ତାହାର କାଳକୁ **ନିତ୍ୟପ୍ରବୃତ୍ତ ବର୍ତ୍ତମାନ** କହନ୍ତି । ଯଥା—ଗ୍ରୀଷ୍ମକାଳରେ ଆମ୍ବ ପାଚେ, ଗୋବିନ୍ଦ ବିଦ୍ୟାଳୟକୁ ଆସେ । କ୍ରିୟାଦ୍ୱାରା ବର୍ତ୍ତମାନ ସମ୍ଭାବନା ସୂଚିତ ହେଲେ ତାହାର କାଳକୁ **ସମ୍ଭାବ୍ୟ ବର୍ତ୍ତମାନ** କହନ୍ତି । ଯଥା—ପିଲା ଖେଳୁଥାନ୍ତି । ଯେଉଁ କ୍ରିୟା ଦ୍ୱାରା

ବର୍ତ୍ତମାନ ସଂଶୟ ବା ଅନୁମାନ ସୂଚିତ ହୁଏ ତାହାର କାଳକୁ **ଆନୁମାନିକ ବର୍ତ୍ତମାନ** କହନ୍ତି । ଯଥା—ମାଧବ ଆସୁଥିବ, ସମୁଦ୍ରରେ ଜୁଆର ହେଉଥିବ ।

କ୍ରିୟାର କାଳ ଭୂତ ବା ଅତୀତ ହେଲେ ହେଁ ବର୍ତ୍ତମାନ କାଳ ସହିତ ସଂଲଗ୍ନ ଥିଲେ ତାହାକୁ **ବର୍ତ୍ତମାନ ସମୀପ ଭୂତକାଳ** କହନ୍ତି । ଯଥା—ମଧୁ ଆସିଅଛି । ଗୋପାଳ ପଢ଼ିଅଛି । ଗୋଟିଏ କ୍ରିୟାରକାଳ ବିଶୁଦ୍ଧ ଭୂତ ହେଲେ ତାହାର ପୂର୍ବବର୍ତ୍ତୀ କ୍ରିୟାର କାଳକୁ **ପ୍ରାଗଭୂତ** କହନ୍ତି ଯଥା—ଯଦୁ ସନ୍ଧ୍ୟାବେଳେ ଆସିଲା, ସାଧୁ ତହିଁ ପୂର୍ବରୁ ଆସିଥିଲା'—ଏଠାରେ 'ଆସିଥିଲା' ପ୍ରାଗ୍‌ଭୂତ କାଳର କ୍ରିୟା । ଅତୀତ ଘଟନା ବା କ୍ରିୟାର ଶେଷ ନ ହେବା ବାକ୍ୟରୁ ଜଣାଗଲେ ତାହାର କାଳକୁ **ଅସମ୍ପନ୍ନଭୂତ** ବୋଲାଯାଏ । ଯଥା—ନଦୀ ବଢ଼ୁଥିଲା, ଦୀପ ଜଳୁଥିଲା । ଅତୀତ ଘଟନାର ସମ୍ଭାବନା ବା ଅନୁମାନ ସୂଚିତ ହେଲେ କ୍ରିୟାର କାଳକୁ **ସମ୍ଭାବ୍ୟ** ବା **ଅନୁମାନିକ ଭୂତ** ବୋଲାଯାଏ । ଯଥା—ତୋଟାରେ ଆମ୍ବ ପାଚିଥିବ । ସାଧୁ ଯାଇଥିଲେ ଏହି ବାଟରେ ଯାଇଥାନ୍ତା ।

ଗୋଟିଏ କ୍ରିୟାର କାଳ ବିଶୁଦ୍ଧ ଭବିଷ୍ୟତ୍ ହେଲେ ତାହାର ପୂର୍ବବର୍ତ୍ତୀ କ୍ରିୟାର କାଳକୁ **ପ୍ରାଗ୍‌ଭବିଷ୍ୟତ୍** ବୋଲାଯାଏ । ଯଥା—ଗୋପାଳ କାଲି ଆସିବ, ତାହା ଆଗରୁ ମଧୁ ଆସିଥିବ—ଏଠାରେ 'ଆସିଥିବ' ପ୍ରାଗ୍ ଭବିଷ୍ୟତ୍ କାଳର କ୍ରିୟା । ଭବିଷ୍ୟତ୍ ସମ୍ଭାବନା ସୂଚିତ ହେଲେ କ୍ରିୟାର କାଳକୁ **ସମ୍ଭାବ୍ୟ ଭବିଷ୍ୟତ୍** ବୋଲାଯାଏ । ଯଥା—କଟକରୁ ସମ୍ବଲପୁରଯାଏ ଗୋଟିଏ ସଳଖ ବାଟ ଫିଟିଲେ ଗମନାଗମନର ସୁବିଧା ହୁଅନ୍ତା—ଏଠାରେ 'ହୁଅନ୍ତା' ସମ୍ଭାବ୍ୟ ଭବିଷ୍ୟତ୍ କାଳର କ୍ରିୟା ।

ଯେଉଁ କ୍ରିୟାରୁ ଆଦେଶ, ଆଶୀର୍ବାଦ ବା ପ୍ରାର୍ଥନା ଜଣାଯାଏ, ତାହାକୁ **ଅନୁଜ୍ଞା** ବୋଲାଯାଏ । ଯଥା—ମନ ଦେଇ ପାଠ ପଢ଼, ଦୀର୍ଘଜୀବୀ ହୁଅ ।

ଉପରଲିଖିତ କାଳମାନଙ୍କରେ 'ଦେଖ' କ୍ରିୟାର ରୂପ ନିମ୍ନରେ ପ୍ରଦର୍ଶିତ ହେଲା—

## କାଳ ବିଶୁଦ୍ଧ ବର୍ତ୍ତମାନ

| ପୁରୁଷ | ଏକବଚନ | ବହୁବଚନ |
|---|---|---|
| ଉତ୍ତମ | ଦେଖୁଅଛୁଁ, ଦେଖୁଛୁଁ | ଦେଖୁଅଛୁଁ |
| | ଦେଖୁଅଛି, ଦେଖୁଛି | ଦେଖୁଛୁଁ |
| ମଧ୍ୟମ | ଦେଖୁଅଛ, ଦେଖୁଛ | ଦେଖୁଅଛ |
| | ଦେଖୁଅଛୁ, ଦେଖୁଛୁ | ଦେଖୁଛ |
| ତୃତୀୟ | ଦେଖୁଅଛନ୍ତି, ଦେଖୁଛନ୍ତି | ଦେଖୁଅଛନ୍ତି |
| | ଦେଖୁଅଛି, ଦେଖୁଛି | ଦେଖୁଛନ୍ତି |

## ନିତ୍ୟପ୍ରବୃତ୍ତ ବର୍ତ୍ତମାନ

| | | |
|---|---|---|
| ଉତ୍ତମ | ଦେଖୁଁ, ଦେଖେଁ | ଦେଖୁଁ |
| ମଧ୍ୟମ | ଦେଖ, ଦେଖୁ | ଦେଖ |
| ତୃତୀୟ | ଦେଖନ୍ତି, ଦେଖେ | ଦେଖନ୍ତି |

## ସମ୍ଭାବ୍ୟ ବର୍ତ୍ତମାନ

| | | |
|---|---|---|
| ଉତ୍ତମ | ଦେଖୁଥାନ୍ତୁଁ, ଦେଖୁଥାନ୍ତିଁ | ଦେଖୁଥାନ୍ତୁଁ |
| ମଧ୍ୟମ | ଦେଖୁଥାନ, ଦେଖୁଥାନ୍ତ | ଦେଖୁଥାନ୍ତ |
| ତୃତୀୟ | ଦେଖୁଥାନ୍ତେ, ଦେଖୁଥାନ୍ତା | ଦେଖୁଥାନ୍ତେ |

## ଆନୁମାନିକ ବର୍ତ୍ତମାନ

| | | |
|---|---|---|
| ଉତ୍ତମ | ଦେଖୁଥିବୁଁ, ଦେଖୁଥିବ | ଦେଖୁଥିବୁଁ |
| ମଧ୍ୟମ | ଦେଖୁଥିବ, ଦେଖୁଥିବୁ | ଦେଖୁଥିବ |
| ତୃତୀୟ | ଦେଖୁଥିବେ, ଦେଖୁଥିବ | ଦେଖୁଥିବେ |

## ବିଶୁଦ୍ଧ ଭୂତ

| | | |
|---|---|---|
| ଉତ୍ତମ | ଦେଖିଲୁଁ, ଦେଖିଲି | ଦେଖିଲୁଁ |
| ମଧ୍ୟମ | ଦେଖିଲ, ଦେଖିଲୁ | ଦେଖିଲ |
| ତୃତୀୟ | ଦେଖିଲେ, ଦେଖିଲା | ଦେଖିଲେ |

## ବର୍ତ୍ତମାନ ସମୀପଭୂତ

| | | |
|---|---|---|
| ଉତ୍ତମ | ଦେଖିଅଛୁଁ, ଦେଖିଛୁଁ | ଦେଖିଅଛୁଁ |
| | ଦେଖିଅଛି, ଦେଖିଛି | ଦେଖିଛୁଁ |
| ମଧ୍ୟମ | ଦେଖିଅଛ, ଦେଖିଛ | ଦେଖିଅଛ |
| | ଦେଖିଅଛୁ, ଦେଖିଛୁ | ଦେଖିଛ |
| ତୃତୀୟ | ଦେଖିଅଛନ୍ତି, ଦେଖିଛନ୍ତି | ଦେଖିଅଛନ୍ତି |
| | ଦେଖିଅଛି, ଦେଖିଛି | ଦେଖିଛନ୍ତି |

## ପ୍ରାଗ୍‌ଭୂତ

| | | |
|---|---|---|
| ଉତ୍ତମ | ଦେଖିଥିଲୁଁ, ଦେଖିଥିଲି | ଦେଖିଥିଲୁଁ |
| ମଧ୍ୟମ | ଦେଖିଥିଲ, ଦେଖିଥିଲୁ | ଦେଖିଥିଲ |
| ତୃତୀୟ | ଦେଖିଥିଲେ, ଦେଖିଥିଲା | ଦେଖିଥିଲେ |

## ଅସଂପନ୍ନ ଭୂତ

| | | |
|---|---|---|
| ଉତ୍ତମ | ଦେଖୁଥିଲୁଁ, ଦେଖୁଥିଲି | ଦେଖୁଥିଲୁଁ |

| | | |
|---|---|---|
| ମଧ୍ୟମ | ଦେଖୁଥିଲ, ଦେଖୁଥିଲୁ | ଦେଖୁଥିଲ |
| ତୃତୀୟ | ଦେଖୁଥିଲେ, ଦେଖୁଥିଲା | ଦେଖୁଥିଲେ |

## ସମ୍ଭାବ୍ୟ ବା ଆନୁମାନିକ ଭୂତ

| | | |
|---|---|---|
| ଉତ୍ତମ | ଦେଖିଥିବୁଁ, ଦେଖିଥାନ୍ତୁଁ | ଦେଖିଥିବୁଁ |
| | ଦେଖିଥିବି, ଦେଖିଥାନ୍ତି | ଦେଖିଥାନ୍ତୁଁ |
| ମଧ୍ୟମ | ଦେଖିଥିବ, ଦେଖିଥାନ୍ତ | ଦେଖିଥିବ |
| | ଦେଖିଥିବୁ, ଦେଖିଥାନ୍ତୁ | ଦେଖିଥାନ୍ତ |
| ତୃତୀୟ | ଦେଖିଥିବେ, ଦେଖିଥାନ୍ତେ | ଦେଖିଥିବେ |
| | ଦେଖିଥିବ, ଦେଖିଥାନ୍ତା | ଦେଖିଥାନ୍ତେ |

## ବିଶୁଦ୍ଧ ଭବିଷ୍ୟତ୍

| | | |
|---|---|---|
| ଉତ୍ତମ | ଦେଖିବୁଁ, ଦେଖିବି | ଦେଖିବୁଁ, |
| ମଧ୍ୟମ | ଦେଖିବ, ଦେଖିବୁ | ଦେଖିବ |
| ତୃତୀୟ | ଦେଖିବେ, ଦେଖିବ | ଦେଖିବେ |

## ପ୍ରାଗ୍ ଭବିଷ୍ୟତ୍

| | | |
|---|---|---|
| ଉତ୍ତମ | ଦେଖୁଥିବୁଁ, ଦେଖିଥିବି | ଦେଖିଥିବୁଁ |
| ମଧ୍ୟମ | ଦେଖିଥିବ, ଦେଖିଥିବୁ | ଦେଖିଥିବ |
| ତୃତୀୟ | ଦେଖିଥିବେ, ଦେଖିଥିବ | ଦେଖିଥିବେ |

## ସମ୍ଭାବ୍ୟ ଭବିଷ୍ୟତ୍

| | | |
|---|---|---|
| ଉତ୍ତମ | ଦେଖନ୍ତୁ, ଦେଖନ୍ତି | ଦେଖନ୍ତୁଁ |
| ମଧ୍ୟମ | ଦେଖନ୍ତ, ଦେଖନ୍ତୁ | ଦେଖନ୍ତ |
| ତୃତୀୟ | ଦେଖନ୍ତେ, ଦେଖନ୍ତା | ଦେଖନ୍ତେ |

## ଅନୁଜ୍ଞା

| | | |
|---|---|---|
| ଉତ୍ତମ | ଦେଖୁଁ, ଦେଖେଁ | ଦେଖୁ |
| ମଧ୍ୟମ | ଦେଖ, ଦେଖ୍ | ଦେଖ |
| ତୃତୀୟ | ଦେଖନ୍ତୁ, ଦେଖୁ | ଦେଖନ୍ତୁ |

## ୧୩—ପ୍ରେରଣାର୍ଥ କ୍ରିୟା

କୌଣସି କାର୍ଯ୍ୟ କରାଇବା ଯେଉଁ କ୍ରିୟାର ଅର୍ଥ, ତାହାକୁ **ପ୍ରେରଣାର୍ଥ କ୍ରିୟା** କହନ୍ତି । ଯଥା—ବସାଉଛୁ, ହସାଇବ, ଉଠାଇଲ, ଖୁଆଇଛୁ । ଧାତୁର ଅନ୍ତ୍ୟ ବ୍ୟଞ୍ଜନ ବର୍ଣ୍ଣରେ ଆ ପ୍ରତ୍ୟୟ ଯୋଗ କଲେ କ୍ରିୟା ପ୍ରେରଣାର୍ଥ ହୁଏ ।

| ଧାତୁ | ଧାତୁନିଷ୍ପନ୍ନକ୍ରିୟା | ପ୍ରେରଣାର୍ଥକ୍ରିୟା | ଧାତୁ | ଧାତୁନିଷ୍ପନ୍ନକ୍ରିୟା | ପ୍ରେରଣାର୍ଥକ୍ରିୟା |
|---|---|---|---|---|---|
| ବସ୍ | ବସିବା | ବସାଇବା | ହସ୍ | ହସିବା | ହସାଇବା |
| ଚର୍ | ଚରିବା | ଚରାଇବା | ଚଷ୍ | ଚଷିବା | ଚଷାଇବା |
| ଗିଲ୍ | ଗିଳିବା | ଗିଳାଇବା | ଲୁଚ୍ | ଲୁଚିବା | ଲୁଚାଇବା |
| ଉଠ୍ | ଉଠିବା | ଉଠାଇବା | ଖେଳ୍ | ଖେଳିବା | ଖେଳାଇବା |
| ଉଡ୍ | ଉଡ଼ିବା | ଉଡ଼ାଇବା | ଅଟକ୍ | ଅଟକିବା | ଅଟକାଇବା |
| କମ୍ପ୍ | କମ୍ପିବା | କମ୍ପାଇବା | ଚଢ଼୍ | ଚଢ଼ିବା | ଚଢ଼ାଇବା |

ଧାତୁର ପ୍ରଥମ ସ୍ୱର ଆ ହେଲେ ପ୍ରେରଣାର୍ଥ କ୍ରିୟାରେ ତାହା ସ୍ଥାନରେ ଅ ହୁଏ । ଯଥା—

| ଧାତୁ | ଧାତୁନିଷ୍ପନ୍ନକ୍ରିୟା | ପ୍ରେରଣାର୍ଥକ୍ରିୟା | ଧାତୁ | ଧାତୁନିଷ୍ପନ୍ନକ୍ରିୟା | ପ୍ରେରଣାର୍ଥକ୍ରିୟା |
|---|---|---|---|---|---|
| କାନ୍ଦ୍ | କାନ୍ଦିବା | କନ୍ଦାଇବା | ନାଚ୍ | ନାଚିବା | ନଚାଇବା |
| ଆଣ୍ | ଆଣିବା | ଅଣାଇବା | ଭାସ୍ | ଭାସିବା | ଭସାଇବା |
| ରାନ୍ଧ୍ | ରାନ୍ଧିବା | ରନ୍ଧାଇବା | ଆଙ୍କ୍ | ଆଙ୍କିବା | ଅଙ୍କାଇବା |
| ମାର୍ | ମାରିବା | ମରାଇବା | ପାଚ୍ | ପାଚିବା | ପଚାଇବା |
| ବାନ୍ଧ୍ | ବାନ୍ଧିବା | ବନ୍ଧାଇବା | ଛାଡ଼୍ | ଛାଡ଼ିବା | ଛଡ଼ାଇବା |

ପ୍ରେରଣାର୍ଥରେ ଆ ପ୍ରତ୍ୟୟ ହେଲେ ଧାତୁର ଅନ୍ତ୍ୟ ଓ ଠାରେ ଉ ହୁଏ । ଯଥା—

| ଧାତୁ | ଧାତୁନିଷ୍ପନ୍ନ କ୍ରିୟା | ପ୍ରେରଣାର୍ଥ କ୍ରିୟା |
|---|---|---|
| ସୋ ବା ଶୋ | ସୋଇବା ବା ଶୋଇବା | ସୁଆଇବା ଶୁଆଇବା |
| ଧୋ | ଧୋଇବା | ଧୁଆଇବା |

କୌଣସି କୌଣସି ସ୍ଥଳରେ ଉପରଲିଖିତ ସୂତ୍ରମାନଙ୍କର ବ୍ୟତିକ୍ରମ ଦେଖାଯାଏ । ଯଥା—ଖାଇବା, ଖୁଆଇବା, ପିଇବା, ପିଆଇବା ।

ଅନ୍ୟ କ୍ରିୟାର ରୂପ ଯେପରି ହୁଏ, ପ୍ରେରଣାର୍ଥ କ୍ରିୟାର ରୂପ ମଧ୍ୟ ସେହିପରି ହୁଏ ।

ଅକର୍ମକ କ୍ରିୟାକୁ ପ୍ରେରଣାର୍ଥ କଲେ ତାହା ସକର୍ମକ ହୁଏ, ଏବଂ ସକର୍ମକ କ୍ରିୟାକୁ ପ୍ରେରଣାର୍ଥ କଲେ ତାହା ଦ୍ୱିକର୍ମକ ହୁଏ । ଯଥା—ବସିବା, ବସାଇବା, ଉଡ଼ିବା, ଉଡ଼ାଇବା, ପଢ଼ିବା, ପଢ଼ାଇବା ।

## ୧୪—ବାଚ୍ୟ

ଓଡ଼ିଆ ଭାଷାରେ କ୍ରିୟାର ଦୁଇଟି ବାଚ୍ୟ ଦେଖାଯାଏ—କର୍ତ୍ତୃବାଚ୍ୟ, କର୍ମବାଚ୍ୟ । ଯେଉଁ ବାକ୍ୟରେ କର୍ତ୍ତାର ପ୍ରାଧାନ୍ୟ ଥାଏ ସେଠାରେ କ୍ରିୟାର

କର୍ତ୍ତୃବାଚ୍ୟ ହୁଏ । ଯଥା—ବାଳକମାନେ ଗ୍ରାମାୟଣ ପଠନକଲେ, ତନ୍ତୀ ଲୁଗା ବୁଣୁଅଛି । ଯେଉଁ ବାକ୍ୟରେ କର୍ମର ପ୍ରାଧାନ୍ୟ ଥାଏ, ସେଠାରେ କ୍ରିୟାର କର୍ମବାଚ୍ୟ ହୁଏ । କର୍ମବାଚ୍ୟରେ କ୍ରିୟା ଦୁଇ ପ୍ରକାର ଦେଖାଯାଏ । ସଂସ୍କୃତ ଭାଷାର ରୀତି ଅନୁସାରେ ଧାତୁରେ ତ ପ୍ରତ୍ୟୟ ହେଲେ ତ-ପ୍ରତ୍ୟୟାନ୍ତ ପଦ ଉତ୍ତାରେ 'ହେବା' କ୍ରିୟା ପ୍ରୟୋଗ କରାଯାଏ । ଯଥା—ବାଳକମାନଙ୍କ କର୍ତ୍ତୃକ ଗ୍ରାମାୟଣ ପଠିତ ହେଲା । ଓଡ଼ିଆ ଭାଷାର ରୀତି ଅନୁସାରେ ଧାତୁ ଉତ୍ତାରେ ଆ ପ୍ରତ୍ୟୟ କରି ତତ୍ପରେ ତିନ କାଳରେ ହେବା କ୍ରିୟା ପ୍ରୟୋଗ କରାଯାଏ, ଅଥବା ଆ ପ୍ରତ୍ୟୟ ଉତ୍ତାରେ ବର୍ତ୍ତମାନ ଓ ଭବିଷ୍ୟତ୍ କାଳରେ ଯା-ଧାତୁନିଷ୍ପନ୍ନ କ୍ରିୟା ଓ ଅତୀତ କାଳରେ ଗମ୍ ଧାତୁ ନିଷ୍ପନ୍ନକ୍ରିୟା ପ୍ରୟୋଗ କରାଯାଏ । ଯଥା—ତନ୍ତୀଦ୍ୱାରା ଲୁଗା ବୁଣା ହେଉଅଛି, ତନ୍ତୀଦ୍ୱାରା ଲୁଗା ବୁଣା ହେଲା, ତନ୍ତୀଦ୍ୱାରା ଲୁଗା ବୁଣା ଯାଉଅଛି, ତନ୍ତୀଦ୍ୱାରା ଲୁଗା ବୁଣାଗଲା, ତନ୍ତୀଦ୍ୱାରା ଲୁଗା ବୁଣାଯିବ ।

## ୧୪—ବିଶେଷଣ

ଯେଉଁ ପଦ ଅନ୍ୟ ପଦଦ୍ୱାରା ସୂଚିତ ପଦାର୍ଥ, ପ୍ରାଣୀ, କାର୍ଯ୍ୟ, ଗୁଣ ପ୍ରଭୃତିର ଗୁଣ, ଅବସ୍ଥା, ସଂଖ୍ୟା ବା ପରିମାଣ ପ୍ରକାଶ କରେ, ତାହାକୁ **ବିଶେଷଣ** କହନ୍ତି । ଶୁକ୍ଳ ବସ୍ତ୍ର, ନୀଳ ଆକାଶ, ଉତ୍ତମ ଲୋକ—ଏ ସ୍ଥଳମାନଙ୍କରେ ଶୁକ୍ଳ,ନୀଳ, ଉତ୍ତମ—ଏଗୁଡ଼ିକ ବିଶେଷଣ ପଦ ।

ବିଶେଷଣ ତିନି ପ୍ରକାର—ବିଶେଷ୍ୟର ବିଶେଷଣ, କ୍ରିୟା ବିଶେଷଣ ଓ ବିଶେଷଣର ବିଶେଷଣ । ଯେଉଁ ବିଶେଷଣ ପଦ ବିଶେଷ୍ୟ-ପଦଦ୍ୱାରା ସୂଚିତ ପ୍ରାଣୀ, ପଦାର୍ଥ , ଗୁଣ ବା କାର୍ଯ୍ୟର ଗୁଣ, ଅବସ୍ଥା, ସଂଖ୍ୟା ବା ପରିମାଣ ବୁଝାଏ, ତାହାକୁ **ବିଶେଷ୍ୟର ବିଶେଷଣ** କହନ୍ତି । ସୁନ୍ଦର ମୟୂର, ଭଲ ସୁନା, ଅତିଶୟ ଦୟା, ଦୃଢ଼ ବନ୍ଧନ, ବୁଢ଼ା ହାତୀ, ପଣେ ଆମ୍ବ—ଏ ସ୍ଥଳମାନଙ୍କରେ ସୁନ୍ଦର,ଭଲ, ଅତିଶୟ, ଦୃଢ଼, ବୁଢ଼ା, ପଣେ—ଏଗୁଡ଼ିକ ବିଶେଷ୍ୟର ବିଶେଷଣ ।

ଯେଉଁ ବିଶେଷଣପଦ କ୍ରିୟା ବା କାର୍ଯ୍ୟର ଗୁଣ, ପରିମାଣ ବା ଅବସ୍ଥା ପ୍ରକାଶ କରେ ତାହାକୁ **କ୍ରିୟା ବିଶେଷଣ** କହନ୍ତି । ହରିଣ ଶୀଘ୍ର ଯାଉଅଛି, ଦୀପ ମିଞ୍ଜି ମିଞ୍ଜି ଜଳୁଥିଲା, ହାତୀ ଧୀରେ ଝୁଲୁଅଛି—ଏ ସ୍ଥଳମାନଙ୍କରେ ଶୀଘ୍ର, ମିଞ୍ଜିମିଞ୍ଜି, ଧୀରେ—ଏଗୁଡ଼ିକ କ୍ରିୟାବିଶେଷଣ ପଦ ।

ଯେଉଁ ବିଶେଷଣ ଅନ୍ୟ ବିଶେଷଣଦ୍ୱାରା ସୂଚିତ ଗୁଣ ପ୍ରଭୃତିର ପରିମାଣ ବୁଝାଏ, ତାହାକୁ ବିଶେଷଣର ବିଶେଷଣ କହନ୍ତି । ବଡ଼ ସୁନ୍ଦର ପୁରୁଷ, ଅତିଶୟ ମଧୁର ଫଳ, ଏ ସ୍ଥଳମାନଙ୍କରେ ବଡ଼, ଅତିଶୟ—ଏ ଦୁଇଟି ବିଶେଷଣର ବିଶେଷଣ ।

ସଂସ୍କୃତ ଭାଷାରେ ଅସ୍ମଦ୍ ଓ ଯୁଷ୍ମଦ୍ ଏହି ଦୁଇ ମୂଳ ସର୍ବନାମରୁ ଓଡ଼ିଆ ଭାଷାର ଯେଉଁ ସର୍ବନାମମାନ ହୋଇଅଛି, ତଦ୍ଭିନ୍ନ ଆଉ ଯେତେ ସର୍ବନାମ ଅଛି ପ୍ରାୟ ସେସମସ୍ତ ସମସ୍ତ ସମୟରେ ବିଶେଷ୍ୟ ପୂର୍ବରେ ବିଶେଷଣ ରୂପେ ବ୍ୟବହୃତ ହୁଏ । ଯଥା—ସେ ନଗର, ଏହି ବୃକ୍ଷ, କେଉଁ ଲୋକ, ଯେଉଁ ଦେଶ ।

## ୧୭—ଅବ୍ୟୟ

ବିଶେଷ୍ୟ, ସର୍ବନାମ, କ୍ରିୟା, ଓ ବିଶେଷଣକୁ ଛାଡ଼ି ଆଉ ଯେତେ ପଦ ଅଛି, ସେଗୁଡ଼ିକ **ଅବ୍ୟୟ** ପଦ । ଅବ୍ୟୟମାନଙ୍କର ଲିଙ୍ଗ, ବଚନ, ପୁରୁଷ ଓ କାରକ ନାହିଁ ।

ଓ, ଏବଂ, ଆଉ, ଆହୁରି, ପୁଣି—ଏମାନଙ୍କୁ **ସମୁଚ୍ଚୟାର୍ଥକ** ବା **ସଂଯୋଜକ** ଅବ୍ୟୟ କହନ୍ତି ।

କିନ୍ତୁ, ମାତ୍ର, ନଚେତ୍, ନୋହିଲେ—ଏମାନଙ୍କୁ **ବିଯୋଜକ** ଅବ୍ୟୟ କହନ୍ତି ।

ହା, ଆହା, ଓଃ, ହାୟ—ଏମାନଙ୍କୁ **ବିସ୍ମୟସୂଚକ** ଅବ୍ୟୟ କହନ୍ତି ।

କୁ, ରେ,ର, ଠାରୁ, ରୁ, ଦ୍ୱାରା, ଏ, କର୍ତ୍ତୃକ—ଏମାନଙ୍କୁ **ବିଭକ୍ତିରୂପକ** ଅବ୍ୟୟ କହନ୍ତି ।

କି, କିକି, କି—ଏମାନଙ୍କୁ **ପ୍ରଶ୍ନବାଚକ** ଅବ୍ୟୟ କହନ୍ତି ।

ହେ, ଭୋ, ରେ, ଏ, ଲୋ, ଆଲୋ, ଗୋ, ଅୟି, ବେ— ଏମାନଙ୍କୁ **ସମ୍ବୋଧନବାଚକ** ଅବ୍ୟୟ କହନ୍ତି ।

ହଁ, ସିନା, ତ, ଣି, ଅବଶ୍ୟ—ଏମାନଙ୍କୁ **ନିଶ୍ଚୟବୋଧକ** ଅବ୍ୟୟ କହନ୍ତି ।

ସୁତରାଂ, କାହିଁକି, ଅତଏବ, ଯେଣୁ, ତେଣୁ, ଏଣୁ, କିମ୍ପାଇଁ—ଏମାନଙ୍କୁ **ହେତୁବୋଧକ** ଅବ୍ୟୟ କହନ୍ତି ।

ନ,ନା, ନାହିଁ, ନୁହେଁ—ଏଗୁଡ଼ିକୁ **ନିଷେଧାର୍ଥକ** ଅବ୍ୟୟ ବୋଲିଯାଏ ।

ଯଦି, ଯେବେ, କାଳେ—ଏମାନଙ୍କୁ **ସମ୍ଭାବନାର୍ଥକ** ଅବ୍ୟୟ କହନ୍ତି ।

ଥରକୁଥର, ବାରମ୍ବାର, ପୁନଃପୁନଃ, ମୁହୁର୍ମୁହୁ—ଏଗୁଡ଼ିକୁ **ବୀପ୍‌ସାର୍ଥକ** ଅବ୍ୟୟ ବୋଲିଯାଏ ।

ବା, ଅବା, କିମ୍ବା, ନତୁବା, ନଚେତ୍, ନୋହିଲେ—ଏମାନଙ୍କୁ **ବିକଳ୍ପାର୍ଥକ** ଅବ୍ୟୟ ବୋଲିଯାଏ ।

ଯେମନ୍ତ, ଯେପରି, ବା, ଅବା, କି ଅବା, କି—ଏଗୁଡ଼ିକ **ଉତ୍ପ୍ରେକ୍ଷା-ବୋଧକ** ଅବ୍ୟୟ ।

ଏମନ୍ତ, ଯେମନ୍ତ, ତେମନ୍ତ, ଏପରି, ଯେପରି, ସେପରି, ଏପ୍ରକାର, ଯେପ୍ରକାର, ସେପ୍ରକାର, ପ୍ରାୟ, ଯଥା, ତଥା—ଏମାନଙ୍କୁ **ସାଦୃଶ୍ୟବୋଧକ ଅବ୍ୟୟ** ବୋଲିଯାଏ ।

ମଡ଼ମଡ଼, କଟକଟ, କଳକଳ, ସଁସଁ, ସାଇଁସାଇଁ, ଝଣଝଣ, କଣିକଣି, ଖଟଖଟ, ଘୋଘୋ, ଫରଫର ପ୍ରଭୃତିକୁ **ଶବ୍ଦାନୁକରଣବୋଧକ** ଅବ୍ୟୟ କହନ୍ତି ।

ପ୍ର, ପରା, ଅପ୍, ସମ୍ ନି, ଅଧି, ସୁ, ନିର୍, ଉତ୍, ପରି, ପ୍ରତି, ଅବ, ଅନୁ, ଦୁର୍, ବି, ଅଭି, ଅତି, ଅପି, ଉପ, ଆ—ଏହି କୋଡ଼ିଏଟି ଅବ୍ୟୟ ଧାତୁ ପୂର୍ବରେ ବସିଲେ ଏମାନଙ୍କୁ **ଉପସର୍ଗ** କହନ୍ତି ।

## ୧୭—ସମାସ

ଦୁଇ ବା ତତୋଧିକ ପଦ ମିଳି ଏକ ପଦ ହେଲେ ତାହାକୁ **ସମାସ** କହନ୍ତି ।

ସମାସରେ ଯେଉଁ ପଦ ସିଦ୍ଧ ହୁଏ ତାହାକୁ **ସମସ୍ତପଦ** କହନ୍ତି । ସମାସ ହେଲେ ଅନ୍ତ୍ୟ ପଦ ଭିନ୍ନ ପଦମାନଙ୍କର ବିଭକ୍ତିର ଲୋପ ହୁଏ; ଏବଂ ସେମାନଙ୍କର ଅନ୍ତସ୍ଥିତ ଦ୍, ଧ୍ ସ୍ଥାନରେ ତ୍ ଓ ଶ୍ ସ୍ଥାନରେ କ୍ ହୁଏ, ଏବଂ ଇନ୍ ପ୍ରତ୍ୟୟାନ୍ତ ଶବ୍ଦର ନ୍ ର ଲୋପ ହୁଏ ଓ ଇ ଅବଶେଷ ରହେ । ସମସ୍ତ ପଦ ସିଦ୍ଧ ହେବା ପୂର୍ବେ ଯେଉଁ ବାକ୍ୟ ଥାଏ ତାହାକୁ ସମାସ ବାକ୍ୟ କହନ୍ତି । କେହି କେହି ଏହାକୁ ବ୍ୟାସ ବାକ୍ୟ ମଧ୍ୟ କହନ୍ତି । ଓଡ଼ିଆ ଭାଷାରେ ଦ୍ୱନ୍ଦ୍ୱ, ବହୁବ୍ରୀହି, କର୍ମଧାରୟ, ତତ୍ପୁରୁଷ, ଦ୍ୱିଗୁ, ଅବ୍ୟୟୀଭାବ ଏହି ଛଅ ପ୍ରକାର ସମାସର ବ୍ୟବହାର ଦେଖାଯାଏ ।

### (୧) ଦ୍ୱନ୍ଦ୍ୱ

ଓ, ଏବଂ, ଅଥବା ଏହିପରି ଅନ୍ୟ କୌଣସି ଅବ୍ୟୟ ଦ୍ୱାରା ଯୁକ୍ତ ଦୁଇ ବା ତତୋଧିକ ବିଶେଷ୍ୟ ପଦର ସମାସକୁ **ଦ୍ୱନ୍ଦ୍ୱ ସମାସ** କହନ୍ତି । ସମାସ ହେଲେ ମଧ୍ୟବର୍ତ୍ତୀ ଅବ୍ୟୟ ଲୁପ୍ତ ହୁଏ । ଯଥା—ପତ୍ର ଓ ପୁଷ୍ପ = ପତ୍ର-ପୁଷ୍ପ ; ତରୁ, ଲତା ଓ ଗୁଳ୍ମ = ତରୁଲତାଗୁଳ୍ମ; ପଶୁ ଓ ପକ୍ଷୀ = ପଶୁପକ୍ଷୀ ; କୁଳ ଓ ଶୀଳ = କୁଳଶୀଳ ; ଗୁଣ ଓ ଦୋଷ = ଗୁଣଦୋଷ; ଦେଶ, କାଳ ଓ ପାତ୍ର = ଦେଶକାଳପାତ୍ର; ଘର ଓ ଦ୍ୱାର = ଘରଦ୍ୱାର; ନଈ ଓ ନାଳ = ନଈନାଳ; ସାପ ଓ ବେଙ୍ଗ = ସାପବେଙ୍ଗ; ଶୌର୍ଯ୍ୟ ଓ ବୀର୍ଯ୍ୟ = ଶୌର୍ଯ୍ୟବୀର୍ଯ୍ୟ; ଖିଆ ଓ ପିଆ = ଖିଆପିଆ ।

ଦୁଇ ବା ତତୋଧିକ ବିଶେଷଣ ପଦରେ ମଧ୍ୟ ଦ୍ୱନ୍ଦ୍ୱ ସମାସ ହୁଏ । ଯଥା— ଶ୍ୟାମ ଓ କାନ୍ତ=ଶ୍ୟାମକାନ୍ତ ; ନୀଳ ଓ ଲୋହିତ=ନୀଳଲୋହିତ ; କଳା ଓ ଧଳା= କଳାଧଳା । ସଂସ୍କୃତ ଭାଷାର ବ୍ୟାକରଣରେ ଏପରି ସ୍ଥଳରେ ସମାସକୁ କର୍ମଧାରୟ ସମାସ କହନ୍ତି ।

## (୨) ବହୁବ୍ରୀହି

ଯେଉଁ ପଦମାନଙ୍କର ସମାସ ହୁଏ, ସମସ୍ତପଦ ଯେବେ ସେମାନଙ୍କ ମଧ୍ୟରୁ କୌଣସି ଗୋଟିକର ଅର୍ଥ ନ ବୁଝାଇ ସମସ୍ତଙ୍କର ଅର୍ଥବିଶିଷ୍ଟ ଅନ୍ୟ ପଦାର୍ଥକୁ ବୁଝାଏ, ତାହାହେଲେ ସମାସକୁ **ବହୁବ୍ରୀହି** ସମାସ କହନ୍ତି । ସମାସ ପୂର୍ବରୁ ବାକ୍ୟରେ 'ଯାହାର', ଯହିଁରେ' ପ୍ରଭୃତି ସର୍ବନାମ ପଦ ଥାଏ, ସମସ୍ତପଦରେ ସେଗୁଡ଼ିକ ଲୁପ୍ତ ହୁଏ । ବହୁବ୍ରୀହି-ସମାସ-ନିଷ୍ପନ୍ନ ପଦ ପ୍ରାୟ ବିଶେଷଣ ହୁଏ । ଯଥା—ବୀଣା ପାଣିରେ ଯାହାଙ୍କର ସେ ବୀଣାପାଣି ; ସତ୍ ଆଶୟ ଯାହାଙ୍କର ସେ ସଦାଶୟ; ନିଃ (ନାହିଁ) ସନ୍ଦେହ ଯହିଁରେ ତାହା ନିଃସନ୍ଦେହ ; କୃତ ଅଞ୍ଜଳି ଯାହା କର୍ତ୍ତୃକ ସେ କୃତାଞ୍ଜଳି ; ଶୁଷ୍କ କଣ୍ଠ ଯାହାର ସେ ଶୁଷ୍କ କଣ୍ଠ; ଚକା ଡୋଳା ଯାହାଙ୍କର ସେ ଚକାଡୋଳା ।

ବହୁବ୍ରୀହି ସମାସରେ ପରପଦ ଆକାରାନ୍ତ ସ୍ତ୍ରୀଲିଙ୍ଗ ହେଲେ ସମସ୍ତ ପଦରେ ତାହାର ଆ କାର ସ୍ଥାନରେ ଅ କାର ହୁଏ,ଏବଂ ଅକ୍ଷି ଶବ୍ଦର ଇ ସ୍ଥାନରେ ଅ ହୁଏ । ଯଥା—ମ୍ଳାନ ପ୍ରଭା ଯାହାର ସେ ମ୍ଳାନପ୍ରଭ ; ନିଃ (ନାହିଁ) ଲଜ୍ଜା ଯାହାର ସେ ନିର୍ଲଜ୍ଜ; ପୁଣ୍ଡରୀକ ପରି ଆକ୍ଷି ଯାହାଙ୍କର ସେ ପୁଣ୍ଡରୀକାକ୍ଷ ।

ମୃଗର ଅକ୍ଷି ପରି ଅକ୍ଷି ଯାହାର ସେ ମୃଗାକ୍ଷ (ପୁରୁଷ), ମୃଗାକ୍ଷୀ (ସ୍ତ୍ରୀ) ; ସିଂହର କଟି ପରି କଟି ଯାହାର ସେ ସିଂହକଟି । ଏହିପରି ସ୍ଥଳମାନଙ୍କରେ ସମାସକୁ ମଧ୍ୟପଦଲୋପୀ ବହୁବ୍ରୀହି ସମାସ କହନ୍ତି ।

କୌଣସି କୌଣସି ସ୍ଥଳରେ ସମସ୍ତ ପଦର ଶେଷରେ କ-ଆଗମ ହୁଏ । ଯଥା—ଅଳ୍ପ ବୟଃ ଯାହାର ସେ ଅଳ୍ପବୟସ୍କ ; ଅନ୍ୟ ମନଃ ଯାହାର ସେ ଅନ୍ୟ-ମନସ୍କ । ବାଣିଜ୍ୟ ବିଷୟ ଯାହାର ତାହା ବାଣିଜ୍ୟବିଷୟକ ; ନିଷେଧ ଅର୍ଥ ଯାହାର ତାହା ନିଷେଧାର୍ଥକ ।

ନିଷେଧାର୍ଥକ ନ-ସହିତ ଅନ୍ୟ ପଦର ବହୁବ୍ରୀହି ସମାସ ହେଲେ, ନ ସ୍ଥାନରେ, ବ୍ୟଞ୍ଜନ ବର୍ଣ୍ଣ ପରେ ଥିଲେ ଅ ଆଦେଶ ହୁଏ, ସ୍ୱରବର୍ଣ୍ଣ ପରେ ଥିଲେ ଅନ୍ ଆଦେଶ ହୁଏ । ଯଥା— ନ (ନାହିଁ) ଅଙ୍ଗ ଯାହାର ସେ ଅନଙ୍ଗ; ନ (ନାହିଁ) ସହାୟ ଯାହାର ସେ ଅସହାୟ; ନ (ନାହିଁ) କଳଙ୍କ ଯାହାର ସେ ଅକଳଙ୍କ; ନ (ନାହିଁ) ପାର ଯାହାର ତାହା ଅପାର ।

## ୩—କର୍ମଧାରୟ

ବିଶେଷଣ ଓ ବିଶେଷ୍ୟର ସମାସ ହେଲେ ସମସ୍ତ ପଦର ଯଦି ବିଶେଷ୍ୟ ଦ୍ୱାରା ସୂଚିତ ପଦାର୍ଥକୁ ବୁଝାଏ, ତାହାହେଲେ ସମାସକୁ **କର୍ମଧାରୟ ସମାସ** କହନ୍ତି । ଏହି ସମାସରେ ମହତ୍ ଶବ୍ଦ ସ୍ଥାନରେ ମହା ଆଦେଶ ହୁଏ ଏବଂ ରାଜନ୍ ଶବ୍ଦର ଓ ପୂର୍ବପଦ ଯୁବନ୍ ହେଲେ ତାହାର ଅନ୍ତ୍ୟ ନ୍ ର ଲୋପ ହୁଏ । ଶେଷ ଆ ସ୍ଥାନରେ ଅ ହୁଏ। ଯଥା—ନୀଳ ଅଚଳ = ନୀଳାଚଳ; ଧୀର ସମୀର = ଧୀରସମୀର; ମହାନ୍ ଅର୍ଣ୍ଣବ = ମହାର୍ଣ୍ଣବ ; ପରମ ଈଶ୍ୱର = ପରମେଶ୍ୱର । ମହାନ୍ ରାଜା = ମହାରାଜ, ଯୁବନ୍ ରାଜା = ଯୁବରାଜ ।

'ରୂପ'—ଶବ୍ଦ-ଯୁକ୍ତ ବିଶେଷଣ ଓ ତାହାର ବିଶେଷ୍ୟର ସମାସକୁ **ରୂପକ କର୍ମଧାରୟ ସମାସ** କହନ୍ତି । ସମାସ ହେଲେ 'ରୂପ' ଶବ୍ଦର ଲୋପ ହୁଏ । ଯଥା—ମୁଖ ରୂପ ଚନ୍ଦ୍ର = ମୁଖଚନ୍ଦ୍ର; ବିଦ୍ୟା ରୂପ ଧନ = ବିଦ୍ୟାଧନ; ପିତୃ ରୂପ ଦେବ = ପିତୃଦେବ; କନ୍ୟା ରୂପ ରତ୍ନ = କନ୍ୟାରତ୍ନ, ଘୃତ ମିଶ୍ରିତ ଅନ୍ନ = ଘୃତାନ୍ନ; ଶ୍ରୀ ଯୁକ୍ତ ଚରଣ = ଶ୍ରୀଚରଣ ; ପିତ୍ତ ଜନିତ ଜ୍ୱର = ପିତ୍ତଜ୍ୱର ; ବାଲି ମିଶା ମାଟି = ବାଲିମାଟି ; ପେଡ଼ି ଯୋଗ୍ୟ ଲୁଗା ବା ପେଡ଼ିରଖା ଲୁଗା ପେଡ଼ିଲୁଗା ; ଅଜ ନାମକ ରାଜା = ଅଜରାଜ :—ଏ ସ୍ଥଳମାନଙ୍କରେ ପୂର୍ବ ପଦର ମିଶ୍ରିତ "ଯୁକ୍ତ" ଓ "ଜନିତ" ସମସ୍ତ ପଦରେ ଲୁପ୍ତ ହେଲା । ଏପରି ସମାସକୁ **ମଧ୍ୟପଦଲୋପୀ କର୍ମଧାରୟ** ସମାସ କହନ୍ତି ।

ମଧ୍ୟପଦଲୋପୀ କର୍ମଧାରୟ ସମାସରେ ପରପଦ 'ରାଜନ୍' ହେଲେ ସମସ୍ତ ପଦରେ ତାହାର ନ୍ ର ଲୋପ ହୁଏ । ଯଥା—ଅଜ ନାମକ ରାଜା = ଅଜରାଜ ।

'ଅନ୍ୟ' ଏହି ପଦ ସହିତ ବିଶେଷ୍ୟ ପଦର ସମାସ ହେଲେ 'ଅନ୍ୟ' ଠାରେ 'ଅନ୍ତର' ଆଦେଶ ହୁଏ । ଅନ୍ତର ଶବ୍ଦ ବିଶେଷ୍ୟର ପରବର୍ତ୍ତୀ ହୁଏ । ଯଥା—ଅନ୍ୟ ଦେଶ = ଦେଶାନ୍ତର ; ଅନ୍ୟବର୍ଷ = ବର୍ଷାନ୍ତର ; ଅନ୍ୟ ବାର = ବାରାନ୍ତର ; ଅନ୍ୟ ଲୋକ = ଲୋକାନ୍ତର; ଅନ୍ୟ ଜନ୍ମ = ଜନ୍ମାନ୍ତର ।

## ୪—ତତ୍ପୁରୁଷ

ପ୍ରଥମା ଭିନ୍ନ ଅନ୍ୟ ବିଭକ୍ତିଯୁକ୍ତ ପଦର ଅନ୍ୟ ପଦ ସହିତ ଯେଉଁ ସମାସ ହୁଏ ତାହାକୁ **ତତ୍ପୁରୁଷ ସମାସ** କହନ୍ତି ।

ପୂର୍ବ ପଦରେ ଦ୍ୱିତୀୟା ବିଭକ୍ତି ଥିଲେ ସମାସକୁ **ଦ୍ୱିତୀୟା ତତ୍ପୁରୁଷ ସମାସ** କହନ୍ତି । ଯଥା—ହସ୍ତକୁ ଗତ = ହସ୍ତଗତ ; ଅଙ୍କକୁ ଆଗତ = ଅଙ୍କାଗତ ; ମନଃକୁଗତ = ମନୋଗତ, ଚରଣକୁ ଆଶ୍ରିତ = ଚରଣାଶ୍ରିତ ।

ପୂର୍ବପଦରେ ତୃତୀୟା ବିଭକ୍ତି ଥିଲେ ସମାସକୁ **ତୃତୀୟା ତତ୍ପୁରୁଷ ସମାସ** କହନ୍ତି । ଯଥା—ବସ୍ତ୍ରଦ୍ୱାରା ଆବୃତ = ବସ୍ତ୍ରାବୃତ, ସ୍ୱର୍ଣ୍ଣରେ ନିର୍ମିତ = ସ୍ୱର୍ଣ୍ଣ-

ନିର୍ମିତ; ଜଳଦ୍ୱାରା ସିକ୍ତ = ଜଳସିକ୍ତ; କାଳିଦାସଙ୍କ କର୍ତ୍ତୃକ ବିରଚିତ = କାଳିଦାସ-ବିରଚିତ; ହାତରେ ଲେଖା = ହାତଲେଖା; ତେଲଦ୍ୱାରା ଚିକ୍କଣ = ତେଲଚିକ୍କଣ ।

ପୂର୍ବପଦରେ ଚତୁର୍ଥୀ ବିଭକ୍ତି ଥିଲେ ସମାସକୁ **ଚତୁର୍ଥୀ ତତ୍ପୁରୁଷ ସମାସ** କହନ୍ତି । ଯଥା—ବିପ୍ରଙ୍କୁ ଦତ୍ତ = ବିପ୍ରଦତ୍ତ; ଦେବଙ୍କୁ ଅର୍ପିତ = ଦେବାର୍ପିତ; ଘରକୁ ଯୋଗ୍ୟ = ଘରଯୋଗ୍ୟ ।

ପୂର୍ବପଦରେ ପଞ୍ଚମୀ ବିଭକ୍ତି ଥିଲେ ସମାସକୁ **ପଞ୍ଚମୀ ତତ୍ପୁରୁଷ ସମାସ** କହନ୍ତି । ଯଥା—ମୁଖରୁ ନିଃସୃତ = ମୁଖନିଃସୃତ । ବିଦେଶରୁ ଆଗତ = ବିଦେଶାଗତ ; ଯୂଥରୁ ଭ୍ରଷ୍ଟ = ଯୂଥଭ୍ରଷ୍ଟ; ଦେଶାନ୍ତରରୁ ଆଗତ = ଦେଶାନ୍ତରାଗତ ।

ପୂର୍ବପଦରେ ଷଷ୍ଠୀ ବିଭକ୍ତି ଥିଲେ ସମାସକୁ **ଷଷ୍ଠୀ ତତ୍ପୁରୁଷ ସମାସ** କହନ୍ତି । ଯଥା—ରାମଙ୍କର ରାଜ୍ୟ = ରାମରାଜ୍ୟ; ନଦୀର କୂଳ = ନଦୀକୂଳ; ମୟୂରର ଚୂଳ = ମୟୂରଚୂଳ; କର୍ଣ୍ଣଙ୍କର ବଧ = କର୍ଣ୍ଣବଧ; ଦୁଃଖୀର ଧନ = ଦୁଃଖିଧନ; ଦେବତାଙ୍କ ଭୋଗ = ଦେବତାଭୋଗ ; ରାଜାଙ୍କର କନ୍ୟା = ରାଜକନ୍ୟା ; ଆମ୍ବର ବଉଳ = ଆମ୍ବବଉଳ; ମୂଳଆର ମୂଳ = ମୂଳଆମୂଳ । ଷଷ୍ଠୀ ତତ୍ପୁରୁଷ ସମାସରେ ପୂର୍ବପଦ ବା ପରପଦ 'ରାଜନ୍' ହେଲେ ସମସ୍ତ ପଦରେ ନ୍ ର ଲୋପ ହୁଏ । ଯଥା—ଦେବମାନଙ୍କର ରାଜା = ଦେବରାଜ; ମଗଧର ରାଜା = ମଗଧରାଜ ; ରାଜାଙ୍କର ଭୋଗ = ରାଜଭୋଗ ।

ପୂର୍ବ ପଦରେ ସପ୍ତମୀ ବିଭକ୍ତି ଥିଲେ ସମାସକୁ **ସପ୍ତମୀତତ୍ପୁରୁଷ ସମାସ** କହନ୍ତି । ଯଥା—ସଭାରେ ଆସୀନ = ସଭାସୀନ; ଗଙ୍ଗାରେ ସ୍ନାନ = ଗଙ୍ଗାସ୍ନାନ; ବନରେ ବାସ = ବନବାସ; ମର୍ମରେ ଆହତ = ମର୍ମାହତ; ଅଶ୍ୱରେ ଆରୂଢ଼ = ଅଶ୍ୱାରୂଢ଼ ।

ନିଷେଧାର୍ଥକ ନ ଶବ୍ଦ ସହିତ ଅନ୍ୟ ପଦର ସମାସକୁ **ନଞତତ୍ପୁରୁଷ ସମାସ** କହନ୍ତି । ପର ପଦ ପ୍ରାରମ୍ଭରେ ବ୍ୟଞ୍ଜନବର୍ଣ୍ଣ ଥିଲେ ନ ସ୍ଥାନରେ ଅ ଆଦେଶ ହୁଏ, ଏବଂ ସ୍ୱରବର୍ଣ୍ଣ ଥିଲେ ନ ସ୍ଥାନରେ ଅନ୍ ଆଦେଶ ହୁଏ । ଯଥା—ନ ବ୍ରାହ୍ମଣ = ଅବ୍ରାହ୍ମଣ; ନ ମର = ଅମର; ନ ଶୋଭା = ଅଶୋଭା; ନ ଅଳ୍ପ = ଅନଳ୍ପ ; ନଇଷ୍ଟ = ଅନିଷ୍ଟ; ନ ଆଗତ = ଅନାଗତ ।

ପର ପଦର ଆରମ୍ଭରେ ସ୍ୱରବର୍ଣ୍ଣ ଥିଲେ କୌଣସି କୌଣସି ସ୍ଥଳରେ ନ ସ୍ଥାନର ବିକଳ୍ପ ଅନ୍ ଆଦେଶ ହୁଏ । ଯଥା— ନ ଅତି ଦୀର୍ଘ = ଅନତିଦୀର୍ଘ; ନାତିଦୀର୍ଘ; ନ ଅତି ବିଳମ୍ବ = ଅନତିବିଳମ୍ବ, ନାତିବିଳମ୍ବ ।

ଅନ୍ୟପଦ ସହିତ 'ସହ' ଏହି ପଦର ଯେ ସମାସ ହୁଏ ତାହାକୁ **ସହାର୍ଥ ତତ୍ପୁରୁଷ ସମାସ** କହନ୍ତି । ସମସ୍ତ ପଦରେ ସହ ସ୍ଥାନରେ ସ ଆଦେଶ ହୁଏ ।

ଏହି ସ ସମସ୍ତ ପଦର ଆରମ୍ଭରେ ବସେ । ଅନ୍ୟ ପଦଟି ଆକାରାନ୍ତ ସ୍ତ୍ରୀ ଲିଙ୍ଗ ପଦ ହେଲେ ସମସ୍ତ ପଦରେ ତାହାର ଅନ୍ତ୍ୟ ଆକାର ସ୍ଥାନରେ ଅ କାର ହୁଏ । କୌଣସି କୌଣସି ସ୍ଥଳରେ ସମସ୍ତ ପଦର ଶେଷରେ କ ଆଗମ ହୁଏ । ଯଥା— ଶିଷ୍ୟ ସହ (ବର୍ତ୍ତମାନ)=ସଶିଷ୍ୟ ; ସ୍ତ୍ରୀସହ (ବର୍ତ୍ତମାନ)=ସସ୍ତ୍ରୀକ ; ଅଶ୍ରୁ ସହ (ବର୍ତ୍ତମାନ)=ସାଶ୍ରୁ ; ଘୃଣାସହ (ବର୍ତ୍ତମାନ)=ସଘୃଣ ।

## ୧୮—ଅପଭ୍ରଷ୍ଟ ଶବ୍ଦ

ସଂସ୍କୃତ ଭାଷାର ଅନେକ ଧାତୁ ଓ ଅନ୍ୟ ଶବ୍ଦ ରୂପାନ୍ତରିତ ହୋଇ ଓଡ଼ିଆ ଭାଷାରେ ବ୍ୟବହୃତ ହେଉଅଛି । ଏପରି ଶବ୍ଦମାନଙ୍କୁ **ଅପଭ୍ରଷ୍ଟ ଶବ୍ଦ** ବୋଲାଯାଏ । ନିମ୍ନରେ କେତେଗୁଡ଼ିଏ ମୂଳ ସଂସ୍କୃତ ଶବ୍ଦ ଓ ତହିଁରୁ ଅପଭ୍ରଷ୍ଟ ଓଡ଼ିଆ ଶବ୍ଦ ପ୍ରଦର୍ଶିତ ହେଲା :

| ମୂଳ ସଂସ୍କୃତ | ଅପଭ୍ରଷ୍ଟ ଶବ୍ଦ | ମୂଳ ସଂସ୍କୃତ | ଅପଭ୍ରଷ୍ଟ ଶବ୍ଦ |
|---|---|---|---|
| ଚକ୍ର | ଚକ | କର୍ଣ୍ଣ | କାନ |
| ଅଦ୍ୟ | ଆଜ | ବାଦ୍ୟ | ବାଜା |
| ଗାଭୀ | ଗାଈ | ବୃଦ୍ଧି | ବଢ଼ |
| ନଦୀ | ନଈ | ପାନୀୟ | ପାଣି |
| ଫାଲ୍‌ଗୁନ | ଫଗୁଣ | ପୁଷ୍କରିଣୀ | ପୋଖରୀ |
| ଦଧି | ଦହି | ସାଧୁ | ସାହୁ |
| ଦ୍ୱିପାଠୀ | ଦୁଆଡ଼ି | ପ୍ରସ୍ନବ | ପନ୍‌ହା |
| ଜୂଟ | ଜୁଡ଼ା | ବ୍ୟବସାୟ | ବେଉସା |
| ପର୍ଣ୍ଣ | ପାନ | ରାଜ୍ଞୀ | ରାଣୀ |
| ନିଦ୍ରା | ନିଦ | ବତ୍ସତରୀ | ବାଛୁରୀ |
| ଦୁଗ୍ଧ | ଦୁଧ | ହୋତା | ଓତା |
| କୃଷ୍ଣ | କନ୍‌ହାଇ, କହ୍ନେଇ | କୋଣ | କୋଣ |

### ସର୍ବନାମ

| | | | | | |
|---|---|---|---|---|---|
| ଅସ୍ମଦ୍ | ଆମ୍ଭେ | କିମ୍ | କିଏ, କେ | ସର୍ବ | ସେ |

### ଧାତୁ

| | | | | | |
|---|---|---|---|---|---|
| କଥ୍ | କହ | କୃ | କର୍ | ଖାଦ୍ | ଖା |
| ଗଠ୍ | ଗଢ଼୍ | ଜୀବ୍ | ଜୀ | ଚୃ | ଚର୍ |
| ଦୃଶ୍ | ଦେଖ | ପଠ୍ | ପଢ଼୍ | ବନ୍ଧ୍ | ବାନ୍ଧ୍ |
| ଶୀ | ଶୋ | ସ୍ୱପ୍ | ସୋ | ଶ୍ରୁ | ଶୁଣ୍ |

## ବିଶେଷଣ

| | | | | | |
|---|---|---|---|---|---|
| କାଣ | କଣା | କର୍ଣ୍ଣୀ | କାଣୀ | ଛନ୍ନ | ଛନ୍ନଆ |
| ଦ୍ୱି | ଦୁଇ | ପଞ୍ଚ | ପାଞ୍ଚ | ଷଟ୍ | ଛଅ |
| ସପ୍ତ | ସାତ | ଅଷ୍ଟ | ଆଠ | ଦୃଢ଼ | ଦଢ଼ |
| ମଚ୍ଛର | ମଠ | ବୃଦ୍ଧ | ବୁଢ଼ା | ଉଚ୍ଛିଷ୍ଟ | ଅଇଁଠା |

## ଅବ୍ୟୟ

| | | | | | | | |
|---|---|---|---|---|---|---|---|
| ଅପି | ବି | ପୁନଃ | ପୁଣି | ଇତରସ୍ | ତେରଛ | ତୂଷ୍ଣୀ | ତୁନି |

## ୧୯—କୃଦନ୍ତ

ଧାତୁରେ ଅନ, ତ, ତି ପ୍ରଭୃତି ପ୍ରତ୍ୟୟ ଯୋଗ କଲେ ବିଶେଷ୍ୟ ବା ବିଶେଷଣ ସିଦ୍ଧ ହୁଏ । ଏହି ପ୍ରତ୍ୟୟମାନଙ୍କୁ **କୃତ୍** କହନ୍ତି । **କୃତ୍** ପ୍ରତ୍ୟୟ ଯୋଗେ ଯେଉଁ ବିଶେଷଣ ବା ବିଶେଷ୍ୟ ସିଦ୍ଧ ହୁଏ ତାହାକୁ **କୃଦନ୍ତ** କହନ୍ତି ।

କୃତ୍ ପ୍ରତ୍ୟୟ ହେଲେ କୌଣସି କୌଣସି ସ୍ଥଳରେ ଆଦେଶ, ଆଗମ, ଲୋପ, ଗୁଣ ବା ବୃଦ୍ଧି ହୁଏ । ଏକ ବର୍ଣ୍ଣ ଲୁପ୍ତ ହୋଇ ତାହା ସ୍ଥାନରେ ଅନ୍ୟ ବର୍ଣ୍ଣ ହେଲେ ତାହାକୁ **ଆଦେଶ** କହନ୍ତି ଏକ ବର୍ଣ୍ଣ ସମୀପରେ ଅଥବା ଦୁଇଟି ବର୍ଣ୍ଣର ମଧ୍ୟରେ ଅପର ବର୍ଣ୍ଣର ସ୍ଥାପନକୁ **ଆଗମ** କହନ୍ତି । କୌଣସି ବର୍ଣ୍ଣ ଅଦୃଶ୍ୟ ହେବାର ନାମ **ଲୋପ** । ଇ, ଈ ସ୍ଥାନରେ ଏ ; ଉ, ଊ ସ୍ଥାନରେ ଓ ; ଋ, ୠ ସ୍ଥାନରେ ଅର୍ ଆଦେଶକୁ **ଗୁଣ** ବୋଲଯାଏ । 'ଅ' ସ୍ଥାନରେ ଆ; ଇ, ଈ, ଏ ସ୍ଥାନରେ ଐ, ଉ, ଊ ଓ ସ୍ଥାନରେ ଔ; ଋ, ୠ ସ୍ଥାନରେ ଆର୍ ଆଦେଶକୁ **ବୃଦ୍ଧି** ବୋଲଯାଏ ।

## ୨୦—ବାଚ୍ୟ

କର୍ତ୍ତୃବାଚ୍ୟ, କର୍ମବାଚ୍ୟ, କରଣବାଚ୍ୟ, ସମ୍ପ୍ରଦାନବାଚ୍ୟ, ଅପାଦାନବାଚ୍ୟ, ଅଧିକରଣବାଚ୍ୟ, ଭାବବାଚ୍ୟ—ଓଡ଼ିଆଭାଷାରେ ଏହି ସାତଟି ବାଚ୍ୟ ଅଛି । ଧାତୁରୁ ଉତ୍ତର ଅନ, ତ ପ୍ରଭୃତି ପ୍ରତ୍ୟୟ ହେଲେ ଏମାନଙ୍କ ମଧ୍ୟରୁ କୌଣସି ନା କୌଣସି **ଗୋଟିଏ** ବାଚ୍ୟରେ ପ୍ରତ୍ୟୟ ହୋଇଥାଏ ।

କୃତ୍‌ପ୍ରତ୍ୟୟ ନିଷ୍ପନ୍ନ ପଦଟି କର୍ତ୍ତାକୁ ବୁଝାଇଲେ ପ୍ରତ୍ୟୟଟି କର୍ତ୍ତୃବାଚ୍ୟରେ ହେଲା ବୋଲି ବୁଝାଯାଏ । ଯଥା ପଠ୍ ଧାତୁରୁ ଅକ ପ୍ରତ୍ୟୟ କଲେ ପାଠକ, ଯେ ପାଠକରେ ।

କୃତ୍ ପ୍ରତ୍ୟୟ ନିଷ୍ପନ୍ନ ପଦଟି କର୍ମକୁ ବୁଝାଇଲେ ପ୍ରତ୍ୟୟଟି କର୍ମବାଚ୍ୟରେ ହେଲା ବୋଲି ବୁଝାଯାଏ । ଯଥା—ପୂଜ୍ ଧାତୁରୁ ଯ ପ୍ରତ୍ୟୟ କଲେ ପୂଜ୍ୟ—ଯାହାଙ୍କୁ ପୂଜା କରାଯାଏ ।

କୃତ୍‌ପ୍ରତ୍ୟୟନିଷ୍ପନ୍ନ ପଦଟି କରଣକୁ ବୁଝାଇଲେ ପ୍ରତ୍ୟୟଟି କରଣ ବାଚ୍ୟରେ ହେଲ ବୋଲି କହନ୍ତି । ଯଥା—ଲିଖ୍ ଧାତୁରୁ ଅନ ପ୍ରତ୍ୟୟ କଲେ ଲେଖନ, ଯାହାଦ୍ୱାରା ଲେଖାଯାଏ ।

ସମ୍ପ୍ରଦାନ ବାଚ୍ୟନିଷ୍ପନ୍ନ ପଦ ପ୍ରାୟ ଦେଖାଯାଏ ନାହିଁ । ଏଣୁ ତାହାର ଦୃଷ୍ଟାନ୍ତ ଦିଆଯାଇ ପାରୁନାହିଁ ।

କୃତ୍ ପ୍ରତ୍ୟୟନିଷ୍ପନ୍ନ ପଦଟି ଅପାଦାନକୁ ବୁଝାଇଲେ ପ୍ରତ୍ୟୟଟି ଅପାଦାନ ବାଚ୍ୟରେ ହେଲ ବୋଲି କହନ୍ତି । ଯଥା—ଭୀ ଧାତୁରୁ ମ ପ୍ରତ୍ୟୟ କଲେ ଭୀମ, ଭୀତ ହୁଅନ୍ତି ଯାହାଠାରୁ, ଅର୍ଥାତ୍, ଯାହାକୁ ଦେଖି ଭୀତ ହୁଅନ୍ତି ।

କୃତ୍‌ପ୍ରତ୍ୟୟନିଷ୍ପନ୍ନ ପଦଟି ଅଧିକରଣକୁ ବୁଝାଇଲେ ପ୍ରତ୍ୟୟଟି ଅଧିକରଣ ବାଚ୍ୟରେ ହେଲ ବୋଲି କୁହାଯାଏ । ଯଥା—ଶୀ ଧାତୁରୁ ଯ ପ୍ରତ୍ୟୟ ଓ ଆ ପ୍ରତ୍ୟୟ କଲେ ଶଯ୍ୟା, ଯହିଁରେ ଶୟନ କରାଯାଏ ।

ଭାବବାଚ୍ୟନିଷ୍ପନ୍ନ କୃଦନ୍ତ ପଦଗୁଡ଼ିକ କ୍ରିୟା ବା କାର୍ଯ୍ୟକୁ ବୁଝାଏ । ଏଣୁ ଏହି କୃଦନ୍ତ ପଦଗୁଡ଼ିକ କ୍ରିୟାବାଚକ ବିଶେଷ୍ୟ ।

କୃତ୍‌ପ୍ରତ୍ୟୟ ପରେ ଥିଲେ ଧାତୁର ଅନ୍ତ୍ୟ ଏ, ଐ, ଓ, ଔ ଠାରେ ଆ ହୁଏ । ଧାତୁର ଅନ୍ତ୍ୟ ଣ୍‌ର ପରବର୍ତ୍ତୀ ପ୍ରତ୍ୟୟ ତ ଠାରେ ଟ ହୁଏ ।

ଭାବବାଚ୍ୟରେ ଅନ, ତ, ଅ, ଇ, , ଓ, ଆ ପ୍ରଭୃତି ପ୍ରତ୍ୟୟ ହୁଏ । ଅନ ପ୍ରତ୍ୟୟ ହେଲେ ଧାତୁର ଅନ୍ତ୍ୟ ସ୍ୱର ଏବଂ ଅନ୍ତ୍ୟ ବ୍ୟଞ୍ଜନ ବର୍ଣ୍ଣର ପୂର୍ବବର୍ତ୍ତୀ ହ୍ରସ୍ୱ ସ୍ୱରର ଗୁଣ ହୁଏ । ଅନ୍ତ୍ୟ ଋଠାରେ ଈ ର୍ ହୁଏ ମାତ୍ର ର୍ ପ-ବର୍ଗର କୌଣସି ବର୍ଣ୍ଣରେ ଯୁକ୍ତ ଥିଲେ ତାହା ସ୍ଥାନରେ ଊର୍ ହୁଏ । ଯଥା—ଚି + ଅନ = ଚୟନ; ସିଚ୍ + ଅନ = ସେଚନ ; ଭୁଜ୍ + ଅନ = ଭୋଜନ ; ସାଧ୍ + ଅନ = ସାଧନ; କୃ + ଅନ = କରଣ; ପୃ, ପୂର୍ ବା ପୄ + ଅନ = ପୂରଣ; ଇ + ଅନ = ଅୟନ ।

ଭାବବାଚ୍ୟରେ ଅନ ପ୍ରତ୍ୟୟ ହେଲେ କେତେକ ସ୍ଥଳରେ ଅନ ଉତ୍ତାରେ ପୁଣି ଆ ପ୍ରତ୍ୟୟ ହୁଏ । ଯଥା—ରଚ୍ + ଅନ + ଆ = ରଚନା. ଏହିପରି ଘଟନା, ଅର୍ଚ୍ଚନା, ବନ୍ଦନା, ମାର୍ଜ୍ଜନା, ମନ୍ତ୍ରଣା, ଯନ୍ତ୍ରଣା, ରଟନା, ପ୍ରଭୃତି ।

ଏହି ବିଶେଷ୍ୟପଦଗୁଡ଼ିକ ସ୍ତ୍ରୀଲିଙ୍ଗ । ତ ପ୍ରତ୍ୟୟ ହେଲେ ଧାତୁର ଅନ୍ତ୍ୟ ଚ୍ ଓ ଜ୍ ଠାରେ କ୍ ହୁଏ, ଧାତୁର ଅନ୍ତ୍ୟ ନ୍ ର ଲୋପ ହୁଏ; କେତେକ ମ କାରାନ୍ତ ଧାତୁର ଅନ୍ତ୍ୟ ନ୍ ର ଲୋପ ହୁଏ, ଅପର କେତେକ ମ କାରାନ୍ତ ଧାତୁର ମ୍ ଓ ପ୍ରତ୍ୟୟର ତ ମିଳି ନ୍ତ ହୁଏ ଓ ପୂର୍ବବର୍ତ୍ତୀ ଅକାର ସ୍ଥାନରେ ଆକାର ହୁଏ । କେତେକ ଧ କାରାନ୍ତ ଧାତୁର ଅନ୍ତ୍ୟ ଧ୍ ଓ ପ୍ରତ୍ୟୟର ତ ମିଶି ଦ୍ଧି ହୁଏ; କେତେକ ଆକାରାନ୍ତ ଧାତୁର

ଆ ଠାରେ ଇ ହୁଏ, ଆଉ କେତେକ ଆକାରାନ୍ତ ଧାତୁ ପରେ ତ ପ୍ରତ୍ୟୟର ତ୍ ଠାରେ ନ୍ ହୁଏ, ଧାତୁର ଅନ୍ତ୍ୟ ବ୍ୟଞ୍ଜନ ବର୍ଣ୍ଣର ପୂର୍ବବର୍ତ୍ତୀ ର୍ ଠାରେ ଇ ର୍ ହୁଏ, ଏବଂ ଜନ ଧାତୁର ଅ ଠାରେ ଆ ହୁଏ ଯଥା –ମୁଚ୍ + ତ = ମୁକ୍ତ; ଭଜ୍ + ତ = ଭକ୍ତ; ମନ୍ + ତ = ମତ; ରମ୍ + ତ = ରତ;ଶମ୍ + ତ = ଶାନ୍ତ; ଭ୍ରମ୍ + ତ = ଭ୍ରାନ୍ତ ସମ୍ + ପଦ୍ + ତ = ସମ୍ପତ୍ତି; ବୁଧ୍ + ତ = ବୁଦ୍ଧି; ସ୍ଥା + ତ = ସ୍ଥିତ; ସିଧ୍ + ତ = ସିଦ୍ଧି; ହା + ନ = ହାନ; କୃତ୍ + ତ = କୀର୍ତ୍ତି; ଜନ୍ + ତ = ଜାତ । ତ ପ୍ରତ୍ୟୟ ନିଷ୍ପନ୍ନ କୃଦନ୍ତ ପଦଗୁଡ଼ିକ ସ୍ତ୍ରୀଲିଙ୍ଗ ।

ତ ପ୍ରତ୍ୟୟ ହେଲେ ରନ୍ଜ୍, ସନ୍ଜ୍ ଓ ଭନ୍ଜ୍ ଧାତୁରୁ ନ୍ ର ଲୋପ ହୁଏ । ଯଥା—ରଞ୍ଜ୍ + ତ = ରକ୍ତ; ଆ + ସନ୍ଜ୍ + ତ = ଆସକ୍ତ; ଭଜ୍ + ତ = ଭକ୍ତ ।

ତ ପ୍ରତ୍ୟୟ ହେଲେ ଧାତୁର ଅନ୍ତ୍ୟ ହ୍ ଓ ପ୍ରତ୍ୟୟର ତ ମିଳି ଢ଼ି ହୁଏ ଏବଂ ପୂର୍ବବର୍ତ୍ତୀ ସ୍ୱର ଦୀର୍ଘ ହୁଏ । ଯଥା—ରୁହ୍ + ତ = ରୂଢ଼ି, ବହ୍ + ତ = ଊଢି, ପ୍ର + ବହ୍ + ତ = ପୌଢ଼ି ।

ସଂସ୍କୃତ ଘଞ୍ ପ୍ରତ୍ୟୟର ଅବଶେଷ ଯେଉଁ ଅ,ସେହି ଅ ପ୍ରତ୍ୟୟ ପରେ ଥିଲେ ଧାତୁର ଅନ୍ତ୍ୟ ସ୍ୱର ଏବଂ ଅନ୍ତ୍ୟ ବ୍ୟଞ୍ଜନ ବର୍ଣ୍ଣର ପୂର୍ବବର୍ତ୍ତୀ ଅକାରର ବୃଦ୍ଧି ହୁଏ, ଅନ୍ତ୍ୟ ବ୍ୟଞ୍ଜନ ବର୍ଣ୍ଣର ପୂର୍ବବର୍ତ୍ତୀ ଅନ୍ୟ ହ୍ରସ୍ୱ ସ୍ୱରର ଗୁଣ ହୁଏ ଏବଂ ଧାତୁର ଅନ୍ତସ୍ଥିତ ଚ୍ ଠାରେ କ୍ ଓ ଜ୍ ଠାରେ ଗ୍ ହୁଏ । ଯଥା—ଉପ + କୃ + ଅ = ଉପକାର, ରୁ + ଅ = ରାବ । ଇ + ଅ = ଆୟ, ଭୁଜ୍ + ଅ = ଭୋଗ, ପଚ୍ + ଅ = ପାକ, ରଜ୍ + ଅ = ରାଗ, ଅଭି + ସିଚ୍ + ଅ = ଅଭିଷେକ, ଶୁଚ୍ + ଅ = ଶୋକ, ସମ୍ + କ୍ରୁଶ୍ + ଅ = ସଙ୍କ୍ରୋଷ, ସ୍ପୃଶ୍ + ଅ = ସ୍ପର୍ଶ । ହନ୍ ଧାତୁରୁ ଅ ପ୍ରତ୍ୟୟ କଲେ ଘାତ ହୁଏ ।

ସଂସ୍କୃତ ଅଲ୍ ପ୍ରତ୍ୟୟର ଅବଶେଷ ଯେଉଁ ଅ, ସେହି ଅ ପ୍ରତ୍ୟୟ ପରେ ଥିଲେ ଧାତୁର ଅନ୍ତ୍ୟ ସ୍ୱର ଏବଂ ଅନ୍ତ୍ୟ ବ୍ୟଞ୍ଜନ ବର୍ଣ୍ଣର ପୂର୍ବବର୍ତ୍ତୀ ହ୍ରସ୍ୱ ସ୍ୱରର ଗୁଣ ହୁଏ । ଯଥା—ଜି + ଅ = ଜୟ, ବୁଧ୍ + ଅ = ବୋଧ, ଅନୁ + ଭୂ + ଅ = ଅନୁଭବ, ସମ୍ + କୃ + ଅ = ସଙ୍କର, କ୍ରୁଧ୍ + ଅ = କ୍ରୋଧ । କେତେକ ଧାତୁର ଉତ୍ତର ଭାବ-ବାଚ୍ୟରେ ଇ ପ୍ରତ୍ୟୟ ହୁଏ । ଯଥା—ଧ୍ୱନ୍ + ଇ = ଧ୍ୱନି, ଭ୍ରମ୍ + ଇ = ଭ୍ରମି (୧); ବମ୍ + ଇ = ବମି, ରୁଚ୍ + ଇ = ରୁଚି, ଗମ୍ + ଇ = ଗମି (୨) ।

ଏତଦ୍‌ଭିନ୍ନ ସଂସ୍କୃତ ଭାଷାରୁ ଆଗତ ଆହୁରି ଅନେକ ପ୍ରକାର ଅ ପ୍ରତ୍ୟୟ ଅଛି । ପୁଣି ଅପଭ୍ରଷ୍ଟ ଧାତୁରୁ ଉତ୍ତର ଓଡ଼ିଆ ଭାଷାର ଅ ପ୍ରତ୍ୟୟ ଦେଖାଯାଏ ।

---

(୧) ବିଶେଷ୍ୟ, ଅର୍ଥ ପାଣି-ଭଉଁରି, ଜଳାବର୍ତ୍ତ, ଘୂର୍ଣ୍ଣିବାୟୁ, ଘୂର୍ଣ୍ଣନ, ଭ୍ରମଣ, ମଧ୍ୟ ଭ୍ରମୀ ବନାନ ହୁଏ ।

(୨) ବିଂ. ଅର୍ଥ କୁଶଳୀ ।

ଯଥା—ଖେଲ୍ + ଅ = ଖେଳ, ଘୁମ୍ + ଅ = ଘୁମ ଡର୍ + ଅ = ଡର । ଇବା ପ୍ରତ୍ୟୟ ପରେ ଥିଲେ ଯା ଧାତୁର ଆକାରର ଲୋପ ହୁଏ । ଯଥା - ଯା + ଇବା = ଯିବା ।

ଆ ପ୍ରତ୍ୟୟ ପରେ ଥିଲେ ଧାତୁର ଅନ୍ତ୍ୟ ଆକାରଠାରେ ଇ କାର ହୁଏ, ଏବଂ ଓ କାରଠାରେ ଉ କାର ହୁଏ । ଯଥା—ଖା + ଆ = ଖିଆ, ଶୋ + ଆ = ଶୁଆ, ଧୋ + ଆ = ଧୁଆ ।

ଅକର୍ମକ ଧାତୁ ଓ ଗତ୍ୟର୍ଥକ ସକର୍ମକ ଧାତୁରୁ ଉତ୍ତର କର୍ତ୍ତୃବାଚ୍ୟରେ ଏବଂ ଅନ୍ୟ ସକର୍ମକ ଧାତୁର ଉତ୍ତର କର୍ମ ବାଚ୍ୟରେ ଓ କର୍ତ୍ତୃବାଚ୍ୟରେ ତ ପ୍ରତ୍ୟୟ ହୁଏ । ତ ପ୍ରତ୍ୟୟ ପରେ ଥିଲେ ଧାତୁର ଅନ୍ତ୍ୟ ଚ୍ ଓ ଜ୍ ଠାରେ କ୍ ହୁଏ, ଧାତୁର ଅନ୍ତ୍ୟ ନ୍ ର ଲୋପ ହୁଏ. ମ-କାରାନ୍ତ କେତେକ ଧାତୁର ଅନ୍ତ୍ୟ ମ୍ ର ଲୋପ ହୁଏ, ଅପର କେତେକ ଧାତୁର ଅନ୍ତ୍ୟ ମ୍ ଠାରେ ନ୍ ଓ ପୂର୍ବବର୍ତ୍ତୀ ଅକାରର ବୃଦ୍ଧି ହୁଏ, ଆକାରାନ୍ତ ଧାତୁର ଆ ଠାରେ ଇ ହୁଏ, ଗୈ ଧାତୁର ଐ ଠାରେ ଯେଉଁ ଆ ହୁଏ ଯେହ୍ମ ଆ ଏବଂ ପା ଧାତୁର ଆ ଠାରେ ଈ ହୁଏ, ମଦ୍ ଧାତୁର ଦ୍ ଠାରେ ତ୍ତ ହୁଏ, ଅନ୍ୟ ଦ୍ କାରାନ୍ତ ଧାତୁର ଦ୍ ଓ ପ୍ରତ୍ୟୟ ତ ମିଶି ନ୍ନ ହୁଏ । ଧାତୁର ଅନ୍ତ୍ୟ ଧ୍ ଓ ପ୍ରତ୍ୟୟ ତ ମିଶି ଦ୍ଧ ହୁଏ, କେତେକ ଧାତୁର ଅନ୍ତ୍ୟ ହ୍ ଓ ପ୍ରତ୍ୟୟ ତ ମିଶି ଢ଼ ହୁଏ, ଆଉ କେତେକ ଧାତୁର ଅନ୍ତ୍ୟ ହ୍ ଓ ପ୍ରତ୍ୟୟ ତ ମିଳି ଗ୍ଧ ହୁଏ । ଯଥା—ଭ୍ରମ୍ + ତ = ଭ୍ରାନ୍ତ, ସ୍ଥା + ତ = ସ୍ଥିତ, କୃ + ତ = କୃତ, ପା + ତ = ପୀତ, ଗୈ + ତ = ଗୀତ, ଗମ୍ + ତ = ଗତ, ଭଜ୍ + ତ = ଭକ୍ତ, ସିଚ୍ + ତ = ସିକ୍ତ, ମନ୍ + ତ = ମତ, ମଦ୍ + ତ = ମତ୍ତ, ପ୍ର + ସଦ୍ + ତ = ପ୍ରସନ୍ନ, ଭିଦ୍ + ତ = ଭିନ୍ନ ବୁଧ୍ + ତ = ବୁଦ୍ଧ, ଗାହ୍ + ତ = ଗାଢ଼, ମୁହ୍ + ତ = ମୂଢ଼, ଦୁହ୍ + ତ = ଦୁଗ୍ଧ, ଲୁଭ୍ + ତ = ଲୁବ୍ଧ, ସୃଜ୍ ଧାତୁରୁ ତ ପ୍ରତ୍ୟୟ କଲେ ସୃଷ୍ଟ ହୁଏ ।

ତ ପ୍ରତ୍ୟୟ ହେଲେ କେତେକ ଧାତୁରୁ ଉତ୍ତର ଇ ଆଗମ ହୁଏ । ଯଥା— ଲିଖ୍ + ତ = ଲିଖିତ, ପ୍ର + ସ୍ଫୁଟ୍ + ତ = ପ୍ରସ୍ଫୁଟିତ, ପଠ୍ + ତ = ପଠିତ, ଲମ୍ବ + ତ = ଲମ୍ବିତ, କମ୍ପ୍ + ତ = କମ୍ପିତ, ଆ + ନନ୍ଦ୍ + ତ = ଆନନ୍ଦିତ । ଗ୍ରହ୍ ଧାତୁରୁ ତ ପ୍ରତ୍ୟୟ କଲେ ଗୃହୀତ ହୁଏ ।

ନିମ୍ନଲିଖିତ ସ୍ଥଳମାନଙ୍କରେ ଉପରଲିଖିତ ସୂତ୍ରର ବ୍ୟତିକ୍ରମ ଦେଖା ଯାଏ—ଜନ୍ + ତ = ଜାତ, ଦା + ତ = ଦତ୍ତ, ବି + ଧା + ତ = ବିହିତ, ବଚ୍ + ତ = ଉକ୍ତ, ଅନୁ + ବଦ୍ + ତ = ଅନୂଦିତ, ମସ୍ଜ୍ + ତ = ମଗ୍ନ, ଲଗ୍ + ତ = ଲଗ୍ନ, ଭ୍ରଂଶ୍ + ତ = ଭ୍ରଷ୍ଟ, ପ୍ର + ଶଂସ୍ + ତ = ପ୍ରଶସ୍ତ, ରଞ୍ଜ୍ + ତ = ରକ୍ତ, କ୍ଲିଶ୍ + ତ = କ୍ଲିଷ୍ଟ, ଶୁଷ୍ + ତ = ଶୁଷ୍କ, ରୁଜ୍ + ତ = ରୁଗ୍ଣ, ପଚ୍ + ତ = ପକ୍ୱ, ବି + ବୃତ୍ +

ତ = ବର୍ଦ୍ଧିତ, ଶାସ୍ + ତ = ଶିଷ୍ଟ, ଖନ୍ + ତ = ଖାତ, ମ୍ଳା + ତ = ମ୍ଳାନ, କ୍ଷି + ତ = କ୍ଷୀଣ, ବ୍ୟଧ + ତ = ବିଦ୍ଧ ।

ଅପଭ୍ରଷ୍ଟ ଧାତୁରୁ ଉତ୍ତର ଏବଂ କେତେଗୁଡ଼ିଏ ମୂଳ ସଂସ୍କୃତ ଧାତୁରୁ ଉତ୍ତର କର୍ତ୍ତୃବାଚ୍ୟରେ ଓ କର୍ମବାଚ୍ୟରେ ଇଥିବା ଓ ଇଥିଲ ପ୍ରତ୍ୟୟ ହୁଏ । ଯଥା—ଯା ଧାତୁରୁ ଯାଇଥିବା, ଯାଇଥିଲ ; ଶୋ ଧାତୁରୁ ଶୋଇଥିବା, ଶୋଇଥିଲ; ଖା ଧାତୁରୁ ଖାଇଥିବା, ଖାଇଥିଲ ; ଧୋ ଧାତୁରୁ ଧୋଇଥିବା, ଧୋଇଥିଲ ।

ଧାତୁରୁ ଉତ୍ତର କର୍ତ୍ତୃବାଚ୍ୟରେ ଓ କର୍ମବାଚ୍ୟରେ ତ, ଇଥିବା ଓ ଇଥିଲ ପ୍ରତ୍ୟୟ ହେଲେ କୃଦନ୍ତ ପଦଟି ପ୍ରାୟ କ୍ରିୟାବାଚକ ବିଶେଷଣ ହୋଇଥାଏ । କୌଣସି କୌଣସି ସ୍ଥଳରେ ଭାବବାଚ୍ୟରେ ମଧ୍ୟ ତ ପ୍ରତ୍ୟୟ ହୁଏ । ତେତେବେଳେ କୃଦନ୍ତ ପଦଟି କ୍ରିୟାବାଚକ ବିଶେଷ୍ୟ ହୁଏ । ଯଥା—ଯା + ତ = ଯାତ (ଗମନ), ଆ + ଯା + ତ = ଆୟାତ (ଆଗମନ) ଜୀବ୍ + ତ = ଜୀବିତ (ପ୍ରାଣ) ।

ଭାବବାଚ୍ୟ ଛଡ଼ା ଅନ୍ୟ ବାଚ୍ୟରେ ମଧ୍ୟ ଅନ, ତ ଅ, ଏବଂ ଆ ପ୍ରତ୍ୟୟ ହୁଏ । ଯଥା— କର୍ତ୍ତୃବାଚ୍ୟରେ ତପ୍ + ଅନ = ତପନ, ପୂ + ଅନ = ପବନ, ଚନ୍ଦ୍ + ଅନ = ଚନ୍ଦନ, ଜନ୍ + ତ = ଜାତ, ପ୍ରୀ + ଅ = ପ୍ରିୟ, ଚର୍ + ଅ = ଚର, ଅନ୍ଧ (ଉପପଦ) + କୃ + ଅ = ଅନ୍ଧକାର ; କର୍ମବାଚ୍ୟରେ—ଭଜ୍ + ଅନ୍ = ଭଜନ, ସୃଜ୍ + ତ = ସୃଷ୍ଟି; ଗେହ୍ଲ + ଆ = ଗେହ୍ଲା, ଭଗାଣ (ଉପପଦ) + ହସ୍ + ଆ = ଭଗାଣହସା, ମାଙ୍କଡ଼ (ଉପପଦ) + ଖା + ଆ = ମାଙ୍କଡ଼ଖିଆ ; କରଣବାଚ୍ୟରେ—କୃ + ଅନ = କରଣ, ନୀ + ଅନ = ନୟନ, ଯା + ଅନ = ଯାନ, ସମ୍ + ତନ୍ + ଅ = ସନ୍ତାନ, କୃ + ଅ = କର, ବାଉ (ଉପପଦ) + ଚଲ୍ + ଆ = ବାଉଚାଲ, ଗାଈ (ଉପପଦ) + ଛନ୍ଦ୍ + ଆ = ଗାଈଛନ୍ଦା; ଅଧିକରଣ ବାଚ୍ୟରେ—ଆସ୍ + ଅନ = ଆସନ, ଆ + ଧୃ + ଅ = ଆଧାର, ଆ + ପଦ୍ + ଅ = ଆସ୍ପଦ ।

କର୍ମବାଚ୍ୟରେ ଧାତୁରୁ ଉତ୍ତର ତବ୍ୟ, ଅନୀୟ ଏବଂ ଯ ପ୍ରତ୍ୟୟ ହୁଏ । ତବ୍ୟ ଓ ଅନୀୟ ପ୍ରତ୍ୟୟ ହେଲେ ଧାତୁର ଅନ୍ତ୍ୟ ହ୍ରସ୍ୱସ୍ୱରର ବୃଦ୍ଧି, ଅନ୍ତ୍ୟ ବ୍ୟଞ୍ଜନ ବର୍ଣ୍ଣର ପୂର୍ବବର୍ତ୍ତୀ ହ୍ରସ୍ୱସ୍ୱରର ଗୁଣ ହୁଏ, ଏବଂ ଅନ୍ତ୍ୟ ଆ ଠାରେ ଏ ଆଦେଶ ହୁଏ । ତବ୍ୟ ପ୍ରତ୍ୟୟ ହେଲେ ଧାତୁର ଅନ୍ତ୍ୟ ଚ୍ ଠାରେ କ୍ ହୁଏ । ଯଥା—କୃ ଧାତୁରୁ କର୍ତ୍ତବ୍ୟ, କରଣୀୟ, କାର୍ଯ୍ୟ ; ଦା ଧାତୁରୁ ଦାତବ୍ୟ, ଦାନୀୟ, ଦେୟ ; ପା ଧାତୁରୁ ପାତବ୍ୟ, ପାନୀୟ, ପେୟ; ଜି ଧାତୁରୁ ଜେତବ୍ୟ, ଜୟନୀୟ, ଜେୟ ; ଗମ୍ ଧାତୁରୁ ଗନ୍ତବ୍ୟ, ଗମନୀୟ, ଗମ୍ୟ ; ଶ୍ରୁ ଧାତୁରୁ ଶ୍ରୋତବ୍ୟ, ଶ୍ରବଣୀୟ, ଶ୍ରାବ୍ୟ ; ବଚ୍ ଧାତୁରୁ ବକ୍ତବ୍ୟ, ବଚନୀୟ, ବାଚ୍ୟ ।

ଧାତୁରୁ ଉତ୍ତର କର୍ତ୍ତୃବାଚ୍ୟରେ ତବତ୍ ପ୍ରତ୍ୟୟ ହୁଏ । ସମ୍ବୋଧନ ଭିନ୍ନ-ବିଭକ୍ତି-ଯୁକ୍ତ ହେଲେ ତବତ୍‌ପ୍ରତ୍ୟୟାନ୍ତ କୃଦନ୍ତ ପଦର ବତ୍ ଠାରେ ବାନ୍ ହୁଏ । ଯଥା—କୃ + ତବତ୍ = କୃତବାନ୍, ଗମ୍ + ତବତ୍ = ଗତବାନ୍ , ବଚ୍ + ତବତ୍ = ଉକ୍ତବାନ୍ , ଦା + ତବତ୍ = ଦତ୍ତବାନ୍ ।

ତବ୍ୟ, ଅନୀୟ, ଯ ଏବଂ ତବତ୍ ପ୍ରତ୍ୟୟଦ୍ୱାରା ନିଷ୍ପନ୍ନ କୃଦନ୍ତ ପଦଗୁଡ଼ିକ କ୍ରିୟାବାଚକ ବିଶେଷଣ ହୁଅନ୍ତି ।

ଧାତୁରୁ ଉତ୍ତର କର୍ତ୍ତୃବାଚ୍ୟରେ ଅତ୍ ଅନ୍ତା, ଆନ ଓ ମାନ ପ୍ରତ୍ୟୟ ହୁଏ । ମାନ ପ୍ରତ୍ୟୟ ହେଲେ ହଲନ୍ତ ଧାତୁରୁ ଉତ୍ତର ଗୋଟିଏ ଅ ଆଗମ ହୁଏ । ଯଥା—ଚଲ୍ + ଅତ୍—ଚଲନ୍ତ୍, ଜାଗୃ + ଅତ୍—ଜାଗ୍ରତ୍, ଗଲ୍ + ଅତ୍—ଗଲନ୍ତ୍, ଚଲ + ଅନ୍ତା—ଚଳନ୍ତା, ଗଲ୍ + ଅନ୍ତା—ଗଳନ୍ତା, ବହ୍ + ଅନ୍ତା—ବହନ୍ତା, ଜୀ + ଅନ୍ତା = ଜୀଅନ୍ତା, ଶୀ + ଆନ = ଶୟାନ, ସ୍ୱପ୍ + ମାନ—ସ୍ୱପମାନ, ବହ୍ + ଅତ = ବହନ୍ତ୍, ବହ୍ + ମାନ—ବହମାନ, ଆ + ବହ୍ + ମାନ—ଆବହମାନ ।

ସଂସ୍କୃତ ଭାଷାର ଶତୃ ପ୍ରତ୍ୟୟରୁ ଅତ୍ ରହେ, ଏବଂ ଶାନଚ୍ ପ୍ରତ୍ୟୟଠାରେ ଆନ ଓ ମାନ ହୁଏ । ସଂସ୍କୃତର ଏହି ଅତ୍‌ରୁ ଓଡ଼ିଆ ଭାଷାରେ ଅନ୍ତା ପ୍ରତ୍ୟୟ ହୋଇଅଛି ।

ଧାତୁରୁ ଉତ୍ତର କର୍ତ୍ତୃବାଚ୍ୟରେ ଓ କର୍ମ୍ମବାଚ୍ୟରେ ଇବା, ଉଥିବା, ଇଥିବା, ଓ ଇଲ ପ୍ରତ୍ୟୟ ହୁଏ । ଯଥା—ଚଲ ଧାତୁରୁ ଚଳିବା, ଚଳିଥିବା, ଚଳୁଥିବା । ଖା ଧାତୁରୁ ଖାଇବା, ଖାଉଥିବା ; ଯା ଧାତୁରୁ ଯିବା, ଯାଉଥିବା ; ହସ୍ ଧାତୁରୁ ହସିବା, ହସୁଥିବା, ହସିଲ ।

ଧାତୁର ଉତ୍ତର କର୍ତ୍ତୃବାଚ୍ୟରେ ବା କର୍ମ୍ମବାଚ୍ୟରେ ଅତ୍, ଅନ୍ତା ଆନ, ମାନ, ଇବା, ଉଥିବା, ଇଥିବା ଓ ଇଲ ପ୍ରତ୍ୟୟ ହେଲେ କୃଦନ୍ତ ପଦ କ୍ରିୟାବାଚକ ବିଶେଷଣ ହୁଏ ।

କର୍ତ୍ତୃବାଚ୍ୟରେ ବା କର୍ମବାଚ୍ୟରେ ତ, ତବତ୍, ଇଥିବା ଓ ଇଲ ପ୍ରତ୍ୟୟ ହେଲେ କୃଦନ୍ତ ପଦଗୁଡ଼ିକ ସାଧାରଣତଃ ଅତୀତ କାଳକୁ ବୁଝାଏ; ତବ୍ୟ, ଅନୀୟ ଓ ଯ ପ୍ରତ୍ୟୟ ହେଲେ ଭବିଷ୍ୟତ୍ କାଳକୁ ବୁଝାଏ ; ଅତ, ଅନ୍ତା, ଆନ, ମାନ ଓ ଉଥିବା ପ୍ରତ୍ୟୟ ହେଲେ ବର୍ତ୍ତମାନ କାଳକୁ ବୁଝାଏ ।

ଧାତୁରୁ ଉତ୍ତର କର୍ତ୍ତୃବାଚ୍ୟରେ ତୃ ପ୍ରତ୍ୟୟ ହୁଏ । ବିଭକ୍ତିଯୁକ୍ତ ହେଲେ ତୃ ପ୍ରତ୍ୟୟାନ୍ତ କୃଦନ୍ତ ପଦର ର୍ ଠାରେ ଆ ଆଦେଶ ହୁଏ, ଏବଂ ତବ୍ୟ ପ୍ରତ୍ୟୟରେ ଧାତୁର ଯେଉଁ ଯେଉଁ ପରିବର୍ତ୍ତନ ହୁଏ, ତୃ ପ୍ରତ୍ୟୟରେ ମଧ୍ୟ ସେହି ସେହି ପରିବର୍ତ୍ତନ

ହୁଏ । ଯଥା—କୃ + ତୃ = କର୍ତ୍ତା, ଜି + ତୃ = ଜେତା, ଦା + ତୃ = ଦାତା, ବଚ୍ + ତୃ = ବକ୍ତା, ଶ୍ରୁ + ତୃ = ଶ୍ରୋତା, ହୁ + ତୃ = ହୋତା ।

କର୍ତ୍ତୃବାଚ୍ୟରେ ଧାତୁରୁ ଉତ୍ତର ଅକ ଓ ଇନ୍ ପ୍ରତ୍ୟୟ ହୁଏ । ଏହି ଦୁଇ ପ୍ରତ୍ୟୟ ହେଲେ, ଧାତୁର ଅନ୍ତ୍ୟ ସ୍ୱର ଓ ଅନ୍ତ୍ୟ ବ୍ୟଞ୍ଜନବର୍ଣ୍ଣର ପୂର୍ବବର୍ତ୍ତୀ ଅ-କାରର ବୃଦ୍ଧି ହୁଏ, ଅନ୍ତ୍ୟ ବ୍ୟଞ୍ଜନବର୍ଣ୍ଣର ପୂର୍ବବର୍ତ୍ତୀ ଅ-କାରର ବୃଦ୍ଧି ହୁଏ, ଅନ୍ତ୍ୟ ବ୍ୟଞ୍ଜନ ବର୍ଣ୍ଣର ପୂର୍ବବର୍ତ୍ତୀ ଅନ୍ୟ ହ୍ରସ୍ୱ ସ୍ୱରର ଗୁଣ ହୁଏ, ଏବଂ ଆ-କାରାନ୍ତ ଧାତୁରୁ ଉତ୍ତର ଗୋଟିଏ ଯ୍ ର ଆଗମ ହୁଏ । ଇନ୍ ପ୍ରତ୍ୟୟାନ୍ତ କୃଦନ୍ତ ପଦ ବିଭକ୍ତି ଯୁକ୍ତ ହେଲେ ଅନ୍ତ୍ୟ ନ୍ ର ଲୋପ ହୁଏ, ପୂର୍ବବର୍ତ୍ତୀ 'ଇ' 'ଈ' ହୁଏ, ମାତ୍ର ସମ୍ବୋଧନର ଏକ-ଏକ ବଚନରେ ଇନ୍ ରହେ । ଯଥା—କୃ + ଅକ = କାରକ, ଧୃ + ଅକ = ଧାରକ, ପଚ୍ + ଅକ = ପାଚକ, ଦା + ଅକ = ଦାୟକ, ଗୈ + ଅକ = ଗାୟକ, ଯୋ + ଅକ + ଯାୟକ, ନୀ + ଅକ = ନାୟକ, ରିଚ୍ + ଅକ = ରେଚକ, ଭିଦ୍ + ଅକ = ଭେଦକ, ଦୃ + ଅକ = ଜାରକ । କୃଷ୍ ଧାତୁରୁ ଅକ ପ୍ରତ୍ୟୟ କଲେ କୃଷକ ଓ କର୍ଷକ ଉଭୟ ହୁଏ । କୃ + ଇନ୍ = କାରୀ, ଚର୍ + ଇନ୍ = ଚାରୀ, ଅନୁ + ସୃ + ଇନ୍ = ଅନୁସାରୀ; ଯା + ଇନ୍ = ଯାୟୀ, ସ୍ଥା + ଇନ୍ = ସ୍ଥାୟୀ, ଅଧି + ବସ୍ + ଇନ୍ = ଅଧିବାସୀ, ଦ୍ରୁହ୍ + ଇନ୍ = ଦ୍ରୋହୀ ।

କେତେଗୁଡ଼ିଏ ଧାତୁରୁ ଉତ୍ତର କର୍ତ୍ତୃବାଚ୍ୟରେ ର ପ୍ରତ୍ୟୟ ହୁଏ । ର ପ୍ରତ୍ୟୟ ହେଲେ ଧାତୁର ଅନ୍ତ୍ୟ ସ୍ୱରର ଗୁଣ ହୁଏ । ଯଥା—ନମ୍ + ର = ନମ୍ର, ହିନ୍ସ + ର = ହିଂସ୍ର ସ୍ମି + ର = ସ୍ମେର, କ୍ଷୁଦ୍ + ର = କ୍ଷୁଦ୍ର, ଚନ୍ଦ୍ + ର = ଚନ୍ଦ୍ର, ଇନ୍ଦ୍ + ର = ଇନ୍ଦ୍ର ।

ଧାତୁରୁ ଉତ୍ତର କର୍ତ୍ତୃବାଚ୍ୟରେ ବର ପ୍ରତ୍ୟୟ ହୁଏ । ଯଥା = ଈଶ୍ + ବର = ଈଶ୍ୱର, ନଶ୍ + ବର = ନଶ୍ୱର, ସ୍ଥା + ବର = ସ୍ଥାବର, ଭାସ୍ + ବର = ଭାସ୍ୱର । ଗତ୍ୱ + ବର = ଗତ୍ୱର ।

ଧାତୁରୁ ଉତ୍ତର କର୍ତ୍ତୃବାଚ୍ୟରେ କ୍ୱିପ୍ ପ୍ରତ୍ୟୟ ହୁଏ । କ୍ୱିପ୍ ପ୍ରତ୍ୟୟ ଲୁପ୍ତ ହେଲେ ହ୍ରସ୍ୱ ସ୍ୱରାନ୍ତ ଧାତୁର ଉତ୍ତର ତ୍ ଆଗମ ହୁଏ । ଯଥା—ଇନ୍ଦ୍ର (ଉପପଦ) + ଜି + କ୍ୱିପ୍ = ଇନ୍ଦ୍ରଜିତ୍, ବିଶ୍ୱ (ଉପପଦ) + ଜି + କ୍ୱିପ୍ = ବିଶ୍ୱଜିତ୍, ପାର (ଉପପଦ) + ସୃ + କ୍ୱିପ୍ = ପାରସ୍ରୁତ୍, ଅଗ୍ର (ଉପପଦ) + ନୀ + କ୍ୱିପ୍ = ଅଗ୍ରଣୀ, ସେନା (ଉପପଦ) + ନୀ + କ୍ୱିପ୍ = ସେନାନୀ, ଶାସ୍ତ୍ର (ଉପପଦ) + ବିଦ୍ + କ୍ୱିପ୍ = ଶାସ୍ତ୍ରବିଦ୍ (ଶାସ୍ତ୍ରବିତ୍) । କ୍ୱିପ୍ ପ୍ରତ୍ୟୟ ଲୁପ୍ତ ହେଲେ କୌଣସି କୌଣସି ଜ୍ କାରାନ୍ତ ଧାତୁର ଅନ୍ତ୍ୟ ଜ୍ ଠାରେ ଟ୍, ଅପର କୌଣସି କୌଣସି ଜ୍‌କାରାନ୍ତ ଧାତୁର ଜ୍ ଠାରେ କ୍ ହୁଏ । ଯଥା—ସମ୍ + ରାଜ୍ + କ୍ୱିପ୍ = ସମ୍ରାଟ୍,

ସର୍ବ (ଉପପଦ) + ଭୁଜ୍ + କ୍ୱିପ୍ = ସର୍ବଭୁକ୍ । ଶ୍ରି ଧାତୁରୁ କର୍ମ ବାଚ୍ୟରେ କ୍ୱିପ୍ ପ୍ରତ୍ୟୟ ହେଲେ ଶ୍ରୀ ହୁଏ ।

ଧାତୁରୁ ଉତ୍ତର କର୍ତ୍ତୃବାଚ୍ୟରେ ଉକ ପ୍ରତ୍ୟୟ ହୁଏ । ଉକ ପ୍ରତ୍ୟୟ ହେଲେ ଧାତୁର ଅନ୍ତ୍ୟସ୍ୱରର ଓ ଅନ୍ତ୍ୟ ବ୍ୟଞ୍ଜନ ବର୍ଣ୍ଣର ପୂର୍ବବର୍ତ୍ତୀ ଅ କାରର ବୃଦ୍ଧି ହୁଏ । ଯଥା—ଭୂ + ଉକ = ଭାବୁକ, ନନ୍ଦ୍ + ଉକ = ନନ୍ଦୁକ, କମ୍ + ଉକ = କାମୁକ । ହନ୍ ଧାତୁରୁ ଉକ ପ୍ରତ୍ୟୟ ହେଲେ ଘାତୁକ ହୁଏ ।

ଧାତୁରୁ ଉତ୍ତର ଭିନ୍ନ ଭିନ୍ନ ବାଚ୍ୟରେ ମନ୍ ପ୍ରତ୍ୟୟ ହୁଏ । ମନ୍ ପ୍ରତ୍ୟୟ ହେଲେ ଧାତୁର ଅନ୍ତ୍ୟସ୍ୱରର ଓ ଅନ୍ତ୍ୟ ବ୍ୟଞ୍ଜନବର୍ଣ୍ଣର ପୂର୍ବବର୍ତ୍ତୀ ହ୍ରସ୍ୱ ସ୍ୱରର ଗୁଣ ହୁଏ । ସଂସ୍କୃତ ଭାଷାର ନିୟମାନୁସାରେ ଯେଉଁ ଶବ୍ଦ ପୁଂଲିଙ୍ଗ ତାହାର ସମ୍ବୋଧନ ଏକବଚନ ଭିନ୍ନ ଅନ୍ୟ ବିଭକ୍ତିରେ ମନ୍‌ଠାରେ ମା ହୁଏ, କ୍ଲୀବ ଲିଙ୍ଗ ଶବ୍ଦର ମନ୍ ର ନ୍ ର ଲୋପ ହୁଏ । ଯଥା—କର୍ତ୍ତୃବାଚ୍ୟରେ :—ଧୃ + ମନ୍ = ଧର୍ମ, ଭସ୍ + ମନ୍ = ଭସ୍ମ, କର୍ମବାଚ୍ୟରେ :—କୃ + ମନ୍ = କର୍ମ, କରଣବାଚ୍ୟରେ :—ବୃ + ମନ୍ = ବର୍ମ; ଅଧିକରଣ ବାଚ୍ୟରେ :—ସଦ୍ + ମନ୍ = ସଦ୍ମ ।

ଧାତୁରୁ ଉତ୍ତର ଭିନ୍ନ ଭିନ୍ନ ବାଚ୍ୟରେ ନ ପ୍ରତ୍ୟୟ ହୁଏ । ଯଥା—କର୍ତ୍ତୃବାଚ୍ୟରେ :—ରମ୍ + ନ = ରତ୍ନ; କର୍ମବାଚ୍ୟରେ :—ପ୍ରଚ୍ଛ୍ + ନ = ପ୍ରଶ୍ନ; ଭାବବାଚ୍ୟରେ :—ଯତ୍ + ନ = ଯତ୍ନ ।

ଧାତୁରୁ ଉତ୍ତର ଭିନ୍ନ ଭିନ୍ନ ବାଚ୍ୟରେ ତ୍ର ଓ ଇତ୍ର ପ୍ରତ୍ୟୟ ହୁଏ । ଇତ୍ର ପ୍ରତ୍ୟୟ ହେଲେ ଧାତୁର ଅନ୍ତ୍ୟସ୍ୱରର ଗୁଣ ହୁଏ । ଯଥା—କର୍ତ୍ତୃବାଚ୍ୟରେ :—ପୂ + ଇତ୍ର = ପବିତ୍ର, ଗମ୍ + ତ୍ର = ଗାତ୍ର, କର୍ମ ବାଚ୍ୟରେ—ବଦ୍ + ଇତ୍ର = ବାଦିତ୍ର; କରଣବାଚ୍ୟରେ :—ନୀ + ତ୍ର = ନେତ୍ର, ବସ୍ + ତ୍ର = ବସ୍ତ୍ର, ଶାସ୍ + ତ୍ର = ଶାସ୍ତ୍ର, ବଚ୍ + ତ୍ର = ବକ୍ତ୍ର, ବହ + ଇତ୍ର = ବହିତ୍ର, ଅଧିକରଣ ବାଚ୍ୟରେ :—ସଦ୍ + ତ୍ର = ସତ୍ତ୍ର ।

କେତେଗୁଡ଼ିଏ ଧାତୁରୁ ଉତ୍ତର କର୍ତ୍ତୃବାଚ୍ୟରେ ଉ ପ୍ରତ୍ୟୟ ହୁଏ । ଯଥା—ସାଧ୍ + ଉ = ସାଧୁ, ମନ୍ + ଉ = ମଧୁ, ଚଞ୍ଚ୍ + ଉ = ଚଞ୍ଚୁ ଭିକ୍ଷ୍ = ଉ = ଭିକ୍ଷୁ । କର୍ମବାଚ୍ୟରେ :—ଦୃ + ଉ = ଦାରୁ ।

କେତେଗୁଡ଼ିଏ ଧାତୁରୁ ଉତ୍ତର କର୍ତ୍ତୃବାଚ୍ୟରେ ବସ୍ ପ୍ରତ୍ୟୟ ହୁଏ । ଯଥା—ବିଦ୍ + ବସ୍ = ବିଦ୍ୱସ୍ (ବିଦ୍ୱାନ୍) ।

କେତେଗୁଡ଼ିଏ ଧାତୁରୁ ଉତ୍ତର କର୍ତ୍ତୃବାଚ୍ୟରେ ରୁ ପ୍ରତ୍ୟୟ ହୁଏ । ଯଥା—ଭୀ + ରୁ = ଭୀରୁ, ଦଦ୍ + ରୁଦରିଦ୍ରା = ଦଦ୍ରୁ, ଶଦ୍ + ରୁ = ଶଦ୍ରୁ ।

## ୨୧—ପ୍ରେରଣାର୍ଥ ଧାତୁ

ପ୍ରେରଣାର୍ଥରେ ଧାତୁରୁ ଉତ୍ତର ଇ ପ୍ରତ୍ୟୟ ହୁଏ । ସଂସ୍କୃତଭାଷାରେ ଏହାକୁ ଣିଚ୍ ପ୍ରତ୍ୟୟ କହନ୍ତି । ଏଥିପାଇଁ କେହି କେହି ପ୍ରେରଣାର୍ଥ ଧାତୁକୁ **ଣିଜନ୍ତ** ଧାତୁ କହନ୍ତି । ଇ ପ୍ରତ୍ୟୟ ହେଲେ ଧାତୁର ଅନ୍ତ୍ୟ ସ୍ୱରର ଓ ଅନ୍ତ୍ୟ ବ୍ୟଞ୍ଜନବର୍ଣ୍ଣର ପୂର୍ବବର୍ତ୍ତୀ ଅକାରର ବୃଦ୍ଧି ହୁଏ, ଅନ୍ତ୍ୟ ବ୍ୟଞ୍ଜନ ବର୍ଣ୍ଣର ପୂର୍ବବର୍ତ୍ତୀ ଅ-ଭିନ୍ନ ହ୍ରସ୍ୱସ୍ୱରମାନଙ୍କର ଗୁଣ ହୁଏ, ଏବଂ ଆ-କାରାନ୍ତ ଓ ଋ-କାରାନ୍ତ ଧାତୁରୁ ଉତ୍ତର ଗୋଟିଏ ପ ଆଗମ ହୁଏ । ଯଥା—କୃ + ଇ = କାରି, ତୃ + ଇ = ତାରି, ଚଲ୍ + ଇ = ଚାଲି, ଭୂ + ଇ = ଭାବି, ସୃ + ଇ = ସାରି ପଚ୍ + ଇ = ପାଚି, ବିଦ୍ + ଇ = ବେଦି, ବୁଧ୍ + ଇ = ବୋଧି, ସ୍ଥା + ଇ = ସ୍ଥାପି, ଯା + ଇ = ଯାପି, ଜ୍ଞା + ଇ = ଜ୍ଞାପି, ଋ + ଇ = ଅର୍ପି ।

ପ୍ରେରଣାର୍ଥରେ ଇ ପ୍ରତ୍ୟୟ କଲେ କ୍ଷି ଧାତୁ କ୍ଷିପି, ଅଧି ପୂର୍ବକ ଇ ଧାତୁ ଅଧ୍ୟାପି, ପ୍ରୀ ଧାତୁ ପ୍ରୀଣି, ରୁହ ଧାତୁ ରୋପି, ହନ୍ ଧାତୁ ଘାତି ଏବଂ ଦୁଷ୍ ଧାତୁ ଦୂଷି ହୁଏ ।

ପ୍ରେରଣାର୍ଥ ଧାତୁରୁ ଉତ୍ତର ଭାବବାଚ୍ୟରେ ଅନ ପ୍ରତ୍ୟୟ ହେଲେ ଧାତୁର ଅନ୍ତ୍ୟ ଇ-କାରର ଲୋପ ହୁଏ, ଏବଂ ଅ ପ୍ରତ୍ୟୟ ଉତ୍ତାରୁ କେତେକ ସ୍ଥଳରେ ପୁଣି ଆ ପ୍ରତ୍ୟୟ ହୁଏ । ଏହି ଆ ପ୍ରତ୍ୟୟାନ୍ତ ଶବ୍ଦଗୁଡ଼ିକ ସ୍ତ୍ରୀଲିଙ୍ଗ ଅଟେ । ଯଥା—ଚାଲି ଧାତୁରୁ ଚାଳନ, ଚାଳନା; ନି-ପୂର୍ବକ ବେଦି ଧାତୁରୁ ନିବେଦନ; ବି ପୂର୍ବକ ଜ୍ଞାପି ଧାତୁରୁ ବିଜ୍ଞାପନ; ଯାପି ଧାତୁରୁ ଯାପନ; ଅଧି ପୂର୍ବକ ଇ ଧାତୁରୁ ଅଧ୍ୟାପନା; ଅବ ପୂର୍ବକ ତାରି ଧାତୁରୁ ଅବତାରଣା ।

ଅନ୍ୟ ବାଚ୍ୟରେ ଅନ ପ୍ରତ୍ୟୟ ହେଲେ ମଧ୍ୟ ପ୍ରେରଣାର୍ଥ ଧାତୁର ଅନ୍ତ୍ୟ ଇ-କାରର ଲୋପ ହୁଏ । କର୍ତ୍ତୃବାଚ୍ୟ ଭଳି :—କ୍ଷିପି + ଅନ = କ୍ଷିପଣ ।

## ୨୨—ସନନ୍ତ ଧାତୁ

ଇଚ୍ଛା ଅର୍ଥରେ ଧାତୁରୁ ଉତ୍ତର ସଂସ୍କୃତ ଭାଷାର ନିୟମାନୁସାରେ ସନ୍ ପ୍ରତ୍ୟୟ ହୁଏ । ସନ୍ ପ୍ରତ୍ୟୟ ଯୋଗେ ଯେଉଁ ଧାତୁ ଉତ୍ପନ୍ନ ହୁଏ ତାହାକୁ **ସନନ୍ତ ଧାତୁ** କହନ୍ତି । ସନ୍ ପ୍ରତ୍ୟୟର ସ ଅବଶିଷ୍ଟ ରହେ । ସନ୍ ପ୍ରତ୍ୟୟ ହେଲେ ଧାତୁର ପ୍ରଥମ ବର୍ଣ୍ଣର ଦ୍ୱିତ୍ୱ ହୁଏ, ଏବଂ ଆହୁରି ଅନେକଗୁଡ଼ିଏ ପରିବର୍ତ୍ତନ ହୁଏ । କେତେଗୁଡ଼ିଏ ସନନ୍ତ ଧାତୁର ଆକାର ନିମ୍ନରେ ପ୍ରଦର୍ଶିତ ହେଲା—

| ମୂଳଧାତୁ | ସନନ୍ତ ଧାତୁ | ମୂଳଧାତୁ | ସନନ୍ତ ଧାତୁ | ମୂଳଧାତୁ | ସନନ୍ତ ଧାତୁ |
|---|---|---|---|---|---|
| ପା | ପିପାସ | ଜ୍ଞା | ଜିଜ୍ଞାସ | ଜି | ଜିଗୀଷ |

| | | | | | |
|---|---|---|---|---|---|
| ଗମ୍ | ଜିଗମିଷ | କୃ | ଚିକୀର୍ଷ | ଭୁଜ୍ | ବୁଭୁକ୍ଷ |
| ହନ୍ | ଜିଘାଂସ | ମୁଚ୍ | ମୁମୁକ୍ଷ | ବଚ୍ | ବିବକ୍ଷ |
| ମୃ | ମୁମୂର୍ଷ | ଲଭ୍ | ଲିପ୍ସ | ଶ୍ରୁ | ଶୁଶ୍ରୂଷ |

ସନନ୍ତ ଧାତୁରୁ ଉତ୍ତର ଭାବବାଚ୍ୟରେ ଅ ପ୍ରତ୍ୟୟ ହୁଏ । ତହିଁ ଉତ୍ତାରୁ ପୁଣି ଆ ପ୍ରତ୍ୟୟ ହୁଏ । ଏହି ଆ ପ୍ରତ୍ୟୟାନ୍ତ ଶବ୍ଦଗୁଡ଼ିକ ସ୍ତ୍ରୀ ଲିଙ୍ଗ ଅଟେ । ଯଥା— ପିପାସ ଧାତୁରୁ କ୍ରିୟାବାଚକ ବିଶେଷ୍ୟ ପିପାସା, ଜିଗୀଷ ଧାତୁରୁ କ୍ରିୟାବାଚକ ବିଶେଷ୍ୟ ଜିଗୀଷା, ଜିଜ୍ଞାସ ଧାତୁରୁ କ୍ରିୟାବାଚକ ବିଶେଷ୍ୟ ଜିଜ୍ଞାସା । ଏହିପରି ଲିପ୍ସ ଧାତୁରୁ ଲିପ୍ସା, ଶୁଶ୍ରୂଷ ଧାତୁରୁ ଶୁଶ୍ରୂଷା ।

ସନନ୍ତ ଧାତୁରୁ ଉତ୍ତର କର୍ତ୍ତୃବାଚ୍ୟରେ ଉ ପ୍ରତ୍ୟୟ ହୁଏ । ଉ ପ୍ରତ୍ୟୟ ପରେ ଥିଲେ ଧାତୁର ଅନ୍ତ୍ୟ ଅକାରର ଲୋପ ହୁଏ । ଉ ପ୍ରତ୍ୟୟାନ୍ତ ପଦଗୁଡ଼ିକ ବିଶେଷଣ ଅଟେ । ଯଥା—ପିପାସ ଧାତୁରୁ ପିପାସୁ, ଜିଜ୍ଞାସ ଧାତୁରୁ ଜିଜ୍ଞାସୁ, ବୁଭୁକ୍ଷ ଧାତୁରୁ ବୁଭୁକ୍ଷୁ, ଲିପ୍ସ ଧାତୁରୁ ଲିପ୍ସୁ, ମୁମୂର୍ଷ ଧାତୁରୁ ମୁମୂର୍ଷୁ, ମୁମୁକ୍ଷ ଧାତୁରୁ ମୁମୁକ୍ଷୁ ।

## ୨୩—ତଦ୍ଧିତ ପ୍ରତ୍ୟୟ

ଶବ୍ଦରୁ ଉତ୍ତର ବିଶେଷ ବିଶେଷ ଅର୍ଥରେ ଯେଉଁ ପ୍ରତ୍ୟୟମାନ ହୁଏ ସେମାନଙ୍କୁ **ତଦ୍ଧିତ ପ୍ରତ୍ୟୟ** କହନ୍ତି ।

ତଦ୍ଧିତ ପ୍ରତ୍ୟୟର ସ୍ୱରବର୍ଣ୍ଣ ଅଥବା ଯ ପରେ ଥିଲେ ଶବ୍ଦର ଅନ୍ତସ୍ଥିତ ଅ, ଆ, ଇ, ଈ, ଏହି ଗଣବର୍ଣ୍ଣର ଲୋପ ହୁଏ, ଏବଂ ଉ, ଊ ର ଗୁଣ ହୁଏ ।

ପୁତ୍ର, କନ୍ୟା, ପୌତ୍ର, ପୌତ୍ରୀ ପ୍ରଭୃତିଙ୍କୁ ଅପତ୍ୟ କହନ୍ତି । ଅପତ୍ୟ ଅର୍ଥରେ ଶବ୍ଦରୁ ଉତ୍ତର ଇ, ଅ, ଯ, ଏୟ, ଇକ, ଆୟନ ଏବଂ ଈୟ ପ୍ରତ୍ୟୟ ହୁଏ । ଏହି ପ୍ରତ୍ୟୟଗୁଡ଼ିକ ପରେ ଥିଲେ ଶବ୍ଦର ଆଦି ସ୍ୱରର ବୃଦ୍ଧି ହୁଏ । ଯଥା— ଦଶରଥଙ୍କର ପୁତ୍ର ଦାଶରଥି, ସୁମିତ୍ରାଙ୍କର ପୁତ୍ର ସୌମିତ୍ରି, ପବନଙ୍କର ପୁତ୍ର ପାବନି, ବସୁଦେବଙ୍କର ପୁତ୍ର ବାସୁଦେବ; ପାଣ୍ଡୁଙ୍କର ପୁତ୍ର ପାଣ୍ଡବ, ପୃଥାଙ୍କର ପୁତ୍ର ପାର୍ଥ, ଭୃଗୁ ମୁନିଙ୍କର ପୁତ୍ର ଭାର୍ଗବ, ଜନକଙ୍କର କନ୍ୟା ଜାନକୀ; ଜମଦଗ୍ନି (ଋଷି)ଙ୍କର ପୁତ୍ର ଜାମଦଗ୍ନ୍ୟ, ଦିତିଙ୍କର ପୁତ୍ର ଦୈତ୍ୟ, ଅଦିତିଙ୍କର ପୁତ୍ର ଆଦିତ୍ୟ; କୁନ୍ତୀଙ୍କର ପୁତ୍ର କୌନ୍ତେୟ, ବିନତାଙ୍କର ପୁତ୍ର ବୈନତେୟ, ଭଗିନୀର ପୁତ୍ର ଭାଗିନେୟ, ରେବତୀଙ୍କର ପୁତ୍ର ରୈବତିକ, ବାତ୍ସ୍ୟ(ମୁନି)ଙ୍କର ପୁତ୍ର ବାତ୍ସ୍ୟାୟନ, ଦକ୍ଷରାଜଙ୍କର କନ୍ୟା ଦାକ୍ଷାୟଣୀ; ସ୍ୱସାର ପୁତ୍ର ସ୍ୱସ୍ରୀୟ । ରଘୁଙ୍କର ଅପତ୍ୟ ଅର୍ଥାତ୍ ରଘୁଙ୍କ ବଂଶରେ ଜାତ ରାଘବ; ଯଦୁ ବଂଶରେ ଜାତ ଯାଦବ; ମନୁଙ୍କ ବଂଶରେ ଜାତ

ମାନବ ଭୃଗୁଙ୍କ ପୁତ୍ର ବା ବଂଶଜାତ=ଭାର୍ଗବ । ସେହିପରି କୌରବ, ପୌରବ, ଗୌତମ । ପଞ୍ଚାଳ ଦେଶର ରାଜାଙ୍କର କନ୍ୟା, ପାଞ୍ଚାଳୀ; ବିଦେହରାଜ କନ୍ୟା, ବୈଦେହୀ; କୋଶଳ ରାଜକନ୍ୟା, କୌଶଲ୍ୟା । କେକୟ ଶବ୍ଦରୁ ଅପତ୍ୟ ଅର୍ଥରେ ଅ ଓ ସ୍ତ୍ରୀ ଲିଙ୍ଗରେ ଈ ପ୍ରତ୍ୟୟ କଲେ କେକୟୀ, କୈକେୟୀ ଓ କୈକୟୀ ହୁଏ (କେକୟ ନାମକ ରାଜାଙ୍କର କନ୍ୟା) ।

କେତେଗୁଡ଼ିଏ ଶବ୍ଦରୁ ଅପତ୍ୟ ଅର୍ଥରେ ଏକାଧିକ ପ୍ରତ୍ୟୟ ହୁଏ । ଯଥା—ବିରୋଚନର 'ପୁତ୍ର, ବୈରେଚନ, ବୈରୋଚନି; ମୃକଣ୍ଡୁ ମୁନିଙ୍କର ପୁତ୍ର, ମାର୍କଣ୍ଡ, ମାର୍କଣ୍ଡେୟ (ଏଠାରେ ଶବ୍ଦର ଅନ୍ତ୍ୟ ଉ କାରର ଲୋପ ହେଲା); କୃତ୍ତିକାମାନଙ୍କ କର୍ତ୍ତୃକ ପାଳିତ, କାର୍ତ୍ତିକ, କାର୍ତ୍ତିକେୟ ।

ଭବ ଅର୍ଥାତ୍ ଜାତ ଅର୍ଥରେ କେତେଗୁଡ଼ିଏ ଶବ୍ଦରୁ ଉତ୍ତର ଅ, ଅୟନ, ଇକ, ଯ ଓ ଇୟ ପ୍ରତ୍ୟୟ ହୁଏ । ଏହି ପ୍ରତ୍ୟୟଗୁଡ଼ିକ ପରେ ଥିଲେ ଶବ୍ଦର ଆଦି ସ୍ୱରର ପ୍ରାୟ ବୃଦ୍ଧି ହୁଏ । ଯଥା—ସୁରାଷ୍ଟ୍ର ଦେଶରେ ଭବ, ସୌରାଷ୍ଟ୍ର; ଅନ୍ଧ୍ର ଦେଶରେ ଜାତ, ଆନ୍ଧ୍ର; ମିଥିଳାରେ ଜାତ ମୈଥିଳ; ପଞ୍ଚାଳରେ ଜାତ ପାଞ୍ଚାଳ; କଶ୍ୟପ ଗୋତ୍ରରେ ଜାତ କାଶ୍ୟପ; ଭରଦ୍ୱାଜ ଗୋତ୍ରରେ ଜାତ, ଭାରଦ୍ୱାଜ; ପରାଶର ଗୋତ୍ରରେ ଜାତ, ପାରାଶର; ଦ୍ୱୀପରେ ଜାତ, ଦ୍ୱୈପାୟନ; ତତ୍କାଳରେ ଭବ, ତାତ୍କାଳିକ, ସେହିପରି ଦୈନିକ, ମାସିକ, ବାର୍ଷିକ । ପର୍ବତରେ ଜାତ ପାର୍ବତୀୟ; ପଶ୍ଚାତ୍ (ଅର୍ଥାତ୍ ପଶ୍ଚିମ ଦେଶରେ) ଜାତ, ପାଶ୍ଚାତ୍ୟ; ବନରେ ଭବ, ବନ୍ୟ; ଅରଣ୍ୟରେ ଜାତ, ଆରଣ୍ୟ; ଗ୍ରାମରେ ଜାତ ଗ୍ରାମ୍ୟ ।

ଭବ ଅର୍ଥରେ କେତେଗୁଡ଼ିଏ ଶବ୍ଦରୁ ଉତ୍ତର ତ୍ୟ ପ୍ରତ୍ୟୟ ହୁଏ । ଯଥା—ତତ୍ର + ତ୍ୟ = ତତ୍ରତ୍ୟ, ଅତ୍ର + ତ୍ୟ = ଅତ୍ରତ୍ୟ । ଦକ୍ଷିଣ ଶବ୍ଦରୁ ତ୍ୟ ପ୍ରତ୍ୟୟ କଲେ ଦାକ୍ଷିଣାତ୍ୟ ହୁଏ ।

ଭବ ଅର୍ଥରେ କେତେଗୁଡ଼ିଏ ଶବ୍ଦରୁ ଉତ୍ତର ତନ ବା ଈନ ପ୍ରତ୍ୟୟ ହୁଏ, ଯଥା—ସାୟଂ + ତନ = ସାୟନ୍ତନ, ପୁରା + ତନ = ପୁରାତନ, ଅଧୁନା + ତନ = ଅଧୁନାତନ ; କୁଳ + ଈନ = କୁଳୀନ, ସାୟଂକାଳ + ଈନ = ସାୟଂକାଳୀନ, ତତ୍‌କାଳ + ଈନ = ତତ୍କାଳୀନ । ଚିର ଶବ୍ଦରୁ ତନ ପ୍ରତ୍ୟୟ କଲେ ଚିରନ୍ତନ, ଏବଂ ସଦା ଶବ୍ଦରୁ ତନ ପ୍ରତ୍ୟୟ କଲେ ସଦାତନ ଓ ସନାତନ ହୁଏ ।

ଭବ ଅର୍ଥରେ କେତେଗୁଡ଼ିଏ ଶବ୍ଦରୁ ଉତ୍ତର ମ ଓ ଆଉ କେତେଗୁଡ଼ିଏ ଶବ୍ଦରୁ ଉତ୍ତର ଇମ ପ୍ରତ୍ୟୟ ହୁଏ । ଇମ ପ୍ରତ୍ୟୟ ହେଲେ ପଶ୍ଚାତ୍ ଶବ୍ଦର ଅନ୍ତ୍ୟ ତ୍ ର ଲୋପ ହୁଏ । ଯଥା—ଅଗ୍ର + ଇମ = ଅଗ୍ରିମ, ଅନ୍ତ + ଇମ = ଅନ୍ତିମ, ପଶ୍ଚାତ୍ + ଇମ = ପଶ୍ଚିମ, ଆଦି + ମ = ଆଦିମ, ମଧ୍ୟ + ମ = ମଧ୍ୟମ ।

ଭକ୍ତ ଅର୍ଥରେ ଶବ୍ଦରୁ ଉତ୍ତର ଅ ଓ ଯ ପ୍ରତ୍ୟୟ ହୁଏ । ଯଥା—ଶିବଙ୍କର ଭକ୍ତ ଶୈବ ; ବିଷ୍ଣୁଙ୍କର ଭକ୍ତ ବୈଷ୍ଣବ ; ଶକ୍ତିଙ୍କର ଭକ୍ତ ଶାକ୍ତ ; ଭଗବାନଙ୍କର ଭକ୍ତ ଭାଗବତ (ଭଗବତ୍ + ଅ); ଗଣପତିଙ୍କର ଭକ୍ତ ଗାଣପତ୍ୟ (ଗଣପତି + ଯ) ।

ସମ୍ବନ୍ଧାର୍ଥରେ ଶବ୍ଦରୁ ଉତ୍ତର ଇକ, ଈୟ, ଅ, ଯ ଏବଂ ଏୟ ପ୍ରତ୍ୟୟ ହୁଏ । ଇକ, ଅ, ଯ ଓ ଏୟ ପ୍ରତ୍ୟୟ ପରେ ଥିଲେ ଶବ୍ଦର ଆଦ୍ୟ ସ୍ୱରର ବୃଦ୍ଧି ହୁଏ । ଯଥା—ଶରୀର + ଇକ = ଶାରୀରିକ, ଦେହ + ଇକ = ଦୈହିକ, ନିସର୍ଗ + ଇକ = ନୈସର୍ଗିକ, ମନସ୍ + ଇକ = ମାନସିକ, ଅଣୁ + ଇକ = ଆଣବିକ, ପଶୁ + ଇକ = ପାଶବିକ ; ଜାତି + ଈୟ = ଜାତୀୟ, ସ୍ୱ + ଈୟ = ସ୍ୱୀୟ, ଦେଶ + ଈୟ = ଦେଶୀୟ, ବାୟୁ + ଈୟ = ବାୟବୀୟ, ନିଶା + ଅ = ନୈଶ, ଅସୁର + ଅ = ଆସୁର, ଈଶ + ଅ = ଐଶ ; ଯମ୍ + ଯ = ଯାମ୍ୟ, ବାୟୁ + ଯ = ବାୟବ୍ୟ, ଈଶାନ + ଯ = ଐଶାନ୍ୟ, ଅଗ୍ନି + ଏୟ = ଆଗ୍ନେୟ । ଈୟ ପ୍ରତ୍ୟୟ ହେଲେ ରାଜନ୍, ସ୍ୱ ଓ ପର ଶବ୍ଦରୁ ଉତ୍ତର କ୍ ଆଗମ ହୁଏ । ଯଥା—ରାଜନ୍ + ଈୟ = ରାଜକୀୟ । ସ୍ୱ + ଈୟ = ସ୍ୱକୀୟ, ପର + ଈୟ = ପରକୀୟ ।

ଯେଉଁ ସବୁ ଶବ୍ଦର ଅନ୍ତରେ ଅ, ଆ ଅଥବା ପଞ୍ଚମବର୍ଣ୍ଣ ଭିନ୍ନ ବର୍ଗ୍ୟ ବର୍ଣ୍ଣ ଥାଏ କିମ୍ବା ଅନ୍ତ୍ୟବର୍ଣ୍ଣର ପୂର୍ବବର୍ତ୍ତୀ ବର୍ଣ୍ଣ ଯଦି ଅ, ଆ ଅଥବା ମ ହୋଇଥାଏ , ତେବେ ସେହି ଶବ୍ଦମାନଙ୍କରୁ ଉତ୍ତର ଅଛି-ଅର୍ଥରେ ବତ୍ ପ୍ରତ୍ୟୟ ହୁଏ । ଏତଦ୍‌ଭିନ୍ନ ଶବ୍ଦରୁ ଉତ୍ତର ଅଛି-ଅର୍ଥରେ ମତ୍ ପ୍ରତ୍ୟୟ ହୁଏ । ସମ୍ବୋଧନର ପ୍ରଥମା ଏକ-ବଚନରେ ବତ୍ ପ୍ରତ୍ୟୟାନ୍ତ ଶବ୍ଦର ବତ୍ ସ୍ଥାନରେ ବନ୍ ଏବଂ ମତ୍ ପ୍ରତ୍ୟୟାନ୍ତ ଶବ୍ଦର ମତ୍ ସ୍ଥାନରେ ମନ୍ ହୁଏ । ଏତଦ୍‌ଭିନ୍ନ ବିଭକ୍ତିରେ ବତ୍ ସ୍ଥାନରେ ବାନ୍ ଓ ମତ୍ ସ୍ଥାନରେ ମାନ୍ ହୁଏ । ଯଥା—ଧନ + ବତ୍ = ଧନବାନ୍, ଗୁଣ + ବତ୍ = ଗୁଣବାନ୍, ମୂଲ୍ୟ + ବତ୍ = ମୂଲ୍ୟବାନ୍, କ୍ଷମା + ବତ୍ = କ୍ଷମାବାନ୍, ଶ୍ରଦ୍ଧା + ବତ୍ = ଶ୍ରଦ୍ଧାବାନ୍, ବୁଦ୍ଧି + ମତ୍ = ବୁଦ୍ଧିମାନ୍, ଶ୍ରୀ + ମତ୍ = ଶ୍ରୀମାନ୍ । ଏହିପରି ଯୁକ୍ତିମାନ ମୂର୍ତ୍ତିମାନ୍, କୀର୍ତ୍ତିମାନ୍, ଭକ୍ତିମାନ୍, ଚକ୍ଷୁଷ୍ମାନ । ଲକ୍ଷ୍ମୀ + ବତ୍ = ଲକ୍ଷ୍ମୀବାନ୍ ।

ସକାରାନ୍ତ ଶବ୍ଦରୁ ଉତ୍ତର ଏବଂ କେତେକ ଆକାରାନ୍ତ ଶବ୍ଦରୁ ଉତ୍ତର ଅଛି-ଅର୍ଥରେ ବିନ୍-ପ୍ରତ୍ୟୟ ହୁଏ । ଯଥା—ଯଶସ୍ + ବିନ୍ = ଯଶସ୍ୱୀ, ତେଜସ୍ + ବିନ୍ ତେଜସ୍ୱୀ । ଏହିପରି ତପସ୍ୱୀ, ମନସ୍ୱୀ, ଓଜସ୍ୱୀ, ପୟସ୍ୱୀ, ମେଧା + ବିନ୍ = ମେଧାବୀ, ମାୟା + ବିନ୍ = ମାୟାବୀ ।

ଏକାଧିକ ସ୍ୱରବିଶିଷ୍ଟ ଅକାରାନ୍ତ ଶବ୍ଦରୁ ଉତ୍ତର ଏବଂ କେତେକ ଆକାରାନ୍ତ ଶବ୍ଦରୁ ଉତ୍ତର ଅଛି-ଅର୍ଥରେ ଇନ୍ ପ୍ରତ୍ୟୟ ହୁଏ । ସମ୍ବୋଧନ-ଭିନ୍ନ ବିଭକ୍ତିରେ ଇନ୍ ପ୍ରତ୍ୟୟାନ୍ତ ଶବ୍ଦର ନ୍ ର ଲୋପ ହୁଏ ଏବଂ ହ୍ରସ୍ୱ ଇ ଠାରେ ଦୀର୍ଘ ଈ ହୁଏ ।

ଯଥା—ଗୁଣ + ଇନ୍ = ଗୁଣୀ, ଦେହ + ଇନ୍ = ଦେହୀ, ଶରୀର + ଇନ୍ = ଶରୀରୀ, ଋଣ + ଇନ୍ = ଋଣୀ, ଫଣା + ଇନ୍ = ଫଣୀ, ଜ୍ଞାନ + ଇନ୍ = ଜ୍ଞାନୀ, ଧନ + ଇନ୍ = ଧନୀ, ସୁଖ + ଇନ୍ = ସୁଖୀ, ଦୁଃଖ + ଇନ୍ = ଦୁଃଖୀ, ବଳ + ଇନ୍ = ବଳୀ, ଗୃହ + ଇନ୍ = ଗୃହୀ, ମାୟା + ଇନ୍ = ମାୟୀ ।

ଓଡ଼ିଆ ଭାଷାରେ ବତ୍ ପ୍ରତ୍ୟୟ ବନ୍ତ ଆକାରରେ ଏବଂ ମତ୍ ପ୍ରତ୍ୟୟ ମନ୍ତ ଆକାରରେ ମଧ୍ୟ ଦେଖାଯାଏ । ଯଥା—ଲକ୍ଷ୍ମୀବନ୍ତ, ଭାଗ୍ୟବନ୍ତ, ଗୁଣବନ୍ତ, ଧନବନ୍ତ, ବୁଦ୍ଧିମନ୍ତ ।

ଅଛି ଅର୍ଥରେ କେତେଗୁଡ଼ିଏ ଶବ୍ଦରୁ ଉତ୍ତର ଲ, କେତେଗୁଡ଼ିଏ ଶବ୍ଦରୁ ଉତ୍ତର ଇଲ, ଏବଂ ଆଉ କେତେଗୁଡ଼ିଏ ଶବ୍ଦରୁ ଉତ୍ତର ଆଲୁ ପ୍ରତ୍ୟୟ ହୁଏ । ଯଥା —ଶ୍ରୀ + ଲ = ଶ୍ରୀଲ, ମାଂସ + ଲ = ମାଂସଲ, । ଶୀତ + ଲ = ଶୀତଲ, ଫେନ୍ + ଇଲ = ଫେନିଲ, ଜଟା + ଇଲ = ଜଟିଲ, ନିଦ୍ରା + ଆଲୁ = ନିଦ୍ରାଳୁ, ଦୟା + ଆଲୁ ଦୟାଳୁ । ମଧୁ ଶବ୍ଦରୁ ଅଛି—ଅର୍ଥରେ ର ପ୍ରତ୍ୟୟ କଲେ ମଧୁର ହୁଏ ।

କେତେଗୁଡ଼ିଏ ଶବ୍ଦରୁ ଉତ୍ତର ଅଛି—ଅର୍ଥରେ ଅ ପ୍ରତ୍ୟୟ ହୁଏ । ଏହି ପ୍ରତ୍ୟୟ ହେଲେ ଶବ୍ଦର ଆଦ୍ୟସ୍ୱରର ବୃଦ୍ଧି ହୁଏ । ଯଥା—ତପସ୍ + ଅ = ତାପସ ।

ପ୍ରଶସ୍ତ ଅର୍ଥରେ କେତେଗୁଡ଼ିଏ ଶବ୍ଦରୁ ଉତ୍ତର ବ, ଆଉ କେତେଗୁଡ଼ିଏ ଶବ୍ଦରୁ ଉତ୍ତର ଇନ୍ ପ୍ରତ୍ୟୟ ହୁଏ । ବ ପ୍ରତ୍ୟୟ ହେଲେ ଅର୍ଣ୍ଣସ୍ ଶବ୍ଦର ଅନ୍ତ୍ୟ ସ୍ୱର ଲୋପ ହୁଏ । ଯଥା—କେଶ + ବ = କେଶବ, ଅର୍ଣ୍ଣସ୍ + ବ = ଅର୍ଣ୍ଣବ; କେଶର + ଇନ୍ = କେଶରୀ । କର + ଇନ୍ = କରୀ ।

ଅଛି-ଅର୍ଥରେ, ପ୍ରଶସ୍ତ ଅର୍ଥରେ ଏବଂ ବାହୁଲ୍ୟ ଅର୍ଥରେ ମୂଳ ସଂସ୍କୃତ ଶବ୍ଦ ଓ ଅପଭ୍ରଷ୍ଟ ଶବ୍ଦରୁ ଉତ୍ତର ଉଆ ପ୍ରତ୍ୟୟ ହୁଏ । ଯଥା—ବଳ ଅଛି ଯାହାର ସେ ବଳୁଆ; ପ୍ରଶସ୍ତ ହାଡ଼ ଯାହାର ଅଛି ସେ ହାଡ଼ୁଆ ।

ବୃତ୍ତି ବା ବ୍ୟବସାୟ ଅର୍ଥରେ ଏବଂ ସ୍ୱଭାବ ଅର୍ଥରେ କେତେଗୁଡ଼ିଏ ଶବ୍ଦରୁ ଉତ୍ତର ଉଆ ପ୍ରତ୍ୟୟ ହୁଏ । ଯଥା—ନାଟ + ଉଆ = ନାଟୁଆ, ନାଟ ଯାହାର ବ୍ୟବସାୟ; ହଟ + ଉଆ = ହାଟୁଆ, ହାଟକୁ ଯାଇ ପଣ୍ୟ ଦ୍ରବ୍ୟ ବିକ୍ରୟ କରିବା ଯାହାର ବ୍ୟବସାୟ; ବାଣ + ଉଆ = ବାଣୁଆ, ବାଣ ମାରିବା ଯାହାର ବୃତ୍ତି; ଅଳସ + ଉଆ = ଅଳସୁଆ, ଅଳସ ହେବା ଯାହାର ସ୍ୱଭାବ; ଟାଣ + ଉଆ = ଟାଣୁଆ, ଟାଣ କରିବା ଯାହାର ସ୍ୱଭାବ; ମିଛ + ଉଆ = ମିଛୁଆ, ମିଛ କହିବା ଯାହାର ସ୍ୱଭାବ; ଖଚ + ଉଆ = ଖଚୁଆ, ଖଚ କହିବା ଯାହାର ସ୍ୱଭାବ; ମାଡ଼ + ଉଆ = ମାଡ଼ୁଆ, ମାଡ଼ ଖାଇବା ଯାହାର ସ୍ୱଭାବ; ଦାନ + ଉଆ + ଦାନୁଆ, ଦାନ ଦେବା ଯାହାର ସ୍ୱଭାବ ବା ବ୍ୟବସାୟ ।

ବୃତ୍ତି ବା ବ୍ୟବସାୟ ଅର୍ଥରେ କେତେଗୁଡ଼ିଏ ଶବ୍ଦରୁ ଉତ୍ତର ଇଆ ପ୍ରତ୍ୟୟ ହୁଏ । ଯଥା—ମୂଲ + ଇଆ = ମୂଲିଆ, ମୂଲ ଲଗିବା ଯାହାର ବୃତ୍ତି । ହଳ + ଇଆ = ହଳିଆ, ହଳଧରି ଯେ ଜୀବିକା ଉପାର୍ଜନ କରେ । ସେହିପରି ମଜୁରିଆ, ଶଗଡ଼ିଆ, ଘୁଷୁରିଆ, ଘୋଡ଼ିଆ, ଗୌଡ଼ିଆ, ଗୁଣିଆ, ପାଣିଆ, ଜାଲିଆ, କରତିଆ, ମାଟିଆ, ଗୁଡ଼ିଆ ।

ଭବାର୍ଥରେ ମଧ୍ୟ ଇଆ ପ୍ରତ୍ୟୟ ହୁଏ । ଯଥା—ନଈକୂଳ + ଇଆ = ନଈକୂଳିଆ, ବାଡ଼ + ଇଆ = ବାଡ଼ିଆ, ପାହାଡ଼ + ଇଆ = ପାହାଡ଼ିଆ, ବାଲେଶ୍ୱର + ଇଆ = ବାଲେଶ୍ୱରିଆ, କଟକ + ଇଆ = କଟକିଆ, କଲିକତା + ଇଆ = କଲିକତିଆ ।

ଅତଶୟ ଅର୍ଥରେ କେତେଗୁଡ଼ିଏ ଶବ୍ଦରୁ ଉତ୍ତର ଇଆ ପ୍ରତ୍ୟୟ ହୁଏ । ଯଥା—କପାଳ + ଇଆ = କପାଳିଆ, ତେଲ + ଇଆ = ତେଲିଆ, ଏହିପରି ଲୁଣିଆ, ମଧୁରିଆ, ବାଲିଆ, ଗୋଡ଼ିଆ, ପାଣିଆ, ମୂନିଆ, ମଳିଆ ।

ବର୍ଣ୍ଣ ବା ରଙ୍ଗ ଅର୍ଥରେ କେତେଗୁଡ଼ିଏ ଶବ୍ଦରୁ ଉତ୍ତର ଇଆ ପ୍ରତ୍ୟୟ ହୁଏ । ଯଥା—ନୀଳ + ଇଆ = ନୀଳିଆ, ହଳଦ + ଇଆ = ହଳଦିଆ, ମସୀ + ଇଆ = ମସିଆ । ସେହିପରି କଳାହାଣ୍ଡିଆ, ନାଲିଆ, କାଳିଆ, ମହୁଲିଆ, ବାଇଗଣିଆ, ବାଉଁଶପତରିଆ, ତେନ୍ତୁଳିଆ (ବସ୍ତ୍ର) ।

ସ୍ୱଭାବ ଅର୍ଥରେ କେତେଗୁଡ଼ିଏ ଶବ୍ଦରୁ ଉତ୍ତର ଇଆ ପ୍ରତ୍ୟୟ ହୁଏ । ଯଥା—ହଟ + ଇଆ = ହଟିଆ । ସେହିପରି ଖେଳିଆ, ନଡ଼ବଡ଼ିଆ ।

ଆକୃତ ଅର୍ଥରେ କେତେଗୁଡ଼ିଏ ଶବ୍ଦରୁ ଉତ୍ତର ଇଆ ପ୍ରତ୍ୟୟ ହୁଏ । ଯଥା—କରମଙ୍ଗା + ଇଆ = କରମଙ୍ଗିଆ, ମେଣ୍ଢାଶିଙ୍ଗ + ଇଆ = ମେଣ୍ଢାଶିଙ୍ଗିଆ । ସେହିପରି ବେଙ୍ଗପାଟିଆ, କଲରାପତରିଆ, କଲରାଫୁଲିଆ, ଶୁଆନାକିଆ । ବୃତ୍ତି ବା ବ୍ୟବସାୟ ଅର୍ଥରେ କେତେଗୁଡ଼ିଏ ଶବ୍ଦରୁ ଉତ୍ତରରୀ ପ୍ରତ୍ୟୟ ହୁଏ, ଆଉ କେତେଗୁଡ଼ିଏ ଶବ୍ଦରୁ ରି ପ୍ରତ୍ୟୟ ହୁଏ । ଯଥା—ପାନ + ରୀ = ପାନରୀ, ପାଟ + ରୀ = ପାଟରୀ, ଟିଣ + ରୀ = ଟିଣରୀ, ଖଡ଼ୁ + ରୀ = ଖଡ଼ୁରୀ, କାଚ + ରୀ = କାଚରୀ, ସୁନା + ରି = ସୁନାରି, କଂସା + ରି = କଂସାରି, ଶଙ୍ଖା + ରି = ଶଙ୍ଖାରି ।

ଅନାଦର ଅର୍ଥରେ କେତେଗୁଡ଼ିଏ ଶବ୍ଦରୁ ଉତ୍ତର ଆ ଓ ଇଆ ପ୍ରତ୍ୟୟ ହୁଏ । ଯଥା—ରାମ + ଆ = ରାମା, ଶ୍ୟାମ + ଆ = ଶ୍ୟାମା, ସାଧୁ + = ଆ = ସାଧୁଆ; ନାଥ + ଇଆ = ନାଥିଆ, ଭାଗବତ + ଇଆ = ଭାଗବତିଆ ।

ଭାବ ଅର୍ଥରେ ଶବ୍ଦରୁ ଉତ୍ତର ତା ଓ ତ୍ୱ ପ୍ରତ୍ୟୟ ହୁଏ । ତା ଓ ତ୍ୱ ପ୍ରତ୍ୟୟ ପରେ ଥିଲେ ଇନ୍ ଭାଗାନ୍ତ ଶବ୍ଦର ନ୍ ର ଲୋପ ହୁଏ । ଯଥା—ପ୍ରଭୁ + ତା =

ପ୍ରଭୁତା, ପ୍ରଭୁ + ତ୍ୱ = ପ୍ରଭୁତ୍ୱ, ଖାରୁ + ତା + ଖାରୁତା, ଖାରୁ + ତ୍ୱ = ଖାରୁତ୍ୱ, ମହତ୍ + ତ୍ୱ = ମହତ୍ତ୍ୱ, ନୀଚ + ତା = ନୀଚତା, ନୀଚ + ତ୍ୱ = ନୀଚତ୍ୱ, ସରଳ + ତା ସରଳତା, ସରଳ + ତ୍ୱ = ସରଳତ୍ୱ । ଚପଳ + ତା + ଚପଳତା, ଚପଳ + ତ୍ୱ = ଚପଳତ୍ୱ, ଚଞ୍ଚଳ + ତା = ଚଞ୍ଚଳତା, ମୂର୍ଖ + ତା = ମୂର୍ଖତା, ମୂର୍ଖ + ତ୍ୱ = ମୂର୍ଖତ୍ୱ, ଗୁରୁ + ତା = ଗୁରୁତା, ଗୁରୁ + ତ୍ୱ = ଗୁରୁତ୍ୱ, ସ୍ଥିର + ତା = ସ୍ଥିରତା, ସ୍ଥିର + ତ୍ୱ = ସ୍ଥିରତ୍ୱ, ସୁନ୍ଦର + ତ୍ୱ = ସୁନ୍ଦରତ୍ୱ, ଦୀର୍ଘ + ତା = ଦୀର୍ଘତା, ଦୀର୍ଘ + ତ୍ୱ = ଦୀର୍ଘତ୍ୱ, ଉଦାର + ତା = ଉଦାରତା, ବାଳକ + ତ୍ୱ = ବାଳକତ୍ୱ, ଗମ୍ଭୀର + ତା = ଗମ୍ଭୀରତା, ଗମ୍ଭୀର + ତ୍ୱ = ଗମ୍ଭୀରତ୍ୱ, କବି + ତା = କବିତା, କବି + ତ୍ୱ = କବିତ୍ୱ, ଦାତୃ + ତ୍ୱ = ଦାତୃତ୍ୱ, ନେତୃ + ତ୍ୱ = ନେତୃତ୍ୱ, କର୍ତ୍ତୃ + ତ୍ୱ = କର୍ତ୍ତୃତ୍ୱ; ବୁଦ୍ଧିମତ୍ + ତା = ବୁଦ୍ଧିମତ୍ତା, ଗୁଣବତ୍ + ତା = ଗୁଣବତ୍ତା, ଦୃଢ଼ + ତା = ଦୃଢ଼ତା, ମନ୍ତ୍ରୀ + ତ୍ୱ ମନ୍ତ୍ରିତ୍ୱ, ସ୍ଥାୟୀ + ତ୍ୱ = ସ୍ଥାୟିତ୍ୱ, ଉପଯୋଗୀ + ତା = ଉପଯୋଗିତା ।

ଭାବ ଅର୍ଥରେ ଶବ୍ଦରୁ ଉତ୍ତର ଯ ପ୍ରତ୍ୟୟ ହୁଏ । ଏହି ପ୍ରତ୍ୟୟ ହେଲେ ଶବ୍ଦର ଆଦ୍ୟସ୍ୱରର ବୃଦ୍ଧି ହୁଏ । ବୃଦ୍ଧ ଶବ୍ଦରୁ ଉତ୍ତର କ ଆଗମ ହୁଏ, ଏବଂ ମହାତ୍ମନ୍ ଓ ଦୁରାତ୍ମନ୍ ଶବ୍ଦରୁ ଅନ୍ତ୍ୟ ନ୍‌ର ଲୋପ ହୁଏ । ଯଥା—ଧୀର + ଯ = ଧୈର୍ଯ୍ୟ, ସ୍ଥିର + ଯ = ସ୍ଥୈର୍ଯ୍ୟ, ଚଞ୍ଚଳ + ଯ = ଚାଞ୍ଚଲ୍ୟ, ସୁଜନ + ଯ = ସୌଜନ୍ୟ, ସୁନ୍ଦର + ଯ = ସୌନ୍ଦର୍ଯ୍ୟ, ଚପଳ + ଯ = ଚାପଲ୍ୟ, ଅଳସ + ଯ = ଆଳସ୍ୟ, ଗମ୍ଭୀର + ଯ = ଗାମ୍ଭୀର୍ଯ୍ୟ, ଉଦାର + ଯ + ଔଦାର୍ଯ୍ୟ, ନିକଟ + ଯ = ନୈକଟ୍ୟ, ବାଲ + ଯ = ବାଲ୍ୟ, ତରୁଣ + ଯ + ତାରୁଣ୍ୟ, ବତ୍ସଳ + ଯ = ବାତ୍ସଲ୍ୟ, ବୃଦ୍ଧ + ଯ = ବାର୍ଦ୍ଧକ୍ୟ, ମହାତ୍ମନ୍ + ଯ = ମାହାତ୍ମ୍ୟ, ଦୁରାତ୍ମନ୍ + ଯ = ଦୌରାତ୍ମ୍ୟ, ସୁହୃଦ୍ ଶବ୍ଦରୁ ଯ ପ୍ରତ୍ୟୟ କଲେ ସୌହାର୍ଦ୍ଦ୍ୟ ଓ ସୌହୃଦ୍ୟ ।

ଭାବ ଅର୍ଥରେ ଶବ୍ଦରୁ ଉତ୍ତର ଅ ପ୍ରତ୍ୟୟ ହୁଏ । ଏହି ପ୍ରତ୍ୟୟ ହେଲେ ଶବ୍ଦର ଆଦ୍ୟ ସ୍ୱରର ବୃଦ୍ଧି ହୁଏ । ଯଥା—ଗୁରୁ + ଅ = ଗୌରବ, ଚପଳ + ଅ = ଚାପଳ, ଅଳସ + ଅ = ଆଳସ, ଲଘୁ + ଅ = ଲାଘବ, କୁଶଳ + ଅ = କୌଶଳ, ପୁରୁଷ + ଅ = ପୌରୁଷ, ଯୁବନ୍ + ଅ = ଯୌବନ । ସୁହୃଦ୍ ଶବ୍ଦରୁ ଭାବ ଅର୍ଥରେ ଅ ପ୍ରତ୍ୟୟ ହେଲେ ସୌହାର୍ଦ୍ଦ ହୁଏ ।

ଭାବ ଅଥବା ଗୁଣୀର ଗୁଣ ଓ ଧର୍ମୀର ଧର୍ମ, ଏହି ଅର୍ଥରେ ଶବ୍ଦରୁ ଉତ୍ତର ଇମନ୍ ପ୍ରତ୍ୟୟ ହୁଏ । ଇମନ୍ ପ୍ରତ୍ୟୟ ହେଲେ ଶବ୍ଦର ଅନ୍ତ୍ୟ ଅ କାରର ଲୋପ ହୁଏ, ସମ୍ବୋଧନର ଏକବଚନ-ଭିନ୍ନ ବିଭକ୍ତିରେ ଇମନ୍ ପ୍ରତ୍ୟୟାନ୍ତ ଶବ୍ଦର ଅନ୍ତ୍ୟ ନ୍‌ର ଲୋପ ହୁଏ, ଏବଂ ମ ର ଅକାର ସ୍ଥାନରେ ଆକାର ହୁଏ । ଯଥା—ରକ୍ତ + ଇମନ୍ ରକ୍ତିମା, ନୀଳ + ଇମନ୍ = ନୀଳିମା, ଅରୁଣ = ଇମନ୍ = ଅରୁଣିମା, କାଳ

(କୃଷ୍ଣ ଅର୍ଥରେ) + ଇମନ୍ = କାଳିମା, ଲଘୁ + ଇମନ୍ = ଲଘିମା, ବଡ଼ + ଇମନ୍ = ବଡ଼ିମା । ଗୁରୁ ଶବ୍ଦରୁ ଇମନ୍ ପ୍ରତ୍ୟୟ କଲେ ଗରିମା, ଏବଂ ଦୀର୍ଘ ଶବ୍ଦରୁ ଇମନ୍ ପ୍ରତ୍ୟୟ କଲେ ଦ୍ରାଘିମା ହୁଏ ।

ଭାବ ଅର୍ଥରେ ମୂଳ ସଂସ୍କୃତ ଏବଂ ଅପଭ୍ରଷ୍ଟ ଶବ୍ଦରୁ ଉତ୍ତର ପଣିଆ ଓ ପଣ ପ୍ରତ୍ୟୟ ହୁଏ । ଯଥା—ବଡ଼ + ପଣିଆ = ବଡ଼ପଣିଆ, ପାଗଳ + ପଣିଆ = ପାଗଳ-ପଣିଆ, ସାଧୁ + ପଣିଆ = ସାଧୁପଣିଆ, ଦୁଷ୍ଟ + ପଣିଆ = ଦୁଷ୍ଟପଣିଆ, ପୁରୁଷ + ପଣିଆ = ପୁରୁଷପଣିଆ, ବ୍ରାହ୍ମଣ + ପଣିଆ = ବ୍ରାହ୍ମଣପଣିଅ., ମନୁଷ୍ୟ + ପଣିଆ = ମନୁଷ୍ୟପଣିଆ, ଗାଈ + ପଣିଆ = ଗାଈପଣିଆ; ଦାତା + ପଣ = ଦାତାପଣ, ବୀର + ପଣ = ବୀରପଣ ।

ଭାବ ଅର୍ଥରେ ସଂସ୍କୃତ ଓ ଅନ୍ୟ ଭାଷାରୁ ଆଗତ କେତେକ ଅ କାରାନ୍ତ ହଳନ୍ତ ଶବ୍ଦରୁ ଉତ୍ତର ଇ, ଏବଂ ଆଉ କେତେଗୁଡ଼ିଏ ଶବ୍ଦରୁ ଉତ୍ତର ଆଇ ପ୍ରତ୍ୟୟ ହୁଏ । ଯଥା—ମହାଜନ + ଇ = ମହାଜନି, ପୁରୋହିତ + ଇ = ପୁରୋହିତି । ଭଲଲୋକ + ଇ = ଭଲଲୋକି, ବଡ଼ଲୋକ + ଇ = ବଡ଼ଲୋକି, ସଉଦାଗର + ଇ = ସଉଦାଗରି; ବଡ଼ + ଆଇ = ବଡ଼ାଇ, ସାଆଁନ୍ତ + ଆଇ = ସାଆଁନ୍ତାଇ, ମହନ୍ତ + ଆଇ = ମହନ୍ତାଇ । ବେକାର୍ + ଇ = ବେକାରି; ବେ ଇମାନ୍ + ଇ = ବେଇମାନି ।

ବିକାର, ବ୍ୟାପ୍ତି, ବାହୁଲ୍ୟ ଓ ସ୍ୱରୂପ ଅର୍ଥରେ ଶବ୍ଦରୁ ଉତ୍ତର ମୟ ପ୍ରତ୍ୟୟ ହୁଏ । ଯଥା—ବିକାର ଅର୍ଥରେ—ପାଷାଣ + ମୟ = ପାଷାଣମୟ, ଦାରୁ + ମୟ = ଦାରୁମୟ, ମୃତ୍ + ମୟ + ମୃଣ୍ମୟ, ସ୍ୱର୍ଣ୍ଣ + ମୟ = ସ୍ୱର୍ଣ୍ଣମୟ; ବ୍ୟାପ୍ତି ଅର୍ଥରେ—ବାଲୁକା + ମୟ = ବାଲୁକାମୟ, ସିକତା + ମୟ = ସିକତାମୟ (ସିକତାମୟ ପ୍ରଦେଶ ବା ମରୁଭୂମି), ଜଳ + ମୟ = ଜଳମୟ, ଅଗ୍ନି + ମୟ = ଅଗ୍ନିମୟ, ବାହୁଲ୍ୟାର୍ଥରେ—ମତ୍ସ୍ୟ + ମୟ = ମତ୍ସ୍ୟମୟ (ଜଳାଶୟ), ପୁଷ୍ପ + ମୟ = ପୁଷ୍ପମୟ (ଉଦ୍ୟାନ), କଣ୍ଟକ + ମୟ = କଣ୍ଟକମୟ, କର୍ଦ୍ଦମ + ମୟ - କର୍ଦ୍ଦମମୟ । 'ଅନନ୍ତର ଗଙ୍ଗାପ୍ରବାହ ମଧ୍ୟବର୍ତ୍ତୀ ଉପଦ୍ୱୀପରେ ଜୟସ୍ତମ୍ଭ ସଂସ୍ଥାପନ ପୂର୍ବକ ସୈନ୍ୟ-ସାମନ୍ତ—ସମଭିବ୍ୟାହାରରେ ଗଜମୟ ସେତୁ ଦ୍ୱାରା କପିଶା ନଦୀ ପାର ହୋଇ ଉତ୍କଳ ଦେଶରେ ଉପନୀତ ହେଲେ ।'—ଏଠାରେ ଗଜ + (ସ୍ୱରୂପାର୍ଥରେ) ମୟ = ଗଜମୟ । ଗୋ ଶବ୍ଦରୁ ପୁରୀଷାର୍ଥରେ ମୟ ପ୍ରତ୍ୟୟ ହେଲେ ଗୋମୟ ହୁଏ ।

ସଞ୍ଜାତ ଅର୍ଥରେ ପୁଷ୍ପ ପ୍ରଭୃତି କେତେକ ଶବ୍ଦରୁ ଉତ୍ତର ଇତ ପ୍ରତ୍ୟୟ ହୁଏ । ଯଥା—ପୁଷ୍ପ + ଇତ = ପୁଷ୍ପିତ, ଯହିଁରେ ପୁଷ୍ପ ଜନ୍ମିଅଛି । ତାରକା + ଇତ = ତାରକିତ, ଯହିଁରେ ତାରକାଗୁଡ଼ିଏ ଫୁଟି ଦିଶିଲାଣି; ରୋମାଞ୍ଚ + ଇତ = ରୋମାଞ୍ଚିତ, ଯହିଁରେ ରୋମାଞ୍ଚ ହେଲାଣି; ମୁଖର + ଇତ = ମୁଖରିତ, ଯାହା ବା ଯେ ମୁଖର

ହେଲଣି; ଉତ୍କଣ୍ଠା + ଇତ = ଉତ୍କଣ୍ଠିତ, ଯାହାର ଉତ୍କଣ୍ଠା ଜନ୍ମିଅଛି, ପଲ୍ଲବ + ଇତ = ପଲ୍ଲବିତ, ଯହିଁରେ ପଲ୍ଲବ ଜନ୍ମିଛି ।

ସ୍ୱାର୍ଥରେ ଶବ୍ଦରୁ ଉତ୍ତର ଅ, ଯ, କ ଓ ତା ପ୍ରତ୍ୟୟ ହୁଏ । ଅ ଓ ଯ ପ୍ରତ୍ୟୟ ହେଲେ ଶବ୍ଦର ଆଦ୍ୟ ସ୍ୱରର ବୃଦ୍ଧି ହୁଏ । ଯଥା—ଗୌର + ଅ = ଗୌର, ମନସ୍ + ଅ = ମାନସ, ବନ୍ଧୁ + ଅ = ବାନ୍ଧବ; ଧନ + ଯ = ଧାନ୍ୟ, ସୁର + ଯ = ସୂର୍ଯ୍ୟ, ବାଲ + କ = ବାଲକ, କୁମାରୀ + କା = କୁମାରିକା, ତାରା + କା = ତାରକା, ଦେବ + ତା = ଦେବତା ।

ଏକ ସଂଖ୍ୟା ବୁଝାଇଲେ କେତେଗୁଡ଼ିଏ ଶବ୍ଦରୁ ଉତ୍ତର 'କ' ପ୍ରତ୍ୟୟ ହୁଏ । ଯଥା—ଜଣ + କ = ଜଣକ, ମାଣ + କ = ମାଣକ । ସେହିପରି କୋଶକ, ପଣକ, ଗଣ୍ଡାକ, ବୋଢ଼କ, ଟଙ୍କାକ, ମହଣକ ।

କେତେଗୁଡ଼ିଏ ଶବ୍ଦରୁ ଉତ୍ତର ସମୂହ ଅର୍ଥରେ ତା ପ୍ରତ୍ୟୟ ହୁଏ । ଯଥା—ଜନ + ତା = ଜନତା, ବହୁ ଲୋକର ସମାଗମ ।

ଅଳ୍ପ ବା କ୍ଷୁଦ୍ର ଅର୍ଥରେ କେତେଗୁଡ଼ିଏ ଶବ୍ଦରୁ ଉତ୍ତର କ ପ୍ରତ୍ୟୟ ହୁଏ ଏବଂ ଆଉ କେତେଗୁଡ଼ିଏ ଶବ୍ଦରୁ ଉତ୍ତର ଈ ପ୍ରତ୍ୟୟ ହୁଏ । ଯଥା—ବୃକ୍ଷ + କ = ବୃକ୍ଷକ, (କ୍ଷୁଦ୍ର ବୃକ୍ଷ); ନଗର + ଈ = ନଗରୀ, କ୍ଷୁଦ୍ର ନଗର । ସେହିପରି ନଦୀ, ସରସୀ, ଗୁଳୀ କାଠୀ, ଡୋରୀ, ପାଣୀ ।

ଦୁଇ ମଧ୍ୟରେ ଗୋଟିକର ଆଧିକ୍ୟ ବୁଝାଇଲେ ଗୁଣବାଚକ ଶବ୍ଦରୁ ଉତ୍ତର ତର ଏବଂ ଅନେକ ମଧ୍ୟରେ ଗୋଟିକର ଆଧିକ୍ୟ ବୁଝାଇଲେ ତମ ପ୍ରତ୍ୟୟ ହୁଏ । ଯଥା—କ୍ଷୁଦ୍ର + ତର = କ୍ଷୁଦ୍ରତର, ମହତ୍ + ତର = ମହତ୍ତର; ବୃହତ୍ + ତର = ବୃହତ୍ତର, ଗୁରୁ + ତର = ଗୁରୁତର, ଘୋର + ତର = ଘୋରତର; କ୍ଷୁଦ୍ର + ତମ = କ୍ଷୁଦ୍ରତମ, ଗଭୀର + ତମ = ଗଭୀରତମ, ଦୀର୍ଘ + ତମ = ଦୀର୍ଘତମ ।

ଅତିଶୟ ଅର୍ଥରେ ଗୁଣବାଚକ ଶବ୍ଦରୁ ଉତ୍ତର ଇୟସ୍ ଓ ଇଷ୍ଠ ପ୍ରତ୍ୟୟ ହୁଏ । ସମ୍ବୋଧନ ଏକବଚନ-ଭିନ୍ନ ବିଭକ୍ତିରେ ଈୟସ୍ ପ୍ରତ୍ୟୟାନ୍ତ ଶବ୍ଦର ଅନ୍ତ୍ୟ ଅସ୍ ଠାରେ ଆନ୍ ହୁଏ, ଈୟସ୍ ଓ ଇଷ୍ଠ ପ୍ରତ୍ୟୟ ପରେ ଥିଲେ ଇନ୍ ପ୍ରତ୍ୟୟାନ୍ତ ଶବ୍ଦର ଇନ୍‌ରନ୍ ଲୋପ ହୁଏ । ଏହି ଦୁଇ ପ୍ରତ୍ୟୟ ପରେ ଥିଲେ ଗୁରୁ ସ୍ଥାନରେ ଗର୍ ଆଦେଶ ହୁଏ, ଲଘୁ ଶବ୍ଦର ଅନ୍ତ୍ୟ ଉ ଓ ମହତ୍ ଶବ୍ଦର ଅନ୍ତ୍ୟ ତ୍ ର ଲୋପ ହୁଏ, ଅଳ୍ପ ଶବ୍ଦ ସ୍ଥାନରେ ବିକଳ୍ପେ କନ୍ ଆଦେଶ ହୁଏ । ଯଥା—ଘନ + ଇଷ୍ଠ = ଘନିଷ୍ଠ, ବଳ + ଇଷ୍ଠ = ବଳିଷ୍ଠ, ଅଳ୍ପ + ଈୟସ୍ = ଅଳ୍ପୀୟାନ୍ ଓ କନୀୟାନ୍; ଅଳ୍ପ + ଇଷ୍ଠ = ଅଳ୍ପିଷ୍ଠ ଓ କନିଷ୍ଠ; ଗୁରୁ + ଇୟସ୍ = ଗରୀୟାନ୍, ଗୁରୁ + ଇଷ୍ଠ = ଗରିଷ୍ଠ, ଲଘୁ + ଈୟସ୍ =

ଲଘୀୟାନ୍, ଲଘୁ + ଇଷ୍ଠ = ଲଘିଷ୍ଠ, ମହତ୍ + ଈୟସ୍ = ମହୀୟାନ୍ । ପ୍ରଶସ୍ୟ ଶବ୍ଦରୁ ଇଷ୍ଠ ପ୍ରତ୍ୟୟ କଲେ ଶ୍ରେଷ୍ଠ, ବୃଦ୍ଧ ଶବ୍ଦରୁ ଈୟସ୍ ପ୍ରତ୍ୟୟ କଲେ ଜ୍ୟାୟାନ୍ ଓ ବର୍ଷୀୟାନ୍; ଇଷ୍ଠ ପ୍ରତ୍ୟୟ କଲେ ଜ୍ୟେଷ୍ଠ ହୁଏ ।

ପ୍ରକାର ଅର୍ଥରେ କେତେଗୁଡ଼ିଏ ସର୍ବନାମ ଶବ୍ଦରୁ ଉତ୍ତର ଥା ପ୍ରତ୍ୟୟ ହୁଏ । ଥା ପ୍ରତ୍ୟୟ ହେଲେ ଶବ୍ଦର ଅନ୍ତ୍ୟ ବ୍ୟଞ୍ଜନବର୍ଣ୍ଣର ଲୋପ ହୁଏ । ଯଥା— ସର୍ବ + ଥା = ସର୍ବଥା, ଅନ୍ୟ + ଥା = ଅନ୍ୟଥା, ଯଦ୍ + ଥା = ଯଥା, ତଦ୍ + ଥା = ତଥା ।

ପ୍ରକାର ଅର୍ଥରେ କେତେଗୁଡ଼ିଏ ସଂଖ୍ୟାବାଚକ ଶବ୍ଦରୁ ଉତ୍ତର ଧା ପ୍ରତ୍ୟୟ ହୁଏ । ଯଥା—ଦ୍ୱି + ଧା = ଦ୍ୱିଧା, ତ୍ରି + ଧା = ତ୍ରିଧା । ସେହିପରି ଚତୁର୍ଦ୍ଧା, ପଞ୍ଚଧା, ଶତଧା, ସହସ୍ରଧା, ବହୁଧା, ଅନେକଧା ।

କାଳାଧିକରଣ ଅର୍ଥରେ କେତେଗୁଡ଼ିଏ ସର୍ବନାମ ଶବ୍ଦରୁ, ଏବଂ ଏକ ଶବ୍ଦରୁ ଉତ୍ତର ଦା ପ୍ରତ୍ୟୟ ହୁଏ । ଦା ପ୍ରତ୍ୟୟ ହେଲେ ଶବ୍ଦର ଅନ୍ତ୍ୟ ବ୍ୟଞ୍ଜନ ବର୍ଣ୍ଣର ଲୋପ ହୁଏ, କିମ୍ ଶବ୍ଦର ଇକାର ସ୍ଥାନରେ ଅକାର ହୁଏ, ଏବଂ ସର୍ବ ଶବ୍ଦର "ର୍ବ" ବିକଳ୍ପରେ ଲୋପ ହୁଏ । ଯଥା—ଯଦ୍ + ଦା = ଯଦା, ତଦ୍ + ଦା = ତଦା, କିମ୍ + ଦା = କଦା, ଅନ୍ୟ + ଦା = ଅନ୍ୟଦା, ସର୍ବ + ଦା = ସର୍ବଦା, ସଦା; ଏକ + ଦା = ଏକଦା । କାଳାଧିକରଣ ଅର୍ଥରେ ଅସ୍ମଦ୍, ଯୁଷ୍ମଦ୍, ସର୍ବ, ଅନ୍ୟ ଭିନ୍ନ ସର୍ବନାମ ପଦରୁ ଉତ୍ତର ବେ ପ୍ରତ୍ୟୟ ହୁଏ । ବେ ପ୍ରତ୍ୟୟ ହେଲେ ସର୍ବ-ନାମର ଆଦ୍ୟ ଅକାର ସ୍ଥାନରେ ଏକାର ହୁଏ ଅଥବା ଆଦ୍ୟ ବ୍ୟଞ୍ଜନ ବର୍ଣ୍ଣରେ ଯୁକ୍ତ ଅନ୍ୟ ସ୍ୱରବର୍ଣ୍ଣଠାରେ ଏକାର ହୁଏ, ଏବଂ ପରବର୍ତ୍ତୀ ବର୍ଣ୍ଣମାନଙ୍କର ଲୋପ ହୁଏ । ଯଥା ଯଦ୍ ଶବ୍ଦରୁ ଯେବେ, କିମ୍ ଶବ୍ଦରୁ କେବେ, ଇଦମ୍ ବା ଅଦସ୍ ଶବ୍ଦରୁ ଏବେ ।

ସ୍ଥାନାଧିକରଣ ଅର୍ଥରେ ଅସ୍ମଦ୍, ଯୁଷ୍ମଦ୍, ଏତଦ୍ ଭିନ୍ନ ସର୍ବନାମ ଶବ୍ଦରୁ ଉତ୍ତର ଏବଂ ଏକ ଶବ୍ଦରୁ ଉତ୍ତର ତ୍ର ପ୍ରତ୍ୟୟ ହୁଏ । ତ୍ର ପ୍ରତ୍ୟୟ ହେଲେ ଯଦ୍ ସ୍ଥାନରେ ଯ, ତଦ୍ ସ୍ଥାନରେ ତ, ଇଦମ୍ ସ୍ଥାନରେ ଅ, ଅଦସ୍ ସ୍ଥାନରେ ଅମୁ, କିମ୍ ସ୍ଥାନରେ କୁ ଆଦେଶ ହୁଏ । ଯଥା—ଯଦ୍ + ତ୍ର = ଯତ୍ର, ତଦ୍ + ତ୍ର = ତତ୍ର ଇଦମ୍ + ତ୍ର = ଅତ୍ର, ଅଦସ୍ + ତ୍ର = ଅମୁତ୍ର, କିମ୍ + ତ୍ର = କୁତ୍ର, ଅନ୍ୟ + ତ୍ର = ଅନ୍ୟତ୍ର, ସର୍ବ + ତ୍ର = ସର୍ବତ୍ର, ପର + ତ୍ର = ପରତ୍ର, ଏକ + ତ୍ର = ଏକତ୍ର ।

ଓଡ଼ିଆ ଭାଷାରେ ପଞ୍ଚମୀ ଓ ସପ୍ତମୀ ବିଭକ୍ତି ସ୍ଥାନରେ ବିଶେଷ୍ୟ ଶବ୍ଦରୁ ଉତ୍ତର ଏବଂ ବିଶେଷ୍ୟ ରୂପେ ବ୍ୟବହୃତ ବିଶେଷଣ ଶବ୍ଦରୁ ଉତ୍ତର ଏବଂ ଅସ୍ମଦ୍, ଯୁଷ୍ମଦ୍, ଏତଦ୍, ଭିନ୍ନ ସର୍ବନାମ ଶବ୍ଦରୁ ଉତ୍ତର ତସ୍ ପ୍ରତ୍ୟୟ ହୁଏ । ତସ୍ ପ୍ରତ୍ୟୟ ହେଲେ ଯଦ୍ ସ୍ଥାନରେ ଯ, ତଦ୍ ସ୍ଥାନରେ ତ, ଇଦମ୍ ସ୍ଥାନରେ ଇ, ଅଦସ୍ ସ୍ଥାନରେ

ଅ, କମ୍ ସ୍ଥାନରେ କୁ ଆଦେଶ ହୁଏ । ଯଥା—ଫଳ + ତସ୍ = ଫଳତଃ, ଫଳରେ; କାର୍ଯ୍ୟ + ତସ୍ = କାର୍ଯ୍ୟତଃ, କାର୍ଯ୍ୟରେ; ସ୍ଥୂଳ + ତସ୍ = ସ୍ଥୂଳତଃ, ସ୍ଥୂଳରେ; ଇଦମ୍ + ତସ୍ = ଇତଃ, ଏଠାରେ, ଏଣେ; ଅଦସ୍ + ତସ୍ = ଅତଃ, ତଦ୍ + ତସ୍ = ତତଃ, ସେଠାରେ, ତେଣେ ।

ଈଷତ୍ ନ୍ୟୂନ, ଅଥବା, ପ୍ରାୟ ତୁଲ୍ୟ ଅର୍ଥରେ ଶବ୍ଦରୁ ଉତ୍ତର କଳ୍ପ ପ୍ରତ୍ୟୟ ହୁଏ । ଯଥା—ପିତୃ + କଳ୍ପ = ପିତୃକଳ୍ପ, ଦେବ + କଳ୍ପ = ଦେବକଳ୍ପ, କବି + କଳ୍ପ = କବିକଳ୍ପ, ପୁତ୍ର + କଳ୍ପ = ପୁତ୍ରକଳ୍ପ ।

ସଦୃଶ ବା ତୁଲ୍ୟ ଅର୍ଥରେ ଶବ୍ଦରୁ ଉତ୍ତର ବତ୍ ପ୍ରତ୍ୟୟ ହୁଏ । ଯଥା—ଚନ୍ଦ୍ର + ବତ୍ = ଚନ୍ଦ୍ରବତ୍, ଜଡ଼ + ବତ୍ = ଜଡ଼ବତ୍ ।

ପୂରଣ ଅର୍ଥରେ ସଂଖ୍ୟାବାଚକ ଦ୍ୱି ଓ ତ୍ରି ଶବ୍ଦରୁ ଉତ୍ତର ତୀୟ, ଚତୁର୍ ଓ ଷଷ୍ ଶବ୍ଦରୁ ଉତ୍ତର ଥ, ପଞ୍ଚନ୍ ପ୍ରଭୃତି କେତେଗୁଡ଼ିଏ ନ୍ କାରାନ୍ତ ଶବ୍ଦରୁ ଉତ୍ତର ମ ପ୍ରତ୍ୟୟ ହୁଏ । ତୀୟ ପ୍ରତ୍ୟୟ ହେଲେ ତ୍ରି ସ୍ଥାନରେ ତୃ ଆଦେଶ ହୁଏ । ଏବଂ ମ ପ୍ରତ୍ୟୟ ହେଲେ ଶବ୍ଦର ଅନ୍ତ୍ୟ ନ୍ ର ଲୋପ ହୁଏ । ଯଥା ଦ୍ୱି + ତୀୟ = ଦ୍ୱିତୀୟ, ତ୍ରି + ତୀୟ = ତୃତୀୟ, ଚତୁର୍ + ଥ = ଚତୁର୍ଥ, ଷଷ୍ + ଥ = ଷଷ୍ଠ, ପଞ୍ଚନ୍ + ମ = ପଞ୍ଚମ, ସପ୍ତନ୍ + ମ = ସପ୍ତମ, ଦଶନ୍ + ମ = ଦଶମ ।

ଏକାଦଶନ୍ ପ୍ରଭୃତି ସଂଖ୍ୟାବାଚକ ନ୍ କାରାନ୍ତ ଶବ୍ଦରୁ ଉତ୍ତର ଅ ପ୍ରତ୍ୟୟ ହୁଏ । ଅ ପ୍ରତ୍ୟୟ ହେଲେ, ଅନ୍ତ୍ୟ ନ୍ ର ଲୋପ ହୁଏ । ଯଥା—ଏକାଦଶନ୍ + ଅ = ଏକାଦଶ, ପଞ୍ଚଦଶନ୍ + ଅ = ପଞ୍ଚଦଶ, ଅଷ୍ଟାଦଶନ୍ + ଅ = ଅଷ୍ଟାଦଶ ।

ଉପରଲିଖିତ ପ୍ରତ୍ୟୟମାନଙ୍କୁ ଛାଡ଼ି ଆହୁରି କେତେଗୁଡ଼ିଏ ପ୍ରତ୍ୟୟ ଭିନ୍ନ ଭିନ୍ନ ଅର୍ଥରେ ହୋଇଥାଏ । ଯଥା—ବୀପ୍ସା ଅର୍ଥରେ—କ୍ରମେ କ୍ରମେ—କ୍ରମଶଃ, ଅନିଶ୍ଚୟ ଅର୍ଥରେ—କମ୍ + ଚିତ୍ = କଞ୍ଚିତ୍, କଦା + ଚିତ୍ = କଦାଚିତ୍, ପରିଣତି ଅର୍ଥରେ—ଧୂଳି + ସାତ୍ = ଧୂଳିସାତ୍, ଭୂମିରେ ପତିତ ବା ଲୀନ = ଭୂମିସାତ୍; ବିପ୍ରଙ୍କୁ ଦେୟ ବା ଦତ୍ତ = ବିପ୍ରସାତ୍, ବାହୁଲ୍ୟ ବା ସମୁଚ୍ଚୟ ଅର୍ଥରେ- ବନ + ଯ = ବନ୍ୟା, ବାତ + ଯ = ବାତ୍ୟା; ଅସହାୟ ଅର୍ଥରେ—ଏକ + ଆକିନ୍ = ଏକାକୀ; ସମୂହ ଅର୍ଥରେ—କର୍ମ + କାଣ୍ଡ = କର୍ମକାଣ୍ଡ; ବର୍ଣ୍ଣ ଅର୍ଥରେ—ଶାଗ + ଉଆ = ଶାଗୁଆ, ଗେରୁ + ଉଆ = ଗେରୁଆ; ବାହୁଲ୍ୟ ଅର୍ଥରେ—ମେଘ + ଉଆ = ମେଘୁଆ ।

## ୨୪—ସ୍ତ୍ରୀ ପ୍ରତ୍ୟୟ

ଭବ, ରୁଦ୍ର, ବ୍ରହ୍ମନ୍ ପ୍ରଭୃତି କେତେଗୁଡ଼ିଏ ଶବ୍ଦରୁ ଉତ୍ତର ସ୍ତ୍ରୀ ଲିଙ୍ଗରେ ଆନୀ ପ୍ରତ୍ୟୟ ହୁଏ । ଆନୀ ପ୍ରତ୍ୟୟ ହେଲେ ବ୍ରହ୍ମନ୍ ଶବ୍ଦର ଅନ୍ତ୍ୟ ନ୍ କାରର ଲୋପ

ହୁଏ । ଆନୀ ପ୍ରତ୍ୟୟର ନ ଠାରେ ସ୍ଥଳ ବିଶେଷରେ ଣ ହୁଏ । ଯଥା—ଭବ + ଆନୀ = ଭବାନୀ, ରୁଦ୍ର + ଆନୀ = ରୁଦ୍ରାଣୀ, ବ୍ରହ୍ମନ୍ + ଆନୀ = ବ୍ରହ୍ମାଣୀ, ସର୍ବ + ଆନୀ ସର୍ବାଣୀ, ଇନ୍ଦ୍ର + ଆନୀ = ଇନ୍ଦ୍ରାଣୀ, ଶୂଦ୍ର + ଆନୀ = ଶୂଦ୍ରାଣୀ ।

ସମ୍ବନ୍ଧାର୍ଥରେ ଈୟ ପ୍ରତ୍ୟୟାନ୍ତ ଶବ୍ଦରୁ ଉତ୍ତର ସ୍ତ୍ରୀ ଲିଙ୍ଗରେ ଆ ପ୍ରତ୍ୟୟ ହୁଏ । ତଦ୍‌ଭିନ୍ନ ଆଉ କେତେଗୁଡ଼ିଏ ଅ କାରାନ୍ତ ଶବ୍ଦରୁ ଉତ୍ତର ମଧ୍ୟ ସ୍ତ୍ରୀଲିଙ୍ଗରେ ଆ ପ୍ରତ୍ୟୟ ହୁଏ । ଯଥା—ଶାରଦୀୟ + ଆ = ଶାରଦୀୟା, ମଦୀୟ + ଆ = ମଦୀୟା; ଚଞ୍ଚଳ + ଆ = ଚଞ୍ଚଳା, ଦୁର୍ବଳ + ଆ = ଦୁର୍ବଳା, ଦୁଷ୍ଟ + ଆ = ଦୁଷ୍ଟା, ପୂଜ୍ୟ + ଆ = ପୂଜ୍ୟା ।

ଅକ ପ୍ରତ୍ୟୟାନ୍ତ ଶବ୍ଦରୁ ଉତ୍ତର ସ୍ତ୍ରୀଲିଙ୍ଗରେ ଆ ପ୍ରତ୍ୟୟ ହୁଏ । ଆ ପ୍ରତ୍ୟୟ ହେଲେ ଅକ ସ୍ଥାନରେ ଇକ ଆଦେଶ ହୁଏ । ଯଥା—ନାୟକ + ଆ = ନାୟିକା, ପାଚକ + ଆ = ପାଚିକା, ସମାପକ + ଆ = ସମାପିକା, ନାଟକ + ଆ = ନାଟିକା । ସେବକ + ଆ = ସେବିକା । ସାଧକ + ଆ = ସାଧିକା, ମାତ୍ର ନର୍ତ୍ତକ + ଈ = ନର୍ତ୍ତକୀ, ରଜକ + ଈ = ରଜକୀ । ଶିକ୍ଷକ + ଆ = ଶିକ୍ଷିକା ବା ଶିକ୍ଷକା ।

କେତେଗୁଡ଼ିଏ ଜାତିବାଚକ ଅକାରାନ୍ତ ଶବ୍ଦରୁ ଉତ୍ତର ସ୍ତ୍ରୀ ଲିଙ୍ଗରେ ଈ ପ୍ରତ୍ୟୟ ହୁଏ, କେତେଗୁଡ଼ିଏ ଶବ୍ଦରୁ ଉତ୍ତର ମଧ୍ୟ ଆ ପ୍ରତ୍ୟୟ ହୁଏ । ଯଥ—ବ୍ରାହ୍ମଣ + ଈ = ବ୍ରାହ୍ମଣୀ, ମୃଗ + ଈ = ମୃଗୀ, ଛାଗ + ଈ = ଛାଗୀ, କୁକ୍‌କୁର + ଈ = କୁକ୍‌କୁରୀ, ମୟୂର + ଈ = ମୟୂରୀ, ହଂସ + ଈ = ହଂସୀ, ଦେବ + ଈ = ଦେବୀ, ରାକ୍ଷସ + ଈ = ରାକ୍ଷସୀ, କପୋତ + ଈ = କପୋତୀ, ଦ୍ୱିଜ + ଆ = ଦ୍ୱିଜା, କ୍ଷତ୍ରିୟ + ଆ = କ୍ଷତ୍ରିଆ, ବୈଶ୍ୟ + ଆ = ବୈଶ୍ୟା, ଶୂଦ୍ର + ଆ = ଶୂଦ୍ରା ।

ମୟ ପ୍ରତ୍ୟୟାନ୍ତ, ବତ୍ ପ୍ରତ୍ୟୟାନ୍ତ, ମତ୍ ପ୍ରତ୍ୟୟାନ୍ତ, ଇନ୍ ପ୍ରତ୍ୟୟାନ୍ତ, ବିନ୍ ପ୍ରତ୍ୟୟାନ୍ତ ଓ କେତେଗୁଡ଼ିଏ ଅତ୍ ପ୍ରତ୍ୟୟାନ୍ତ ଶବ୍ଦରୁ ଉତ୍ତର, ଏବଂ ଯେଉଁ ଶବ୍ଦ-ମାନଙ୍କ ଶେଷରେ ଚର, କର, ଘ୍ନ ବା ଅତ୍ ଥାଏ—ସେମାନଙ୍କରୁ ଉତ୍ତର ସ୍ତ୍ରୀ ଲିଙ୍ଗରେ ଈ ପ୍ରତ୍ୟୟ ହୁଏ । ଯଥା—ଦାରୁମୟ + ଈ = ଦାରୁମୟୀ, ପାଷାଣ-ମୟ + ଈ = ପାଷାଣମୟୀ, ହିରଣ୍ମୟ + ଈ = ହିରଣ୍ମୟୀ, ମୃଣ୍ମୟ + ଈ = ମୃଣ୍ମୟୀ, ସ୍ନେହମୟ + ଈ = ସ୍ନେହମୟୀ, ଗୁଣବତ୍ + ଈ = ଗୁଣବତୀ, ଭଗବତ୍ + ଈ = ଭଗବତୀ, ରୂପବତ୍ + ଈ = ରୂପବତୀ, ଶ୍ରୀମତ୍ + ଈ = ଶ୍ରୀମତୀ, ବୁଦ୍ଧିମତ୍ + ଈ = ବୁଦ୍ଧିମତୀ, ମୂର୍ତ୍ତିମତ୍ + ଈ = ମୂର୍ତ୍ତିମତୀ, ମାନିନ୍ + ଈ = ମାନିନୀ, ସଞ୍ଚାରିନ୍ + ଈ = ସଞ୍ଚାରିଣୀ, ମନସ୍ୱିନ୍ + ଈ = ମନସ୍ୱିନୀ, ତେଜସ୍ୱିନ୍ + ଈ = ତେଜସ୍ୱିନୀ, ସତ୍ + ଈ = ସତୀ, ମହତ୍ + ଈ = ମହତୀ, ସହଚର + ଈ = ସହଚରୀ, ଖେଚର + ଈ = ଖେଚରୀ, ନିଶାଚର + ଈ = ନିଶାଚରୀ, ବନେଚର + ଈ = ବନେଚରୀ

ଶଙ୍କର + ଈ = ଶଙ୍କରୀ, କଙ୍କର + ଈ = କଙ୍କରୀ, ମୋହକର + ଈ = ମୋହକରୀ, ଯାଦୃଶ + ଈ = ଯାଦୃଶୀ, ପ୍ରାଚ୍ + ଈ = ପ୍ରାଚୀ ।

ଅନ୍ୟ ଶବ୍ଦ ସହିତ ସଂସ୍କୃତ ଭାଷାର ନାମନ୍ ଶବ୍ଦ ମିଳି ସମାସରେ ଗୋଟିଏ ପଦ ହେଲେ ତାହା ଉତ୍ତାରୁ ସ୍ତ୍ରୀ ଲିଙ୍ଗରେ ଈ ପ୍ରତ୍ୟୟ ହୁଏ । ଈ ପ୍ରତ୍ୟୟ ହେଲେ ଅନ୍ତ୍ୟ ନ୍ ର ପୂର୍ବବର୍ତ୍ତୀ ଅକାରର ଲୋପ ହୁଏ । ଯଥା—ଶକୁନ୍ତଳାନାମ୍ନୀ, ପାର୍ବତୀ-ନାମ୍ନୀ, ଗଙ୍ଗାନାମ୍ନୀ (ନଦୀ) ।

ରାଜନ୍ ଶବ୍ଦରୁ ଉତ୍ତର ସ୍ତ୍ରୀଲିଙ୍ଗରେ ଈ ପ୍ରତ୍ୟୟ କଲେ ରାଜ୍ଞୀ ହୁଏ । ଯୁବନ୍ ଶବ୍ଦରୁ ସ୍ତ୍ରୀଲିଙ୍ଗରେ ଈ ପ୍ରତ୍ୟୟ କଲେ ଯୂନୀ, ଯୁବତି ଓ ଯୁବତୀ ହୁଏ ।

ଅନ୍ୟ ଶବ୍ଦ ସହିତ ଅବୟବବାଚକ ଶବ୍ଦ ମିଳି ସମାସରେ ଗୋଟିଏ ପଦ ଓ ସ୍ତ୍ରୀଲିଙ୍ଗର ବିଶେଷଣ ହେଲେ ସେଥିରେ ଈ ପ୍ରତ୍ୟୟ ହୁଏ, ମଧ୍ୟ ଆ ପ୍ରତ୍ୟୟ ହୁଏ ; କେତେକ ସ୍ଥଳରେ କେବଳ ଆ ପ୍ରତ୍ୟୟ ହୁଏ । ଯଥା—ସୁକେଶୀ,ସୁକେଶା, ବିମ୍ବାଧରୀ, ବିମ୍ବାଧରା, ମୃଗନୟନା, ଚନ୍ଦ୍ରବଦନା, ଚନ୍ଦ୍ରବଦନୀ ।

ପିତୃ, ମାତୃ, ଭ୍ରାତୃ, ସ୍ୱସୃ, ଯାତୃ, ଦୁହିତୃ, ନନାନ୍ଦୃ ଛାଡ଼ି ଯାବତୀୟ ଋକାରାନ୍ତ ଶବ୍ଦରୁ ଉତ୍ତର ସ୍ତ୍ରୀଲିଙ୍ଗରେ ଈ ପ୍ରତ୍ୟୟ ହୁଏ । ଯଥା—ଦାତୃ + ଈ = ଦାତ୍ରୀ, ଜନୟିତୃ + ଈ = ଜନୟିତ୍ରୀ, କର୍ତ୍ତୃ + ଈ = କର୍ତ୍ତ୍ରୀ, ରଚୟିତୃ + ଈ = ରଚୟିତ୍ରୀ, ଧାତୃ + ଈ = ଧାତ୍ରୀ ।

ଗୁଣବାଚକ ଉ କାରାନ୍ତ ଶବ୍ଦରୁ ଉତ୍ତର ଈ ପ୍ରତ୍ୟୟ ହୁଏ । ଈ ପ୍ରତ୍ୟୟ ହେଲେ ଉକାର ଠାରେ 'ବ' ହୁଏ । ଯଥା—ସାଧୁ + ଈ = ସାଧ୍ୱୀ, ମୃଦୁ + ଈ = ମୃଦ୍ୱୀ, ତନୁ + ଈ = ତନ୍ୱୀ ।

ପୂରଣବାଚକ ଶବ୍ଦରୁ ଉତ୍ତର ସ୍ତ୍ରୀଲିଙ୍ଗରେ ଆ ପ୍ରତ୍ୟୟ ହୁଏ । ଯଥା—ପ୍ରଥମ + ଆ = ପ୍ରଥମା, ଦ୍ୱିତୀୟ + ଆ = ଦ୍ୱିତୀୟା, ଚତୁର୍ଥ + ଆ = ଚତୁର୍ଥା, ସପ୍ତମ + ଆ = ସପ୍ତମା, ଦ୍ୱାବିଂଶ + ଆ = ଦ୍ୱାବିଂଶା ।

ତିଥି ବୁଝାଇଲେ ସ୍ତ୍ରୀଲିଙ୍ଗରେ ଦ୍ୱିତୀୟ ଓ ତୃତୀୟ ଶବ୍ଦରୁ ଉତ୍ତର ଆ, ଏବଂ ଅନ୍ୟ ପୂରଣବାଚକ ଶବ୍ଦରୁ ଉତ୍ତର ଈ ପ୍ରତ୍ୟୟ ହୁଏ । ଯଥା—ଦ୍ୱିତୀୟା, ତୃତୀୟା, ଚତୁର୍ଥୀ, ଷଷ୍ଠୀ, ଦଶମୀ, ପଞ୍ଚଦଶୀ ।

ଅପଭ୍ରଷ୍ଟ ଶବ୍ଦରୁ ଓ କୌଣସି କୌଣସି ସଂସ୍କୃତ ଶବ୍ଦରୁ ଉତ୍ତର ସ୍ତ୍ରୀଲିଙ୍ଗରେ ଣୀ, ଆଣୀ ଓ ଉଣୀ ପ୍ରତ୍ୟୟ ହୁଏ । ଣୀ ଓ ଉଣୀ ପ୍ରତ୍ୟୟ ହେଲେ କୌଣସି କୌଣସି ଶବ୍ଦର କିଛି ପରିବର୍ତ୍ତନ ହୁଏ । ଯଥା—ମିତ + ଣୀ = ମିତଣୀ, ସାଆନ୍ତ + ଆଣୀ = ସାଆନ୍ତାଣୀ, ମେହେନ୍ତର + ଆଣୀ = ମେହେନ୍ତରାଣୀ, ପାଟରା + ଆଣୀ = ପାଟରାଣୀ

ଭୂଇଁା + ଆଣୀ = ଭୂଇଁାଣୀ, କମିଲା + ଆଣୀ = କମିଲାଣୀ, ବେହେରା + ଆଣୀ = ବେହେରାଣୀ, ବାସ୍ସା + ଆଣୀ = ବାସ୍ସାଣୀ, ପଣ୍ଡା + ଆଣୀ = ପଣ୍ଡିଆଣୀ, ତନ୍ତୀ + ଆଣୀ = ତନ୍ତଆଣୀ, ଗୁଡ଼ିଆ + ଆଣୀ = ଗୁଡ଼ିଆଣୀ, ବାଲେଶ୍ୱରଆ + ଆଣୀ = ବାଲେଶ୍ୱରଆଣୀ, ତାମୁଲୀ + ଆଣୀ = ତାମୁଲଆଣୀ, ହାଡ଼ି + ଆଣୀ = ହାଡ଼ିଆଣୀ, ବାଉରୀ + ଆଣୀ = ବାଉରାଣୀ, ଗଉଡ଼ + ଆଣୀ = ଗଉଡ଼ୁଣୀ, କେଉଟ + ଆଣୀ = କେଉଟୁଣୀ, ପାଣ + ଉଣୀ = ପାଣୁଣୀ କନ୍ଧ + ଉଣୀ = କନ୍ଧୁଣୀ, ଚଷା + ଉଣୀ = ଚଷୁଣୀ, କଣ୍ଡରା + ଉଣୀ = କଣ୍ଡରୁଣୀ, କେଲା + ଉଣୀ = କେଲୁଣୀ, ଭଣ୍ଡାରୀ + ଉଣୀ = ଭଣ୍ଡାରୁଣୀ, ତେଲି + ଉଣୀ = ତେଲୁଣୀ, ମାଳୀ + ଉଣୀ = ମାଳୁଣୀ ବଙ୍ଗାଳୀ + ଉଣୀ = ବଙ୍ଗାଳୁଣୀ, ପଠାଣ ଶବ୍ଦରୁ ସ୍ତ୍ରୀଲିଙ୍ଗରେ ପଠାଣୀ ।

## ୨୫—କୃତ୍ ପ୍ରତ୍ୟୟ ଓ ତଦ୍ଧିତ ପ୍ରତ୍ୟୟର ଅନୁଶୀଳନୀ

୧ । ଭାବବାଚ୍ୟରେ ତି ପ୍ରତ୍ୟୟର ଚାରି ଗୋଟି ଉଦାହରଣ ଦିଅ, ଏବଂ ପ୍ରତ୍ୟେକକୁ ନେଇ ଗୋଟିଏ ଗୋଟିଏ ବାକ୍ୟ ରଚନା କର ।

୨ । ଭାବବାଚ୍ୟରେ ଘଞ୍ ପ୍ରତ୍ୟୟର ଯୋଡ଼ିଏ ଉଦାହରଣ ଦିଅ, ଏବଂ ପ୍ରତ୍ୟେକକୁ ବ୍ୟବହାର କରି ଗୋଟିଏ ଗୋଟିଏ ବାକ୍ୟ ରଚନା କର ।

୩ । କୃ ପ୍ରତ୍ୟୟର ଚାରିଗୋଟି ଓ ତବ୍ୟ ପ୍ରତ୍ୟୟର ଚାରିଗୋଟି ଉଦାହରଣ ଦିଅ, ଏବଂ ପ୍ରତ୍ୟେକକୁ ବ୍ୟବହାର କରି ଗୋଟିଏ ଗୋଟିଏ ବାକ୍ୟ ରଚନାକର ।

୪ । ସ୍ଥା, ପା, କୃ, ଗମ୍, ବଚ୍, ମନ୍, ଓ ଜ୍ଞା ଧାତୁମାନଙ୍କରୁ ତ ଓ ତବ୍ୟ ପ୍ରତ୍ୟୟ କଲେ କି କି ପଦ ନିଷ୍ପନ୍ନ ହେବ ?

୫ । ନମ୍ ଓ ଦଶ୍ ଧାତୁରୁ ନିଷ୍ପନ୍ନ ଯୋଡ଼ିଏ ଯୋଡ଼ିଏ ବିଶେଷଣ ପଦ ବୋଲ ।

୬ । ନିମ୍ନଲିଖିତ ଧାତୁମାନଙ୍କରୁ ତ ପ୍ରତ୍ୟୟ କଲେ କି କି ପଦ ହେବ, ଏବଂ ପ୍ରେରଣାର୍ଥ ପ୍ରତ୍ୟୟ ଉତ୍ତାରୁ ତ ପ୍ରତ୍ୟୟ କଲେ କି କି ପଦ ହେବ ବୋଲ— ସ୍ଥା, ନଶ୍, ବଦ୍, ଦହ୍, ବୁଧ, କୃ, ଛିଦ୍, ଧା, ସୃ, ମୁଚ୍ ।

୭ । ପ୍ରେରଣାର୍ଥ ଯା, ମୃ, ଦୃ ଓ ଧୃ ଧାତୁରୁ ଏବଂ ସନନ୍ତ ପା, କୃ ଓ ଭୁଜ୍ ଧାତୁରୁ ନିଷ୍ପନ୍ନ କ୍ରିୟାବାଚକ ବିଶେଷ୍ୟ ବୋଲ ।

୮ । ସନନ୍ତ-ଧାତୁ-ନିଷ୍ପନ୍ନ ପଦ ବ୍ୟବହାର କରି ନିମ୍ନଲିଖିତ ବାକ୍ୟମାନଙ୍କୁ ପରିବର୍ତ୍ତନ କର—

(କ) ଯାହାର ପିପାସା ହୋଇଅଛି ତାହାକୁ ଜଳ ସ୍ୱାଦୁ ଲାଗେ ।

(ଖ) ଯାହାର ଜାଣିବାର ଇଚ୍ଛା ଅଛି ତାହାର ଜ୍ଞାନଲାଭ ସହଜରେ ହୋଇଥାଏ ।

(ଗ) ଯେଉଁ ବ୍ୟକ୍ତିର ଭୋଜନ କରିବାର ଇଚ୍ଛା ହୋଇଅଛି ତାହାକୁ ଅନ୍ନ ଦିଅ ।

୯ । କୃ-ପ୍ରତ୍ୟୟାନ୍ତ ପଦ ବ୍ୟବହାର କରି ନିମ୍ନଲିଖିତ ବାକ୍ୟମାନଙ୍କୁ ପରିବର୍ତ୍ତନ କର—

(କ) ସତ୍ପାତ୍ରରେ ଦାନ ଦେଲେ, ଯେ ଗ୍ରହଣକରେ ଓ ଯେ ଦାନ କରନ୍ତି ଉଭୟଙ୍କର ଆନନ୍ଦ ହୁଏ ।

(ଗ) ମହାତ୍ମାମାନଙ୍କ ବିଷୟରେ କିଛି କହିଲେ, ଯେ କହନ୍ତି ଓ ଯେଉଁମାନେ ଶୁଣନ୍ତି ଉଭୟ ପକ୍ଷର ପୁଣ୍ୟ ହୁଏ ।

(ଗ) ଯେ ରଚନା କରନ୍ତି ତାହାଙ୍କର ବ୍ୟାକରଣ ଭଲରୂପେ ଜାଣିବା ଉଚିତ ।

୧୦ । ପ୍ରତ୍ୟୟ ମାତ୍ର ପରିବର୍ତ୍ତନ କରି ନିମ୍ନଲିଖିତ ବିଶେଷଣମାନଙ୍କୁ ବିଶେଷ୍ୟରେ, ଏବଂ ବିଶେଷ୍ୟମାନଙ୍କୁ ତ-ପ୍ରତ୍ୟୟାନ୍ତ ବିଶେଷଣରେ ପରିବର୍ତ୍ତନ କର—

(କ) ବିହିତ, ଦତ୍ତ, ଉକ୍ତ, ମୁକ୍ତ, ହୃତ, ଜାତ, ରକ୍ତ, ଆବୃତ, ପକ୍ୱ ।

(ଖ) ପ୍ରସ୍ଥାନ, ଅଭିଷେକ, ପରିଧାନ, କ୍ଳେଶ, ଆରୋହଣ, କ୍ଷେପଣ, ଦୋଷ, ରୋଗ ।

୧୧ । ନିମ୍ନଲିଖିତ ସ୍ଥଳମାନଙ୍କରେ ତଦ୍ଧିତ ପ୍ରତ୍ୟୟ କଲେ କି କି ପଦ ହେବ ଲେଖ—ଦଶରଥଙ୍କର ପୁତ୍ର, ଅର୍ଜୁନଙ୍କର ପୁତ୍ର, ସନ୍ଧ୍ୟାରେ ଭବ, ତରୁଣର ଭାବ, ସଖାର ଭାବ, ଅଧୁନା ଭବ, ଈଶାନସମ୍ବନ୍ଧୀ, ପର୍ବତସମ୍ବନ୍ଧୀ, ଯହିଁରେ ବହୁତ ପୁଷ୍ପ ଅଛି, ଯହିଁରେ ବହୁତ କଣ୍ଟକ ଅଛି, ଜଳରେ ବ୍ୟାପ୍ତ ।

୧୨ । ନିମ୍ନଲିଖିତ ସ୍ଥଳମାନଙ୍କରେ ପ୍ରକୃତି ପ୍ରତ୍ୟୟ ଏବଂ ବାଚ୍ୟ ବା ଅର୍ଥ ନିର୍ଦ୍ଦେଶ କର—

ଦାତା, ଲପୁତ୍ରା, ପାନୀୟ, ସ୍ଥାନୀୟ, ପକ୍ଷୀ, କଷ୍ଟ, ସହଚର୍ଷ୍ଟ, ଜାଡ, ହାନି, ଦାନୀ, କୌନ୍ତେୟ, ଆଗ୍ନେୟ, ଭବାନୀ, ନଦୀ, ବ୍ରାହ୍ମଣୀ, ଭଦ୍ରା, ଲଗ୍ନ, ଭେଗ, ଶୋକ, ଯୁକ୍ତ, ମୁକ୍ତ, ମୂଲିଆ, ହଟିଆ, ନାଲିଆ, ରଚୟିତା, ଗଣକ, ପାଚକ, ସୂର୍ଯ୍ୟ, ଶୌର୍ଯ୍ୟ, ଶୌଚ, ନୟନ, ଚୟନ, ଐକ୍ୟ ।

୧୩ । ନିମ୍ନଲିଖିତ ପୁଂଲିଙ୍ଗ ଶବ୍ଦମାନ ସ୍ତ୍ରୀଲିଙ୍ଗରେ କଣ ହେବ ବୋଲ— ରାଜା, ଦୟାବାନ୍, ପ୍ରିୟତମ, ସାଧୁ, କିଙ୍କର, ବନବାସୀ, ପରିଚାରକ, ଯୁବା, ବୃଦ୍ଧ, ତରୁଣ, ଶ୍ରୀମାନ୍, ଚମାର, କେଳା, ତେଲିଙ୍ଗା, କନ୍ଧ ।

## ୨୭—ସନ୍ଧି

ପରସ୍ପର ସନ୍ନିହିତ ଦୁଇ ବର୍ଣ୍ଣର ମିଳନରେ ଯଦି ଉଭୟର ବା ଗୋଟିକର କୌଣସି ପରିବର୍ତ୍ତନ ହୁଏ, ତେବେ ସେହି ମିଳନକୁ ସନ୍ଧି କହନ୍ତି । ସନ୍ଧି ଦୁଇପ୍ରକାର —ସ୍ୱରସନ୍ଧି ଓ ବ୍ୟଞ୍ଜନସନ୍ଧି । ଦୁଇ ସ୍ୱରବର୍ଣ୍ଣର ମିଳନରେ ଯେଉଁ ସନ୍ଧି ହୁଏ ତାହାକୁ **ସ୍ୱରସନ୍ଧି** କହନ୍ତି । ଦୁଇ ବ୍ୟଞ୍ଜନବର୍ଣ୍ଣର ଅଥବା ଗୋଟିଏ ବ୍ୟଞ୍ଜନବର୍ଣ୍ଣ ଓ ଗୋଟିଏ ସ୍ୱରବର୍ଣ୍ଣର ମିଳନରେ ଯେଉଁ ସନ୍ଧି ହୁଏ ତାହାକୁ **ବ୍ୟଞ୍ଜନ ସନ୍ଧି** କହନ୍ତି ।

ଶବ୍ଦର ବା ପଦର ଶେଷରେ ର୍ ବା ସ୍ ଥିଲେ ତାହାଠାରେ ବିସର୍ଗ ହୁଏ । ଯଥା—ନିର୍, ନିଃ; ଦୁର୍, ଦୁଃ; ପୁନର୍, ପୁନଃ; ପ୍ରାତର୍, ପ୍ରାତଃ; ମନସ୍, ମନଃ; ପୁରସ୍, ପୁରଃ; ବହିସ୍, ବହିଃ; ଆଶିସ୍, ଆଶୀଃ । ର୍ ଠାରେ ଯେଉଁ ବିସର୍ଗ ହୁଏ ତାହାକୁ **ର୍-ଜାତ ବିସର୍ଗ** ଏବଂ ସ୍ ଠାରେ ଯେଉଁ ବିସର୍ଗ ହୁଏ ତାହାକୁ **ସ-ଜାତ ବିସର୍ଗ** କହନ୍ତି ।

## ୨୮—ସ୍ୱରସନ୍ଧି

ଅ ପରେ ଅ ଥିଲେ ଦୁହେଁ ମିଳି ଆ ହୁଅନ୍ତି । ଆ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ । ଯଥା—ଦେବ+ଅସୁର=ଦେବାସୁର, ହିତ+ଅହିତ=ହିତାହିତ, ରଥ+ଅଙ୍ଗ =ରଥାଙ୍ଗ, ଶୁଭ+ଅଶୁଭ=ଶୁଭାଶୁଭ, ମନ+ଅନ୍ତର=ମନାନ୍ତର ।

ଅ ପରେ ଆ ଥିଲେ ଦୁହେଁ ମିଳି ଆ ହୁଅନ୍ତି । ଆ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ । ଯଥା—ହିମ+ଆଳୟ=ହିମାଳୟ, ବୀର+ଆସନ=ବୀରାସନ, ଏକ+ଆମ୍ର= ଏକାମ୍ର ।

ଆ ପରେ ଅ ଥିଲେ ଦୁହେଁ ମିଳି ଆ ହୁଅନ୍ତି । ଆ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ । ଯଥା—ବିଦ୍ୟା+ଅନୁରାଗ=ବିଦ୍ୟାନୁରାଗ, ଦୟା+ଅବତାର=ଦୟାବତାର ।

ଆ ପରେ ଆ ଥିଲେ ଦୁହେଁ ମିଳି ଆ ହୁଅନ୍ତି । ଆ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ । ଯଥା—ସଦା+ଆନନ୍ଦ=ସଦାନନ୍ଦ, ମହା+ଆଶୟ=ମହାଶୟ, ସଭା+ଆସୀନ ସଭାସୀନ । ଇ ପରେ ଇ ଥିଲେ ଦୁହେଁ ମିଳି ଈ ହୁଅନ୍ତି । ଈ ପୂର୍ବ ବର୍ଣ୍ଣରେ ଯୁକ୍ତ ହୁଏ । ଯଥା—ମୁନି+ଇନ୍ଦ୍ର=ମୁନୀନ୍ଦ୍ର, ଅତି+ଇବ=ଅତୀବ ।

ଇ ପରେ ଈ ଥିଲେ ଦୁହେଁ ମିଳି ଈ ହୁଅନ୍ତି । ଈ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ । ଯଥା—କ୍ଷିତି+ଈଶ=କ୍ଷିତୀଶ, ପରି+ଈକ୍ଷା=ପରୀକ୍ଷା । ଈ ପରେ ଇ ଥିଲେ, ଦୁହେଁ ମିଳି ଈ ହୁଅନ୍ତି । ଈ ପୂର୍ବ ବର୍ଣ୍ଣରେ ଯୁକ୍ତ ହୁଏ । ଯଥା—ମହୀ+ଇନ୍ଦ୍ର= ମହୀନ୍ଦ୍ର ।

ଈ ପରେ ଈ ଥିଲେ ଦୁହେଁ ମିଳି ଈ ହୁଅନ୍ତି । ଈ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ । ଯଥା—ମହୀ+ଈଶ=ମହୀଶ । ପୃଥିବୀ+ଈଶ୍ୱର=ପୃଥିବୀଶ୍ୱର ।

ଉ ପରେ ଉ ଥିଲେ ଦୁହେଁ ମିଳି ଊ ହୁଅନ୍ତି । ଊ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ । ଯଥା—ଗୁରୁ + ଉପଦେଶ = ଗୁରୂପଦେଶ, ବଧୂ + ଉଦୟ = ବଧୂଦୟ ।

ଉ ପରେ ଊ ଥିଲେ ଦୁହେଁ ମିଳି ଊ ହୁଅନ୍ତି । ଊ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ । ଯଥା—ସିନ୍ଧୁ + ଊର୍ମି = ସିନ୍ଧୂର୍ମି ।

ଊ ପରେ ଉ ଥିଲେ ଦୁହେଁ ମିଳି ଊ ହୁଅନ୍ତି । ଊ ପୂର୍ବ ବର୍ଣ୍ଣରେ ଯୁକ୍ତ ହୁଏ । ଯଥା—ବଧୂ + ଉଦକ = ବଧୂଦକ ।

ଊ ପରେ ଊ ଥିଲେ ଦୁହେଁ ମିଳି ଊ ହୁଅନ୍ତି । ଊ ପୂର୍ବ ବର୍ଣ୍ଣରେ ଯୁକ୍ତ ହୁଏ—ଭୂ + ଊର୍ଦ୍ଧ୍ୱ = ଭୂର୍ଦ୍ଧ୍ୱ ।

ଋ ପରେ ଋ ଥିଲେ ଦୁହେଁ ମିଳି ୠ ହୁଅନ୍ତି । ୠ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ । ଯଥା—ପିତୃ + ଋଣ = ପିତୄଣ ।

ଅ ବା ଆ ପରେ ଇ ବା ଈ ଥିଲେ ଦୁହେଁ ମିଳି ଏ ହୁଅନ୍ତି । ଏ ପୂର୍ବ-ବର୍ଣ୍ଣରେ ଯୁକ୍ତ ହୁଏ । ଯଥା—ବାଳ + ଇନ୍ଦୁ = ବାଳେନ୍ଦୁ, ଗଣ + ଈଶ = ଗଣେଶ ଯଥା + ଇଷ୍ଟ = ଯଥେଷ୍ଟ, ମହା + ଈଶ୍ୱର = ମହେଶ୍ୱର ।

ଅ ବା ଆ ପରେ ଉ ବା ଊ ଥିଲେ ଦୁହେଁ ମିଳି ଓ ହୁଅନ୍ତି । ଓ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ । ଯଥା—ଜ୍ଞାନ + ଉଦୟ = ଜ୍ଞାନୋଦୟ, ନବ + ଊଢ଼ା = ନବୋଢ଼ା, ମହା + ଉଲ୍ଲାସ = ମହୋଲ୍ଲାସ, ଗଙ୍ଗା + ଊର୍ମି = ଗଙ୍ଗୋର୍ମି ।

ଅ ବା ଆ ପରେ ଋ ଥିଲେ ଦୁହେଁ ମିଳି ଅର୍ ହୁଅନ୍ତି । ଅ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ, ଏବଂ ର୍ ପରବର୍ତ୍ତୀ ବ୍ୟଞ୍ଜନବର୍ଣ୍ଣର ଉପରେ ରେଫ୍ ହୋଇ ରହେ । ଯଥା—ଉତ୍ତମ + ଋଣ = ଉତ୍ତମର୍ଣ୍ଣ, ମହା + ଋଷି = ମହର୍ଷି ।

ଅ ବା ଆ ପରେ ଏ ବା ଐ ଥିଲେ ଦୁହେଁ ମିଳି ଐ ହୁଅନ୍ତି । ଐ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ । ଯଥା—ଜନ + ଏକ = ଜନୈକ, ମତ + ଐକ୍ୟ = ମତୈକ୍ୟ, ତଥା + ଏବ = ତଥୈବ, ମହା + ଐଶ୍ୱର୍ଯ୍ୟ = ମହୈଶ୍ୱର୍ଯ୍ୟ ।

ଅ ବା ଆ ପରେ ଓ ବା ଔ ଥିଲେ ଦୁହେଁ ମିଳି ଔ ହୁଅନ୍ତି । ଔ ପୂର୍ବ-ବର୍ଣ୍ଣରେ ଯୁକ୍ତ ହୁଏ । ଯଥା—ଜଳ + ଓକ = ଜଳୌକ, ପରମ + ଔତ୍ସୁକ୍ୟ = ପରମୌତ୍ସୁକ୍ୟ, ମହା = ଓଘ = ମହୌଘ, ମହା + ଔଷଧ = ମହୌଷଧ ।

ଇ, ଈ ଭିନ୍ନ ସ୍ୱରବର୍ଣ୍ଣ ପରେ ଥିଲେ ଇ ବା ଈ ଠାରେ ଯ୍ ହୁଏ । ଯ୍ ଓ ପରବର୍ତ୍ତୀ ସ୍ୱର ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ । ଯଥା—ଅତି + ଅନ୍ତ = ଅତ୍ୟନ୍ତ, ଅଭି + ଆଗତ = ଅଭ୍ୟାଗତ, ଅତି + ଉଚ୍ଚ = ଅତ୍ୟୁଚ୍ଚ, ପ୍ରତି + ଊହ = ପ୍ରତ୍ୟୂହ, ପ୍ରତି + ଏକ = ପ୍ରତ୍ୟେକ, ଅତି + ଐଶ୍ୱର୍ଯ୍ୟ = ଅତ୍ୟୈଶ୍ୱର୍ଯ୍ୟ, ଅତି + ଔଚିତ୍ୟ = ଅତ୍ୟୌଚିତ୍ୟ, ନଦୀ + ଅମ୍ବୁ = ନଦ୍ୟମ୍ବୁ, ଦେବୀ + ଆରାଧନା = ଦେବ୍ୟାରାଧନା, ଲକ୍ଷ୍ମୀ + ଉପାସନା = ଲକ୍ଷ୍ମ୍ୟୁପାସନା ।

ଉ, ଊ ଭିନ୍ନ ସ୍ୱରବର୍ଣ୍ଣ ପରେ ଥିଲେ ଉ ବା ଊ ଠାରେ ବ୍ ହୁଏ । ବ୍ ଓ ପରବର୍ତ୍ତୀ ସ୍ୱର ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ । ଅନୁ + ଅୟ = ଅନ୍ୱୟ, ସୁ + ଆଗତ = ସ୍ୱାଗତ, ଅନୁ + ଇତ = ଅନ୍ୱିତ, ସାଧୁ + ଈ = ସାଧ୍ୱୀ, ଅନୁ + ଏଷଣ = ଅନ୍ୱେଷଣ । ଋ, ୠ ଭିନ୍ନ ସ୍ୱରବର୍ଣ୍ଣ ପରେ ଥିଲେ ଋ ଠାରେ ର୍ ହୁଏ । ର୍ ଓ ପରବର୍ତ୍ତୀ ସ୍ୱର ପୂର୍ବ ବର୍ଣ୍ଣରେ ଯୁକ୍ତ ହୁଏ । ଯଥା—ମାତୃ + ଅନୁମତ = ମାତ୍ରନୁମତ, ପିତୃ + ଆଳୟ = ପିତ୍ରାଳୟ, ସ୍ୱସୃ + ଈୟ = ସ୍ୱସ୍ରୀୟ ।

ସ୍ୱରବର୍ଣ୍ଣ ପରେ ଥିଲେ ଏ ଠାରେ ଅୟ୍, ଐ ଠାରେ ଆୟ୍, ଓ ଠାରେ ଅବ୍, ଔ ଠାରେ ଆବ୍ ହୁଏ । ସନ୍ଧିଜାତ ଅ, ଆ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ । ପରବର୍ତ୍ତୀ ସ୍ୱର ୟ୍ ଅଥବା ବ୍ ରେ ଯୁକ୍ତ ହୁଏ । ଯଥା—ନେ + ଅନ = ନୟନ, ନୈ + ଅକ = ନାୟକ, ପୋ + ଅନ = ପବନ, ପୌ + ଅକ = ପାବକ ।

## ୨୮—ବ୍ୟଞ୍ଜନ-ସନ୍ଧି

ସ୍ୱରବର୍ଣ୍ଣ ବା ବର୍ଗର ତୃତୀୟ ବା ଚତୁର୍ଥ ବର୍ଣ୍ଣ କିମ୍ବା ଯ, ର, ବ, ପରେ ଥିଲେ ବର୍ଗର ପ୍ରଥମ ବର୍ଣ୍ଣ ଠାରେ ସେହି ବର୍ଗର ତୃତୀୟ ବର୍ଣ୍ଣ ହୁଏ । ଯଥା—ବାକ୍ + ଈଶ୍ = ବାଗୀଶ, ଶିଚ୍ + ଅନ୍ତ + ଶିଜନ୍ତ, ଷଟ୍ + ଆନନ = ଷଡ଼ାନନ, ଷଟ୍ + ଋତୁ = ଷଡ୍‌ଋତୁ, ତତ୍ + ଅନନ୍ତର = ତଦନନ୍ତର; ବାକ୍ + ଦେବୀ = ବାଗ୍‌ଦେବୀ, ସତ୍ + ଗତ = ସଦ୍‌ଗତ, ଉତ୍ + ବନ୍ଧନ = ଉଦ୍‌ବନ୍ଧନ, ଅପ୍ + ଜ = ଅବ୍‌ଜ, ତତ୍ + ଭାବ = ତଦ୍ଭାବ, ଋକ୍ + ଯଜୁଃ = ଋଗ୍‌ଯଜୁଃ, ବାକ୍ + ରୋଧ = ବାଗ୍‌ରୋଧ, ହୃତ୍ + ରୋଗ = ହୃଦ୍ରୋଗ, ଋକ୍ + ବେଦ = ଋଗ୍‌ବେଦ, ଉତ୍ + ବାହ = ଉଦ୍‌ବାହ । ଲ ପରେ ଥିଲେ କ, ଚ, ଟ ଓ ପ ବର୍ଗର ପ୍ରଥମ ବର୍ଣ୍ଣଠାରେ ସେହି ସେହି ବର୍ଗର ତୃତୀୟ ବର୍ଣ୍ଣ ହୁଏ । ଯଥା—ସମ୍ୟକ୍ + ଲଭ = ସମ୍ୟଗ୍‌ଲଭ, ଅପ୍ + ଲବ = ଅବ୍‌ଲବ ।

ତ୍ ପରେ ଲ ଥିଲେ ଦୁହେଁ ମିଳି ଲ୍ଲ ହୁଅନ୍ତି । ଯଥା—ଉତ୍ + ଲେଖ = ଉଲ୍ଲେଖ । ତଡ଼ିତ୍ + ଲତା = ତଡ଼ିଲ୍ଲତା ।

ନ କିମ୍ବା ମ ପରେ ଥିଲେ ବର୍ଗର ପ୍ରଥମ ବର୍ଣ୍ଣଠାରେ ସେହି ବର୍ଗର ପଞ୍ଚମ ବର୍ଣ୍ଣ ହୁଏ । ଯଥା—ସତ୍ + ନ୍ୟାସ—ସନ୍ନ୍ୟାସ, ଉତ୍ + ନତ = ଉନ୍ନତ, ସତ୍ + ମାର୍ଗ = ସନ୍ମାର୍ଗ, ଷଟ୍ + ମାସ = ଷଣ୍ମାସ, ବାକ୍ + ମୟ = ବାଙ୍ମୟ ।

ତ୍ ପରେ ହ ଥିଲେ ଦୁହେଁ ମିଳି ଦ୍ଧ ହୁଅନ୍ତି । ଯଥା—ଉତ୍ + ହତ = ଉଦ୍ଧତ, ତତ୍ + ହିତ = ତଦ୍ଧିତ ।

ତ୍ ପରେ ଚ ଥିଲେ ଦୁହେଁ ମିଳି ଚ୍ଚ ; ଛ ଥିଲେ ଦୁହେଁ ମିଳି ଚ୍ଛ, ଜ ଥିଲେ ଦୁହେଁ ମିଳି ଜ୍ଜ, ଝ ଥିଲେ ଦୁହେଁ ମିଳି ଜ୍ଝ, ଟ ଥିଲେ ଦୁହେଁ ମିଳି ଟ୍ଟ, ଠ ଥିଲେ

ଦୁହେଁ ମିଳି ଟ୍ଠ, ଡ ଥିଲେ ଦୁହେଁ ମିଳି ଡ୍ଡ , ଢ ଥିଲେ ଦୁହେଁ ମିଳି ଡ୍ଢ ହୁଅନ୍ତି । ଯଥା - ଶରତ୍ + ଚନ୍ଦ୍ର = ଶରଚ୍ଚନ୍ଦ୍ର, ସତ୍ + ଛାତ୍ର = ସଚ୍ଛାତ୍ର, ଉତ୍ + ଜ୍ୱଳ = ଉଜ୍ଜ୍ୱଳ, ବୃହତ୍ + ଝଙ୍କାର = ବୃହଜ୍ଝଙ୍କାର, ତତ୍ + ଟୀକା = ତଟ୍ଟୀକା, ବୃହତ୍ + ଠକ୍କୁର = ବୃହଟ୍ଠକ୍କୁର, ଉତ୍ + ଡୀନ = ଉଡ୍ଡୀନ, ବୃହତ୍ + ଢକ୍କା = ବୃହଡ୍ଢକା । ତ୍ ପରେ ଶ ଥିଲେ ଦୁହେଁମିଳି ଚ୍ଛ ହୁଅନ୍ତି । ଯଥା— ଉତ୍ + ଶୃଙ୍ଖଳ = ଉଚ୍ଛୃଙ୍ଖଳ, ତତ୍ + ଶଙ୍କର = ତଚ୍ଛଙ୍କର ।

ଷ୍ ପରେ ତ ଥିଲେ ଦୁହେଁମିଳି ଷ୍ଟ ଓ ଥ ଥିଲେ ଦୁହେଁ ମିଳି ଷ୍ଠ ହୁଅନ୍ତି । ଯଥା—ତୃଷ୍ + ତ = ତୃଷ୍ଟ, ରୁଷ୍ + ତ = ରୁଷ୍ଟ, ଷଷ୍ + ଥ = ଷଷ୍ଠ ।

ଯେଉଁ ବର୍ଗର ବର୍ଣ୍ଣ ପରେ ଥାଏ ଶବ୍ଦର ଅନ୍ତସ୍ଥିତ ମ୍ ଠାରେ ସେହି ବର୍ଗର ପଞ୍ଚମ ବର୍ଣ୍ଣ ହୁଏ, କୌଣସି କୌଣସିଠାରେ ଅନୁସ୍ୱାର ହୁଏ । ମାତ୍ର ଅବର୍ଗ୍ୟ ବର୍ଣ୍ଣ ପରେ ଥିଲେ କେବଳ ଅନୁସ୍ୱାର ହୁଏ । ଯଥା—କମ୍ + କର = କଙ୍କର, ସମ୍ + ଗ୍ରହ = ସଂଗ୍ରହ, କମ୍ + ଚନ୍ତୁ = କଞ୍ଚୁ, ଧନମ୍ + ଜୟ = ଧନଞ୍ଜୟ, ସମ୍ + ଦେହ = ସନ୍ଦେହ, ସମ୍ + ଯୁକ୍ତ = ସଂଯୁକ୍ତ, ସମ୍ + ରକ୍ଷିତ = ସଂରକ୍ଷିତ, ସମ୍ + ଲଗ୍ନ = ସଂଲଗ୍ନ, ସମ୍ + ଶୋଧନ = ସଂଶୋଧନ, ସମ୍ + ସର୍ଗ = ସଂସର୍ଗ, ସମ୍ + ହାର = ସଂହାର ।

ସ୍ୱରବର୍ଣ୍ଣର ପର ସ୍ଥିତ ଛ, ଚ୍ଛ ହୁଏ । ଯଥା = ତରୁ + ଛାୟା = ତରୁଚ୍ଛାୟା, ଆ + ଛାଦନ = ଆଚ୍ଛାଦନ ।

ଉତ୍ ଏହି ଶବ୍ଦରୁ ଉତ୍ତର ସ୍ଥା ଓ ସ୍ତମ୍ଭ ଧାତୁରୁ ନିଷ୍ପନ୍ନ ଶବ୍ଦ ଥିଲେ ତାହାର ଆଦ୍ୟ ସ-କାରର ଲୋପ ହୁଏ । ଯଥା—ଉତ୍—ସ୍ଥାନ = ଉତ୍ଥାନ, ଉତ୍ + ସ୍ଥିତ = ଉତ୍ଥିତ, ଉତ୍ + ସ୍ତମ୍ଭ = ଉତ୍ତମ୍ଭ ।

ଚ କିମ୍ବା ଜ ଉତ୍ତାରେ ନ ଥିଲେ, ନ ଠାରେ ଞ ହୁଏ । ଯଥା—ଯାଚ୍ + ନା = ଯାଚଞ୍ଚା, ଯଜ୍ + ନ = ଯଜ୍ଞ ।

ଚ କିମ୍ବା ଛ ପରେ ଥିଲେ ବିସର୍ଗଠାରେ ଶ୍, ଟ କିମ୍ବା ଠ ପରେ ଥିଲେ ବିସର୍ଗଠାରେ ଷ୍; କ, ଖ, ପ, ଫ ପରେ ଥିଲେ ବିସର୍ଗଠାରେ ସ୍ ହୁଏ । ଯଥା— ତପଃ + ଚରଣ = ତପଶ୍ଚରଣ, ନିଃ + ଚୟ = ନିଶ୍ଚୟ, ଧନୁଃ + ଟଙ୍କାର = ଧନୁ-ଷ୍ଟଙ୍କାର, ମନଃ + ତାପ = ମନସ୍ତାପ, ନିଃ + ତାର = ନିସ୍ତାର, ମନ + କାମ = ମନସ୍କାମ । ନିଃ + ପ୍ରୟୋଜନ = ନିଷ୍ପ୍ରୟୋଜନ, ନିଃ + ଫଳ = ନିଷ୍ଫଳ, ଦୁଃ + ପ୍ରାପ୍ୟ = ଦୁଷ୍ପ୍ରାପ୍ୟ—ଏ ସ୍ଥଳମାନଙ୍କରେ ବିସର୍ଗ ଜାତ ସ, ଷ ହୋଇଅଛି ।

କ, ଖ, ଗ, ଘ ପରେ ଥିଲେ, ଅନେକ ସ୍ଥଳରେ ସନ୍ଧି ହୁଏ ନାହିଁ । ଯଥା = ଅନ୍ତଃକରଣ, ଦୁଃଖ, ଶିରଃପୀଡ଼ା ।

ଅ-କାର ବା ବର୍ଗର ତୃତୀୟ, ଚତୁର୍ଥ ବା ପଞ୍ଚମ ବର୍ଣ୍ଣ କିମ୍ବା ଯ, ର, ଲ, ବ, ହ ପରେ ଥିଲେ ଅ-କାର ଓ ତତ୍ ପରସ୍ଥିତ ସ-ଜାତ ବିସର୍ଗ ଦୁହେଁ ମିଳି ଓ ହୁଅନ୍ତି । ଓ ପୂର୍ବ ବର୍ଣ୍ଣରେ ଯୁକ୍ତ ହୁଏ । ଅ ପରେ ଥିଲେ ତାହାର ଲୋପ ହୁଏ । କୌଣସି କୌଣସି ସ୍ଥଳରେ ଲୁପ୍ତ ଅକାରର 'ऽ' ଏପରି ଚିହ୍ନ ରହେ । ଯଥା— ତତଃ + ଅଧିକ = ତତୋଽଧିକ, ଯଶଃ + ଗୀତ = ଯଶୋଗୀତ, ବୟଃ + ବୃଦ୍ଧି = ବୟୋବୃଦ୍ଧି, ତପଃ + ଧନ = ତପୋଧନ, ତମଃ + ମୟ = ତମୋମୟ, ମନଃ + ନୀତ = ମନୋନୀତ, ଶିରଃ + ମଣି = ଶିରୋମଣି, ମନଃ + ଯୋଗ = ମନୋଯୋଗ, ତପଃ + ବନ = ତପୋବନ, ମନଃ + ହର = ମନୋହର, ଯଶଃ + ଲଭ = ଯଶୋଲଭ ।

ଅକାର ଭିନ୍ନ ସ୍ୱରବର୍ଣ୍ଣ ପରେ ଥିଲେ ଅ କାରର ପରସ୍ଥିତ ବିସର୍ଗର ଲୋପ ହୁଏ । ଯଥା—ଅତଃ + ଏବ = ଅତଏବ ।

ସ୍ୱରବର୍ଣ୍ଣ ବା ବର୍ଗର ତୃତୀୟ, ଚତୁର୍ଥ ବା ପଞ୍ଚମ ବର୍ଣ୍ଣ କିମ୍ବା ଯ, ର, ଲ, ବ, ହ ପରେ ଥିଲେ ଅ କାରର ପର ସ୍ଥିତ ର-ଜାତ ବିସର୍ଗଠାରେ ର୍ ହୁଏ । ଯଥା— ପୁନଃ + ଉକ୍ତ = ପୁନରୁକ୍ତ, ଅନ୍ତଃ + ଆତ୍ମା = ଅନ୍ତରାତ୍ମା, ପୁନଃ + ଜନ୍ମ = ପୁନର୍ଜନ୍ମ, ଅନ୍ତଃ + ଧାନ = ଅନ୍ତର୍ଧାନ, ଅନ୍ତଃ + ଯାମୀ = ଅନ୍ତର୍ଯାମୀ, ଦୁଃ + ନାମ = ଦୁର୍ନାମ, ନିଃ + ଲୋଭ = ନିର୍ଲୋଭ ।

ସ୍ୱରବର୍ଣ୍ଣ ବା ବର୍ଗର ତୃତୀୟ, ଚତୁର୍ଥ ବା ପଞ୍ଚମ ବର୍ଣ୍ଣ କିମ୍ବା ଯ, ର, ଲ, ବ୍, ହ, ପରେ ଥିଲେ ଅ, ଆ-ଭିନ୍ନ ସ୍ୱର ବର୍ଣ୍ଣର ପର ସ୍ଥିତ ସକଳ ବିସର୍ଗଠାରେ ର୍ ହୁଏ । ଯଥା—ନିଃ + ଆକାର = ନିରାକାର, ନିଃ + ଉତ୍ତର = ନିରୁତ୍ତର, ବହିଃ + ଗତ = ବହିର୍ଗତ, ଦୁଃ + ଧର୍ଷ = ଦୁର୍ଧର୍ଷ, ମୁହୁଃ + ମୁହୁଃ = ମୁହୁର୍ମୁହୁଃ, ଦୁଃ + ଯୋଗ = ଦୁର୍ଯୋଗ, ଆଶୀଃ + ବାଦ = ଆଶୀର୍ବାଦ ।

ର ପରେ ଥିଲେ ବିସର୍ଗଜାତ ର୍-ର ଲୋପ ହୁଏ, ଏବଂ ପୂର୍ବସ୍ୱର ଦୀର୍ଘହୁଏ । ଯଥା—ନିଃ + ରସ = ନୀରସ, ନିଃ + ରବ = ନୀରବ ।

## ସ୍ୱରସନ୍ଧି ଓ ବ୍ୟଞ୍ଜନ ସନ୍ଧିର ଅନୁଶୀଳନୀ

(୧) ନିମ୍ନଲିଖିତ ସ୍ଥଳମାନଙ୍କରେ ସନ୍ଧିବିଚ୍ଛେଦ କର ଏବଂ ସୂତ୍ରର ପ୍ରୟୋଗ ବୁଝାଇ ଦିଅ ।

ନୀଳାଚଳ, ଚରାଚର, ବିଦ୍ୟାରମ୍ଭ, ଦଣ୍ଡକାରଣ୍ୟ, ମହୋପକାର, ଦେବେନ୍ଦ୍ର, ସୁରେଶ, ଯଜ୍ଞୋପବୀତ, ସ୍ୱାଦୂଦକ, ଅତ୍ୟାଶ୍ଚର୍ଯ୍ୟ, ନୟନ, ପାବକ, ସଦ୍‌ଭାବ, ଉଦ୍ଧେହତ, ଅନ୍ତର୍ଧାନ, ଯଶୋଲିପ୍ସା, ବାଗ୍‌ଦାନ, ବହିର୍ଦ୍ୱାର, ନିରୀକ୍ଷଣ, ଶଙ୍କର, ସନ୍ତୋଷ,

ଜଗଦ୍ଧାତ୍ରୀ, କଣ୍ଠନ୍ଯାସ, ଉଜ୍ଜ୍ୱଳ, ସରୋବର, ଜିତେନ୍ଦ୍ରିୟ, ପୁରଶ୍ଚରଣ, ପରମେଶ୍ୱର, ନିରଙ୍କୁଶ ।

(୨) ନିମ୍ନଲିଖିତ ସ୍ଥଳମାନଙ୍କରେ ସନ୍ଧି କର—

ଜଗତ୍-ଲକ୍ଷ୍ମୀ, ଶର-ଆସନ, ଧନୁଃ-ବାଣ, ସତ୍-ଅଳାପ, ପଶ୍ଚାତ୍-ମୁଖ, ନିଃ-ରନ୍ଧ୍ର, ସ୍ୱନ୍-ମା, ସମ୍-ଧାନ, ଅହଃ-ରାତ୍ର, ପୁନଃ-ଅପି, ବୟଃ-ଅଧିକ, ମନଃ-ଜ୍ଞ, ଯାବତ୍-ଜୀବନ ।

## ୨୯ – ଛନ୍ଦ

ରଚନା ଦୁଇ ପ୍ରକାରେ କରାଯାଏ,—ଗଦ୍ୟ ଓ ପଦ୍ୟ । କେବଳ କର୍ତ୍ତା, କର୍ମ, କ୍ରିୟା ପ୍ରଭୃତିର ଯଥାସ୍ଥାନରେ ବିନ୍ୟାସଦ୍ୱାରା ଯହିଁରେ ଲେଖକ ବା ବକ୍ତାର ମନୋଗତ ଭାବ ସମ୍ପୂର୍ଣ୍ଣରୂପେ ପ୍ରକାଶ ପାଏ, ସେହିପରି ରଚନାକୁ ଗଦ୍ୟ କହନ୍ତି । ଯେଉଁ ରଚନା ପଙ୍କ୍ତିମାନଙ୍କର ଅକ୍ଷରସଂଖ୍ୟାର ସମତା ପ୍ରଭୃତି ନିୟମରେ ଆବଦ୍ଧ, ତାହାକୁ ପଦ୍ୟ କହନ୍ତି ।

ଭିନ୍ନ ଭିନ୍ନ ନିୟମରେ ପଦ୍ୟ ରଚନା କରାଯାଏ । ପ୍ରତ୍ୟେକ ପ୍ରକାର ରଚନାକୁ ଗୋଟିଏ ଗୋଟିଏ ଛନ୍ଦ କହନ୍ତି । ଛନ୍ଦର ପ୍ରତ୍ୟେକ ପଙ୍କ୍ତିକୁ ତାହାର ପାଦ ବା ଚରଣ କହନ୍ତି । ଦୁଇ ବା ତତୋଧିକ ପାଦରେ ଗୋଟିଏ ପଦ ହୁଏ । କବିମାନେ କାବ୍ୟର ଭିନ୍ନ ଭିନ୍ନ ଅଂଶ ବା ପରିଚ୍ଛେଦକୁ ଭିନ୍ନ ଭିନ୍ନ ଛନ୍ଦରେ ରଚନା କରିଥାନ୍ତି । ପ୍ରତ୍ୟେକ ଅଂଶରେ ପରିଚ୍ଛେଦକୁ ଗୋଟିଏ ଗୋଟିଏ ଅଧ୍ୟାୟ, ସର୍ଗ ବା ଛାନ୍ଦ କହନ୍ତି । ଛନ୍ଦ ପ୍ରଧାନତଃ ଦୁଇ ପ୍ରକାର—ମିତ୍ରାକ୍ଷର ଓ ଅମିତ୍ରାକ୍ଷର । ଯେଉଁ ଛନ୍ଦରେ ଏକ ପଦର ଅନ୍ତର୍ଗତ ପାଦମାନଙ୍କର ଶେଷ ଅକ୍ଷର ସମାନ, ତାହାକୁ ମିତ୍ରାକ୍ଷର ଛନ୍ଦ କହନ୍ତି । ଯେଉଁ ଛନ୍ଦରେ ଏକ ପଦର ଅନ୍ତର୍ଗତ ପାଦମାନଙ୍କର ଶେଷ ଅକ୍ଷର ସମାନ ନୁହେଁ, ତାହାକୁ ଅମିତ୍ରାକ୍ଷର ଛନ୍ଦ କହନ୍ତି । ଓଡ଼ିଆ ଭାଷାରେ ଅମିତ୍ରାକ୍ଷର ଛନ୍ଦରେ ରଚନା ଅତି ଆଧୁନିକ । ଅମିତ୍ରାକ୍ଷର ଛନ୍ଦର ପ୍ରତ୍ୟେକ ପାଦରେ ଚଉଦ ଅକ୍ଷର ଥାଏ । ଅକ୍ଷର-ସଂଖ୍ୟା ଓ ଯତିପାତର ପ୍ରଭେଦ ଅନୁସାରେ ମିତ୍ରାକ୍ଷର ଛନ୍ଦ ନାନାପ୍ରକାର ହୁଏ । ମିତ୍ରାକ୍ଷର ଛନ୍ଦର ଗୋଟିଏ ଗୋଟିଏ ପଦର ଅନ୍ତର୍ଗତ ପାଦମାନଙ୍କର ଶେଷ ଅକ୍ଷର ଓ ତତ୍ପୂର୍ବବର୍ତ୍ତୀ ସ୍ୱରବର୍ଣ୍ଣର ମେଳ ହେଲେ ଛନ୍ଦକୁ ପୂର୍ଣ୍ଣ ମିତ୍ରାକ୍ଷର କହନ୍ତି । ଅନ୍ତ୍ୟ ବର୍ଣ୍ଣର ପୂର୍ବବର୍ତ୍ତୀ ସ୍ୱରକୁ ଉପଧା ସ୍ୱର କହନ୍ତି । କବିତା-ପଠନ-ସମୟରେ ପାଦ ମଧ୍ୟରେ ଯେଉଁ ଯେଉଁ ସ୍ଥାନରେ ଅପେକ୍ଷାକୃତ ଅଧିକ କାଳ ବିଶ୍ରାମ କରିବାକୁ ହୁଏ, ସେହି ସେହି ସ୍ଥାନରେ ଯତିପାତ ହେଲା ବୋଲି କହନ୍ତି ।

# ଛନ୍ଦ

**ପୂର୍ଣ୍ଣମିତ୍ରାକ୍ଷରର** ଉଦାହରଣ—

ସମେ ମତାଇ ଦୁଃଖ ସୁଖ,
ଅନ୍ତରେ ନ ହୋଇ ବିମୁଖ ।

**ଅପୂର୍ଣ୍ଣ ମିତ୍ରାକ୍ଷର** ଛନ୍ଦର ଉଦାହରଣ—

ମୋହର ଭାବେ ଯେ ରମଇ,
ଅନ୍ୟ ଭାବରେ କାର୍ଯ୍ୟ ନାହିଁ ।

**ଅମିତ୍ରାକ୍ଷର** ଛନ୍ଦର ଉଦାହରଣ—

ଯେ ମହାପୁରୁଷ ନିଜ କୃପାତରଣୀରେ
ପାରକଲେ ପାଣ୍ଡବଙ୍କୁ କର୍ଣ୍ଣଧାରରୂପେ ।

ଓଡ଼ିଆ ଭାଷାରେ ପ୍ରଚଳିତ ପ୍ରଧାନ ପ୍ରଧାନ ଛନ୍ଦର ଲକ୍ଷଣ ଓ ଉଦାହରଣ ନିମ୍ନରେ ପ୍ରଦର୍ଶିତ ହେଲା ।

## (୧) ଗୁଜ୍ଜରୀ

ଏହି ଛନ୍ଦର ପ୍ରତ୍ୟେକ ପଦରେ ଦୁଇ ଚରଣ ଥାଏ । ପ୍ରତି ଚରଣ ନଅ ଅକ୍ଷର-ବିଶିଷ୍ଟ । ଚରଣର ପଞ୍ଚମ ଅକ୍ଷରପରେ ଯତିପାତ ହୁଏ ।

ଏ ଭାଗବତ ଧର୍ମ-କଥା
ହେଲେ ଖଣ୍ଡଇ ଭବ-ବ୍ୟଥା ।

## (୨) ଚକ୍ରକେଳି

ଏହି ଛନ୍ଦରେ ପ୍ରତ୍ୟେକ ପଦରେ ଦୁଇ ଚରଣ ଥାଏ । ପ୍ରତିଚରଣ ଏଗାର ଅକ୍ଷର ବିଶିଷ୍ଟ । ଦ୍ୱିତୀୟ, ପଞ୍ଚମ ଓ ଅଷ୍ଟମ ଅକ୍ଷର ପରେ ଯତିପାତ ହୁଏ ।

କ୍ରୀଡ଼ା କରନ୍ତେ ଗୋପେ ପୀତବାସ
କ୍ରମେ ହିମଋତୁ କଲା ପ୍ରବେଶ ।

## (୩) କଳହଂସ କେଦାର

ଏହି ଛନ୍ଦର ପ୍ରତ୍ୟେକ ପଦରେ ଚାରି ଚରଣ ଥାଏ । ପ୍ରତି ଚରଣ ବାର ଅକ୍ଷର ବିଶିଷ୍ଟ । ଏହି ଛନ୍ଦକୁ ଏକାଧିକ ପ୍ରକାରେ ବୋଲନ୍ତି । ଏକ ପ୍ରକାର ଆବୃତ୍ତିରେ କେବଳ ସପ୍ତମ ଅକ୍ଷର ପରେ ଯତିପାତ ହୁଏ । ଅନ୍ୟ ଏକ ପ୍ରକାର ଆବୃତ୍ତିରେ ତୃତୀୟ, ପଞ୍ଚମ ଓ ସପ୍ତମ ଅକ୍ଷର ପରେ ଯତିପାତ ହୁଏ ।

ଚେତନା ଲଭି ଦେଖି ବହୁତ କ୍ଷଣେ
ଏକାକିନୀ ସେ ଘୋର ବିଜନ ବନେ,

ମରମଭେଦୀ ଶୋକେ ହୋଇ ବିକଳ
କହିଲେ ସ୍ୱାର୍ଥୀ ବର୍ଷି ଲୋତକ-ଜଳ ।

## (୪) ନଟବାଣୀ

ଏହି ଛନ୍ଦର ପ୍ରତ୍ୟେକ ପଦରେ ଦୁଇ ଚରଣ ଥାଏ । ପ୍ରତି ଚରଣ ବାର ଅକ୍ଷର ବିଶିଷ୍ଟ । ଷଷ୍ଠ ଅକ୍ଷର ପରେ ଏହାର ଯତିପାତ ହୁଏ ।

ଏତେ ଛବି ଯେଣୁ ଏକାଧାରେ ଠୁଳ
ଛବିଳ ଉତ୍କଳେ ତୋ ଛବି ଅତୁଳ ।

## (୫) ମଙ୍ଗଳ ଗୁର୍ଜ୍ଜରୀ

ଏହି ଛନ୍ଦର ପ୍ରତ୍ୟେକ ପଦରେ ଦୁଇ ଚରଣ ଥାଏ । ପ୍ରତି ଚରଣ ଚଉଦ ଅକ୍ଷର ବିଶିଷ୍ଟ । ପ୍ରତ୍ୟେକ ଚରଣର ଅଷ୍ଟମ ଅକ୍ଷର ପରେ ଏହାର ଯତିପାତ ହୁଏ ।

ଧର୍ମଙ୍କ ଗୁମୁରୁ ପାର୍ଥ ଯେବଣ ମେଲଣି
କପିଧ୍ୱଜେ ବଜେ କଲେ ସଙ୍ଗେ ଚକ୍ରପାଣି ।

## (୬) ରାମକେରୀ

ଏହି ଛନ୍ଦର ପ୍ରତ୍ୟେକ ପଦରେ ଦୁଇ ଚରଣ ଥାଏ । ପ୍ରତି ଚରଣ ଷୋହଳ ଅକ୍ଷର ବିଶିଷ୍ଟ । ପ୍ରତି ଚରଣର ନବମ ଅକ୍ଷର ପରେ ଯତିପାତ ହୁଏ ।

ମଧୁର ପ୍ରବୋଧ ସମସ୍ତ,
ସ୍ୱର୍ଣ୍ଣକରଣ-ବୋଲା
କାଦମ୍ବିନୀ ଫେଲେ ଗଗନେ
ଧୀର ସମୀର-ଦୋଳା ।

## (୭) ବଙ୍ଗଳାଶ୍ରୀ

ଏହି ଛନ୍ଦର ପ୍ରତ୍ୟେକ ପଦରେ ଦୁଇ ଚରଣ ଥାଏ । ପ୍ରତି ଚରଣ ତିନି ଭାଗରେ ବିଭକ୍ତ ଓ କୋଡ଼ିଏ ଅକ୍ଷର ବିଶିଷ୍ଟ । ଷଷ୍ଠ ଓ ଦ୍ୱାଦଶ ଅକ୍ଷର ପରେ ଯତିପାତ ହୁଏ ।

ତରୁ ଲତା ଅଙ୍ଗେ ଏବେ କେତେ ରଙ୍ଗେ
ଶୋଭର ହେଲି ବିଳାସ,
କେହୁ ପଲ୍ଲବିଲ, କେହୁ ମୁକୁଳିଲ,
କାହିଁ ବା ପୁଷ୍ପ-ବିକାଶ ।

## (୮) ରସକୁଲ୍ୟା

ଏହି ଛନ୍ଦର ପ୍ରତ୍ୟେକ ପଦରେ ଛଅ ଚରଣ ଥାଏ । ପ୍ରଥମ ଚାରି ଚରଣରେ ପ୍ରତି ଚରଣରେ ଏଗାର ଅକ୍ଷର ଲେଖାଏଁ, ପଞ୍ଚମ ଚରଣରେ ଆଠ ଅକ୍ଷର ଏବଂ ଷଷ୍ଠ ଚରଣରେ କୋଡ଼ିଏ ଅକ୍ଷର ଥାଏ । ପ୍ରଥମ ପାଞ୍ଚ ଚରଣର ଷଷ୍ଠ ଅକ୍ଷର ପରେ ଏବଂ ଶେଷ ଚରଣର ଷଷ୍ଠ, ଦ୍ୱାଦଶ ଓ ଅଷ୍ଟାଦଶ ଅକ୍ଷର ପରେ ଯତିପାତ ହୁଏ । ଏହି ଛନ୍ଦର ପଞ୍ଚମ ଚରଣକୁ ଉପର୍ଯ୍ୟୁପରି ଦୁଇ ଥର ଓ ଶେଷ ଚରଣର ଆବୃତ୍ତି ଉତ୍ତାରୁ ଆଉ ଥରେ ଆବୃତ୍ତି କରିବାର ବିଧି ଅଛି ।

ରବି ଅସ୍ତେ ସନ୍ଧ୍ୟା ହେଲା ପ୍ରକଟ । ହନୁ ମାର୍ଜାରଙ୍କ ସମାନେ ମର୍କଟ ।<br>
ଧେନୁମାନଙ୍କ ସଙ୍ଗରେ ମିଶିଲା । ଲଙ୍କାଗଡ଼ର ଭିତରେ ପଶିଲା ।<br>
ଦେଖି ତାଙ୍କୁ ଲଙ୍କାଦେବୀ ।<br>
ପଥ ଓଗାଳିଣ ବୋଇଲା ବାନର ! ଆଜ ମୁଁ ତୋତେ ଖାଇବି ।

## (୯) ଶ୍ରେଣୀ

ଏହି ଛନ୍ଦର ପ୍ରତ୍ୟେକ ପଦରେ ଚାରି ଚରଣ ଥାଏ । ପ୍ରଥମ ଦୁଇ ଚରଣରେ ଅଣତିରିଶ ଅକ୍ଷର ଲେଖାଏଁ, ତୃତୀୟ ଚରଣରେ ନଅ ଅକ୍ଷର ଏବଂ ଶେଷ ଚରଣରେ ତେର ଅକ୍ଷର ଥାଏ । ପ୍ରଥମ ଦୁଇ ଚରଣର ଅଷ୍ଟମ, ଷୋଡ଼ଶ, ଚତୁର୍ବିଂଶ ଅକ୍ଷର ପରେ ଏବଂ ଶେଷ ଚରଣର ଅଷ୍ଟମ ଅକ୍ଷର ପରେ ଯତିପାତ ହୁଏ । ଏହି ଛନ୍ଦରେ ପ୍ରଥମ ଓ ଦ୍ୱିତୀୟ ଚରଣର ମିତ୍ରାକ୍ଷର ଏବଂ ତୃତୀୟ ଓ ଚତୁର୍ଥ ଚରଣର ମିତ୍ରାକ୍ଷର ହୁଏ । ପ୍ରଥମ ଦୁଇ ଚରଣରେ ଅଷ୍ଟମ ଓ ଷୋଡ଼ଶ ଅକ୍ଷରର ସାମ୍ୟ ଦେଖାଯାଏ ।

ତୁହି ମା ଜନମଭୂମି ପବିତ୍ର ଭାରତ ଭୂମି<br>
ତୋହର ସନ୍ତାନ ଆମେ ଅଟୁଁ ସରବେ,<br>
ତୋର ଶ୍ରୀଚରଣସେବା ପାଇଁ ମନ ପ୍ରାଣ ଦେବା<br>
ଗାଇବା ତୋହର ନାମ ଆନନ୍ଦରବେ,<br>
ତୋ ଆନନ୍ଦେ ହୋଇବା ସୁଖୀ ,<br>
କାନ୍ଦିବା ଦୁଃଖରେ ତୋର ହୋଇଣ ଦୁଃଖୀ ।

## (୧୦) ଆଷାଢ଼ ଶୁକ୍ଳ

ଏହି ଛନ୍ଦର ପ୍ରତ୍ୟେକ ପାଦରେ ଛଅ ଚରଣ ଥାଏ । ପ୍ରଥମ ଚାରି ଚରଣରେ ଏଗାର ଅକ୍ଷର ଲେଖାଏଁ, ପଞ୍ଚମ ଚରଣରେ ଛଅ ଅକ୍ଷର ଏବଂ ଶେଷ ଚରଣରେ ଏଗାର ଅକ୍ଷର ଥାଏ । ପ୍ରଥମ ଚାରି ଚରଣର ପଞ୍ଚମ ଅକ୍ଷର ପରେ, ପଞ୍ଚମ ଚରଣର

ତୃତୀୟ ଅକ୍ଷର ପରେ ଏବଂ ଶେଷ ଚରଣର ପଞ୍ଚମ ଏବଂ ଅଷ୍ଟମ ଅକ୍ଷର ପରେ ଯତିପାତ ହୁଏ । ଏହି ଛନ୍ଦରେ ପ୍ରଥମ ଓ ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଏବଂ ପଞ୍ଚମ ଓ ଷଷ୍ଠ ଚରଣର ମିତ୍ରାକ୍ଷର ହୁଏ ।

ନଦୀ ବେଳେ ବେଳେ ଲଙ୍ଘଇ କୂଳ,
କୂଳତରୁକୁଳ କରେ ଉନ୍ମୂଳ,
ଗରବେ ଓଟାର ଗରଭେ ନଏ,
ଦରିଦ୍ର-କୁଟୀର ଭାଙ୍ଗି ସେ ଦଏ ।
କହ ଲୋ ତଟିନି !
କି ଯଶ ଦୁର୍ବଳେ ପୀଡ଼ି ବା ଜିଣି ?

## (୧୧) କଲ୍ୟାଣ ଆହାରୀ

ଏହି ଛନ୍ଦର ପ୍ରତ୍ୟେକ ପାଦରେ ଚାରି ଚରଣ ଥାଏ । ପ୍ରଥମ ଦୁଇ ଚରଣରେ ଏକୋଇଶ ଅକ୍ଷର ଲେଖାଏଁ , ତୃତୀୟ ଚରଣରେ ବାର ଅକ୍ଷର ଏବଂ ଚତୁର୍ଥ ଚରଣରେ ଏକୋଇଶ ଅକ୍ଷର ଥାଏ । ପ୍ରଥମ ଦୁଇ ଚରଣରେ ଷଷ୍ଠ, ଦ୍ୱାଦଶ ଓ ଅଷ୍ଟାଦଶ ଅକ୍ଷର ପରେ, ତୃତୀୟ ଚରଣରେ ତୃତୀୟ ଓ ନବମ ଅକ୍ଷର ପରେ ଏବଂ ଚତୁର୍ଥ ଚରଣରେ ଷଷ୍ଠ, ଦ୍ୱାଦଶ ଓ ଅଷ୍ଟାଦଶ ଅକ୍ଷର ପରେ ଯତିପାତ ହୁଏ ।

ଶିଶିର ଦିବସ ହେଲା ଅତି କୃଶ,
ଅତି ବଡ଼ ନିଶା ହୋଇଲା,
ଗୋଧୂଳି ନୋହୁଣୁ କୋଟି ହିମରେଣୁ
ଧରଣୀରୁ ତାପ ହରିଲା ।
ନିଶାରେ ଅଜସ୍ର ତୁଷାର ବର୍ଷିଲା ;
ଧଳା ଉତ୍ତରୀୟ ତପସ୍ୱୀ ମଣ୍ଡିଲା
ପଶ୍ଚିମ ଯାମିନୀ ଦିଶିଲା ।



## ୩୦ ପରିଶିଷ୍ଟ

### (୧) ବର୍ଣ୍ଣମାନଙ୍କର ଉଚ୍ଚାରଣ

ଓଡ଼ିଆ ଭାଷାରେ ହ୍ରସ୍ୱ ଓ ଦୀର୍ଘ ସ୍ୱରର ଉଚ୍ଚାରଣରେ ପ୍ରଭେଦ ଦେଖାଯାଏ ନାହିଁ । ଋ, ୠ, ଌ, ଏ ତିନି ବର୍ଣ୍ଣର ଯେପରି ଉଚ୍ଚାରଣ ଦେଖା ଯାଉଅଛି, ସେଥିରୁ ଏମାନଙ୍କୁ ସ୍ୱରବର୍ଣ୍ଣ ମଧ୍ୟରେ ଗଣନା କରିବା ସଙ୍ଗତ ବୋଲି ବୋଧ ହେଉ ନାହିଁ । ସଂସ୍କୃତ ଭାଷାରେ ଏହି ତିନୋଟି ସ୍ୱରବର୍ଣ୍ଣର ଯେଉଁ ଉଚ୍ଚାରଣ ଥିଲା, ବର୍ତ୍ତମାନ ଓଡ଼ିଆ ଭାଷାରେ ତାହା ନାହିଁ । ବର୍ଗର ପଞ୍ଚମ ବର୍ଣ୍ଣଗୁଡ଼ିକ ବର୍ଗର ଅନ୍ୟାନ୍ୟ ବର୍ଣ୍ଣପରି କଣ୍ଠ ପ୍ରଭୃତି ସାହାଯ୍ୟରେ ଉଚ୍ଚାରିତ ହୋଇ ନାସିକା ସାହାଯ୍ୟରେ ମଧ୍ୟ ଉଚ୍ଚାରିତ ହୁଅନ୍ତି । ଅତଏବ ଙ କଣ୍ଠ୍ୟାନୁନାସିକ, ଞ ତାଲବ୍ୟାନୁନାସିକ, ଣ ମୂର୍ଦ୍ଧନ୍ୟାନୁନାସିକ, ନ ଦନ୍ତ୍ୟାନୁନାସିକ, ମ ଓଷ୍ଠ୍ୟାନୁନାସିକ ବର୍ଣ୍ଣ ।

ଓଡ଼ିଆ ଭାଷାରେ ଜ ଓ ଯ ର ଉଚ୍ଚାରଣରେ ପ୍ରଭେଦ ଦେଖାଯାଏ ନାହିଁ । ଲୋକେ ଯ କୁ ପ୍ରାୟ ଜ ପରି ଉଚ୍ଚାରଣ କରିଥାନ୍ତି । ବର୍ଗ୍ୟ ବ ଓ ଅବର୍ଗ୍ୟ ବ ର ଆକୃତିରେ ଆଦୌ ପ୍ରଭେଦ ନାହିଁ, ଉଚ୍ଚାରଣରେ ମଧ୍ୟ ପ୍ରଭେଦ ପ୍ରାୟ ନାହିଁ । ଅନ୍ତସ୍ଥ ବ ଅନ୍ୟବର୍ଣ୍ଣ ତଳେ '୍ୱ' (ବ-ଫଳା) ହୋଇ ଯୁକ୍ତ ହେଲେ ଏହାର ଉଚ୍ଚାରଣ ବର୍ଗ୍ୟ ବ ର ଉଚ୍ଚାରଣରୁ ବିଲକ୍ଷଣ ଦେଖାଯାଏ ।

ଶ, ଷ, ସ ଏହି ତିନିବର୍ଣ୍ଣର ଉଚ୍ଚାରଣରେ ମଧ୍ୟ ପ୍ରଭେଦ ପାଳିତ ହୁଏ ନାହିଁ; ଶ ଓ ଷ କୁ ଲୋକେ ସ ପରି ଉଚ୍ଚାରଣ କରିଥାନ୍ତି । 'ଃ'(ବିସର୍ଗ) ର ପୂର୍ବବର୍ତ୍ତୀ ସ୍ୱର ଉଚ୍ଚାରଣ ସ୍ଥାନର ସାହାଯ୍ୟରେ ବିସର୍ଗ ଉଚ୍ଚାରିତ ହୁଏ । ଯଥା—ଅତଃ, ନିଃଶେଷ, ଦୁଃଖ ।

### (୨) ସମ୍ବୋଧନ

ଅପଭ୍ରଷ୍ଟ ଶବ୍ଦ ଓ ସଂସ୍କୃତ—ଭିନ୍ନ ଭାଷାରୁ ଆଗତ ଶବ୍ଦମାନଙ୍କର ପ୍ରଥମା ବିଭକ୍ତିରେ ଯେଉଁ ରୂପ, ସମ୍ବୋଧନରେ ମଧ୍ୟ ସେହିରୂପ । ସଂସ୍କୃତରୁ ଆଗତ ଶବ୍ଦ-ମାନଙ୍କର ସମ୍ବୋଧନରେ ସେହି ଭାଷାରେ ବ୍ୟବହୃତ ରୂପ କ୍ୱଚିତ୍ ଦେଖାଯାଏ; ମାତ୍ର ଓଡ଼ିଆ ଭାଷାରେ ପ୍ରଥମା ବିଭକ୍ତିରେ ସଂସ୍କୃତ ଶବ୍ଦମାନଙ୍କର ଯେଉଁ ରୂପ, ସମ୍ବୋଧନରେ ସାଧାରଣତଃ ସେହି ରୂପ ହୋଇଯାଏ ।

## (୩) ସ୍ତ୍ରୀଲିଙ୍ଗ ଶବ୍ଦର ବିଶେଷଣ

ବିଶେଷ୍ୟର ଯେଉଁ ଲିଙ୍ଗ, ତାହାର ବିଶେଷଣର ସେହି ଲିଙ୍ଗ । ଓଡ଼ିଆ ଭାଷାରେ ସ୍ତ୍ରୀଲିଙ୍ଗ ଶବ୍ଦର ବିଶେଷଣରେ କେତେକ ସ୍ଥଳରେ ସ୍ତ୍ରୀ ପ୍ରତ୍ୟୟ ହୋଇଥାଏ । ମାତ୍ର ପୁଂଲିଙ୍ଗ ଶବ୍ଦର ବିଶେଷଣ ଯେପରି, ସ୍ତ୍ରୀଲିଙ୍ଗ ଶବ୍ଦର ବିଶେଷଣ ଅନେକ ସ୍ଥଳରେ ସେହିପରି ଥାଏ । ଗୁଣବତୀ ରମଣୀ, ବୁଦ୍ଧିମତୀ ବାଳିକା, ପଦ୍ମିନୀ ଘାଣ୍ଟି ଏପରି ପ୍ରୟୋଗ ଦେଖାଯାଏ । ମାତ୍ର 'ଲତାଟି ପୁଷ୍ପମାନଙ୍କରେ ସୁନ୍ଦରୀ ଦିଶୁଅଛି', ଏପରି ପ୍ରୟୋଗ କେହି କରନ୍ତି ନାହିଁ । 'ଲତାଟି ପୁଷ୍ପମାନଙ୍କରେ ସୁନ୍ଦର ଦିଶୁଅଛି', କହନ୍ତି । 'ପ୍ରାଚୀନା ଅଟ୍ଟାଳିକା' କେହି କହନ୍ତି ନାହିଁ, 'ପ୍ରାଚୀନ ଅଟ୍ଟାଳିକା' କହନ୍ତି ।

## (୪) ଣତ୍ୱ ବିଧାନ

ସଂସ୍କୃତ ଭାଷାରୁ ଆଗତ ଏକ ପଦ ମଧ୍ୟରେ ଋ, ର୍, ଷ୍ ପରେ ନ ଥିଲେ ଣ ହୁଏ । ଯଥା—ଋଣ, ପର୍ଣ୍ଣ, କୃଷ୍ଣ ।

ସ୍ୱରବର୍ଣ୍ଣ, କ ବର୍ଗ, ପ ବର୍ଗ, ଯ୍, ବ୍, ହ୍, ଅନୁସ୍ୱାର ଏଥି ମଧ୍ୟରୁ କୌଣସି ଏକ କିମ୍ବା ଏକାଧିକ ବର୍ଣ୍ଣ ଋ, ର୍, ଷ୍ ପରେ ବ୍ୟବଧାନ ଥିଲେ ମଧ୍ୟ ନ ଠାରେ ଣ ହୁଏ । ଯଥା—କରୁଣା, ପ୍ରାଣ, ବିଷାଣ, ସୃକ୍କଣୀ, ମାର୍ଗଣ, ବ୍ରାହ୍ମଣ, ବୃଂହଣ ।

ତ, ଥ, ଦ, ଧ ସଂଯୁକ୍ତ ହେଲେ ନ ଠାରେ ଣ ହୁଏ ନାହିଁ । ଯଥା—ଭ୍ରାନ୍ତ, ଗ୍ରନ୍ଥ, କ୍ରନ୍ଦନ, ରନ୍ଧନ ।

ପୂର୍ବ ପଦରେ ଋ, ର୍ ବା ଷ୍ ଥିଲେ ପରପଦର ନ ଣ ହୁଏ ନାହିଁ । ଯଥା—ଦୁର୍ନାମ, ବୀରନାରୀ, ସୁରାଙ୍ଗନା, ସମରନାଦ ।

ଋ ର୍ ବା ଷ ର ପରବର୍ତ୍ତୀ ନ ହେଲେ ମୁଦ୍ଧା କେତେଗୁଡ଼ିଏ ଶବ୍ଦରେ ଣ ଦେଖାଯାଏ । ଏପରି ଣ କୁ ସ୍ୱାଭାବିକ ଣ କହନ୍ତି । ଯଥା—କାଣ, ଗୁଣ, କଣା ।

ଅପଭ୍ରଷ୍ଟ ଓ ସଂସ୍କୃତ-ଭିନ୍ନ ଭାଷାରୁ ଆଗତ ଶବ୍ଦମାନଙ୍କରେ ନ-ର ବ୍ୟବହାର ଅତି ଅଳ୍ପ ଦେଖାଯାଏ । ଯଥା—ଊଣା, ମାଣ, କାହାଣ, ପଣ, ପାଣ, ଠାଣ, ପଠାଣ, ଛଣା, ପୁହାଣ, ସହଣି ।

## (୫) ଷତ୍ୱବିଧି

ଏକପଦ ଭିତରେ ଅ, ଆ ଭିନ୍ନ ସ୍ୱରବର୍ଣ୍ଣ ବା ର ପରେ ସ ଥିଲେ ସାଧାରଣତଃ ଷ ହୁଏ । ସନ୍ଧି-ଜାତ ସ ମଧ୍ୟ ଷ ହୁଏ । ଯଥା—ବିଷୟ, ଅଭିଷେକ, ନିଷ୍ପ୍ରୟୋଜନ, ଋଷ୍ଟ, ପୁଷ୍ଟ, ନିଷ୍କଳଙ୍କ, ଶିଷ୍ଟ ।

କେତେଗୁଡ଼ିଏ ଶବ୍ଦରେ ସ୍ୱାଭାବିକ ଷ ଦେଖା ଯାଏ । ଯଥା—ଭାଷା, ଅଭିଳାଷ, ଷଣ୍ଢ, ଷଷ୍ଠ, ପାଷାଣ, କଷାୟ, ସ୍ପଷ୍ଟ, ଆଷାଢ଼ ।

ଅପଭ୍ରଷ୍ଟ ଓ ସଂସ୍କୃତ ଭିନ୍ନ ଭାଷାରୁ ଆଗତ ଶବ୍ଦମାନଙ୍କରେ ଉପରଉକ୍ତ ନିୟମମାନ ଚଳେ ନାହିଁ । ଯଥା—କିସ, ହିସାବ, ମିସଲ, କସମ, ବେଉସା ।

## (୭) ପଦାନ୍ୱୟ

ବାକ୍ୟ ମଧ୍ୟରେ ଗୋଟିଏ ପଦ ସହିତ ଅନ୍ୟ ପଦର ସମ୍ବନ୍ଧକୁ ଅନ୍ୱୟ କହନ୍ତି ।

ଦୁଇ ଗୋଟିରୁ ଊଣା ପଦରେ ବାକ୍ୟ ହୋଇ ନ ପାରେ । ଏହି ଦୁଇ ଗୋଟିରୁ ଗୋଟିଏ କର୍ତ୍ତା, ଅପରଟି କ୍ରିୟା । ଯଥା—କେଶବ ଆସୁଅଛି, ଗାଈ ଚରୁଅଛି, ନଦୀ ବଢ଼ୁଥିଲା ।

କୌଣସି କୌଣସି ବାକ୍ୟରେ କର୍ତ୍ତୃପଦ ଉହ୍ୟ ଥାଏ । ଯଥା—'ଆସ' ଏହି ବାକ୍ୟରେ 'ତୁମ୍ଭେ' ବା 'ତୁମ୍ଭେମାନେ' ଏହି କର୍ତ୍ତୃପଦ ଉହ୍ୟ ଅଛି ।

'କ୍ରିୟା' ବାକ୍ୟ ମଧ୍ୟରେ ସର୍ବପ୍ରଧାନ ଅଙ୍ଗ । ତାହା ସହିତ 'କର୍ତ୍ତା', 'କର୍ମ' 'କରଣ', 'ସମ୍ପ୍ରଦାନ', 'ଅପାଦାନ, 'ଅଧିକରଣ', ଓ 'କ୍ରିୟା ବିଶେଷଣ'ର ଅନ୍ୱୟ ଥାଏ । କର୍ତ୍ତୃପଦ, କର୍ମପଦ ପ୍ରଭୃତି ସହିତ ସେମାନଙ୍କର 'ବିଶେଷଣ'ର, ବିଶେଷଣ ସହିତ 'ବିଶେଷଣର ବିଶେଷଣ'ର ଏବଂ ପରବର୍ତ୍ତୀ ବିଶେଷ୍ୟ ପଦ ସହିତ 'ସମ୍ବନ୍ଧପଦ'ର ଅନ୍ୱୟ ଥାଏ ।

ସାଧାରଣତଃ କର୍ତ୍ତୃପଦ ବାକ୍ୟର ଆରମ୍ଭରେ, କ୍ରିୟାପଦ ବାକ୍ୟର ଶେଷରେ, ସକର୍ମକ କ୍ରିୟାର କର୍ମପଦ କ୍ରିୟାର ଅବ୍ୟବହିତ ପୂର୍ବରେ ଏବଂ ଅନ୍ୟ କାରକମାନ କର୍ତ୍ତୃପଦ ଓ କର୍ମପଦ ଏ ଦୁଇର ମଧ୍ୟରେ ଥାଏ । ବିଶେଷଣପଦ ଓ ସମ୍ବନ୍ଧପଦ ସେମାନଙ୍କ ସହିତ ଅନ୍ୱିତ ପଦର ପୂର୍ବରେ ବସନ୍ତି । ଅଧିକରଣ ପଦ କୌଣସି କୌଣସି ସ୍ଥଳରେ ବାକ୍ୟର ଆରମ୍ଭରେ ଦିଆଯାଇଥାଏ । ସମ୍ବୋଧନ ପଦର ଅନ୍ୟ କୌଣସି ପଦ ସହିତ ଅନ୍ୱୟ ନ ଥିବାରୁ ଅପର ପଦମାନଙ୍କର ପୂର୍ବରେ ତାହା ବ୍ୟବହାର କରାଯାଏ । ସମାପିକା କ୍ରିୟା ପରି ଅସମାପିକା କ୍ରିୟା ମଧ୍ୟ କର୍ତ୍ତୃପଦ ସହିତ ଅନ୍ୱିତ ହୁଏ ।

'ଗଙ୍ଗା ହିମାଳୟରୁ ନିର୍ଗତ ହୋଇ ସମୁଦ୍ରରେ ପତିତ ହୋଇଅଛି',— ଏହି ବାକ୍ୟରେ 'ଗଙ୍ଗା' ବ୍ୟକ୍ତିବାଚକ ବିଶେଷ୍ୟ, (ସ୍ୱାଭାବିକ) ସ୍ତ୍ରୀଲିଙ୍ଗ, ଏକବଚନ, କର୍ତ୍ତୃକାରକ, 'ପତିତ ହୋଇଅଛି', ଏହି କ୍ରିୟାର କର୍ତ୍ତା । 'ହିମାଳୟରୁ' ବ୍ୟକ୍ତି-ବାଚକ ବିଶେଷ୍ୟ, କ୍ଲୀବଲିଙ୍ଗ, ଏକବଚନ, ଅପାଦାନକାରକ, 'ନିର୍ଗତ ହୋଇ' ଏହି କ୍ରିୟା ସହିତ ଅନ୍ୱିତ । 'ନିର୍ଗତ ହୋଇ' ଅକର୍ମକ ଅସମାପିକା କ୍ରିୟା, 'ଗଙ୍ଗା'

ଏହି କର୍ତ୍ତୃପଦ ସହିତ ଅନ୍ୱିତ । 'ସମୁଦ୍ରରେ' ଜାତିବାଚକ ବିଶେଷ୍ୟ, କ୍ଳୀବଲିଙ୍ଗ, ଏକବଚନ, ସ୍ଥାନାଧିକରଣ କାରକ, 'ପତିତ ହୋଇଅଛି' ଏହି କ୍ରିୟା ସହିତ ଅନ୍ୱିତ । 'ପତିତ ହୋଇଅଛି' ଅକର୍ମକ ସମାପିକା କ୍ରିୟା, ଏକ ବଚନ, ତୃତୀୟ ପୁରୁଷ, ବର୍ତ୍ତମାନ ସମୀପ ଭୂତକାଳ, 'ଗଙ୍ଗା' ଏହି କର୍ତ୍ତୃପଦ ସହିତ ଅନ୍ୱିତ ।

"ଅଶୋକ ଅଳ୍ପକାଳ ମଧ୍ୟରେ ସୁକୌଶଳରେ ବିଦ୍ରୋହ ଦମନ କରି ପିତାଙ୍କର ଏବଂ ପ୍ରଧାନ ମନ୍ତ୍ରୀଙ୍କର ଅନୁରାଗ ଆକର୍ଷଣ କଲେ ।"—ଏହି ବାକ୍ୟରେ 'ଅଶୋକ' ବ୍ୟକ୍ତିବାଚକ ବିଶେଷ୍ୟ, ପୁଂଲିଙ୍ଗ, ଏକବଚନ, କର୍ତ୍ତୃକାରକ, 'ଆକର୍ଷଣ କଲେ' ଏହି କ୍ରିୟାର କର୍ତ୍ତା । 'ଅଳ୍ପକାଳ ମଧ୍ୟରେ' ଜାତିବାଚକ ବିଶେଷ୍ୟ, କ୍ଳୀବଲିଙ୍ଗ, ଏକବଚନ, କାଳାଧିକରଣ କାରକ, 'ଦମନ କରି' ଏହି କ୍ରିୟା ସହିତ ଅନ୍ୱିତ । 'ସୁକୌଶଳରେ' ଗୁଣବାଚକ ବିଶେଷ୍ୟ, କ୍ଳୀବ ଲିଙ୍ଗ, ଏକବଚନ, କରଣ କାରକ, 'ଦମନ କରି' ଏହି କ୍ରିୟା ସହିତ ଅନ୍ୱିତ । 'ବିଦ୍ରୋହ' କ୍ରିୟାବାଚକ ବିଶେଷ୍ୟ, କ୍ଳୀବଲିଙ୍ଗ, ଏକବଚନ, କର୍ମକାରକ, 'ଦମନ କରି' ଏହି କ୍ରିୟା ସହିତ ଅନ୍ୱିତ । 'ଦମନ କରି' ସକର୍ମକ ଅସମାପିକା କ୍ରିୟା, 'ଅଶୋକ' ଏହି କର୍ତ୍ତୃପଦ ସହିତ ଅନ୍ୱିତ, ଏହାର କର୍ମ 'ବିଦ୍ରୋହ' । 'ପିତାଙ୍କର' ଜାତିବାଚକ ବିଶେଷ୍ୟ ପୁଂଲିଙ୍ଗ, ଏକବଚନ, ସମ୍ବନ୍ଧପଦ, 'ଅନୁରାଗ' ଏହି ପଦ ସହିତ ଅନ୍ୱିତ । 'ଏବଂ' ସଂଯୋଜକ ଅବ୍ୟୟ । 'ପ୍ରଧାନ' ବିଶେଷ୍ୟର ବିଶେଷଣ, 'ମନ୍ତ୍ରୀଙ୍କର' ଏହି ବିଶେଷ୍ୟ ପଦ ସହିତ ଅନ୍ୱିତ । 'ମନ୍ତ୍ରୀଙ୍କର' ଜାତିବାଚକ ବିଶେଷ୍ୟ, ପୁଂଲିଙ୍ଗ, ଏକବଚନ, ସମ୍ବନ୍ଧ ପଦ, 'ଅନୁରାଗ' ଏହି ପଦ ସହିତ ଅନ୍ୱିତ । 'ଅନୁରାଗ' ଗୁଣବାଚକ ବିଶେଷ୍ୟ, କ୍ଳୀବଲିଙ୍ଗ, ଏକବଚନ, କର୍ମକାରକ, 'ଆକର୍ଷଣ କଲେ' ଏହି କ୍ରିୟା ସହିତ ଅନ୍ୱିତ । 'ଆକର୍ଷଣ କଲେ' ସକର୍ମକ ସମାପିକା କ୍ରିୟା, ବିଶୁଦ୍ଧ ଭୂତକାଳ, ଏକବଚନ, ତୃତୀୟ ପୁରୁଷ, 'ଅଶୋକ' ଏହି କର୍ତ୍ତୃପଦ ସହିତ ଅନ୍ୱିତ ।

"ବୁଦ୍ଧଦେବଙ୍କ ଜନ୍ମଗ୍ରହଣର ସପ୍ତମ ଦିବସରେ ତାହାଙ୍କର ଧର୍ମଶୀଳା ଜନନୀ ମାନବଲୀଳା ସମ୍ବରଣ କଲେ ।" ଏହି ବାକ୍ୟରେ 'ବୁଦ୍ଧଦେବଙ୍କ' ବ୍ୟକ୍ତିବାଚକ ବିଶେଷ୍ୟ, ପୁଂଲିଙ୍ଗ, ଏକବଚନ, ସମ୍ବନ୍ଧ ପଦ, 'ଜନ୍ମଗ୍ରହଣ'ର ଏହି ପଦ ସହିତ ଅନ୍ୱିତ । 'ଜନ୍ମଗ୍ରହଣର' କ୍ରିୟାବାଚକ ବିଶେଷ୍ୟ, କ୍ଳୀବଲିଙ୍ଗ, ସମ୍ବନ୍ଧ ପଦ, 'ଦିବସରେ' ଏହି ପଦ ସହିତ ଅନ୍ୱିତ । 'ସପ୍ତମ' ବିଶେଷ୍ୟର ବିଶେଷଣ, 'ଦିବସରେ' ଏହି ବିଶେଷ୍ୟ ପଦ ସହିତ ଅନ୍ୱିତ । 'ଦିବସରେ' ଜାତିବାଚକ ବିଶେଷ୍ୟ, କ୍ଳୀବଲିଙ୍ଗ, ଏକବଚନ, କାଳାଧିକରଣ କାରକ, 'ସମ୍ବରଣ କଲେ' ଏହି କ୍ରିୟା ସହିତ ଅନ୍ୱିତ । 'ତାହାଙ୍କର' ସର୍ବନାମ, ପୁଂଲିଙ୍ଗ, ଏକବଚନ, ତୃତୀୟ ପୁରୁଷ, ସମ୍ବନ୍ଧ ପଦ, 'ବୁଦ୍ଧଦେବଙ୍କ' ଏହି ବିଶେଷ୍ୟ ପଦ ପରିବର୍ତ୍ତିରେ ବ୍ୟବହୃତ । 'ଧର୍ମଶୀଳା' ବିଶେଷ୍ୟର ବିଶେଷଣ, 'ଜନନୀ' ଏହି ବିଶେଷ୍ୟ ପଦ ସହିତ ଅନ୍ୱିତ ।

'ଜନନୀ' ଜାତିବାଚକ ବିଶେଷ୍ୟ, ସ୍ତ୍ରୀଲିଙ୍ଗ, ଏକବଚନ, କର୍ତ୍ତୃକାରକ, 'ସମ୍ବରଣ କଲେ' ଏହି କ୍ରିୟା ସହିତ ଅନ୍ୱିତ । 'ମାନବଲୀଳା' କ୍ରିୟାବାଚକ ବିଶେଷ୍ୟ, (ସ୍ୱାଭାବିକ) ସ୍ତ୍ରୀଲିଙ୍ଗ, ଏକବଚନ, କର୍ମକାରକ, 'ସମ୍ବରଣ କଲେ' ଏହି କ୍ରିୟା ସହିତ ଅନ୍ୱିତ । 'ସମ୍ବରଣ କଲେ' ସକର୍ମକ ସମାପିକା କ୍ରିୟା, ବିଶୁଦ୍ଧ ଭୂତକାଳ, ଏକବଚନ, ତୃତୀୟ ପୁରୁଷ, 'ଜନନୀ' ଏହି କର୍ତ୍ତୃପଦ ସହିତ ଅନ୍ୱିତ, ଏହାର କର୍ମ 'ମାନବଲୀଳା' ।

## (୭) ବାକ୍ୟାନ୍ୱୟ

ଗଦ୍ୟରଚନାରେ କର୍ତ୍ତା, କର୍ମ, କ୍ରିୟା ପ୍ରଭୃତି ଯେଉଁ କ୍ରମରେ ସନ୍ନିବିଷ୍ଟ ହୋଇଥାନ୍ତି, ପଦ୍ୟରଚନାରେ ଅନେକ ସ୍ଥଳରେ ତାହାର ବ୍ୟତିକ୍ରମ ଦେଖାଯାଏ । କର୍ତ୍ତା, କର୍ମ, କ୍ରିୟା ପ୍ରଭୃତିକୁ ପୁନର୍ବାର ପୂର୍ବକ୍ରମରେ ବସାଇଲେ ଏବଂ ପଦ୍ୟରେ ବ୍ୟବହୃତ, ମାତ୍ର ଗଦ୍ୟରେ ଅବ୍ୟବହାର୍ଯ୍ୟ ପଦ ପରିତ୍ୟାଗ କରି ତତ୍ପରିବର୍ତ୍ତେ ଗଦ୍ୟରେ ବ୍ୟବହାର୍ଯ୍ୟ ପଦ ପ୍ରୟୋଗ କଲେ, ପଦ୍ୟ ଗଦ୍ୟରେ ପରିଣତ ହୁଏ । ଏହାକୁ **ବାକ୍ୟାନ୍ୱୟ** କହନ୍ତି । ନିମ୍ନରେ ଗୋଟିଏ ଉଦାହରଣ ପ୍ରଦର୍ଶିତ ହେଲା—

"ଅଗ୍ରଜ ଆଜ୍ଞାବହ ସୌମିତ୍ରି ରଥୀ
ରାମ-ହୃଦୟ-ଜ୍ୟୋତ୍ସ୍ନା ବୈଦେହୀ ସତୀ
ବିସର୍ଜ୍ଜି ଭାଗୀରଥୀ-ତୀର-କାନନେ
ଲେଉଟାଇଲେ ରଥ ଅଥୟ ମନେ ।"

ଏହି ପଦ୍ୟକୁ ନିମ୍ନଲିଖିତରୂପେ ଗଦ୍ୟରେ ପରିଣତ କରାଯାଇପାରେ—ଅଗ୍ରଜ ଆଜ୍ଞାବହ ରଥୀ ସୌମିତ୍ରି ରାମ-ହୃଦୟ-ଜ୍ୟୋତ୍ସ୍ନା ସତୀ ବୈଦେହୀଙ୍କୁ ଭାଗୀରଥୀ-ତୀର-କାନନରେ ବିସର୍ଜନ କରି ଅଥୟ ମନରେ ରଥ ଲେଉଟାଇଲେ ।



( ବ୍ୟାକରଣ ଦ୍ୱିତୀୟ ସୋପାନ ସମ୍ପୂର୍ଣ୍ଣ )

# ରଚନାଶିକ୍ଷା

## ପ୍ରଥମ ସୋପାନ

### ୧—ବିଶେଷ୍ୟ ଓ ବିଶେଷଣ

'ପଲ୍ଲବ' ଏହି ବିଶେଷ୍ୟ ପଦର ଅନେକଗୁଡ଼ିଏ ବିଶେଷଣ ହୋଇପାରେ । ତନ୍ମଧ୍ୟରେ 'କୋମଳ' ବା 'ନବୀନ' ଯେପରି ଉପଯୋଗୀ, ଅନ୍ୟ ବିଶେଷଣ ସେହିପରି ନୁହେଁ । ସେହିପରି ବେଗବାନ୍ ଅଶ୍ୱ, ପୟସ୍ୱିନୀ ଗାଭୀ, ଅତଳସ୍ପର୍ଶ ସମୁଦ୍ର, ସରଳା ବାଳିକା,—ଏ ସ୍ଥଳମାନଙ୍କରେ ବିଶେଷଣଗୁଡ଼ିକ ବିଶେଷ୍ୟର ଉପଯୋଗୀ ।

ଅନୁଶୀଳନୀ—ନିମ୍ନଲିଖିତ ବିଶେଷ୍ୟମାନଙ୍କରେ ଉପଯୁକ୍ତ ବିଶେଷଣ ଲଗାଅ—

ବାଳକ, ଛବି, ଫଳ, ବଟବୃକ୍ଷ, କୁହୁରବ, ନଦୀ, ପର୍ବତ, ଜଳ, ଆକାଶ, ପୁଷ୍ପ, ଅନ୍ଧକାର, ଲଲାଟ, କେଶ, ବକ୍ଷସ୍ଥଳ, ଭୃତ୍ୟ, ଦୂର୍ବାଦଳ, ବନସ୍ଥଳୀ, ଆକୃତି, ସମ୍ପତ୍ତି, ଅଧ୍ୟବସାୟ, ବୁଦ୍ଧି, ବସ୍ତ୍ର, ପୁସ୍ତକ, ବ୍ୟାଘ୍ର, କାଷ୍ଠ, ଶୃଗାଳ, ଅରଣ୍ୟ, ସାହସ, ଗ୍ରୀଷ୍ମ, ସ୍ୱଭାବ, ଆଲୋକ ହୃଦୟ, ଚକ୍ଷୁ, ଦନ୍ତ, ଜଳାଶୟ, ଶଯ୍ୟା ।

ନିମ୍ନଲିଖିତ ବିଶେଷଣମାନଙ୍କରେ ଉପଯୁକ୍ତ ବିଶେଷ୍ୟପଦ ଲଗାଅ—କଠିନ, କୋମଳ, ଉଜ୍ଜ୍ୱଳ, ସରଳ, ସ୍ୱଚ୍ଛ ତୀକ୍ଷ୍ଣ, ଉଚ୍ଚ, ଗମ୍ଭୀର, ମୋଟା, ସରୁ, କାଳୀ, ପୁରାତନ, ଦୀର୍ଘ, ମଧୁର, ବିଶ୍ୱାସୀ, ସୁନ୍ଦର, ପକ୍ୱ, ପ୍ରଖର, ଶୀତଳ, ଦୃଢ଼, ସୁଗନ୍ଧ, ଦାରୁଣ ।

### ୨—ବିଶେଷ୍ୟ ଓ କ୍ରିୟା

କୌଣସି କୌଣସି କାର୍ଯ୍ୟ କେତେକ ପ୍ରାଣୀ ବା ପଦାର୍ଥରେ ସଙ୍ଗତ, ଅନ୍ୟ ଠାରେ ନୁହେଁ; ଯଥା—

'ସିଂହ'ଠାରେ 'ଗର୍ଜନ' ସଙ୍ଗତ, 'କୀଟ'ଠାରେ ନୁହେଁ । ବାୟୁ ବହୁଅଛି, ମୟୂର କେକାରବ କରୁଅଛି, ପୁଷ୍ପ ପ୍ରସ୍ଫୁଟିତ ହୋଇଅଛି, ଗୋରୁମାନଙ୍କ ଚରୁଅଛି ।—ଏପରି କହିବା ସଙ୍ଗତ ଅଟେ ।

ଅନୁଶୀଳନୀ—ନିମ୍ନଲିଖିତ ବିଶେଷ୍ୟପଦମାନଙ୍କରେ ଯୋଗ୍ୟ କ୍ରିୟାପଦ ଲଗାଅ—

ସୋଲ, ସାପ, ଘୋଡ଼ା, ହାତୀ, ମେଘ, କୋକିଳ ଜୁଆର, ଢୁସରେ, ବାୟୁ, ଚଳନ୍ଦକ୍ସ, ନଦ, ଆମ୍ବ, ପକ୍ଷୀ, ଭେଳା, ବସ୍ତ୍ର, ବିଜୁଳି, ଫୁଲ, ବାଣ, ମୟୂର, ବଜ୍ର, ଲଜ, ଶଙ୍ଖ, ଚନ୍ଦ୍ର, ଝାଳ, ଗଜ ।

ଶୂନ୍ୟ ସ୍ଥାନମାନଙ୍କରେ ଉପଯୁକ୍ତ କ୍ରିୟା ଦେଇ ନିମ୍ନଲିଖିତ ବାକ୍ୟମାନ ପୂରଣ କର—

ମାଧବ ଗୀତ —। ଦୋଳରେ ଶିଶୁ —। ଭିକାରୀ ଭିକ —। ତରୁ ଶାଖାରେ ପକ୍ଷୀ —। ବସନ୍ତ କାଳରେ ତରୁଲତାମାନେ —। ମେଘ ବୃଷ୍ଟି — ଦାଶରଥି ପୁଷ୍କରଣୀରେ —। ଗ୍ରୀଷ୍ମକାଳରେ ନଦୀପୁଷ୍କରଣୀମାନ —। ଶୋକରେ ତାହାଙ୍କ ଚକ୍ଷୁରୁ ଲୋତକ —। ଗୁରୁଜନମାନଙ୍କୁ ସର୍ବଦା —। ପକ୍ଷୀମାନେ ଆକାଶରେ —। ବ୍ୟାଘ୍ରକୁ ସମସ୍ତେ —। କୁରୁକ୍ଷେତ୍ର ଯୁଦ୍ଧରେ ପାଣ୍ଡବମାନେ —।

## ୩—କାରକ ଓ କ୍ରିୟାପଦ

ଅନୁଶୀଳନୀ—ଶୂନ୍ୟ ସ୍ଥାନମାନଙ୍କରେ ଉପଯୁକ୍ତ କାରକ ବା କ୍ରିୟାପଦ ବସାଇ ବାକ୍ୟ ପୂରଣ କର—

କେଶବ — ପାନ କରୁଅଛି । ଉମା — ପଢୁଅଛି । ଶିଶୁ — ଶୟନ କରିଅଛି । — ସୂର୍ଯ୍ୟକିରଣ ଅତି ପ୍ରଖର ହୁଏ । ଶରତ୍ କାଳରେ — ନିର୍ମଳ ହୁଏ । ଗଙ୍ଗା — ନିର୍ଗତ ହୋଇଅଛି । କୁରୁକ୍ଷେତ୍ର ଯୁଦ୍ଧରେ ପାଣ୍ଡବମାନେ — ପରାସ୍ତ କଲେ । ବର୍ଷାକାଳରେ ଲୋକେ — ନଦୀ ପାରି ହୁଅନ୍ତି । ଶୀତକାଳରେ ଧନୀମାନେ — ବସ୍ତ୍ର ଦାନ କରନ୍ତି । ପୁତ୍ରଶୋକରେ ଦଶରଥଙ୍କ — ଲୋତକ ପ୍ରବାହିତ ହେଲା । — ଅଙ୍କୁର ଜନ୍ମିଲା । — ରାବଣର ଭ୍ରାତା ଥିଲେ । ଦଣ୍ଡକାରଣ୍ୟରେ — ବାସ କରୁଥିଲେ । ନଳ — ବିବାହ କଲେ । ମହମ୍ମଦ — ଜନ୍ମଗ୍ରହଣ କରିଥିଲେ । — ଗଙ୍ଗା ସହିତ ଯମୁନା ମିଳିତ ହୋଇଅଛି । — ସମ୍ବଲପୁର ନଗର ଅବସ୍ଥିତ । —ଅଗ୍ନି ସେବା ସୁଖକର ବୋଧହୁଏ । — କେଶ ଶୁକ୍ଳବର୍ଣ୍ଣ ହୁଏ । — ପଦ୍ମ ଏବଂ — କୁମୁଦ ପ୍ରସ୍ଫୁଟିତ ହୁଏ । — ପଥରକୋଇଲାର ଖଣି ଅଛି । — ଯେଉଁ କ୍ଷୀର ବାହାରେ ଶୁଖିଗଲେ ଆମ୍ଭେମାନେ — ଝୁଣା କହୁଁ । — ନାନାପ୍ରକାର ବାସନ ପ୍ରସ୍ତୁତ ହୁଏ । ବ୍ରହ୍ମଦେଶର — କରୋସିନ୍ ତେଲ ମିଳେ । ଦୂଷିତ — ମଶା ଉତ୍ପନ୍ନ ହୁଅନ୍ତି । — ଚିନି ପ୍ରସ୍ତୁତ ହୁଏ, ଏବଂ — ନାନାପ୍ରକାର ମିଷ୍ଟାନ୍ନ ପ୍ରସ୍ତୁତ କରାଯାଏ । ଆମ୍ଭେମାନେ — ଆପଣା ମୁଖର ପ୍ରତିବିମ୍ବ ଦେଖୁଁ । ଉଦ୍ଭିଦ୍‌ମାନେ — ରସ ଆକର୍ଷଣ କରନ୍ତି ।— କାଶଫୁଲ ପ୍ରସ୍ଫୁଟିତ ହୁଏ । —କେନ୍ଦ୍ରାପଡ଼ା ଓ ଅଲଗା ପର୍ଯ୍ୟନ୍ତ ନାଳ ଖୋଲାହୋଇଅଛି । — ମରକତକେଶରୀ ଯେଉଁ ପଥରବନ୍ଧ ନିର୍ମାଣ କରିଥିଲେ, — ବର୍ତ୍ତମାନ ସୁଦ୍ଧା ଅଛି । — ବୁଢ଼ି ଦୁଇମିନିଟ୍ ରହିବା ଆମ୍ଭମାନଙ୍କର ଅସାଧ୍ୟ । ପାର୍ସୀ ଜାତି — ଆସି ଭାରତବର୍ଷରେ ବାସ କରିଅଛନ୍ତି । ସାକ୍ଷୀ ଗୋପୀନାଥଙ୍କର ମନ୍ଦିର ଅଛି । ନର୍ମଦାନଦୀ — ପତିତ ହୋଇଅଛି । ଆମ୍ଭମାନଙ୍କର — —ରୁ ଆସିଥିଲେ । — ଶ୍ୱେତ ହସ୍ତୀ ଦେଖାଯାଏ । ଗ୍ରୀଷ୍ମକାଳରେ ଆମ୍ବ

ପଣସ— । ତୃଷାତୁର ବ୍ୟକ୍ତିକୁ ଜଳ — । ଲଙ୍କାଯୁଦ୍ଧରେ ରାମଚନ୍ଦ୍ର ରାବଣକୁ — । ଗଙ୍ଗା ହିମାଳୟ ପର୍ବତରୁ — ।

## ୪—ଅସମାପିକା କ୍ରିୟା

ଆଦର୍ଶ—(୧) ଗୋପାଳ **ଭୋଜନକରି** ବିଦ୍ୟାଳୟକୁ ଗଲେ । (୨) ରାମଚନ୍ଦ୍ର ରାବଣଙ୍କୁ **ସଂହାରକରି** ଅଯୋଧ୍ୟାକୁ ପ୍ରତ୍ୟାଗମନ କଲେ । (୩) ରାତି **ପାହିଲେ** ଗୋକୁଳାନନ୍ଦ ବାଲେଶ୍ୱରକୁ ଯିବେ । (୪) ଆମ୍ଭେମାନେ **ଆସୁଁ ଆସୁଁ** ବାଟରେ ସନ୍ଧ୍ୟା ହେଲା ।

ଅନୁଶୀଳନୀ—ଶୂନ୍ୟ ସ୍ଥଳରେ ଯଥାଯୋଗ୍ୟ ଅସମାପିକା କ୍ରିୟା ଦେଇ ନିମ୍ନଲିଖିତ ବାକ୍ୟମାନ ପୂରଣ କର—

ମନ — ବିଦ୍ୟା ଅଭ୍ୟାସ କର । ବିଶ୍ୱାମିତ୍ର ରାମ ଓ ଲକ୍ଷ୍ମଣଙ୍କୁ ସଙ୍ଗରେ— ଆପଣାର ଆଶ୍ରମକୁ ନେଉଥିଲେ । ଯହୁ — ରତ୍ନ ମିଳେ । ପୁରୁଷୋତ୍ତମଦେବ ରାଜା — ସିଂହାସନରେ ବସୁ ନ ଥିଲେ । ଲୋକନାଥ ଛାତହାସ — ଶୋଇପଡ଼ିଲା । ବିଦ୍ୟାସାଗରଙ୍କ ଦୟାର କଥା — ସରିବ ନାହିଁ । ହନୁମାନ ସମୁଦ୍ର — ଲଙ୍କାରେ ସୀତାଙ୍କୁ ଠାବ କଲେ । ଶରତ୍କାଳ — ନଦୀ ପୁଷ୍କରିଣୀର ଜଳ ନିର୍ମଳ ହୁଏ । ପ୍ରଜାମାନଙ୍କୁ ଉତ୍ତମରୂପେ — ଶାସକଙ୍କର ମଙ୍ଗଳ ହୁଏ । ମନୁଷ୍ୟଟି ଗଛରୁ — ମଲା । ବସି — ସମୁଦ୍ର ବାଲି ସରେ । ମାଧବ କଥା — ସେ ଆସି ପହଞ୍ଚିଲା । ଶୀତକାଳ — ଶୀତବସ୍ତ୍ରର ପ୍ରୟୋଜନ ହୁଏ ନାହିଁ । ଦେହ ଭଲ — ମନ ଭଲ ଥାଏ । ନିତ୍ୟାନନ୍ଦ ଜଳ ମଧ୍ୟରେ — ବହୁଦୂର ଯାଇପାରେ । ଯୁଧିଷ୍ଠିର ସିଂହାସନରେ — ନ୍ୟାୟରେ ପ୍ରଜାପାଳନ କରିବାକୁ ଲାଗିଲେ । ଭାଗୀରଥୀନଦୀ ଗଙ୍ଗାରୁ — ସମୁଦ୍ରରେ ପଡ଼ିଅଛି । ରାତ୍ରିରେ ନ — ଦେହ ଅସୁସ୍ଥ ହୁଏ । ଆଖୁ — ସେଥିରୁ ରସ ବାହାରେ । ପାଣି ପିଇବ — କଉଡ଼ି ନେବ — । କପିଳାସ ଝରଣାର ଜଳ ଥରେ — ତାହା ଭୁଲି ପାରିବ ନାହିଁ । କୃଷକ ଭୂମି — ଜୀବିକା ନିର୍ବାହ କରେ ।

## ୫—ପ୍ରାଗ୍‌ଭୂତ ଓ ପ୍ରାଗ୍‌ଭବିଷ୍ୟତ୍‌କାଳ

ଗୋଟିଏ କ୍ରିୟାର କାଳ ଭୂତ ହେଲେ, ତାହାର ପୂର୍ବବର୍ତ୍ତୀ କ୍ରିୟାର କାଳକୁ ପ୍ରାଗ୍‌ଭୂତ, ଏବଂ ଗୋଟିଏ କ୍ରିୟାର କାଳ ଭବିଷ୍ୟତ୍ ହେଲେ, ତାହାର ପୂର୍ବବର୍ତ୍ତୀ କ୍ରିୟାର କାଳକୁ ପ୍ରାଗ୍‌ଭବିଷ୍ୟତ୍ କହନ୍ତି ।

ଗୋପାଳ ସନ୍ଧ୍ୟାବେଳେ ଆସିଲେ । ଗୋବିନ୍ଦ ତାହା ପୂର୍ବରୁ ଆସିଥିଲେ । ଏଠାରେ 'ଆସିଲେ' ଭୂତକାଳର କ୍ରିୟା, ଆସିଥିଲେ ପ୍ରାଗ୍‌ଭୂତ କାଳର କ୍ରିୟା ।

ଆଗାମୀ ବସନ୍ତକାଳରେ ଭଦ୍ରକ ଓ ବୃନ୍ଦାବାଲ୍ ମଧ୍ୟରେ ରେଲଗାଡ଼ି ଗମନା-ଗମନ କରିବ । ତାହା ପୂର୍ବରୁ ରେଲପଥ-ନିର୍ମାଣ ଶେଷ ହୋଇଥିବ । — ଏଠାରେ 'ଗମନାଗମନ କରିବ' ବିଶୁଦ୍ଧ ଭବିଷ୍ୟନ୍ତ କାଳର, ଏବଂ 'ହୋଇଥିବ' ପ୍ରାଗ୍‌ଭବିଷ୍ୟନ୍ତ କାଳର କ୍ରିୟା ।

ଅନୁଶୀଳନୀ—ଶୂନ୍ୟସ୍ଥଳରେ ଯଥାଯୋଗ୍ୟ କ୍ରିୟାପଦ ଦେଇ ନିମ୍ନଲିଖିତ ବାକ୍ୟ-ମାନ ପୂରଣ କର—

ଆଗାମୀ ଗୁରୁବାର ଦିନ ଗଣେଶ ଚତୁର୍ଥୀ ହେବ; ତହିଁ ପୂର୍ବଦିନ ବାଳଭୃତୀୟା — । ରଜସଂକ୍ରାନ୍ତିଦିନ ଲଗାଣ ବର୍ଷା ହେଲ ; ତାହା ପୂର୍ବରୁ ଧାନବୁଣା ଶେଷ — । ମକରସଂକ୍ରାନ୍ତି ଦିନ ବାପା ପହଞ୍ଚିବେ ; ତେତେବେଳକୁ ବଡ଼ଭାଇ ଯାଜପୁରକୁ — । ଦୋଳପୂର୍ଣ୍ଣିମା ଦିନ ସାବିତ୍ରୀର ଜନ୍ମ ହେଲ ; ତେତେବେଳକୁ ମାଧବର ବୟସ ଦୁଇ ବର୍ଷ — । ପୁରୀର ବିଦ୍ୟମାନ ବଡ଼ଦେଉଳ ଯେଉଁ ସମୟରେ ନିର୍ମିତ ହେଲ, ତାହା ପୂର୍ବରୁ ଭୁବନେଶ୍ୱର ଦେଉଳ — । ରାତ୍ରି ସାଢ଼େ ତିନିଟା ସମୟରେ ପୂର୍ବଦିଗରେ ଶୁକ୍ରର ଉଦୟ ହେବ ତେତେବେଳକୁ ବୃହସ୍ପତି ଅସ୍ତ— । ୧୯୧୨ ମସିହାରେ ବିହାର, ଓଡ଼ିଶା ଓ ଛୋଟନାଗପୁର ବଙ୍ଗ ଦେଶରୁ ପୃଥକ୍ ହେଲ; ତାହା ପୂର୍ବରୁ ସମ୍ବଲପୁର ମଧ୍ୟପ୍ରଦେଶରୁ ବିଚ୍ଛିନ୍ନ ହୋଇ ଓଡ଼ିଶାକୁ — । ଦ୍ୱିତୀୟ କାଞ୍ଚୀଯୁଦ୍ଧରେ ପୁରୁଷୋତ୍ତମ ଦେବ କାଞ୍ଚୀରାଜାଙ୍କୁ ପରାସ୍ତ କଲେ, ମାତ୍ର ପ୍ରଥମ କାଞ୍ଚୀଯୁଦ୍ଧରେ ସେ କାଞ୍ଚୀରାଜାଙ୍କ କର୍ତ୍ତୃକ ପରାଜିତ— । କଳାପାହାଡ଼ ଉତ୍କଳ ପ୍ରଦେଶକୁ ଆସି ଅନେକ ଦେବଦେବୀ-ମୂର୍ତ୍ତି ବିକଳାଙ୍ଗ କଲ , ତେତେବେଳକୁ ସେ ସ୍ୱଧର୍ମ ପରିତ୍ୟାଗ କରି ମୁସଲମାନ ଧର୍ମ — । ରାଜନୀତି-କୁଶଳ ଆକବର ବହୁ ପରିମାଣରେ ମୋଗଲ-ସାମ୍ରାଜ୍ୟର ବୃଦ୍ଧି କଲେ; ତାହାଙ୍କର ପିତାମହ ବାବର ଭାରତବର୍ଷରେ ଏହି ସାମ୍ରାଜ୍ୟ — ।

## ୭—ନାମଧାତୁ

୧ । ବାଡ଼ିରେ ଆଘାତ କରିବା ଏହି ଅର୍ଥରେ 'ବାଡ଼ି' ଏହି ବିଶେଷ୍ୟ ପଦରୁ 'ବାଡ଼ାଇବା' ବା 'ବାଡ଼େଇବା' ଏହି କ୍ରିୟାପଦ ଗଠିତ ହୋଇଅଛି ।

୨ । ଇତସ୍ତତଃ ବିକ୍ଷିପ୍ତ ଅନେକଗୁଡ଼ିଏ ପଦାର୍ଥ ଏକତ୍ର କରି ଗୋଟାଏ ରାଶି ବା ସ୍ତୂପ କରିବା ଏହି ଅର୍ଥରେ 'ଗୋଟା' ଏହି ବିଶେଷ୍ୟ ପଦରୁ 'ଗୋଟାଇବା' ଏହି କ୍ରିୟାପଦ ଗଠିତ ହୋଇଅଛି ।

୩ । ଗୋଡ଼ରେ କ୍ଷିପ୍ରଗତିରେ ପଳାୟନକାରୀର ଅନୁଗମନ କରିବା ଏହି ଅର୍ଥରେ 'ଗୋଡ଼' ଏହି ବିଶେଷ୍ୟପଦରୁ 'ଗୋଡ଼ାଇବା' ଏହି କ୍ରିୟାପଦ ଗଠିତ ହୋଇଅଛି ।

ବିଶେଷ୍ୟ ବା ବିଶେଷଣ ପଦରୁ ପୂର୍ବୋକ୍ତ ପ୍ରକାରେ ଗଠିତ ଧାତୁକୁ ନାମଧାତୁ, ଏବଂ ସେଥିରୁ ନିଷ୍ପନ୍ନ କ୍ରିୟାପଦକୁ ନାମଧାତୁ-ନିଷ୍ପନ୍ନ କ୍ରିୟାପଦ ବୋଲାଯାଏ ।

ଅନୁଶୀଳନୀ—ନିମ୍ନଲିଖିତ ବିଶେଷ୍ୟ ବା ବିଶେଷଣ ପଦରୁ ଯେଉଁ ନାମଧାତୁ ଗଠିତ ହୋଇଅଛି, ସେଥିରୁ ନିଷ୍ପନ୍ନ କ୍ରିୟାପଦ ବ୍ୟବହାର କରି ଗୋଟିଏ ଗୋଟିଏ ସ୍ୱତନ୍ତ୍ର ବାକ୍ୟ ରଚନା କର :—

ମୁଣ୍ଡ, କାନ୍ଧ, କାନ, ନାକ, ମୁହଁ, ପେଟ, ମୁଠା, ଦାନ୍ତ, ଡଙ୍କ, ଗଦା, ଭ୍ରେଟ, ଚେର, ମୋଟା, ସଳଖ, ଉଞ୍ଚ (ଉଚ୍ଚ), ଆଗ, ପଛ, ପାଖ, ଗୋଣ୍ଡ, ଚୁଣ୍ଡ, ଚୌର, ସ୍ୱପ୍ନ, ପହ୍ଲା ।

## ୭—ପ୍ରେରଣାର୍ଥ କ୍ରିୟା

ସଂସ୍କୃତ ଭାଷାରେ ପ୍ରେରଣାର୍ଥରେ ମୂଳଧାତୁରେ ଇ-ପ୍ରତ୍ୟୟ କରାଯାଏ । ଓଡ଼ିଆ ଭାଷାରେ ମୂଳଧାତୁରେ ପ୍ରେରଣାର୍ଥରେ ଆ-ପ୍ରତ୍ୟୟ କରାଯାଏ । ଏହି 'ଆ'-ପ୍ରତ୍ୟୟ କଲେ ମୂଳଧାତୁରେ କୌଣସି କୌଣସି ସ୍ଥଳରେ ଅଳ୍ପ ପରିବର୍ତ୍ତନ ହୁଏ । କୌଣସି କୌଣସି ଧାତୁରୁ ଆ-ପ୍ରତ୍ୟୟ-ନିଷ୍ପନ୍ନ ଗୋଟିଏ ପ୍ରେରଣାର୍ଥକ୍ରିୟା ହୁଏ, ତଦ୍ଭିନ୍ନ ସଂସ୍କୃତ ରୀତିଅନୁସାରେ ଆଉ ଗୋଟିଏ କ୍ରିୟାପଦ ହୁଏ । ଏପରି ସ୍ଥଳରେ ଅର୍ଥରେ ଅଳ୍ପ ପ୍ରଭେଦ ଦେଖାଯାଏ । ପ୍ରେରଣାର୍ଥରେ ପ୍ରଯୁକ୍ତ ହେଲେ ଅକର୍ମକ କ୍ରିୟା ସକର୍ମକ, ଏବଂ ସକର୍ମକ କ୍ରିୟା ଦ୍ୱିକର୍ମକ ହୁଏ ।

### ଆଦର୍ଶ

୧ । ବନମାଳୀ ଇତିହାସ ପଢ଼ୁଅଛି । ପ୍ରେରଣାର୍ଥ କ୍ରିୟା ପ୍ରୟୋଗକଲେ ଏହି ବାକ୍ୟଟି ହେବ—ଶିକ୍ଷକ ବନମାଳୀକୁ ଇତିହାସ ପଢ଼ାଉଅଛନ୍ତି ।

୨ । ଶିଶୁ ଶୋଇଲା । ପ୍ରେରଣାର୍ଥ କ୍ରିୟା ପ୍ରୟୋଗ କଲେ ଏହି ବାକ୍ୟଟି ହେବ,—ମାତା ଶିଶୁକୁ ଶୁଆଇଲେ ।

୩ । ମଧୁ ଭାତ ଖାଉଅଛି । ପ୍ରେରଣାର୍ଥ କ୍ରିୟା ପ୍ରୟୋଗ କଲେ ଏହି ବାକ୍ୟଟି ହେବ—ମାତା ମଧୁକୁ ଭାତ ଖୁଆଉଅଛନ୍ତି ।

୪ । ଚଲ୍ ଧାତୁରୁ 'ଚାଳିବା' ଓ 'ଚଳାଇବା' ଦୁଇଟି କ୍ରିୟା ପ୍ରେରଣାର୍ଥରେ ନିଷ୍ପନ୍ନ ହୁଏ । ଉଦାହରଣ—

(କ) ମନ୍ତ୍ରୀ ରାଜାଙ୍କୁ ଚାଳିଲେ । (ଖ) ଈଶ୍ୱର ସମସ୍ତଙ୍କୁ ଚଳାଉଛନ୍ତି ।

୫ । ସଂସ୍କୃତ ଭାଷାରେ 'ମୃ' ଧାତୁରୁ ଓଡ଼ିଆ ଭାଷାରେ 'ମର୍' ଧାତୁ ହୋଇଅଛି । ଏହି ମର୍ ଧାତୁରୁ ପ୍ରେରଣାର୍ଥରେ 'ମାରିବା' ଓ 'ମରାଇବା' ଏହି ଦୁଇଟି କ୍ରିୟା ହୁଏ ।

ଏହି ପକ୍ଷୀଟି ମରିବ । ବାଘୁଆ ଏହି ପକ୍ଷୀଟି ମାରିବ । ଗୋପଳ ବାଘୁଆ ଦ୍ୱାରା ଏହି ପକ୍ଷୀଟି ମରାଇବ ।

ଅନୁଶୀଳନୀ—ନିମ୍ନଲିଖିତ ବାକ୍ୟମାନଙ୍କରେ ଯେଉଁ ଯେଉଁ କ୍ରିୟାପଦ ଅଛି, ସେମାନଙ୍କୁ ପ୍ରେରଣାର୍ଥରେ ପ୍ରୟୋଗ କରି ବାକ୍ୟକୁ ତଦନୁସାରେ ପରିବର୍ତ୍ତନ କର ।

୧) ମାଲତୀ ଦୁଧ ପିଇଲା । ୨) ସାପ ଖେଳିଲା । ୩) ଭେଳା ବୁଡ଼ିଲା । ୪) ପାଣି* ମାଡ଼ିଲା । ୫) ମାଙ୍କଡ଼ ନାଚିଲା । ୬) ନେତ୍ରାନନ୍ଦ ଦୌଡ଼ିଲା । ୭) ବଳିଆରସିଂହ ମୁଣ୍ଡରେ ଶାଢ଼ୀ ବାନ୍ଧିଲେ । ୮) ଆକାଶରେ ପାରା ଉଡ଼ୁଅଛି । ୯) ଶୀତଳ-ଷଷ୍ଠୀ ରାତିରେ ବାଣ ଫୁଟିବ । ୧୦) ଏହି ଅବଧାନେ ଆମ୍ଭ ଗ୍ରାମରେ ରହିବେ । ୧୧) ଶ୍ରୀମ ପୁରୁଷୋତ୍ତମରୁ ଓ୍ୱେଶରଦଅଣା ଆଣିବ । ୧୨) ମାଟିଆମାନେ ମାଟି ତାଡ଼ିଲେ । ୧୩) ସନ୍ଧ୍ୟାବେଳେ ଶଙ୍ଖ ବାଜେ । ୧୪) ଯଦୁ ସମସ୍ତ କଥା କହିଲା । ୧୫) ରାମ ଭିକାରୀମାନଙ୍କୁ ଚାଉଳ ଦେଲା । ୧୬) ବୃକ୍ଷର ଶାଖା ନଇଁଲା । ୧୭) ଚନ୍ଦ୍ରାମଣିର ଆଖିରୁ ଲୋତକ ବହିଲା । ୧୮) ହୋମ-କୁଣ୍ଡରେ ଘୃତ ଜଳିଲା । ୧୯) ଆଜି ପୋଥି ଲେଖା ସରିଲା । ୨୦) ସନ୍ଧ୍ୟାବେଳେ ଆମ୍ଭେମାନେ ଭାଗବତ ଶୁଣିବୁଁ ।

## ୮—ମିଶ୍ରକ୍ରିୟା

ଓଡ଼ିଆ ଭାଷାରେ ଦୁଇପ୍ରକାରେ କ୍ରିୟା ଗଠିତ ହୁଏ:—

୧ । ସଂସ୍କୃତ ଭାଷାର ଧାତୁରୁ ଅପଭ୍ରଷ୍ଟ ଓଡ଼ିଆ ଧାତୁରେ ଭିନ୍ନ ଭିନ୍ନ କାଳସୂଚକ ବିଭକ୍ତି ଯୋଗ କଲେ,

୨ । ଅନ-ପ୍ରତ୍ୟୟାନ୍ତ କ୍ରିୟାବାଚକ ବିଶେଷ୍ୟରେ ସଂସ୍କୃତ କୃ-ଧାତୁରୁ ଅପଭ୍ରଷ୍ଟ ଓଡ଼ିଆ ଧାତୁର ଭିନ୍ନ ଭିନ୍ନ କାଳର କ୍ରିୟା ଯୋଗକଲେ, ଅଥବା 'ତ'-ପ୍ରତ୍ୟୟାନ୍ତ କ୍ରିୟାବାଚକ ବିଶେଷଣରେ ସଂସ୍କୃତ 'ଭୂ' କିମ୍ବା 'ସ୍ଥା' ଧାତୁରୁ ଅପଭ୍ରଷ୍ଟ ଓଡ଼ିଆ ଧାତୁର ଭିନ୍ନ ଭିନ୍ନ କାଳର କ୍ରିୟା ଯୋଗ କଲେ, ଯେଉଁ କ୍ରିୟାପଦ ହୁଏ, ସେହି କ୍ରିୟାକୁ **ମିଶ୍ରକ୍ରିୟା** କୁହାଯାଏ ।

କ୍ରିୟା ସକର୍ମକ ହେଲେ ଅନ-ପ୍ରତ୍ୟୟାନ୍ତ କ୍ରିୟାବାଚକ ବିଶେଷ୍ୟରେ କୃ-ଧାତୁ ନିଷ୍ପନ୍ନ କ୍ରିୟା ଯୋଗ କରାଯାଏ । କ୍ରିୟା ଅକର୍ମକ ହେଲେ ତ-ପ୍ରତ୍ୟୟାନ୍ତ କ୍ରିୟାବାଚକ ବିଶେଷଣରେ ଭୂ-ଧାତୁ-ନିଷ୍ପନ୍ନ ଅଥବା ସ୍ଥା-ଧାତୁ ନିଷ୍ପନ୍ନ କ୍ରିୟା ଯୋଗକରାଯାଏ । ଏହା ସାଧାରଣ ବିଧି ; କୌଣସି କୌଣସି ସ୍ଥଳରେ ଏହାର ବ୍ୟତିକ୍ରମ ଦେଖାଯାଏ ।

* ଓଡ଼ିଆରେ ଜଳକୁ ସାଧାରଣତଃ 'ପାଣି' ଲେଖାଯାଏ ।

## ଆଦର୍ଶ :

| ଅମିଶ୍ର କ୍ରିୟା | ମିଶ୍ର କ୍ରିୟା |
|---|---|
| ୧ । ମାଧବ ବାଲେଶ୍ୱରକୁ **ଗଲେ** | ମାଧବ ବାଲେଶ୍ୱରକୁ **ଗମନ କଲେ** । |
| ୨ । ପଣ୍ଡିତେ କାଲି **ଆସିବେ** | ପଣ୍ଡିତେ କାଲି **ଆଗମନ କରିବେ** । |
| ୩ । ଯଦୁ ବୁଧବାର ଘରରେ **ଯିବ**… | ଯଦୁ ବୁଧବାର ଘରରେ **ଗମନ କରିବ** । |
| ୪ । ବିଦ୍ୟାଳୟର ଛାତ୍ରମାନେ ସନ୍ଧ୍ୟାରେ କାଠଯୋଡ଼ି କୂଳରେ **ବୁଲନ୍ତି** | … ବିଦ୍ୟାଳୟର ଛାତ୍ରମାନେ ସନ୍ଧ୍ୟାରେ କାଠଯୋଡ଼ି କୂଳରେ **ଭ୍ରମଣ କରନ୍ତି** । |
| ୫ । ଭଗବତ ଋଣ କରି ମୂଳଧନ **ବଢ଼ାଇଲେ** | ଭଗବତ ଋଣ କରି ମୂଳଧନ **ବର୍ଦ୍ଧନ କଲେ** । |
| ୬ । ଦାଶରଥି ଅନେକ କଷ୍ଟ **ସହୁଅଛନ୍ତି** | ଦାଶରଥି ଅନେକ କଷ୍ଟ **ସହ୍ୟ କରୁଅଛନ୍ତି** । |
| ୭ । ସାଧୁ ଶୃଗାଳକୁ ଦେଖି **ଡରିଲା** | ସାଧୁ ଶୃଗାଳକୁ ଦେଖି **ଭୀତ ହେଲା** । |
| ୮ । ପୁରାତନ ବସ୍ତ୍ର ଅଳ୍ପାୟାସରେ **ଛିଣ୍ଡେ** | ପୁରାତନ ବସ୍ତ୍ର ଅଳ୍ପାୟାସରେ **ଛିନ୍ନ ହୁଏ** । |

ଅନୁଶୀଳନୀ—ନିମ୍ନଲିଖିତ ବାକ୍ୟମାନଙ୍କରେ ଅମିଶ୍ର କ୍ରିୟା ପରିବର୍ତ୍ତରେ ମିଶ୍ର କ୍ରିୟା ବ୍ୟବହାର କର :—

(୧) ଜଣେ ଅଶ୍ୱାରୋହୀର ଚାରି ଆସୁ । (୨) ସେମାନେ ଭକ୍ତିରେ ଓ ଆନନ୍ଦରେ ଅଧରପଣା ପିଇଲେ । (୩) ସୂର୍ଯ୍ୟ-କିରଣରେ ବସ୍ତ୍ର ଖଣ୍ଡିକ ଶୁଖିଲା । (୪) ବାର୍ଦ୍ଧକ୍ୟରେ ସମସ୍ତଙ୍କର କେଶ ପାଚେ । (୫) ପୁଷ୍ପମାଳାଟିଏ ଆକାଶରୁ ଇନ୍ଦୁମତୀଙ୍କ ଦେହରେ ପଡ଼ିଲା । (୬) ରାମକୃଷ୍ଣ ନାଚୁଅଛନ୍ତି । (୭) ବର୍ଷାକାଳରେ ସ୍ରୋତ ପ୍ରବଳ ବେଗରେ ବହେ । (୮) ଯାତ୍ରୀମାନେ ଦୂରରୁ ନୀଳଚକ୍ର ଦେଖିଲେ । (୯) ରାମଚନ୍ଦ୍ର ପିତୃ-ସତ୍ୟ ପାଳିଲେ । (୧୦) ଗୁରୁଗଣ ଓ ଆତୁର ଲୋକମାନଙ୍କର କଥା ଶ୍ରଦ୍ଧାରେ ଶୁଣିବ । (୧୧) କେଶବ ମହାଭାରତ ପଢ଼ୁଅଛି । (୧୨) ରାତ୍ରିର ତୃତୀୟ ପ୍ରହରରେ ସମସ୍ତେ ଶୋଇଥାନ୍ତି । (୧୩) ସତ୍ୟବାଦୀ-ଗ୍ରାମକୁ ଗଲେ ସାକ୍ଷୀ ଗୋପୀନାଥଙ୍କୁ ଦେଖିବ । (୧୪) ଆଉ ଦୁଇଘଣ୍ଟା ଗଲେ ରାତ୍ରି ପାହିବ । (୧୫) ବାଳକମାନେ ନଦୀକୂଳରେ ଖେଳୁଅଛନ୍ତି । (୧୬) ମହାପାତ୍ରେ ଆଜି ସନ୍ଧ୍ୟା ସମୟରେ ଯାଜପୁରକୁ ଯିବେ । (୧୭) ଗୋପାଳ କେତେବେଳେ ଆସିଲେ ? (୧୮) ପାଞ୍ଚଟା ବାଜିଲେ ସୂର୍ଯ୍ୟ ଉଦିବ । (୧୯) ଦଶଘଣ୍ଟାରେ ନଡ଼ିଆ ଉତ୍ତମ-

ରୂପ ସିଦ୍ଧେ । (୨୦) ବୈତରଣୀ ଗୋନାସିକାରୁ ବାହାରିଅଛି । (୨ ) ବସନ୍ତ କାଳରେ ଅନେକ ପ୍ରକାର ପୁଷ୍ପ ଫୁଟେ । (୨୨) ଗୁଣ୍ଡୁଚି ମୂଷାଟି ବୃକ୍ଷର ଅଗ୍ରଭାଗରୁ ଓହ୍ଲାଉଅଛି । .(୨୩) ଶାନ୍ତି-ରକ୍ଷକମାନେ ଚୋରକୁ ରଜ୍ଜୁରେ ବାନ୍ଧିଲେ । (୨୪) ଆଖୁକୁ ଖାଇ କମ୍ପା କଳରେ ପେଡ଼ିଲେ ସେଥିରୁ ରସ ବାହାରେ । (୨୫) ମଧୁ ଅସାବଧାନ ହୋଇ ଛୁରୀରେ ଆପଣାର ଅଙ୍ଗୁଳି କାଟିଲି । ୨୬ । ଗୁଣନିଧିର ପିତା ତାହା ନିକଟକୁ କାଲି କୋଡ଼ିଏ ଟଙ୍କା ପଠାଇଲେ । (୨୭) ପଚଶ ବର୍ଷ ତଳେ ମୁଁ କପିଳାସ ଦେଖିଥିଲି । ଆଜି ପର୍ଯ୍ୟନ୍ତ ମୁଁ ତାହାକୁ ପାଶୋରି ପାରୁନାହିଁ । (୨୮) ଆହୁତି ପାଇଲେ ଅଗ୍ନି ଦ୍ୱିଗୁଣ ଜଳେ (୨) ଏ ଦେଶରେ ବୃଷ ମାସରେ ଧାନ ବୁଣାଯାଏ, ଏବଂ କର୍କଟ ମାସରେ ରୁଆଯାଏ । (୩୦) ଦସ୍ୟୁମାନେ ନୃଶଂସ ଭାବରେ ପଥିକକୁ ହାଣିଅଛନ୍ତି । (୩୧) ପୁରୁଷୋତ୍ତମ-ଦେବ କାଞ୍ଚୀ ଯୁଦ୍ଧରେ ଜୟ କରି ମହୋଲ୍ଲାସରେ ନିଜ ରାଜଧାନୀକୁ ଫେରିଲେ । (୩୨) ଲୋକେ ଚକରେ ଗହମ ପ୍ରଭୃତି ପେଷନ୍ତି । (୩୩) କିଏ ଭୁବନେଶ୍ୱର ଦେଉଳ ଗଢ଼ିଲି ? (୩୪) ଦସ୍ୟୁମାନେ ଅପହୃତ ଅଳଙ୍କାର ନଦୀର ବାଲିରେ ପୋତିଥିଲେ । (୩୫) ମୂର୍ଚ୍ଛାଭଙ୍ଗ ହେଲାରୁ ରାମଚନ୍ଦ୍ର ଚକ୍ଷୁ ମେଲିଲେ । (୩୬) ଜଣେ ଶବର ମହାନଦୀର ଶଯ୍ୟାରୁ ଖଣ୍ଡିଏ ହୀରକ ପାଇଲି । (୩୭) କ୍ଷେତ୍ରମଣି ଆଜି ଖଣ୍ଡିଏ ନୂଆଶାଢ଼ୀ ପିନ୍ଧିଛି । (୩୮) ନଦୀକୂଳରେ କିଏ ବଂଶୀ ବଜାଉଅଛି ? (୩୯) ଗୋପାଳ ଏହିକ୍ଷଣି ଗାଈ ଦୁହିଁବ । (୪୦) ଆକାଶରେ ରକ୍ତବର୍ଣ୍ଣ ପତାକା ଉଡ଼ୁଅଛି । (୪୧) ପ୍ରଥମ ପାନିପଥ ଯୁଦ୍ଧରେ ବାବର ଇବ୍ରାହିମ ଲୋଦିଙ୍କୁ ଜିଣିଲେ । (୪୨) ବର୍ତ୍ତମାନ କେହି ଏ ପୁସ୍ତକ କିଣିବ ନାହିଁ । (୪୩) ଦୈତ୍ୟାରି କପାକଲ ଦୁଇ ଦିନରେ ଏ ବସ୍ତ୍ରଖଣ୍ଡି ବୁଣିଅଛି । (୪୪) ଧାତୁ-ନିର୍ମିତ ତାରକୁ ଟାଣିଲେ ତାହା ବଢ଼େ (୪୫) ଚକ୍ଷୁରେ କେବେ ହେଁ ଚୂନ ଘଷିବ ନାହିଁ । (୪୬) ସରଳା ଭୟରେ ଚକ୍ଷୁ ବୁଜିଲା । (୪୭) ତୀର୍ଥସ୍ଥାନରେ ଦାନ ଦେନିବ ନାହିଁ । (୪୮) ଏ ବନ୍ଧ କିପରି ଭାଙ୍ଗିଲା ? (୪୯) ନିର୍ମଳ ଜଳରେ ବସ୍ତ୍ର ପଖାଳିବ । (୫୦) କିଏ ଏ ବୃକ୍ଷଟିକୁ ଉପାଡ଼ିଲା ?

## ୯—କ୍ରିୟାର ବାଚ୍ୟ

ଓଡ଼ିଆ ଭାଷାରେ କ୍ରିୟାର ଯୋଡ଼ିଏ ବାଚ୍ୟ ଅଛି,—କର୍ତ୍ତୃବାଚ୍ୟ ଓ କର୍ମବାଚ୍ୟ । ଅକର୍ମକ କ୍ରିୟାମାନଙ୍କର କେବଳ କର୍ତ୍ତୃବାଚ୍ୟରେ ପ୍ରୟୋଗ ହୋଇ-ଥାଏ । ସମର୍ମକ କ୍ରିୟା ଉଭୟ ବାଚ୍ୟରେ ପ୍ରଯୁକ୍ତ ହୋଇପାରେ । ସକର୍ମକ କ୍ରିୟା କର୍ତ୍ତୃବାଚ୍ୟରେ ପ୍ରଯୁକ୍ତ ହେଲେ କର୍ତ୍ତାରେ ପ୍ରଥମା ବିଭକ୍ତି ଏବଂ କର୍ମରେ ଦ୍ୱିତୀୟା ବିଭକ୍ତି ହୁଏ । କ୍ରିୟା କର୍ମବାଚ୍ୟରେ ପ୍ରଯୁକ୍ତ ହେଲେ କର୍ତ୍ତାରେ ତୃତୀୟା ବିଭକ୍ତି ଓ କର୍ମରେ ପ୍ରଥମା ବିଭକ୍ତି ହୁଏ ।

**ଆଦର୍ଶ .**

୧ । କର୍ତ୍ତୃବାଚ୍ୟରେ ପ୍ରୟୋଗ :—ରାଘବ ଟଙ୍କାଗୁଡ଼ିକ ଗଣିଲେ ।

କର୍ମ-ବାଚ୍ୟରେ ପ୍ରୟୋଗ :—ରାଘବଙ୍କ କର୍ତ୍ତୃକ ଟଙ୍କାଗୁଡ଼ିକ ଗଣା ହେଲା ।

୨ । କର୍ତ୍ତୃବାଚ୍ୟରେ :—ରାମ ରାବଣଙ୍କୁ ପରାଜୟ କଲେ ।

କର୍ମବାଚ୍ୟରେ :—ରାମଙ୍କ କର୍ତ୍ତୃକ ରାବଣ ପରାଜିତ ହେଲା ।

୩ । କର୍ତ୍ତୃବାଚ୍ୟରେ :—ଶତଶତ ଲୋକ ଜଗନ୍ନାଥଙ୍କ ରଥ ଟାଣିଲେ ।

କର୍ମବାଚ୍ୟରେ :—ଶତଶତ ଲୋକ କର୍ତ୍ତୃକ ଜଗନ୍ନାଥଙ୍କ ରଥ ଟଣାହେଲା ।

ଅନୁଶୀଳନୀ—କ୍ରିୟାପଦର ବାଚ୍ୟ ପରିବର୍ତ୍ତନ କରି ନିମ୍ନଲିଖିତ ବାକ୍ୟଗୁଡ଼ିକୁ ରୂପାନ୍ତରିତ କର :—

୧ । ଏ ବିଦ୍ୟାଳୟର ବାଳକମାନେ ନିୟମଗୁଡ଼ିକ ପାଳନ କରନ୍ତି । ୨ । ଅମ୍ଭ ଗ୍ରାମରେ ଲୋକେ ସପ୍ତାହରେ ଦୁଇଥର ପରିବା କିଣନ୍ତି । ୩ । ଜଗନ୍ନାଥ ମିଶ୍ରେ ଆନନ୍ଦରେ ଦାନ ଗ୍ରହଣ କଲେ । ୪ । ବର୍ଷାକାଳରେ ଆମ୍ଭେମାନେ ନିର୍ମଳା ଦ୍ୱାରା ନଦୀଜଳ ସଫା କରୁଁ । ୫ । ରାମଚନ୍ଦ୍ର ଅତି ସୁନ୍ଦରରୂପେ ପ୍ରଜାମାନଙ୍କୁ ପାଳନ କରୁଥିଲେ । ୬ । ରାଜା କର୍ମଚାରୀମାନଙ୍କର ବେତନ ବୃଦ୍ଧି କଲେ । ୭ । ଅନଙ୍ଗଭୀମଦେବ ବିଦ୍ୟମାନ ବଡ଼ଦେଉଳ ନିର୍ମାଣ କରିଥିଲେ । ୮ । ଦଶଜଣ ଲୋକ କର୍ତ୍ତୃକ ନୌକା ଖଣ୍ଡି ଟଣାଯାଉଅଛି । ୯ । ବାୟୁ ତରୁଶାଖାମାନଙ୍କୁ ସଞ୍ଚାଳନ କରେ । ୧୦ । ବାଳକାମାନେ ବଳରାମ ଦାସଙ୍କ ରାମାୟଣ, ଏବଂ ବାଳକ-ମାନେ ଜଗନ୍ନାଥ ଦାସଙ୍କ ଭାଗବତ ଅଧ୍ୟୟନ କରୁଅଛନ୍ତି । ୧୧ । ଶୀତକାଳରେ ସମସ୍ତେ ଶୀତବସ୍ତ୍ର ପରିଧାନ କରନ୍ତି । ୧୨ । କାଲି ମୂଲିଆମାନେ କାନ୍ଥ ଲିପିବେ । ୧୩ । ସଦାଶିବ କୁକୁରଟିକୁ ଦଶଟଙ୍କାରେ କ୍ରୟ କଲେ । ୧୪ । ରଜସଂକ୍ରାନ୍ତିକୁ ତିନିଦିନ ଥିଲା କୃଷୀମାନେ ଧାନ ବୁଣିଲେ । ୧୫ । ବାନରମାନେ ସମୁଦ୍ରରେ ସେତୁ ବାନ୍ଧିଲେ । ୧୬ । ବିଶ୍ୱନାଥଦେବ ରାଧାନାଥପୁର ଶାସନ ସ୍ଥାପନ କଲେ । ୧୭ । ମଧୁ ମକ୍ଷିକାମାନଙ୍କ କର୍ତ୍ତୃକ ମଧୁ ସଞ୍ଚିତ ହୁଏ । ୧୮ । କେଉଁ କବି ରାମାୟଣ ରଚନା କରିଥିଲେ ? ୧୯ । ରାଜପୁରୁଷମାନଙ୍କ କର୍ତ୍ତୃକ ବିଦ୍ରୋହୀମାନେ ଧୃତ ହେଲେ । ୨୦ । ଶାନ୍ତି-ରକ୍ଷକମାନେ ଦସ୍ୟୁଭୟ ନିବାରଣ କରିଅଛନ୍ତି । ୨୧ । ମୁସଲମାନମାନଙ୍କ କର୍ତ୍ତୃକ ଦ୍ୱିତୀୟାରେ ଚନ୍ଦ୍ର ଦୃଷ୍ଟ ହେଲା । ୨୨ । ମେଘ-ମାଳାରେ ଆକାଶ ଆଚ୍ଛନ୍ନ ହେଲା । ୨୩ । ସୁଶୀଳ ବାଳକକୁ ସମସ୍ତେ ଆଦର କରନ୍ତି । ୨୪ । ରାଧାନାଥ ମେଘଦୂତକୁ ଉତ୍କଳ ଭାଷାରେ ଅନୁବାଦ କଲେ । ୨୫ । ସମସ୍ତେ ଈଶ୍ୱରଙ୍କୁ ତିରସ୍କାର କରନ୍ତି । ୨୬ । କଲମ୍ବସ୍ ଆମେରିକା ଆବିଷ୍କାର କଲେ ।

୨୭ । ସ୍ୱେରମାନେ ତାହାଙ୍କର ସର୍ବସ୍ୱ ଅପହରଣ କଲେ । ୨୮ । ସୈନ୍ୟମାନଙ୍କ କର୍ତ୍ତୃକ ଗଡ଼ ବେଷ୍ଟିତ ହେଲା ।

## ୧୦—କ୍ରିୟା ବିଶେଷଣ

ଶୀଘ୍ର, ଚଞ୍ଚଳ ପ୍ରଭୃତି କ୍ରିୟାବିଶେଷଣରେ କୌଣସି ବିଭକ୍ତିର ଚିହ୍ନ ନ ଥାଏ । ହଠାତ୍, ଅକସ୍ମାତ୍, ସହସା ପ୍ରଭୃତି କ୍ରିୟାବିଶେଷଣ ସଂସ୍କୃତ ଭାଷାରେ ଯେପରି, ଓଡ଼ିଆ ଭାଷାରେ ଅବିକଳ ସେହିପରି ବ୍ୟବହୃତ ହୁଏ । ବିଶେଷ୍ୟ ବା ବିଶେଷଣରେ ତୃତୀୟା ଏକ ବଚନରେ 'ରେ' ବା 'ଏ' ବିଭକ୍ତି ଯୋଗକଲେ ଅନେକ କ୍ରିୟାବିଶେଷଣ ନିଷ୍ପନ୍ନ ହୁଏ ।

### ଆଦର୍ଶ :—

୧ । ଶିଶୁ **ଧୀରେ ଧୀରେ** ପଦ ବିକ୍ଷେପ କରୁଅଛି । ୨ । ଗୋପାଳ **ଚଞ୍ଚଳ** ଲେଖିପାରେ । ୩ । ସାନ ସାନ ବାଳକମାନେ **ସହଜରେ** ଜ୍ୟାମିତି ବୁଝିପାରନ୍ତି ନାହିଁ । ୪ । ପଟ୍ଟନାୟକଙ୍କ ଘରେ **ଦୈବାତ୍** ଅଗ୍ନି ଲାଗିଲା । ୫ । ଅଧ୍ୟାପକ ଗୁରୁମାନଙ୍କୁ **ପୁତ୍ରବତ୍** ସ୍ନେହ କରନ୍ତି । ୬ । ପଣ୍ଡିତମାନେ **ସର୍ବଦା** ବିଦ୍ୟାଚର୍ଚ୍ଚା କରନ୍ତି ।

ଅନୁଶୀଳନୀ :—ଯଥାଯୋଗ୍ୟ କ୍ରିୟାବିଶେଷଣ ଦେଇ ନିମ୍ନଲିଖିତ ଖଣ୍ଡ ବାକ୍ୟଗୁଡ଼ିକ ପୂରଣ କର :—

୧ । ଘୋଡ଼ା—ଦୌଡ଼ିପାରେ । ୨ । ଚୋରମାନେ—ଧନୀ ବ୍ୟକ୍ତିର ଗୃହରେ ପ୍ରବେଶକଲେ । ୩ । କ୍ଷୁଧାର୍ତ୍ତ ଲୋକ—ଅନ୍ନଭୋଜନ କଲା । ୪ । ଲକ୍ଷ୍ମଣ ସୀତାଙ୍କୁ ଅରଣ୍ୟରେ ପରିତ୍ୟାଗ କରି ଆସିବାରୁ ସେ—କ୍ରନ୍ଦନ କଲେ । ୫ । ଆକବର—ପ୍ରଜାଶାସନ କରୁଥିଲେ ବୋଲି ଆଜିପର୍ଯ୍ୟନ୍ତ ଲୋକେ—ତାହାଙ୍କର ପ୍ରଶଂସା କରୁଅଛନ୍ତି । ୬ । ସଭାପତି ସଭାସ୍ଥଳରେ ଉପସ୍ଥିତ ହେବାରୁ ସମସ୍ତେ ତାହାଙ୍କୁ—ଅଭ୍ୟର୍ଥନା କଲେ । ୭ । କଚ୍ଛପ—ଗମନ କରୁଅଛି ଦେଖି ଶଶକ—ପଥ ମଧ୍ୟରେ ନିଦ୍ରିତ ହେଲା । ୮ । ଦୁଃଶାସନ—ଦ୍ରୌପଦୀଙ୍କର କେଶ ଆକର୍ଷଣ କରି ସଭାସ୍ଥଳକୁ ଆଣିଲେ । ୯ । ପକ୍ଷୀମାନେ ଆକାଶରେ—ଉଡ଼ିପାରନ୍ତି । ୧୦ । ଯେଉଁମାନେ ବାଲ୍ୟକାଳରେ—ବିଦ୍ୟା ଅଧ୍ୟୟନ କରନ୍ତି, ସେମାନେ ଭବିଷ୍ୟତରେ—କାଳ ଯାପନ କରନ୍ତି । ୧ । ରାମଚନ୍ଦ୍ର ଲଙ୍କା-ଯୁଦ୍ଧରେ ରାବଣକୁ ବିନାଶ ଓ ସୀତାଙ୍କୁ ଉଦ୍ଧାର କରି—ଅଯୋଧ୍ୟାକୁ ପ୍ରତ୍ୟାଗମନ କଲେ । ସେ ରାଜା ହୋଇ ପ୍ରଜାମାନଙ୍କୁ—ପାଳନ କରି ସମସ୍ତଙ୍କର ଭକ୍ତିଭାଜନ ହେଲେ । ୧୨ । ଜନକ ରାଜା ହୋଇ—ଆଚରଣ କରୁଥିଲେ ବୋଲି ଲୋକେ ତାହାଙ୍କୁ ରାଜର୍ଷି ଆଖ୍ୟା ପ୍ରଦାନ କରିଥିଲେ ।

୧୩ । କାମ, କ୍ରୋଧ ପ୍ରଭୃତି ଶତ୍ରୁମାନେ—ମନୁଷ୍ୟମନରେ ପ୍ରବେଶ କରନ୍ତି । ୧୩ । ସୁଖ ସମୟରେ ମାତଷ୍ଟିଏ—ଏବଂ ଦୁଃଖ ସମୟରେ ଦନଷ୍ଟିଏ—ଚ୍ରିତ୍ତସ୍ଥମାନ ହୁଏ । ୧୫ । କର୍ତ୍ତବ୍ୟ କାର୍ଯ୍ୟ -ସମ୍ପାଦନ କଲେ ସମୟର ଅଭାବ ଅନୁଭବ କରିବାକୁ ହୁଏ ନାହିଁ । ୧୬ । ଯେଉଁମାନେ—କାର୍ଯ୍ୟ ସମ୍ପାଦନ କରନ୍ତି ସେମାନଙ୍କୁ କାର୍ଯ୍ୟ-କୁଶଳ ବୋଲଯାଏ । ୧୭ । ହିଂସ୍ରଜନ୍ତୁପୂର୍ଣ୍ଣ ଅରଣ୍ୟରେ ଲୋକେ—ବିଚରଣ କରି-ପାରନ୍ତି ନାହିଁ । ୧୮ । ଯେଉଁମାନେ ଅନ୍ୟର ଅନିଷ୍ଟ ସାଧନ କରନ୍ତି ସେମାନେ—କାଳଯାପନ କରନ୍ତି । ୧୯ । ରସାନନ୍ଦ ଦୀର୍ଘକାଳ ରୋଗ ଭୋଗ କରି—ପ୍ରାଣତ୍ୟାଗ କଲେ । ୨୦ । ଯାହା—ବୁଝାଯାଏ ନାହିଁ ତାହା ଦୁର୍ବୋଧ ଅଟେ ।

## ୧୧—ଉପସର୍ଗ

ପ୍ର, ପରା, ଅପ, ସମ୍, ନି, ଅଧି, ସୁ, ନିର୍, ଉତ୍, ପରି, ପ୍ରତି, ଅବ, ଅନୁ, ଦୁର୍, ବି, ଅଭି, ଅପି, ଉପ, ଆ, ଅତି—ଏ କୋଡ଼ିଏଟି ଅବ୍ୟୟକୁ ଉପସର୍ଗ କହନ୍ତି । ଧାତୁର ପୂର୍ବରେ ଉପସର୍ଗ ବସିଲେ ଧାତୁର ଅର୍ଥରେ ନାନାପ୍ରକାର ପରିବର୍ତ୍ତନ ହୁଏ । ଗମ୍ ଧାତୁ ନିଷ୍ପନ୍ନ ଆଗମନ ଶବ୍ଦଟିର ଅର୍ଥ ତାହାର ବିପରୀତ । କ୍ରମ୍ ଧାତୁର ଅର୍ଥ ପଦାଦି ବିକ୍ଷେପ କରିବା; 'ଉପ' ଉପସର୍ଗ ଯୋଗକଲେ 'ଉପକ୍ରମ'ର ଅର୍ଥ ଆରମ୍ଭ କରିବା ଏବଂ 'ଅତି' ଉପସର୍ଗ ଯୋଗ କଲେ 'ଅତିକ୍ରମ'ର ଅର୍ଥ ବଳିଯିବା ।

ଅନୁଶୀଳନୀ—ନିମ୍ନଲିଖିତ ଶବ୍ଦମାନଙ୍କରେ ଉପସର୍ଗ ଯୋଗେ ଧାତୁର ଅର୍ଥରେ କି ପରିବର୍ତ୍ତନ ଘଟିଅଛି ବୁଝାଇଦିଅ :—

ବିକ୍ରୟ, ପରୀକ୍ଷା, ଉପେକ୍ଷା, ଆଗତ, ପ୍ରତ୍ୟାଗତ, ବିଗତ, ପରାଜୟ, ସଞ୍ଚୟ, ଅପଚୟ, ଉନ୍ନତ, ଅବନତ, ଆଗାମୀ, ଅନୁଗାମୀ, ଆରୋହଣ, ଅବରୋହଣ, ଅଧିରୋହଣ, ସଞ୍ଚାର, ପ୍ରଚାର, ଆଚାର, ପ୍ରଦର୍ଶନ, ନିଦର୍ଶନ, ପରିଦର୍ଶନ, ସମ୍ବାଦ, ବିବାଦ, ଅନୁବାଦ ।

ଅନୁଶୀଳନୀ—ନିମ୍ନଲିଖିତ ଧାତୁମାନଙ୍କରେ ଭିନ୍ନ ଭିନ୍ନ ଉପସର୍ଗ ଯୋଗ କଲେ କି କି କ୍ରିୟା, କ୍ରିୟାବାଚକ ବିଶେଷ୍ୟ ବା କ୍ରିୟାବାଚକ ବିଶେଷଣ ପଦ ହେବ, ତାହା ବୋଲ ଏବଂ ପ୍ରତ୍ୟେକ ପଦକୁ ବ୍ୟବହାର କରି ଗୋଟିଏ ଗୋଟିଏ ବାକ୍ୟ ରଚନା କର:—

ଗମ୍, ଭୂ, କ୍ରୀ, ସ୍ଥା, କୃ, ଚି, କ୍ଳୃ, ରୁହ, ମୀଲ୍, ସୃ, ଜ୍ଞା, କ୍ଷିପ୍, ଯୁଜ୍, ତୃ, ହୃ, ବଦ୍, ଚର୍, ଦା, ନମ୍, ଚେତ୍, ମନ ।

## ୧୨ ପରସ୍ପର ବିପରୀତାର୍ଥ-ବୋଧକ ଶବ୍ଦ

ଗୋଟିଏ ଶବ୍ଦର ଯେଉଁ ଅର୍ଥ, ଅନ୍ୟ ଗୋଟିଏ ଶବ୍ଦର ଅର୍ଥ ଠିକ୍ ତାହାର ବିପରୀତ ହୋଇଥାଏ । ଅନେକ ସ୍ଥଳରେ ଉପସର୍ଗ ଯୋଗରେ ଅଥବା ଉପସର୍ଗର ପରିବର୍ତ୍ତନ ଦ୍ୱାରା ବିପରୀତ ଅର୍ଥ ସୂଚିତ ହୁଏ ।

**ଆଦର୍ଶ**

| ଶବ୍ଦ | ବିପରୀତାର୍ଥ ବୋଧକ ଶବ୍ଦ | ଶବ୍ଦ | ବିପରୀତାର୍ଥ ବୋଧକ ଶବ୍ଦ |
|---|---|---|---|
| ନିନ୍ଦା | ପ୍ରଶଂସା | ଭଲ | ମନ୍ଦ |
| ଗମନ | ଆଗମନ | ପାପ | ପୁଣ୍ୟ |
| ସୁଖ | ଦୁଃଖ | ମୂର୍ଖ | ପଣ୍ଡିତ |

ଅନୁଶୀଳନୀ—ନିମ୍ନଲିଖିତ ଶବ୍ଦମାନଙ୍କର ବିପରୀତାର୍ଥ-ବୋଧକ ଶବ୍ଦ ଲେଖ :—

ଆରମ୍ଭ, ସରୁ, ଜସ୍ତ, ଧଳା, ସଜ, ଉଚ୍ଚ, କିଣିବା, ନେବା, ହସିବା, ନୂଆ, ଉନ୍ନତ, ଶୂନ୍ୟ, ଅଳସ, ଆରୋହଣ, ସଙ୍କୀର୍ଣ୍ଣ, ବିରଳ, ସ୍ଥୂଳ, ସ୍ଥିର, କୋମଳ, ସୁଲଭ, ମଳିନ, ଜନ୍ମ, ସହଜ, ଶୁଷ୍କ, ଆଲୋକ, ହର୍ଷ, ଅନୁକୂଳ, ଯୋଗ, ଉପକାର, ଧନୀ, ଶୁକ୍ଳ, ଦାନ, ଆସ୍ତ, ଉପାସ୍ୟ, ଶିଷ୍ଟ, ଅନୁରାଗ, ଦୂର, ଅଳ୍ପ, ମିତ୍ର, ସରଳ, ତରଳ, ଲଘୁ, ଊର୍ଦ୍ଧ୍ୱ, ଭାଗ୍ୟ, ଦୋଷୀ, ଭୀରୁ, ଗମନ, ଗୋପନ, ଅଗ୍ର, ପୂର୍ବ, ସରସ ।

ଅନୁଶୀଳନୀ—ପୂର୍ବୋକ୍ତ ପ୍ରତ୍ୟେକ ଶବ୍ଦ ଓ ତାହାର ବିପରୀତାର୍ଥ-ବୋଧକ ଶବ୍ଦ ବ୍ୟବହାର କରି ଗୋଟିଏ ଗୋଟିଏ ବାକ୍ୟ ରଚନା କର ।

## ୧୩ - ବାକ୍ୟର ସଂପ୍ରସାରଣ

କ୍ରିୟାପଦ ବାକ୍ୟର ସର୍ବପ୍ରଧାନ ଅଙ୍ଗ ଅଟେ । ପ୍ରତ୍ୟେକ କ୍ରିୟାର କର୍ତ୍ତା ଥାଏ । ବାକ୍ୟର ଲଘୁତମ ଆକାରରେ ଗୋଟିଏ କର୍ତ୍ତୃପଦ ଓ ଗୋଟିଏ କ୍ରିୟାପଦ ଥାଏ । କ୍ରିୟା ସକର୍ମକ ହେଲେ ବାକ୍ୟରେ କର୍ମପଦ ଥାଏ । କର୍ତ୍ତା ଓ କର୍ମପରି କରଣ, ସମ୍ପ୍ରଦାନ, ଅପାଦାନ ଓ ଅଧିକରଣ ପଦ ମଧ୍ୟ କ୍ରିୟା ସହିତ ଅନ୍ୱିତ । ବିଶେଷ୍ୟର ବିଶେଷଣ ବିଶେଷ୍ୟ ପଦ ସହିତ, ବିଶେଷଣର ବିଶେଷଣ ବିଶେଷଣ ପଦ ସହିତ ଏବଂ କ୍ରିୟାର ବିଶେଷଣ କ୍ରିୟାପଦ ସହିତ ଅନ୍ୱିତ । ସମ୍ବନ୍ଧପଦ ପରବର୍ତ୍ତୀ ବିଶେଷ୍ୟପଦ ସହିତ ଅନ୍ୱିତ ହୁଏ । ବାକ୍ୟର ଲଘୁତମ ଆକାର ସହିତ କର୍ମ, କରଣ, ସମ୍ପ୍ରଦାନ, ବିଶେଷଣ ପ୍ରଭୃତି ସଂଯୋଗ କଲେ ବାକ୍ୟର ସମ୍ପ୍ରସାରଣ ହୁଏ ।

## ଆଦର୍ଶ

୧ । 'ବ୍ରାହ୍ମଣମାନେ ଭୋଜନ କରୁଅଛନ୍ତି' ଏହି ବାକ୍ୟରେ ଗୋଟିଏ କର୍ମପଦ ସଂଯୋଗ କଲେ ତାହା ସମ୍ପ୍ରସାରିତ ହୋଇ 'ବ୍ରାହ୍ମଣମାନେ ମିଷ୍ଟାନ୍ନ ଭୋଜନ କରୁଅଛନ୍ତି' ଏହିପରି ହେବ ।

୨ । 'ଗଛଟି ଦୋହଲୁଅଛି'—କରଣ ପଦ ସଂଯୋଗରେ ଏହି ବାକ୍ୟଟି ହେବ 'ଗଛଟି ପବନରେ ଦୋହଲୁଅଛି ।'

୩ । 'ଦୟାଳୁ ଲୋକ ଦାନ କଲେ'—କର୍ମ ଓ ସମ୍ପ୍ରଦାନ ପଦର ସଂଯୋଗରେ ଏହି ବାକ୍ୟଟି ହେବ 'ଦୟାଳୁ ଲୋକ ବ୍ରାହ୍ମଣଙ୍କୁ ଭୂମି ଦାନ କଲେ ।'

୪ । ସୌଦାଗର କ୍ରୟ କଲେ—କର୍ମକାରକ, କରଣ କାରକ ଓ ବିଶେଷ୍ୟର ବିଶେଷଣର ସଂଯୋଗରେ ସମ୍ପ୍ରସାରଣ କଲେ ଏହି ବାକ୍ୟ ହେବ 'ସୌଦାଗର ବହୁ ମୂଲ୍ୟରେ ଏହି ହସ୍ତୀ କ୍ରୟ କଲେ ।'

୫ । 'ବାଳକମାନେ ଭ୍ରମଣ କରନ୍ତି'—କାଳାଧିକରଣ, ସ୍ଥାନାଧିକରଣ ଓ ସମ୍ବନ୍ଧପଦର ସଂଯୋଗରେ ସମ୍ପ୍ରସାରଣ କଲେ ଏହି ବାକ୍ୟ ହେବ 'ସନ୍ଧ୍ୟା ସମୟରେ ବାଳକମାନେ କାଠଯୋଡ଼ି ନଦୀର କୂଳରେ ଭ୍ରମଣ କରନ୍ତି ।'

୬ । 'ଗଙ୍ଗାନଦୀ ପଡ଼ିଅଛି,—ଅପାଦାନ ଓ ଅଧିକରଣ କାରକ ଏବଂ ଅସମାପିକା କ୍ରିୟାର ସଂଯୋଗରେ ସମ୍ପ୍ରସାରଣ କଲେ ଏହି ବାକ୍ୟ ହେବ 'ଗଙ୍ଗାନଦୀ ହିମାଳୟ ପର୍ବତରୁ ନିର୍ଗତ ହୋଇ ବଙ୍ଗୋପସାଗରରେ ପଡ଼ିଅଛି ।'

୭ । 'ଭିକ୍ଷୁକ ପ୍ରଶଂସା କରୁଅଛି'—କର୍ମପଦ, ବିଶେଷ୍ୟର ବିଶେଷଣ, କ୍ରିୟା ବିଶେଷଣ ଓ ଅସମାପିକା କ୍ରିୟାପଦର ସଂଯୋଗରେ ସମ୍ପ୍ରସାରଣ କଲେ ଏହି ବାକ୍ୟ ହେବ 'ଭିକ୍ଷୁକ ପ୍ରଚୁର ଭିକ୍ଷା ପାଇ ମୁକ୍ତ କଣ୍ଠରେ ଦାତାଙ୍କୁ ପ୍ରଶଂସା କରୁଅଛି ।'

ଅନୁଶୀଳନୀ—ନିମ୍ନଲିଖିତ ବାକ୍ୟମାନଙ୍କୁ କର୍ମପଦ ସଂଯୋଗରେ ସମ୍ପ୍ରସାରଣ କର :—

୧ । ଶିଶୁ ପାନ କରୁଅଛି । ୨ । ପିଲାମାନେ ତିଆରି କଲେ । ୩ । କୃଷ୍ଣ ବଧ କଲେ, । ୪ । ସତ୍ୟବାନ୍ ବିବାହ କଲେ । ୫ । ମୁସଲମାନମାନେ ପଢ଼ନ୍ତି । ୬ । ଦଶରଥ ତ୍ୟାଗ କଲେ । ୭ । ଷ୍ଟିଫେନ୍‌ସନ୍ ଉଦ୍‌ଭାବନ କରିଥିଲେ । ୮ । ମେଘ ଆଚ୍ଛନ୍ନ କଲା । ୯ । ହନୁମାନ ଦହନ କଲା । ୧୦ । କାଳିଦାସ ରଚନା କରିଅଛନ୍ତି । ୧୧ । କେବେହେଁ କହିବ ନାହିଁ । ୧୨ । ଭାରବି କବି ରଚନା କରିଥିଲେ । ୧୩ । ପ୍ରାତଃକାଳରେ ଉଠି ଆମ୍ଭେମାନେ ପ୍ରକ୍ଷାଳନ କରୁଁ । ୧୪ । ବିଶ୍ୱକବି

ପାଇଲେ । ୧୫ । ପାର୍ଶୀମାନେ ପୂଜା କରନ୍ତି । ୧୬ । ଶୀତକାଳରେ ସମସ୍ତେ ବ୍ୟବହାର କରନ୍ତି । ୧୭ । ବର୍ଷାକାଳରେ ମେଘମାଳା ଆଚ୍ଛାଦନ କରେ । ୧୮ । ବୌଦ୍ଧମାନେ ହତ୍ୟା କରନ୍ତି ନାହିଁ । ୧୯ । ଗ୍ରୀଷ୍ମ ପିଇବା ଉଚିତ ଅଟେ । ୨୦ । ଗୃଧ୍ରପକ୍ଷୀ ଅନେକ ଉପରକୁ ଦେଖିପାରେ । ୨୧ । ପଞ୍ଚକ ସମସ୍ତରେ ଅନେକେ ଖାନ୍ତି ନାହିଁ । ୨୨ । ଇଉରୋପୀୟମାନେ ମୁଣ୍ଡରେ ପିନ୍ଧନ୍ତି । ୨୩ । ତନ୍ତୀମାନେ ବୁଣନ୍ତି । ୨୪ । ଋଷିମାନେ ଭକ୍ଷଣ କରନ୍ତି । ୨୫ । ରାମଚନ୍ଦ୍ର ଯିବାରୁ ଦଶରଥ ତ୍ୟାଗକଲେ । ୨୬ । ଋଷି-କନ୍ୟାମାନେ ପରିଧାନ କରୁଥିଲେ । ୨୭ । ଖ୍ରୀଷ୍ଟିଆନ୍-ମାନେ ଯା'ନ୍ତି ।

ଅନୁଶୀଳନୀ :—ନିମ୍ନଲିଖିତ ବାକ୍ୟମାନଙ୍କୁ କରଣପଦଯୋଗେ ସମ୍ପ୍ରସାରଣ କର :—

୧ । ମନୁଷ୍ୟମାନେ ନଦୀ ପାର ହୁଅନ୍ତି । ୨ । ତାଳପତ୍ର ଲେଖାଯାଏ । ୩ । ଅଲେଖଧର୍ମୀମାନେ ଲଜ୍ଜା ନିବାରଣ କରନ୍ତି । ୪ । ସେ କାଚ କିଣିଲେ । ୫ । ଗୋରୁମାନେ ଚାଲନ୍ତି । ୬ । ପକ୍ଷୀମାନେ ଉଡ଼ନ୍ତି । ୭ । ହସ୍ତୀ ଗୋଟିଏ ଛୁଞ୍ଚି ଉଠାଇପାରେ । ୮ । ପ୍ରାଚୀନ ଦେଉଳଗୁଡ଼ିକ ନିର୍ମିତ ହୋଇଅଛି । ୯ । ଲୋକନାଥ ଗୋଟିଏ ମୂଷା ଧରିଅଛି । ୧୦ । ଆଜିକାଲି ବହୁତ ଚାଉଳ ରପ୍ତାନି ହେଉଅଛି । ୧୧ । ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ବାଲ୍ୟକାଳରେ ପାକ କରୁଥିଲେ । ୧୨ । ରାମଚନ୍ଦ୍ର ଅଯୋଧ୍ୟାକୁ ପ୍ରତ୍ୟାଗମନ କଲେ । ୧୩ । ଲକ୍ଷ୍ମଣଙ୍କର ବକ୍ଷ ସିକ୍ତ ହେଲା । ୧୪ । ବାଳକମାନେ ଭେଳା ତିଆରି କରନ୍ତି । ୧୫ । ବାଲେଶ୍ୱରରେ ଉତ୍କୃଷ୍ଟ ବାସନ ନିର୍ମିତ ହୁଏ । ୧୬ । କଟକର କାରିଗରମାନେ ସୁନ୍ଦର ଅଳଙ୍କାର ପ୍ରସ୍ତୁତ କରନ୍ତି ୧୭ । ଆମ୍ଭେମାନେ ସମସ୍ତପଦାର୍ଥ ଦେଖିପାରୁଁ । ୧୮ । ଆଜିକାଲି ଇଉରୋପୀୟ-ମାନେ ଆକାଶରେ ଗମନାଗମନ କରୁଅଛନ୍ତି । ୧୯ । ରାମଚନ୍ଦ୍ର ସେତୁ ବନ୍ଧନ କଲେ । ୨୦ । ସମସ୍ତେ ମୁଖ ପ୍ରକ୍ଷାଳନ କରନ୍ତି । ୨୧ । ରୋଗର ଉପଶମ ହୁଏ । ତନ୍ତୀମାନେ ଲୁଗା ବୁଣନ୍ତି । ୨୩ । ଶକୁନ୍ତଳା ବୃକ୍ଷମୂଳରେ ଜଳ ସେଚନ କଲେ । ୨୪ । ଆମ୍ଭେମାନେ ଏହା ଦେଖିଅଛୁଁ । ୨୫ । ଏହି ଯନ୍ତ୍ର ନିର୍ମିତ ହୋଇଅଛି ।

ଅନୁଶୀଳନୀ—ନିମ୍ନଲିଖିତ ବାକ୍ୟମାନଙ୍କୁ କର୍ମ ଓ ସମ୍ପ୍ରଦାନକାରକ ଏବଂ ପ୍ରୟୋଜନ ସ୍ଥଳରେ ସମ୍ବନ୍ଧପଦ ଦ୍ୱାରା ସମ୍ପ୍ରସାରଣ କର :—

୧ । ଦାନ କଲେ ପୁଣ୍ୟ ହୁଏ । ୨ । ରାଜା ଜନକ ସମର୍ପଣ କଲେ । ୩ । ଚକ୍ରଧର ଦେଲେ । ୪ । ଗୁରୁ ଦିଅନ୍ତି । ୫ । ହନୁମାନ୍ ନିବେଦନ କଲେ । ୬ । ପୁସ୍ତକ-ବିକ୍ରେତା ପ୍ରତ୍ୟର୍ପଣ କଲେ । ୭ । କବିବର ରାଧାନାଥ ଉତ୍ସର୍ଗ କଲେ । ୮ । ଶିଷ୍ୟମାନେ ଅର୍ପଣ କଲେ । ୯ । ପ୍ରଜାମାନେ ଦିଅନ୍ତି । ୧୦ । ଦେବତା ଦେଲେ ।

ଅନୁଶୀଳନୀ—ନିମ୍ନଲିଖିତ ବାକ୍ୟମାନଙ୍କୁ ଅପାଦାନ କାରକ ଏବଂ ପ୍ରୟୋଜନ ସ୍ଥଳରେ ସମ୍ବନ୍ଧପଦ ଦ୍ୱାରା ସମ୍ପ୍ରସାରଣ କର :—

୧ । ପକ୍ଷ ଝରିପଡ଼ିଲା । ୨ । ବ୍ରହ୍ମପୁତ୍ର ନିର୍ଗତ ହୋଇଅଛି । ୩ । ଧାର୍ମିକ ମୁସଲମାନ ଫେରିଲେ । ୪ । ମଧୁମକ୍ଷିକାମାନେ ମଧୁ ସଞ୍ଚୟ କରନ୍ତି । ୫ । ବୃଷ୍ଟି ପତିତ ହେଲା । ୬ । ଶିଷ୍ୟମାନେ ଉପଦେଶ ପ୍ରାପ୍ତ ହୁଅନ୍ତି । ୭ । ନଗରଠାରେ କାଠଯୋଡ଼ି ପୃଥକ୍ ହୋଇଅଛି । ୬ । ରାଧାମୋହନ କାଲି ଆସିଲା । ୯ । ସୂତା ପ୍ରସ୍ତୁତ ହୁଏ । ୧୦ । ମୁକ୍ତା ଉତ୍ପନ୍ନ ହୁଏ । ୧୧ । ଅଙ୍କୁର ଜନ୍ମେ । ୧୨ । ପୁଷ୍ପବୃଷ୍ଟି ହେଲା । ୧୩ । କାଲି ବଡ଼ଭାଇ ଘରକୁ ଫେରି ଆସିବେ । ୧୪ । ରାମଚନ୍ଦ୍ର ପ୍ରତ୍ୟାଗତ ହେଲେ । ୧୫ । କିରୋସିନ୍ ତେଲ ମିଳେ । ୧୬ । ଗୁଣ୍ଡିଚା ଯାତ୍ରୀମାନେ ଫେରି ଆସିଲେଣି । ୧୭ । ପ୍ରନମୁନା ଆମଦାନି ହୁଏ । ୧୮ । ସ୍ୱାସ୍ଥ୍ୟହାନି ହୁଏ । ୧୯ । ଧୂଆଁ ବାହାରେ । ୨୦ । ଲୋତକ ବହିଲା । ୨୧ । ବୈତରଣୀ ନଦୀ ବାହାରିଅଛି । ୨୨ । ଈଶ୍ୱର ବିପନ୍ନଙ୍କୁ ଉଦ୍ଧାର କରନ୍ତି । ୨୩ । ଚୂଣ ବାହାରେ ।

ଅନୁଶୀଳନୀ—ଅଧିକରଣ କାରକ ଦ୍ୱାରା ନିମ୍ନଲିଖିତ ବାକ୍ୟମାନଙ୍କୁ ସମ୍ପ୍ରସାରଣ କର :—

୧ । ହିମାଳୟ ପର୍ବତ ଅଛି । ୨ । ମନୁଷ୍ୟମାନେ ବାସ କରନ୍ତି । ୩ । ଗଙ୍ଗା-ନଦୀ ପତିତ ହୋଇଅଛି । ୪ । ସୂର୍ଯ୍ୟର ଉଦୟ ହୁଏ । ୫ । ନଦୀମାନେ ବଢ଼ନ୍ତି । ଜଳ ମିଳେ ନାହିଁ । ୭ । ହିଂସ୍ର ଜନ୍ତୁମାନେ ବାସକରନ୍ତି । ୮ । ନାନା ପଦାର୍ଥ ବିକ୍ରୀତ ହୁଏ । ୯ । ପଦ୍ମ ପ୍ରସ୍ଫୁଟିତ ହୁଏ । ୧୦ । ଅଶୋକ ରାଜତ୍ୱ କରୁଥିଲେ । ୧୧ । ଅନେକ ଶ୍ୱେତହସ୍ତୀ ଅଛନ୍ତି । ୧୨ । ଆକାଶ ଓ ନଦୀଜଳ ନିର୍ମଳ ହୁଏ । ୧୩ । ଲାଲ ମେଘ ଦେଖାଯାଏ । ୧୪ । ଚୈତନ୍ୟଦେବ ଆସିଥିଲେ । ୧୫ । ବାବର ଇବ୍ରାହିମ୍ ଲୋଦିଙ୍କୁ ପରାସ୍ତ କଲେ । ୧୬ । କିଛି ଦିଶେ ନାହିଁ । ୧୭ । ଚନ୍ଦ୍ର ଦେଖାଯାଏ ନାହିଁ । ୧୮ । ଅନେକଗୁଡ଼ିଏ ସୁନାଖଣି ଅଛି । ୧୯ । ଅନେକ ଲୋକ ଅନାହାରରେ ପ୍ରାଣତ୍ୟାଗ କଲେ । ୨୦ । ଗୋଟିଏ ଜୈନମନ୍ଦିର ଅଛି । ୨୧ । ମୁନିମାନଙ୍କର ଆଶ୍ରମ ଥିଲା । ୨୨ । ପକ୍ଷୀପତି ବାସ କରନ୍ତି । ୨୩ । ନଅଙ୍କ ଦୁର୍ଭିକ୍ଷ ହୋଇଥିଲା । ୨୪ । ରାମଚନ୍ଦ୍ର ସେତୁବନ୍ଧ ବାନ୍ଧିଲେ । ୨୫ । ଦିଲ୍ଲୀନଗରରେ ଦରବାର ହେଲା ।

ଅନୁଶୀଳନୀ—ଭିନ୍ନ ଭିନ୍ନ କାରକ, ସମ୍ବନ୍ଧପଦ, ବିଶେଷଣ ଓ ଅସମାପିକା କ୍ରିୟା ଦ୍ୱାରା ନିମ୍ନଲିଖିତ ବାକ୍ୟମାନଙ୍କର ସମ୍ପ୍ରସାରଣ କର :—

୧ । ଅଭାବ ହୁଏ । ୨ । ଆକାଶ ଦିଶେ । ୩ । ପୁଷ୍ପ ପ୍ରସ୍ଫୁଟିତ ହୁଏ । ୪ । ମହାଭାରତ ଯୁଦ୍ଧ ହୋଇଥିଲା । ୫ । ରାମଚନ୍ଦ୍ର ଉଦ୍ଧାର କଲେ । ୬ । ଆର୍ଯ୍ୟ-

ମାନେ ଅସିଥିଲେ । ୭ । ଗଙ୍ଗାନଦୀ ପତିତ ହୋଇଅଛି । ୮ । ଭାରତ ମହାସାଗର ଅଛି । ୯ । ଚନ୍ଦ୍ର ପ୍ରସ୍ତୁତ ହୁଏ । ୧୦ । ପୁରୁଷୋତ୍ତମଦେବ ଜୟ କଲେ । ୧୧ । ମୋଗଲ ସାମ୍ରାଜ୍ୟ ସ୍ଥାପିତ ହେଲା । ୧୨ । ପଁଡ଼ା ଦେବ ନାହିଁ ।୧୩। ନେପୋଲିଅନ୍ ଯାପନ କଲେ । ୧୪ । ବରଫ ପଡ଼େ । ୧୫ । ଦୁଃଶାସନ ପ୍ରାଣତ୍ୟାଗ କଲା । ୧୬ । ଯୁଧିଷ୍ଠିର ବନବାସ କଲେ । ୧୭ । ବଡ଼ଦେଉଳ ନିର୍ମିତ ହେଲା । ୧୮ । ଗୁଣ୍ଡିଚ୍ଚା ଯାତ୍ରା ହୁଏ । ୧୯ । ବିଶ୍ୱବିଦ୍ୟାଳୟ ସ୍ଥାପିତ ହେବ । ୨୦ । ବାରାଣାସୀ ଅବସ୍ଥିତ ଅଟେ । ୨୧ । ରାମଚନ୍ଦ୍ର ପାଳନ କଲେ । ୨୨ । ଭରତ ଅନୁଗମନ କଲେ । ୨୩ । ତୁଷାର ପତିତ ହୁଏ । ୨୪ । ମୟୂର କେକାରବ କରେ । ୨୫ ପ୍ରାଣୀମାନେ କାତର ହୁଅନ୍ତି । ୨୬ । କଲେବର କମ୍ପିତ ହୁଏ । ୨୭ । କଲମ୍ବସ୍ ଆବିଷ୍କାର କଲେ । ୨୮ । ତାହାକୁ ଉପଦ୍ୱୀପ କହନ୍ତି । ୨୯ । ଯୁଧିଷ୍ଠିର ରାଜା ହେଲେ । ୩୦ । ମୁକ୍ତା ଉତ୍ପନ୍ନ ହୁଏ । ୩୧ । ଆକବର ଆରୋହଣ କଲେ । ୩୨ । ସୀତା କ୍ରନ୍ଦନ କଲେ । ୩୩ । ମହାନଦୀ ପ୍ରବାହିତ ହେଉଅଛି । ୩୪ ଚନ୍ଦ୍ରଶେଖର ସିଂହ ଜନ୍ମଗ୍ରହଣ କରିଥିଲେ । ୩୫ । ରାଧାନାଥ ରଚନା କରିଅଛନ୍ତି । ୩୬ । ପର୍ଶୁରାମ ଜର୍ଜ୍ଜର ହେଲେ । ୩୭ । ପାଞ୍ଚଜନ୍ୟ ଲାଗୁଥିଲା । ୩୮ । ବାଲ୍ମୀକି ସାନ୍ତ୍ୱନା ଦେଲେ । ୩୯ । ଲୁଗା ଆମଦାନି ହୁଏ । ୪୦ । ସୂର୍ଯ୍ୟ ଉତ୍ତରାୟଣ ହୁଅନ୍ତି । ୪୧ । ତାଜମହଲ ନିର୍ମିତ ହେଲା । ୪୨ । ପଦ୍ମବନ ନଷ୍ଟ ହୋଇଯାଏ । ୪୩ । ତରୁଲତାମାନେ ପଲ୍ଲବିତ ହୁଅନ୍ତି । ୪୪ । ଇନ୍ଦ୍ରଧନୁ ପଡ଼ିଥିଲା । ୪୫ । ଅନେକଗୁଡ଼ିଏ ଆଗ୍ନେୟଗିରି ଅଛି । ପାର୍ଶୀ ଜାତି ବାସ କରୁଅଛନ୍ତି ।

## ୧୪—ବାକ୍ୟର ସଂକ୍ଷେପଣ

ବାକ୍ୟର ସଂକ୍ଷେପଣ ତିନି ପ୍ରକାରେ ସାଧିତ ହୁଏ :—କୃତ୍-ପ୍ରତ୍ୟୟଦ୍ୱାରା ତଦ୍ଧିତ ପ୍ରତ୍ୟୟଦ୍ୱାରା ଓ ସମାସ ଦ୍ୱାରା ।

## (କ) କୃତ୍-ପ୍ରତ୍ୟୟ ଯୋଗେ ବାକ୍ୟର ସଂକ୍ଷେପଣ

(୧) 'ଏହା କରିବା ମୋହର ଉଚିତ ଅଟେ ।' 'ତବ୍ୟ' ପ୍ରତ୍ୟୟ ଯୋଗେ ସଂକ୍ଷିପ୍ତ ହେଲେ ଏହି ବାକ୍ୟଟି ହେବ,—'ଏହା ମୋହର କର୍ତ୍ତବ୍ୟ ଅଟେ' ।

(୨) 'ଦୁଗ୍ଧ ନାନା ପ୍ରାଣୀର ଖାଇବାର ଯୋଗ୍ୟ ଅଟେ ।' 'ଘ' ପ୍ରତ୍ୟୟ ଯୋଗେ ସଂକ୍ଷିପ୍ତ ହେଲେ ଏହି ବାକ୍ୟଟି ହେବ,—'ଦୁଗ୍ଧ ନାନା ପ୍ରାଣୀର ଖାଦ୍ୟ ଅଟେ ।'

(୩) 'ପାନ କରିବାକୁ ତାହାଙ୍କର ଇଚ୍ଛା ହୋଇଅଛି ।' 'ସନ୍' ପ୍ରତ୍ୟୟ ଓ 'ଆ' ପ୍ରତ୍ୟୟ ଯୋଗେ ସଂକ୍ଷିପ୍ତ ହେଲେ ଏହି ବାକ୍ୟଟି ହେବ,—'ତାହାଙ୍କର ପିପାସା ହୋଇଅଛି ।

ଅନୁଶୀଳନୀ—କୃତ୍ ପ୍ରତ୍ୟୟ ଯୋଗେ ନିମ୍ନଲିଖିତ ବାକ୍ୟମାନଙ୍କର ସଂକ୍ଷେପଣ କର :—

(୧) ଗୁରୁଜନମାନଙ୍କର ସେବା କରିବା ସମସ୍ତଙ୍କର ଉଚିତ ଅଟେ । (୨) ସାମାନ୍ୟ ଦୋଷ ଧରିବା ଉଚିତ ନୁହେଁ । (୩) କାଚପାତ୍ର ସହଜରେ ଭାଙ୍ଗିଯାଏ । (୪) ଯୁଧିଷ୍ଠିର ବହୁତ ସହି ପାରୁଥିଲେ । (୫) ଯେଉଁ ବ୍ୟକ୍ତିର ପାନ କରିବାର ଇଚ୍ଛା ଜନ୍ମି ଅଛି, ତାହାକୁ ଜଳ ଦିଅ । (୬) ଯେଉଁମାନେ ଜୟ କରିବେ ସେମାନଙ୍କୁ ଶତକଡ଼ା ଦଶଟଙ୍କା ପୁରସ୍କାର ମୂଲ୍ୟ ଛାଡ଼ ଦିଆଯିବ । (୭) ଯେ ଜଗତ୍ ସୃଷ୍ଟି କରି-ଅଛନ୍ତି, ତାହାଙ୍କୁ ପ୍ରତିଦିନ ସ୍ମରଣ ଓ ପ୍ରଣାମ କରିବ । (୮) ବର୍ଷାକାଳରେ ନଦୀଜଳ ପାନ କରିବାର ଯୋଗ୍ୟ ନୁହେଁ । (୯) ଯେ ପରଦ୍ରବ୍ୟ ଅପହରଣ କରେ ତାହାକୁ ସମସ୍ତେ ଘୃଣା କରନ୍ତି । (୧୦) ଯେଉଁ ବୀରମାନଙ୍କର ଜୟ କରିବାର ଇଚ୍ଛା ପ୍ରବଳ, ସେମାନେ ପରରାଜ୍ୟ ଆକ୍ରମଣ କରନ୍ତି । (୧୧) ମାଳତୀର ବିବାହ ହୋଇନାହିଁ । (୧୨) ଯେଉଁ ବ୍ୟକ୍ତି ସଦୁପଦେଶ ଦିଅନ୍ତି ତାହାଙ୍କୁ ଭକ୍ତି କରିବ । (୧୩) ଯେଉଁମାନେ ବିଦ୍ୟାଳୟ ପରିଚାଳନା କରନ୍ତି ସେମାନେ ବାଳକମାନଙ୍କ ସୁଶିକ୍ଷା ପାଇଁ ଦାୟୀ ଅଟନ୍ତି । (୧୪) ବ୍ୟାଘ୍ର ଜନ୍ତୁମାନଙ୍କ ମନରେ ଭୟ ଜନ୍ମାଏ । (୧୫) ଶିଶୁମାନଙ୍କର ଜାଣିବାର ଇଚ୍ଛା ପ୍ରବଳ ଅଟେ । (୧୬) ଯେ ଦାନ କରନ୍ତି ତାହାଙ୍କର ପୁଣ୍ୟ ହୁଏ । (୧୭) ଯେ ଋଣ ଗ୍ରହଣ କରନ୍ତି ତାହାଙ୍କୁ ଅଧମର୍ଣ୍ଣ କୁହାଯାଏ । (୧୮) ଏହି ସମ୍ବାଦ-ପତ୍ର ଯେଉଁମାନେ ଗ୍ରହଣ କରିବେ, ସେମାନଙ୍କୁ ଦୁଇଖଣ୍ଡ ପୁସ୍ତକ ଉପହାର ଦିଆଯିବ । (୧୯) ଯେ କୋଣାର୍କ ଦେଉଳ ନିର୍ମାଣ କରିଥିଲେ ତାହାଙ୍କୁ ସମସ୍ତେ ପ୍ରଶଂସା କରୁଅଛନ୍ତି । (୨୦) ଯେ ପାକ କରେ ପରିଷ୍କୃତ ରହିବା ତାହାର ଉଚିତ । (୨୧) ଯେଉଁମାନେ ରଚନା କରନ୍ତି ସେମାନଙ୍କର ବ୍ୟାକରଣ ଜାଣିବା ଆବଶ୍ୟକ । (୨୨) ଯେ ନିନ୍ଦା କରେ ତାହାକୁ କେହି ସୁଖ ପାନ୍ତି ନାହିଁ । (୨୩) ଯେ ବିଦ୍ୟାଳୟ ସ୍ଥାପନ କରନ୍ତି ତାହାଙ୍କଠାରେ ଛାତ୍ରଛାତ୍ରୀମାନେ ଋଣୀ । (୨୪) ଯେ ଭିକ୍ଷା କରେ ସେ ଅନ୍ୟ ଲୋକର ଦୟା ଉପରେ ନିର୍ଭର କରେ । (୨୫) ଯେଉଁମାନେ ଯୁଦ୍ଧରେ ଜୟ କରନ୍ତି, ସେମାନେ ଯେଉଁମାନେ ପଳାୟନ କରନ୍ତି, ସେମାନଙ୍କ ପଛରେ ଗମନ କରନ୍ତି ।

## (ଖ) ତଦ୍ଧିତ ପ୍ରତ୍ୟୟ ଦ୍ୱାରା ବାକ୍ୟର ସଂକ୍ଷେପଣ

### ଆଦର୍ଶ

୧) ଦଶରଥଙ୍କର ପୁତ୍ର ଜନକଙ୍କର କନ୍ୟାକୁ ବିବାହ କଲେ ।

'ଦଶରଥ' ଓ 'ଜନକ' ଏହି ଦୁଇ ଶବ୍ଦରେ ଅପତ୍ୟାର୍ଥରେ ତଦ୍ଧିତ ପ୍ରତ୍ୟୟ କଲେ ଉପରଲିଖିତ ବାକ୍ୟଟି ହେବ,—ଦାଶରଥି ଜାନକୀଙ୍କୁ ବିବାହ କଲେ ।

୨) ବନରେ ଯେଉଁ ଫଳମୂଳ ମିଳେ ଋଷିମାନେ ତାହା ଖାଇ ଜୀବନ ଧାରଣ କରନ୍ତି । ତଦ୍ଧିତ ପ୍ରତ୍ୟୟ ଯୋଗେ ସଂକ୍ଷିପ୍ତ ହେଲେ ବାକ୍ୟଟି ହେବ,—ଋଷିମାନେ ବନ୍ୟ ଫଳମୂଳ ଖାଇ ଜୀବନ ଧାରଣ କରନ୍ତି ।

୩) ଯେଉଁ ଲୋକର ଗୁଣ ଅଛି ସମସ୍ତେ ତାହାକୁ ଆଦର କରନ୍ତି । ତଦ୍ଧିତ ପ୍ରତ୍ୟୟ ଯୋଗେ ସଂକ୍ଷିପ୍ତ ହେଲେ ବାକ୍ୟଟି ହେବ,—ଗୁଣୀ ଲୋକକୁ ସମସ୍ତେ ଆଦର କରନ୍ତି ।

୪) ଯେଉଁ ପ୍ରଦେଶରେ ପର୍ବତଗୁଡ଼ିକ ଥାଏ ତାହା ରମଣୀୟ ଅଟେ । ତଦ୍ଧିତ ପ୍ରତ୍ୟୟ ଯୋଗେ ସଂକ୍ଷିପ୍ତ ହେଲେ ବାକ୍ୟଟି ହେବ,—ପାର୍ବତ୍ୟ ପ୍ରଦେଶ ରମଣୀୟ ଅଟେ ।

୫) ଗୋପାଳ ପିତାଙ୍କଠାରୁ ଯେଉଁ ସମ୍ପତ୍ତି ପ୍ରାପ୍ତ ହୋଇଥିଲେ ସେ ସେଥିରେ ସୁଖରେ କାଳାତିପାତ କଲେ । ତଦ୍ଧିତ ପ୍ରତ୍ୟୟ ଯୋଗେ ସଂକ୍ଷିପ୍ତ ହେଲେ ବାକ୍ୟଟି ହେବ,—ଗୋପାଳ ପୈତୃକ ସମ୍ପତ୍ତିରେ ସୁଖରେ କାଳାତିପାତ କଲେ ।

ଅନୁଶୀଳନୀ—ତଦ୍ଧିତ ପ୍ରତ୍ୟୟ ଏବଂ ପ୍ରୟୋଜନ ହେଲେ କୃତ୍ ପ୍ରତ୍ୟୟ ଯୋଗେ ନିମ୍ନଲିଖିତ ବାକ୍ୟମାନଙ୍କର ସଂକ୍ଷେପଣ କର—

୧) ଯେଉଁ ଲୋକଙ୍କର ଚରିତ୍ର ଭଲ ତାହାକୁ ସମସ୍ତେ ଶ୍ରଦ୍ଧା କରନ୍ତି । ୨) ଯେଉଁମାନଙ୍କର ଧନ ଅଛି ସେମାନେ ଅନେକ ଲୋକର ଉପକାର କରିପାରନ୍ତି । ୩) ପରୀକ୍ଷିତ ଅର୍ଜୁନଙ୍କର ପୁତ୍ରର ପୁତ୍ର ଥିଲେ । ୪) ଦ୍ରୁପଦରାଜାଙ୍କର କନ୍ୟାଙ୍କର ବୁଦ୍ଧି ତୀକ୍ଷ୍ଣ ଥିଲା । ୫) ପଶୁମାନଙ୍କର ଦେହ ଲୋମରେ ଆବୃତ ଅଟେ । ୬) ବସନ୍ତ କାଳରେ ତରୁଲତାମାନଙ୍କରେ ପୁଷ୍ପ ଜାତ ହୁଏ । ୭) ଯେଉଁ ପୁଷ୍କରିଣୀରେ ବହୁତ ପଙ୍କ ଥାଏ ତାହାର ଜଳପାନ କରିବା ଉଚିତ ନୁହେଁ । ୮) ନଦୀର ଜଳରେ ବନ୍ୟାବେଳେ ବହୁତ ଫେଣ ଥାଏ । ୯) ଯେଉଁ ଲୋକମାନଙ୍କର ଦୟା ଅଛି ସେମାନେ ପରଦୁଃଖରେ କାତର ହୁଅନ୍ତି । ୧୦) ଯେଉଁଲୋକର ସୁନ୍ଦର ରୂପ ଅଛି ଓ ଗୁଣ ଅଛି, ସେ ଦେବତୁଲ୍ୟ । ୧୧) ଯେଉଁ ଲୋକର ଭଲ ବୁଦ୍ଧି ଥାଏ ସେ ଗଣିତରେ ପାରଦର୍ଶୀ ହୁଏ । ୧୨) ଯେଉଁ ଗ୍ରନ୍ଥଗୁଡ଼ିକ ପୂର୍ବକାଳରେ ରଚିତ

ସେଗୁଡ଼ିକ ଦୁର୍ଲ୍ଲଭ ଅଟେ । ୧୩) ଯେଉଁ ଲୋକମାନେ ଦକ୍ଷିଣ ଦେଶରେ ବାସ କରନ୍ତି ଆମ୍ଭେମାନେ ସେମାନଙ୍କ ଭାଷା ବୁଝି ପାରୁଁ ନାହିଁ । ୧୪) ଯେଉଁମାନେ ମହାରାଷ୍ଟ୍ର ଦେଶରେ ବାସ କରନ୍ତି ସେମାନଙ୍କ ମଧ୍ୟରୁ ଅନେକେ ଶିବଙ୍କର ଉପାସନା କରନ୍ତି । ୧୫) ଯେଉଁ ପଦାର୍ଥର ମୂଲ୍ୟ ଅଧିକ, ଦରିଦ୍ର ଲୋକମାନେ ତାହା କ୍ରୟ କରିପାରନ୍ତି ନାହିଁ । ୧୬) ଯେଉଁ ଲୋକମାନେ ବିଦେଶରୁ ଏ ଦେଶକୁ ଆସନ୍ତି ସେମାନଙ୍କର ଆଚାର ବ୍ୟବହାର ଭିନ୍ନ ଅଟେ । ୧୭) ଯେଉଁ ଜନ୍ତୁମାନେ ସମୁଦ୍ରରେ ବାସ କରନ୍ତି ସେମାନଙ୍କ ମଧ୍ୟରେ ତିମି ସବୁଠାରୁ ଅଧିକ ବୃହତ୍ ଅଟେ । ୧୮) ନକୁଳ ଓ ସହଦେବ ଯୁଧିଷ୍ଠିରଙ୍କ ବିମାତାଙ୍କର ଗର୍ଭରୁ ଜାତ ଭ୍ରାତା ଥିଲେ । ୧୯) ଆମ୍ଭର ପିତାଙ୍କର ଭ୍ରାତା ତୁମ୍ଭର ମାତାଙ୍କର ପିତା ଅଟନ୍ତି । ୨୦) ବିଦେହ ଦେଶର ରାଜାଙ୍କର କନ୍ୟା କୋଶଳ ଦେଶ ରାଜାଙ୍କର କନ୍ୟାଙ୍କର ପୁତ୍ରବଧୂ ଥିଲେ । ୨୧) ଯେଉଁମାନେ ଉଚ୍ଚ କୁଳରେ ଜାତ ସେମାନଙ୍କର ଅଭିମାନ ଥାଏ । ୨୨) ବିଶ୍ୱନାଥ-ଙ୍କର ପିତା ମଧ୍ୟ ଅଳଙ୍କାର-ଶାସ୍ତ୍ରର ଚର୍ଚ୍ଚା କରୁଥିଲେ । ୨୩) ପିଶାଚ ଦେଶରେ ଯେଉଁ ଭାଷା ଚଳୁଥିଲା ତାହା ଏକପ୍ରକାର ପ୍ରାକୃତ ଭାଷା ଅଟେ । ୨୪) ଗୁଣ୍ଡିଚ୍-ବେଳେ କୌଣସି ଉଚ୍ଚ ସ୍ଥାନରୁ ଗଡ଼ିଲେ ବଡ଼ଦାଣ୍ଡ ମୁଣ୍ଡରେ ପୂର୍ଣ୍ଣ ହୋଇ ପଡ଼ି ଦିଶେ । ୨୫) ଯେଉଁ ପଦାର୍ଥମାନ ବାୟୁପରି ଅଟନ୍ତି ସେମାନଙ୍କର ରୂପ ନାହିଁ । ୨୬) ପୁରାଣମାନଙ୍କରେ ଯେଉଁ ଉପାଖ୍ୟାନଗୁଡ଼ିକ ଅଛି, ସେଗୁଡ଼ିକ ଶିକ୍ଷାପ୍ରଦ ଅଟେ । ୨୭) ଯେଉଁମାନେ ନଗରରେ ବାସ କରନ୍ତି, ସେମାନଙ୍କର ଆଚାର ପ୍ରାୟ ବିଶୁଦ୍ଧ ନୁହେଁ । ୨୮) ସିନ୍ଧୁ ପ୍ରଦେଶର ଖଣିରୁ ଯେଉଁ ଲବଣ ମିଳେ ତାହା ଅତି ଉପକାରୀ ଅଟେ । ୨୯) ନବଦ୍ୱୀପର ପଣ୍ଡିତମାନେ ନ୍ୟାୟ ଶାସ୍ତ୍ରର ଚର୍ଚ୍ଚା କରନ୍ତି । ୩୦) ସବୁ ଋତୁରେ ମହାନଦୀରେ ନୌକା ଗମନାଗମନ କରିପାରେ ନାହିଁ । ୩୧) ପରୀକ୍ଷିତ ଉତ୍ତରଙ୍କର ଭଗିନୀଙ୍କର ପୁତ୍ର ଥିଲେ । ୩୨) ବ୍ୟାକରଣ-ଶାସ୍ତ୍ରରେ ପାରଦର୍ଶୀ ବୋଲି ପାଣିନିଙ୍କର ପ୍ରତିଷ୍ଠା ଅଛି । ୩୩) କୁଳକ୍ରମରେ ଆଗତ ପ୍ରଥା ଅନୁସାରେ ଦଶବର୍ଷ ବୟସରେ ତାହାଙ୍କର ଉପନୟନ ହୋଇ । ୩୪) ରାଜା ଚିରକାଳ ପ୍ରଚଳିତ ରୀତିର ଅନୁସରଣ କରୁଥିଲେ । ୩୫) ଏକ ବର୍ଷରେ ପୃଥିବୀର ଯେଉଁ ଗତି ପୂର୍ଣ୍ଣ ହୁଏ ସେଥିରୁ ଭିନ୍ନ ଭିନ୍ନ ଋତୁର ଉତ୍ପତ୍ତି ହୁଏ । ୩୬) ମୃତ୍ତିକାରେ ଯେଉଁ ପାତ୍ରଗୁଡ଼ିକ ନିର୍ମିତ, ଆମ୍ଭେମାନେ ପ୍ରତିଦିନ ସେଗୁଡ଼ିକ ବ୍ୟବହାର କରୁଁ । ୩୭) ମୃତ୍ୟୁ ଉତ୍ତାରେ ସର୍ବାପେକ୍ଷା ସୁନ୍ଦର ଦେହ ମଧ୍ୟ ଧୂଳିରେ ପରିଣତ ହୁଏ । ୩୮) ରାମଚନ୍ଦ୍ର ହିରଣ୍ୟରେ ନିର୍ମିତ ସୀତାଙ୍କର ମୂର୍ତ୍ତି ଆପଣା ପାଖରେ ସ୍ଥାପନ କରି ଅଶ୍ୱମେଧ ଯଜ୍ଞର ଅନୁଷ୍ଠାନ କଲେ । ୩୯) ଅର୍ଜ୍ଜୁନଙ୍କର ଯେଉଁ ବୀରତ୍ୱ ଥିଲା ତାହା ଲୋକରେ ଦେଖାଯାଏ ନାହିଁ । ୪୦) ଲୋକରେ ଯେଉଁ ଶିଷ୍ଟାଚାର ପ୍ରଚଳିତ, ସେଥିରେ ତ୍ରୁଟି ଦେଖିଲେ ସମସ୍ତେ ନିନ୍ଦା କରନ୍ତି । ୪୧) ନିଷଧ-ଦେଶ ରାଜାଙ୍କର ବିବରଣ ଯେଉଁ କାବ୍ୟରେ ଅଛି

ଶ୍ରୀହର୍ଷ ତାହାର ପ୍ରଣେତା ଅଟନ୍ତି । ୬) ଯେଉଁ ଯୁଗରେ ବେଦର ରଚନା ହୋଇଥିଲା, ସେହି ଯୁଗର ଇତିହାସ ଜାଣିବାର ଅନ୍ୟ ଉପାୟ ନାହିଁ । ୭) ଜାଣିବାର ଇଚ୍ଛା ଶିଶୁମାନଙ୍କର ସ୍ୱଭାବରୁ ଜନ୍ମିଥାଏ । ୮) ଯେଉଁମାନେ ଯୁଦ୍ଧ କରନ୍ତି ସେମାନଙ୍କର ସାହସ ଥାଏ ।

## (ଗ) ସମାସଦ୍ୱାରା ବାକ୍ୟର ସଂକ୍ଷେପଣ

### ଆଦର୍ଶ :

୧) 'ରାମ ଓ ଲକ୍ଷ୍ମଣ ବିଶ୍ୱାମିତ୍ରଙ୍କ ସହିତ ତପୋବନକୁ ଗଲେ' । 'ଦ୍ୱନ୍ଦ୍ୱ' ସମାସ ଦ୍ୱାରା ସଂକ୍ଷିପ୍ତ ହେଲେ ଏହି ବାକ୍ୟଟି ହେବ,—'ରାମଲକ୍ଷ୍ମଣ ବିଶ୍ୱାମିତ୍ରଙ୍କ ସହିତ ତପୋବନକୁ ଗଲେ' ।

୨) 'ଯେଉଁ ଲୋକର ଦୟା ନାହିଁ ତାହାକୁ ସମସ୍ତେ ଭୟ କରନ୍ତି' । 'ବହୁବ୍ରୀହି' ସମାସରେ ସଂକ୍ଷିପ୍ତ ହେଲେ ଏହି ବାକ୍ୟଟି ହେବ,—'ନିର୍ଦ୍ଦୟ ଲୋକକୁ ସମସ୍ତେ ଭୟ କରନ୍ତି ।' ୩) 'ବିଦେଶରୁ ଆଗତ ଅତିଥିଙ୍କୁ ଅତିଶୟ ଆଦର କରିବ ।' 'ପଞ୍ଚମୀ ତତ୍ପୁରୁଷ ସମାସରେ ସଂକ୍ଷିପ୍ତ ହେଲେ ଏହି ବାକ୍ୟଟି ହେବ,—'ବିଦେଶାଗତ ଅତିଥିଙ୍କୁ ଅତିଶୟ ଆଦର କରିବ ।'

୪) 'ଶିଶୁମାନଙ୍କର ଦେହ ଅତିଶୟ କୋମଳ ।' 'ଷଷ୍ଠୀ ତତ୍ପୁରୁଷ' ସମାସରେ ସଂକ୍ଷିପ୍ତ ହେଲେ ଏହି ବାକ୍ୟଟି ହେବ,—'ଶିଶୁ-ଦେହ ଅତିଶୟ କୋମଳ ଅଟେ ।'

୫) 'ବସନ୍ତ କାଳରେ ବୃକ୍ଷମାନେ ଏବଂ ଲତାମାନେ କୋମଳ ପଲ୍ଲବ-ଗୁଡ଼ିକରେ ଶୋଭିତ ହୁଅନ୍ତି ।' 'ଦ୍ୱନ୍ଦ୍ୱ' କର୍ମଧାରୟ ଓ ତୃତୀୟା ତତ୍ପୁରୁଷ' ସମାସରେ ସଂକ୍ଷିପ୍ତ ହେଲେ ଏହି ବାକ୍ୟଟି ହେବ,—'ବସନ୍ତକାଳରେ ବୃକ୍ଷଲତାମାନେ କୋମଳପଲ୍ଲବ-ଶୋଭିତ ହୁଅନ୍ତି ।'

୬) 'ରଘୁଙ୍କ ରାଜ୍ୟ ସମୁଦ୍ର ପର୍ଯ୍ୟନ୍ତ ବିସ୍ତୃତ ଥିଲା ।' 'ଅବ୍ୟୟୀଭାବ' ସମାସରେ ସଂକ୍ଷିପ୍ତ ହେଲେ ଏହି ବାକ୍ୟଟି ହେବ—'ରଘୁଙ୍କ ରାଜ୍ୟ ଆସମୁଦ୍ର ବିସ୍ତୃତ ଥିଲା ।'

୭) 'ଘୃତଯୁକ୍ତ ଅନ୍ନ ତୃପ୍ତିକର ଅଟେ ।' 'ମଧ୍ୟପଦଲୋପୀ କର୍ମଧାରୟ' ସମାସରେ ସଂକ୍ଷିପ୍ତ ହେଲେ ଏହି ବାକ୍ୟଟି ହେବ,—ଘୃତାନ୍ନ ତୃପ୍ତିକର ଅଟେ ।'

# ଉପପଦ ତତ୍‌ପୁରୁଷ ସମାସ

ଗୋଟିଏ କର୍ମପଦ, କରଣ ପଦ ବା ଏହିପରି ଅନ୍ୟ କୌଣସି ପଦ ଉପପଦ ହୋଇ ପୂର୍ବରେ ଥିବ, ତାହା ଉତ୍ତାରେ ଧାତୁ ଓ ପ୍ରତ୍ୟୟ ଥିବ, ଏଥିରେ ଯେଉଁ ସମାସ ହୁଏ, ତାହାକୁ ଉପପଦ ତତ୍‌ପୁରୁଷ ସମାସ କହନ୍ତି ।

**ଆଦର୍ଶ :**

| ସମାସ ପୂର୍ବରୁ ବାକ୍ୟ ଯେପରି ଥିଲା | ସମାସରେ ସଂକ୍ଷିପ୍ତ ହେବାରୁ ବାକ୍ୟ ଯେପରି ହେଲା |
| --- | --- |
| ଯେଉଁ ବସ୍ତୁ ମନକୁ ହରଣ କରେ ତାହାକୁ ସମସ୍ତେ ଆଦର କରନ୍ତି । | ମନୋହର ବସ୍ତୁକୁ ସମସ୍ତେ ଆଦର କରନ୍ତି । |
| ଜଳରେ ଯେଉଁ ପ୍ରାଣୀମାନେ ବିଚରଣ କରନ୍ତି ସେମାନଙ୍କ ମଧ୍ୟରେ ତିମି ବୃହତ୍ତମ ଅଟେ । | ଜଳଚର ପ୍ରାଣୀମାନଙ୍କ ମଧ୍ୟରେ ତିମି ବୃହତ୍ତମ ଅଟେ । |
| ବନରେ ଯେଉଁ ଅନାର୍ଯ୍ୟମାନେ ବାସ କରନ୍ତି ସେମାନଙ୍କର ଆଡ଼ମ୍ବର ନ ଥାଏ । | ବନବାସୀ ଅନାର୍ଯ୍ୟମାନଙ୍କର ଆଡ଼ମ୍ବର ନ ଥାଏ । |

**ଅନୁଶୀଳନୀ**—ସମାସ ଦ୍ୱାରା ଏବଂ ପ୍ରୟୋଜନ ସ୍ଥଳରେ ତଦ୍ଧିତ ପ୍ରତ୍ୟୟ ଦ୍ୱାରା ନିମ୍ନଲିଖିତ ବାକ୍ୟମାନଙ୍କର ସଂକ୍ଷେପଣ କର :—

୧) ଭୂତ ଏବଂ ଭବିଷ୍ୟତ ବିବେଚନା କରି କାର୍ଯ୍ୟ କରିବ । ୨) ଉତ୍କଳର ଗୌରବ ମଧୁସୂଦନ ଦାସ ଗୁଣମାନଙ୍କର ଆସ୍ପଦ ଥିଲେ । ୩) ଯେଉଁ ଭାରତ ଭୂମିର ଗର୍ଭରେ ରତ୍ନ ଅଛି, ତାହା ପ୍ରତି ସମସ୍ତେ ଲୋଭରେ ଆସକ୍ତ । ୪) ମୁକୁଟରେ ମଣ୍ଡିତ ମସ୍ତକ ସର୍ବଦା ଶାନ୍ତିର ନିକେତନ ନୁହେଁ । ୫) ହିଂସ୍ରଜନ୍ତୁମାନଙ୍କରେ ପୂର୍ଣ୍ଣ ବନ ମଧ୍ୟରେ ଏକାକୀ ଗମନାଗମନ କରିବା ଉଚିତ ନୁହେଁ । ୬) ଯେଉଁ ଲୋକର ଧନ ନାହିଁ ତାହାକୁ ଅନେକ ଅସୁବିଧା ଭୋଗ କରିବାକୁ ପଡ଼େ । ୭) ଜାନୁ ପର୍ଯ୍ୟନ୍ତ ଲମ୍ବିତ ବାହୁ ମହାପୁରୁଷର ଲକ୍ଷଣ ଅଟେ । ୮) ତୃଣଗୁଡ଼ିକରେ ଆଚ୍ଛନ୍ନ ସ୍ଥାନ ସୁନ୍ଦର ଦିଶେ । ୯) କୋକିଳମାନଙ୍କର କଣ୍ଠରୁ ନିଃସୃତ ଧ୍ୱନି ଅତି ମନୋହର ଅଟେ । ୧୦) ପକ୍ୱ ଶସ୍ୟମାନଙ୍କରେ ପୂର୍ଣ୍ଣ କ୍ଷେତ୍ରଗୁଡ଼ିକ ଦେଖିଲେ କୃଷକର ମନ ଆନନ୍ଦରେ ପୂର୍ଣ୍ଣ ହୁଏ । ୧୧) କବିମାନଙ୍କ ମଧ୍ୟରେ ଶ୍ରେଷ୍ଠ ରାଧାନାଥଙ୍କର ମନ ଗୁଣୀମାନଙ୍କର ନିକେତନ ଥିଲା । ୧୨) ଋତୁମାନଙ୍କର ରାଜା ବସନ୍ତର ଆଗମନରେ ପୃଥିବୀ ଶ୍ରୀ ଦ୍ୱାରା ଯୁକ୍ତ ହୁଏ । ୧୩) ଯେଉଁ ପକ୍ଷୀମାନେ କଳରବ କରନ୍ତି

ସେମାନଙ୍କ ମଧ୍ୟରେ କୋକିଳ ପ୍ରଧାନ । ୧୪) ଯେଉଁ କଥା (ଅନ୍ୟର) ମର୍ମକୁ ଭେଦ କରେ, ତାହା କେବେ ହେଁ କହିବ ନାହିଁ । ୧୫) ଶିଶୁମାନଙ୍କଠାରେ ସୁଲଭ ସରଳତା ସାଧୁମାନଙ୍କଠାରେ ଦେଖାଯାଏ । ୧୬) ଜଗତରେ ବିଖ୍ୟାତ ମହାନ୍ ପଣ୍ଡିତ ନିଉଟନ୍ କୃଷକର ସନ୍ତାନ ଥିଲେ । ୧୭) ରୁଷିଆର ଅଧିପତି ପୀଟର ପ୍ରଜାମାନଙ୍କର ହିତ ଆକାଙ୍‌କ୍ଷା କରୁଥିଲେ । ୧୮) ଋଷିମାନଙ୍କର କନ୍ୟାମାନେ ସୀତାଙ୍କୁ ସାନ୍ତ୍ୱନା ଦେଲେ । ୧୯) ଯେଉଁ ଲୋକମାନଙ୍କର ଆଶୟ ସତ୍, ସେମାନେ ପରର କଲ୍ୟାଣ କାମନା କରନ୍ତି । ୨୦) ପଣ୍ଡିତମାନଙ୍କ ସଭାରେ ନାନା ଶାସ୍ତ୍ରର ଆଲୋଚନା ହୁଏ । ୨୧) ସିଂହାସନରେ ଆରୂଢ଼ ହୋଇ ଆକବର ହିନ୍ଦୁ ଓ ମୁସଲମାନ ପ୍ରଜାମାନଙ୍କୁ ସମାନଭାବରେ ପାଳନ କଲେ । ୨୨) ଯେଉଁମାନେ ନଦୀର କୂଳରେ ବାସ କରନ୍ତି ସେମାନେ ନାନା ସୁଖ ଭୋଗ କରନ୍ତି । ୨୩) ଯେଉଁ ପଣ୍ଡିତମାନେ ମିଥିଳାରେ ବାସ କରୁଥିଲେ ସେମାନେ ନ୍ୟାୟ ଶାସ୍ତ୍ରରେ ପାରଦର୍ଶୀ ଥିଲେ । ୨୪) ରାମଚନ୍ଦ୍ର ଲକ୍ଷ୍ମଣଙ୍କର ଅଗ୍ରରେ ଜାତ ହୋଇଥିଲେ । ୨୫) ସମୁଦ୍ରରୁ ଯେଉଁ ଲବଣ ଜନ୍ମେ, ତାହା ଅପେକ୍ଷା ଖନିରୁ ଯେଉଁ ଲବଣ ଜନ୍ମେ ତାହା ଅଧିକ ଉତ୍କୃଷ୍ଟ ଅଟେ । ୨୬) ରାମ ଓ ରାବଣ ମଧ୍ୟରେ ଯେଉଁ ଯୁଦ୍ଧ ହେଲା ତାହାର ପରିଣାମରେ ରାକ୍ଷସମାନଙ୍କର ପରାଜୟ ହେଲା । ୨୭) ଅନ୍ୟ ଦେଶରୁ ଆଗତ ବସ୍ତ୍ର ଅପେକ୍ଷା ଏ ଦେଶର ବସ୍ତ୍ର ଅଧିକ ସ୍ଥାୟୀ ଅଟେ । ୨୮) କଫରୁ ଯେଉଁ ରୋଗମାନ ଜନ୍ମେ, ବମନଦ୍ୱାରା ସେମାନଙ୍କର ଉପଶମ ହୁଏ । ୨୯) ଏହି ଜ୍ୱର ଶ୍ଳେଷ୍ମାରୁ ଜାତ ହୋଇଅଛି । ୩୦) ପୂର୍ବେ ଗୁରୁଙ୍କ ଗୃହରେ ଅବସ୍ଥାନ କାଳରେ ଶିଷ୍ୟମାନେ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରୁଥିଲେ । ୩୧) ଯେଉଁ ପ୍ରାଣୀମାନଙ୍କର ଚାରିଗୋଟି ପାଦ ସେମାନଙ୍କ ମଧ୍ୟରେ ହସ୍ତୀ ସର୍ବାପେକ୍ଷା ବୃହତ୍ ଅଟେ । ୩୨) ବିଦ୍ୟା ପ୍ରତି ଅନୁରାଗ ରାଧାନାଥଙ୍କର ବାଲ୍ୟକାଳରୁ ଥିଲା । ୩୩) ଅସୁରମାନେ ଦେବତାମାନଙ୍କୁ ବିଦ୍ୱେଷ କରୁଥିଲେ । ୩୪) ଯେଉଁ ପ୍ରାଣୀମାନେ ଅଣ୍ଡାରୁ ଜନ୍ମନ୍ତି ସେମାନଙ୍କ ମଧ୍ୟରେ କାକ ଦୀର୍ଘକାଳ ଜୀବିତ ରହେ । ୩୫) ଯେଉଁମାନେ ଶାସ୍ତ୍ର ଜାଣନ୍ତି ସର୍ବ ସ୍ଥାନରେ ସେମାନଙ୍କର ଆଦର ହୁଏ । ୩୬) ଆଜିକାଲି ଯେଉଁମାନେ ଆକାଶରେ ବିହାର କରୁଅଛନ୍ତି ସେମାନଙ୍କ ମଧ୍ୟରୁ କେହି କେହି ମୃତ୍ୟୁର ମୁଖରେ ପତିତ ହେଉଅଛନ୍ତି । ୩୭) ଯେଉଁ ଲୋକମାନଙ୍କର ତୀକ୍ଷ୍ଣ ବୁଦ୍ଧି ଅଛି ସେମାନଙ୍କର ଅଳ୍ପ ଆୟାସରେ ଶାସ୍ତ୍ରରେ ଜ୍ଞାନ ଜନ୍ମେ । ୩୮) କ୍ଷୁଧା ଓ ପିପାସାରେ ଆକୁଳ ହେଲେ ପ୍ରାଣୀମାନଙ୍କର ଜ୍ଞାନ ରହେ ନାହିଁ । ୩୯) ଯେଉଁମାନଙ୍କର କୁତ୍ସିତ ଆକାର, ସେମାନଙ୍କର ସ୍ୱଭାବ କ୍ୱଚିତ୍ ସୁନ୍ଦର ହୁଏ । ୪୦) ଯାହାର କେହି ସହାୟ ନାହିଁ ଦୀନମାନଙ୍କର ବନ୍ଧୁ ଭଗବାନ୍ ତାହାର ସହାୟ ହୁଅନ୍ତି ।

# ୧୫—ଅଶୁଦ୍ଧି-ସଂଶୋଧନ

ଯେଉଁମାନଙ୍କର ବ୍ୟାକରଣରେ ବ୍ୟୁତ୍ପତ୍ତି ଜନ୍ମି ନାହିଁ ସେମାନେ କଥାରେ ଓ ଲେଖାରେ ଅନେକ ସମୟରେ ଅଶୁଦ୍ଧ ପ୍ରୟୋଗ କରିଥାନ୍ତି । ଏହି ଅଶୁଦ୍ଧି ନାନାପ୍ରକାର ଦେଖାଯାଏ ।

(୧) ବିଶେଷ୍ୟକୁ ବିଶେଷଣରୂପେ ବ୍ୟବହାର କରିବା । 'ଏହା ଦେଖି ଲୋକେ ଆଶ୍ଚର୍ଯ୍ୟ ହେଲେ'—ଏଠାରେ 'ଆଶ୍ଚର୍ଯ୍ୟ' ଏହି ବିଶେଷ୍ୟଟି ବିଶେଷଣରୂପେ ବ୍ୟବହୃତ ହୋଇଅଛି । 'ଏହା ଦେଖି ଲୋକେ ଆଶ୍ଚର୍ଯ୍ୟାନ୍ୱିତ ହେଲେ' ଏପରି ପ୍ରୟୋଗ ଶୁଦ୍ଧ ଅଟେ ।

(୨) ବିଶେଷଣକୁ ବିଶେଷ୍ୟରୂପେ ବ୍ୟବହାର କରିବା । 'ଯେଉଁମାନେ ତୁମ୍ଭର ଅଧୀନରେ ଅଛନ୍ତି, ସେମାନଙ୍କ ପ୍ରତି ଦୟା ରଖିଥିବ'—ଏଠାରେ 'ଅଧୀନ' ଏହି ବିଶେଷଣ ପଦ ବିଶେଷ୍ୟରୂପେ ବ୍ୟବହୃତ ହୋଇଅଛି । 'ଯେଉଁମାନେ ତୁମ୍ଭର ଅଧୀନ ଅଟନ୍ତି, ସେମାନଙ୍କ ପ୍ରତି ଦୟା ରଖିଥିବ' ଏପରି ପ୍ରୟୋଗ ଶୁଦ୍ଧ ।

(୩) ଏକ କର୍ତ୍ତୃପଦ ପରିବର୍ତ୍ତିରେ ଭିନ୍ନ ଭିନ୍ନ କର୍ତ୍ତୃପଦ ବ୍ୟବହାର କରିବା । ଇ-ପ୍ରତ୍ୟୟାନ୍ତ ଅସମାପିକା କ୍ରିୟାର ପୂର୍ବରେ ନିଷେଧାର୍ଥକ ଅବ୍ୟୟ ଥିଲେ ଏକ ବାକ୍ୟର ଅନ୍ତର୍ଗତ ସମାପିକା କ୍ରିୟା ଓ ସେହି ଅସମାପିକା କ୍ରିୟାର ଭିନ୍ନ ଭିନ୍ନ କର୍ତ୍ତୃପଦ ହୁଏତ ହୋଇଥାଏ । ନିଷେଧାର୍ଥକ ଅବ୍ୟୟ ନ ଥିଲେ ଦୁଇ କ୍ରିୟାର ଭିନ୍ନ ଭିନ୍ନ କର୍ତ୍ତୃପଦ ବ୍ୟାକରଣବିରୁଦ୍ଧ ପ୍ରୟୋଗ ଅଟେ ।

'ଏ ବର୍ଷ ବାଲେଶ୍ୱର ଜିଲ୍ଲାରେ ଅତିବୃଷ୍ଟି ହୋଇ ଶସ୍ୟହାନି ହେଲା'—ଏହି ବାକ୍ୟରେ 'ହେଲା' ସମାପିକା କ୍ରିୟା ଏବଂ 'ହୋଇ' ଅସମାପିକା କ୍ରିୟା, ଏ ଦୁଇ କ୍ରିୟାର ଏକ କର୍ତ୍ତା ହେବା ଉଚିତ । ଭିନ୍ନ ଭିନ୍ନ କର୍ତ୍ତୃପଦର ପ୍ରୟୋଗ ବ୍ୟାକରଣ-ବିରୁଦ୍ଧ ହୋଇଅଛି । 'ଏ ବର୍ଷ ବାଲେଶ୍ୱର ଜିଲ୍ଲାରେ ଅତିବୃଷ୍ଟି ହୋଇ ଶସ୍ୟହାନି କଲା', ଅଥବା 'ଏ ବର୍ଷ ବାଲେଶ୍ୱର ଜିଲ୍ଲାରେ ଅତିବୃଷ୍ଟି ହେବାରୁ ଶସ୍ୟହାନି ହେଲା' । ଏପରି ପ୍ରୟୋଗ ଶୁଦ୍ଧ ଅଟେ ।

## (୪) ପ୍ରତ୍ୟୟର ଅପ-ବ୍ୟବହାର

ଭାବ ଅର୍ଥରେ ଅର୍ଥାତ୍ ଗୁଣୀର ଗୁଣ ବା ଧର୍ମୀର ଧର୍ମ ବୁଝାଇଲେ ବିଶେଷଣ ବା ବିଶେଷ୍ୟ ପଦକୁ ଉତ୍ତର ତ୍ୱ, ତା, ଯ ପ୍ରତ୍ୟୟ ହୁଏ । ଅନ୍ୟଥା ଏହି ପ୍ରତ୍ୟୟମାନ କଲେ ବ୍ୟାକରଣ-ଦୋଷ ଘଟେ ।

'ରାଧାନାଥଙ୍କ ସୌଜନ୍ୟତାରେ ସମସ୍ତେ ମୋହିତ ହେଉଥିଲେ'—ଏଠାରେ 'ସୌଜନ୍ୟତା' ଦୁଷ୍ଟ ପ୍ରୟୋଗ ; ସୁଜନ ଶବ୍ଦରୁ ଭାବାର୍ଥରେ ଯ ପ୍ରତ୍ୟୟ କରି ପୁଣି ସେହି ଅର୍ଥରେ ତା-ପ୍ରତ୍ୟୟ କରିବା ବ୍ୟାକରଣ-ବିରୁଦ୍ଧ ଅଟେ । 'ରାଧାନାଥଙ୍କର ସୌଜନ୍ୟରେ ସମସ୍ତେ ମୋହିତ ହେଉଥିଲେ', ଶୁଦ୍ଧ ପ୍ରୟୋଗ ।

କର୍ତ୍ତୃବାଚ୍ୟରେ ଅକ ଓ ଇନ୍ ପ୍ରତ୍ୟୟ କଲେ ଆକାରାନ୍ତ ଧାତୁରୁ ଉତ୍ତର ଗୋଟିଏ 'ୟ' ଆଗମ ହୁଏ । ଅଜ୍ଞ ଲୋକେ ଭାବ ବାଚ୍ୟରେ 'ଅନ' ପ୍ରତ୍ୟୟ ସ୍ଥଳରେ ମଧ୍ୟ 'ୟ' ଆଗମ କରନ୍ତି ।

'ରାମଚନ୍ଦ୍ରଙ୍କ ସଭାରେ ଋଷିକୁମାର ବେଶଧାରୀ ଲବକୁଶ ରାମାୟଣ ଗାୟନ କଲେ'—ଏଠାରେ 'ଗାୟନ' ଅଶୁଦ୍ଧ ପ୍ରୟୋଗ । 'ରାମଚନ୍ଦ୍ରଙ୍କ ସଭାରେ ଋଷିକୁମାର ବେଶଧାରୀ ଲବକୁଶ ରାମାୟଣ ଗାନ କଲେ', ଶୁଦ୍ଧ ପ୍ରୟୋଗ ।

### (୪) ସମାସ-ଦୋଷ

ନିର୍ ଉପସର୍ଗ ସହିତ ବିଶେଷ୍ୟପଦ ଯୋଗରେ ବହୁବ୍ରୀହି ସମାସ ହୋଇଥାଏ, କିନ୍ତୁ ନଞ୍ ତତ୍ପୁରୁଷ ସମାସ ହୁଏ ନାହିଁ । ଅତଏବ, 'ନିରାଶା' ପରି ପ୍ରୟୋଗ ବ୍ୟାକରଣ-ଦୁଷ୍ଟ ଅଟେ ।

'ନାହିଁ ନାଥ ଯାହାର' ସେ 'ଅନାଥ' ଓ ସ୍ତ୍ରୀ ଲିଙ୍ଗରେ 'ଅନାଥା' । 'ଅନାଥିନୀ' ଏପରି ପ୍ରୟୋଗ ଅଜ୍ଞତାର ପରିଚୟ ଅଟେ ।

### (୬) ସନ୍ଧି ଦୋଷ

'ଦୁଃ ଅବସ୍ଥା' ସନ୍ଧି କଲେ 'ଦୁରବସ୍ଥା' ହେବ । 'ଦୁରାବସ୍ଥା' ପରି ପ୍ରୟୋଗ ଦୁଷ୍ଟ ପ୍ରୟୋଗ ଅଟେ ।

### (୭) ପଦ୍ଧତି ପରିତ୍ୟାଗ ଓ ଅଧମ ଅନୁକରଣ

'ପଣ' ଅର୍ଥରେ 'ନ୍ୟାୟ' ଶବ୍ଦର ବ୍ୟବହାର ଓଡ଼ିଆ ଭାଷାର ପଦ୍ଧତି ବିରୁଦ୍ଧ ଅଟେ । ଏହା ଏବଂ 'ପାଓୟାଯାଏ' ପ୍ରଭୃତି ପ୍ରୟୋଗ ବଙ୍ଗଭାଷାର ଅନୁକରଣରେ ହୋଇଅଛି । 'କଡ଼ୁଆ' ଓଡ଼ିଆ, ମାତ୍ର 'କଡ଼ା' ବଙ୍ଗଳାର ଅନୁକରଣ ଅଟେ ।

ପ୍ରତି—ଅବ୍ୟୟ ଯୋଗେ ସଂସ୍କୃତ ଭାଷାରେ ଦ୍ୱିତୀୟା ବିଭକ୍ତି ହୁଏ, ମାତ୍ର ଓଡ଼ିଆ ଭାଷାରେ ହୁଏ ନାହିଁ ! 'ଆମ୍ଭଙ୍କୁ ପ୍ରତି' 'ସେ ସ୍ଥାନକୁ ପ୍ରତି' ଏପରି ପ୍ରୟୋଗ ଓଡ଼ିଆ ଭାଷାର ପଦ୍ଧତି-ବିରୁଦ୍ଧ ଅଟେ ।

### (୮) ବହୁତ୍ୱ ବାଚକ ବିଶେଷଣ ଥାଉ ଥାଉଁ ବହୁବଚନ ବିଭକ୍ତିର ପ୍ରୟୋଗ

'ଅନେକ ଲୋକମାନେ' ଅଶୁଦ୍ଧ; 'ଅନେକ ଲୋକ' ଶୁଦ୍ଧ ।

## (୯) ଦୂରାନ୍ୱୟ ଦୋଷ

ଅନ୍ୱୟବଶତଃ ଯେଉଁ ଦୁଇ ପଦ ପରସ୍ପର ସନ୍ନିହିତ ହେବା ଆବଶ୍ୟକ, ତନ୍ମଧ୍ୟରୁ ଗୋଟିଏ ଅପରଟିଠାରୁ ଦୂରବର୍ତ୍ତୀ ହେଲେ ଦୂରାନ୍ୱୟ-ଦୋଷ ହୁଏ ।

ସେ ଗୋଟିଏ ଯାଜପୁରରେ ଚିକିତ୍ସାଳୟ ନିର୍ମାଣ କଲେ', ଏଠାରେ 'ଗୋଟିଏ' ଏହି ସଂଖ୍ୟାବାଚକ ବିଶେଷଣ ପଦ 'ଚିକିତ୍ସାଳୟ' ଏହି ବିଶେଷ୍ୟ ପଦର ଅବ୍ୟବହିତ ପୂର୍ବରେ ନ ବସିବାରୁ ଦୂରାନ୍ୱୟ-ଦୋଷ ହେଲା ।

## (୧୦) କ୍ରମଭଙ୍ଗ

'ସଂକ୍ରାମକ ରୋଗଗ୍ରସ୍ତ ଲୋକ ସହିତ ଏକତ୍ର ଭୋଜନପାନ ଉଚିତ ନୁହେଁ ।' କଥାରେ ଓ ଲେଖାରେ ପ୍ରଥମେ 'ପାନ' ଶବ୍ଦ ଏବଂ ତତ୍ପରେ 'ଭୋଜନ' ଶବ୍ଦ ବ୍ୟବହାର କରାଯାଏ । ଏହି କ୍ରମଲଙ୍ଘନ କରିବାରୁ ଏଠାରେ କ୍ରମଭଙ୍ଗ ଦୋଷ ହେଲା ।

## (୧୧) ପୁନରୁକ୍ତି

"ବିଘ୍ନ ବ୍ୟାଘାତ ରାଶି ରାଶି ଯାଆନ୍ତେ ଭାସି......"

ଏଠାରେ ଏକାର୍ଥକ 'ବିଘ୍ନ' ଓ 'ବ୍ୟାଘାତ' ଶବ୍ଦ ବ୍ୟବହୃତ ହୋଇଥିବାରୁ ପୁନରୁକ୍ତ ଦୋଷ ହୋଇଅଛି ।

ଏତଦ୍ଭିନ୍ନ ଅନୁଚିତ ପଦପ୍ରୟୋଗ, ଅନୁଚିତ ବିଭକ୍ତି-ପ୍ରୟୋଗ, ନିଷ୍ପ୍ରୟୋଜନ ଶବ୍ଦପ୍ରୟୋଗ ପ୍ରଭୃତି କେତେଗୁଡ଼ିଏ ଦୋଷ ଲକ୍ଷିତ ହୁଏ ।

**ଅନୁଶୀଳନୀ**—(୧) ଆମ୍ଭେ ତୁମ୍ଭର ଆଚରଣରେ ସନ୍ତୋଷ ହେଲୁଁ । (୨) ସୂର୍ଯ୍ୟ ପ୍ରତିଦିନ ପୂର୍ବ ଦିଗରେ ଉଦୟ ହୁଏ । ୩) ସୁଦାମ ପୀଡ଼ିତ ଯୋଗୁଁ ବିଦ୍ୟାଳୟକୁ ଯାଇପାରି ନାହିଁ । ୪) ମଧୁସୂଦନ ଶ୍ରୀପଞ୍ଚମୀ ଦିନ ଜନ୍ମ ହୋଇଥିଲେ । ୫) ଓଡ଼ିଶାର ଭୂମ୍ୟାଧିକାରୀମାନଙ୍କର ଗୋଟିଏ ସଭା ଅଛି । ୬) ରାମଚନ୍ଦ୍ର ନିରପରାଧିନୀ ସୀତାଙ୍କୁ ପରିତ୍ୟାଗ କଲେ । ୭) କାଲି ସନ୍ଧ୍ୟା ସମୟରେ ଦିଗାମ୍ବର ପଣ୍ଡିତଙ୍କ ସହିତ ସାକ୍ଷାତ୍ ହୋଇଥିଲା । ୮) ଅତିଶୟ ଗ୍ରୀଷ୍ମ ହୋଇ ଦଶଟି ପକ୍ଷୀ ମରିଗଲେ । ୯) ବାର୍ଦ୍ଧକ୍ୟତା ହେତୁରୁ ପୂର୍ବପରି ସେ ଯାଇ ଆସି ପାରୁନାହାନ୍ତି । ୧୦) କାର୍ତ୍ତିକ ମାସରେ ପଣସ ପାଆ ଯାଏ ନାହିଁ । ୧୧) ଏହା ଶୁଣା ଯାଉଅଛି ଯେ ପୁରୀ ବଡ଼ ଦେଉଳ ପ୍ରତି ଭୁବନେଶ୍ୱର ବଡ଼ ଦେଉଳ ଉଚ୍ଚ ଅଟେ । ୧୨) ପିତାଙ୍କର ଅନୁମତ୍ୟାନୁସାରେ ମାଧବ ବାଲେଶ୍ୱର ଯାଇଅଛନ୍ତି ।

୧୩) ଚନ୍ଦ୍ରକାର ନିର୍ମଳ ଜଳରେ ବରାଙ୍ଗନାମାନେ ଆପଣା ମୁଖଶ୍ରୀର ପ୍ରତିବିମ୍ବ ଦେଖନ୍ତି । ୧୪) ଧୀର ସ୍ୱଭାବ ବ୍ୟକ୍ତି ନିରାଶାରେ ସାହସହୀନ ହୁଅନ୍ତି ନାହିଁ । ୧୫) ମହମ୍ମଦ ମୋଶିନ୍ ଦରିଦ୍ରମାନଙ୍କର ଦୁରବସ୍ଥା ଦେଖି ବ୍ୟଥିତ ହେଉଥିଲେ । ୧୬) କ୍ରୋଧାନ୍ଧ ହେଲେ ଅନେକେ ପଶୁର ନ୍ୟାୟ ଆଚରଣ କରନ୍ତି । ୧୭) ହରିହର ଅସମର୍ଥ ଯୋଗୁଁ କାର୍ଯ୍ୟ ତ୍ୟାଗ କଲେ । ୧୮) ରତ୍ନାକରଙ୍କର ଦାର୍ଢ୍ୟତା ଦେଖି ସମସ୍ତେ ବିସ୍ମିତ ହେଲେ । ୧୯) 'ଭ୍ରମଇ ଭ୍ରମର ଆନନ୍ଦ ମନେ । ମଧୁପାନ କରି କୁସୁମ ବନେ ।' ୨୦) ଜଗବନ୍ଧୁର ସାକ୍ଷ୍ୟତାରେ ରାଧାଚରଣର କୌଣସି ଉପକାର ହେଲା ନାହିଁ । ୨୧) ମୁଁ ତୁମର ପୁସ୍ତକ ନିବାର ଆବଶ୍ୟକ ଦେଖୁନାହିଁ । ୨୨) ୨୨) 'ଆଖୁକ୍ଷେତ ଦଶେ ଯତନ ଆଖୁଶାଳରେ ବସି । ଗ୍ରାମକଥା ଗ୍ରାମବାସୀଏ ଗଳ୍ପ କରନ୍ତି ହସି । ୨୩) ନୀଳକଣ୍ଠର ଦୁର୍ବ୍ୟବହାରରେ ମାଧବର ଅତିଶୟ ମନୋକଷ୍ଟ ହେଲା । ୨୪) ରମାକାନ୍ତର ଅସାଧାରଣ ଧୈର୍ଯ୍ୟତା ଦେଖି ଲୋକେ ବିସ୍ମିତ ଓ ଆନନ୍ଦିତ ହେଉଅଛନ୍ତି । ୨୫) ଅଦ୍ୟ ବାଲିଆ ବାଳକା ବିଦ୍ୟାଳୟ ପରିଦର୍ଶନ ହୋଇଲା । ୨୬) ସେ ସାଧୁ ଲୋକ ଅଛନ୍ତି । ୨୭) ଯେଉଁସବୁ ଲୋକମାନଙ୍କର ସାହାଯ୍ୟରେ ଏହି କାର୍ଯ୍ୟ ସାଧିତ ହେଲା ସେମାନେ ଧନ୍ୟବାଦାର୍ହ ଅଟନ୍ତି । ୨୮) ଭଦ୍ରଖଠାରୁ ବୃନ୍ଦାବାଲ ପର୍ଯ୍ୟନ୍ତ ରେଲ୍ ଖୋଲିବ । ୨୯) ଆମ୍ଭମାନଙ୍କର ବର୍ତ୍ତମାନ-କାର ମାଜିଷ୍ଟ୍ରେଟ୍ ଲୋକପ୍ରିୟ ଅଟନ୍ତି । ୩୦) ବାରମ୍ବାରେ ଆମ୍ଭମାନଙ୍କର ଏ ସମ୍ବନ୍ଧରେ ଯାହା ବକ୍ତବ୍ୟ ତାହା ପ୍ରକାଶ କରିବାର ଇଚ୍ଛା ରହିଲା । ୩୧) ବାଳକଟିର ଜାମାରେ ଅଗ୍ନି ଲାଗିବାରୁ ତାହା ଦେହର ନାନା ସ୍ଥାନ ପୋଡ଼ିଗଲା । ୩୨) ଧର୍ମ ଯଥାର୍ଥ ମନୁଷ୍ୟତ୍ୱ ବା ସଦ୍‌ଗତି ଲାଭର ଏକ ମାତ୍ର ପନ୍ଥା । ୩୩) କେତେ ଯେ ଏହିପ୍ରକାର ଧର୍ମବୀରମାନେ ଅବତୀର୍ଣ୍ଣ ହେଉଅଛନ୍ତି ତାହା କିଏ ବା ଇୟତ୍ତା କରିପାରେ ? ୩୪) ଗ୍ରୀଷ୍ମଶୈତ୍ୟ ପ୍ରପୀଡ଼ିତ ହୋଇ କ୍ଷୁଧା ତୃଷା ଦୂରେ ବର୍ଜନ ପୂର୍ବକ ସେ ନାନା ତୀର୍ଥସ୍ଥାନ ଭ୍ରମଣ କରୁଥିଲେ । ୩୫) ତାହାଙ୍କୁ ଛାତ୍ରମାନଙ୍କର ବୋଧଶକ୍ତିର ଉପଯୋଗିନୀ କରିବା ପାଇଁ ଆମ୍ଭମାନଙ୍କୁ ଚେଷ୍ଟା କରିବା ଉଚିତ । ୩୬) ଅନ୍ୟର ପ୍ରତି ଯତ୍ନ ଓ ସମ୍ମାନ ପ୍ରଦର୍ଶନ କର । ୩୭) ଶ୍ରେଣୀ ମଧ୍ୟରେ ସେମାନେ ସାହସ କରି କଥା କହିବାକୁ ଅଭ୍ୟସ୍ତ ହେଲେ । ୩୮) କୌଣସି ତାଲିକା ପ୍ରସ୍ତୁତ ନ ହେବା ପର୍ଯ୍ୟନ୍ତ ଏହା ଶିଖାଇବାର ନାହିଁ । ୩୯) ଏହା ମନେରଖିବା ଉଚିତ ଯେ ପ୍ରଥମ ଓ ଦ୍ୱିତୀୟମାନ ନିମନ୍ତେ ଆହୁରି ଦୁଇଗୋଟି କୋଠରି ହେଲେ ଭଲ । ୪୦) ପିଲାମାନଙ୍କର ସାମନାରୁ ଆଲୁଅ ନ ଆସି ପାର୍ଶ୍ୱରୁ ଆସି ପାରିବ । ୪୧) ଆଜିକାଲି ତାଳପତ୍ର ଲେଖାର ସେପରି ଚଳନ ଦେଖାଯାଉ ନାହିଁ । ୪୨) ଏ ସବୁ ଛବି ପାତଳା କାଗଜ ଉପରେ ଚିତ୍ର କରାଯାଇଥାଏ । ୪୩) ବିଜ୍ଞାନ ଶିଖାଇବା ପାଇଁ ମୋଟାମୋଟି କେତେଗୁଡ଼ିଏ ଯନ୍ତ୍ର ଥିବା ଦର୍କାର । ୪୪) ପିତାମାତା ଓ ଶିକ୍ଷକଙ୍କର ଆଜ୍ଞାର କାରଣ ନ ପଚାରି

ତାହା ବାଳକମାନଙ୍କର ପ୍ରତିପାଳନ କରିବା ଆବଶ୍ୟକ । ୪୫) ଏ ବିଷୟରେ ସମସ୍ତେ ସାବଧାନ ହେବା ଆବଶ୍ୟକ । ୪୬) ଆଜିକାଲି ଶୀତବସ୍ତ୍ର ବ୍ୟବହାର କରିବାର ଆବଶ୍ୟକ ନାହିଁ । ୪୭) ବାଳକବାଳିକାମାନଙ୍କୁ ପରିଷ୍କାର ପରିଚ୍ଛନ୍ନ ରଖିବା ପିତାମାତାଙ୍କର କର୍ତ୍ତବ୍ୟ । ୪୮) ଗରମ ପାଣିରେ ଧୋଇଲେ ଦୁଧର ପାତ୍ର ବେଶ୍ ପରିଷ୍କାର ହୁଏ । ୪୯) ତାହାଙ୍କର ଗୋଟିଏ ପରିଚାରିକା ଥିଲା । ୫୦) ଶିଶୁମାନେ ନିଜ ପରିଶ୍ରମ ଦ୍ୱାରା ଆପଣା ଆପଣା ଖାଦ୍ୟ ଓ ପରିଧେୟ ଉତ୍ପାଦନ କରିପାରିବେ । ୫୧) ଔଷଧ ପ୍ରୟୋଗରେ ତାହାଙ୍କର ପୀଡ଼ା ଦିନକୁଦିନ ହ୍ରାସ ହେଉଅଛି । ୫୨) ହଂସମାନଙ୍କୁ ଜଳରେ ପହଁରିବାର ଦେଖାଯାଏ । ୫୩) ବାଳକମାନଙ୍କୁ ହଂସ ଦେହର ଆବରଣ ଉପରେ ତାହା ବର୍ଣ୍ଣନା କରିବାକୁ କହନ୍ତୁ ।

## ୧୮--କ୍ଷୁଦ୍ର ପ୍ରବନ୍ଧ

### (୧) ଋତୁବିଷୟକ

କୌଣସି ଋତୁ ବିଷୟରେ ପ୍ରବନ୍ଧ ଲେଖିବାକୁ ହେଲେ ବର୍ଷର କେଉଁ କେଉଁ ମାସ ସେହି ଋତୁର ଅନ୍ତର୍ଗତ, ତାହାର ପ୍ରଧାନ ଲକ୍ଷଣ କଣ, ସେ ସମୟରେ ମନୁଷ୍ୟମାନଙ୍କର କେଉଁ କେଉଁ ବିଷୟରେ ସୁଖ ଓ କେଉଁ କେଉଁ ବିଷୟରେ କଷ୍ଟ ହୁଏ, ସେହି ସମୟ କି କି କାର୍ଯ୍ୟର ଉପଯୋଗୀ, ଏବଂ କେଉଁ ଋତୁ ତାହାର ପୂର୍ବବର୍ତ୍ତୀ ଓ କେଉଁ ଋତୁ ତାହାର ପରବର୍ତ୍ତୀ, ସାଧାରଣତଃ ଏଗୁଡ଼ିକ ବିବୃତ କରିବାକୁ ହୁଏ ।

**ଆଦର୍ଶ :**

### ବସନ୍ତ-ଋତୁ

ଶୀତଋତୁ ପରେ ବସନ୍ତ ଋତୁ ଉପସ୍ଥିତ ହୁଏ । ଶୀତକାଳରେ ଉତ୍ତର ଦିଗରୁ ଯେ ପବନ ବହୁଥିଲା, ତତ୍ପରବର୍ତ୍ତିରେ ଦକ୍ଷିଣ ଦିଗରୁ ପବନ ବହିବାର ଆରମ୍ଭ ହୁଏ । ଦକ୍ଷିଣ ଦିଗରେ ମଳୟ ନାମରେ ଗୋଟିଏ ପର୍ବତ ଅଛି ବୋଲି ଲୋକେ ଏହି ପବନକୁ ମଳୟ ପବନ କହନ୍ତି । ଏହି ପବନ ଅଳ୍ପ ପରିମାଣରେ ଶୀତଳ ଏବଂ ଏହାର ସ୍ପର୍ଶ ଆନନ୍ଦଜନକ ଅଟେ । ବସନ୍ତଋତୁରେ ତରୁଲତାମାନଙ୍କରେ ନୂତନ ପତ୍ର ଦେଖାଯାଏ । ଏହି ଋତୁରେ ଆମ୍ବଗଛମାନ ବଉଳେ, ଏବଂ ମଲ୍ଲୀ, ନଆଳି, ଗୋଲାପ, ଅଶୋକ, ପଳାଶ, ଛୁରିଅନା, ପଦ୍ମ, ନାଗେଶ୍ୱର, ପ୍ରଭୃତି ପୁଷ୍ପ ପ୍ରସ୍ଫୁଟିତ ହୁଏ । ଏ ସମୟରେ ମଧୁମକ୍ଷିକାମାନେ ବହୁପରିମାଣରେ ମଧୁ ସଞ୍ଚୟ କରନ୍ତି । ଶୀତ ବା ଗ୍ରୀଷ୍ମର ପ୍ରାଦୁର୍ଭାବ ନ ଥିବାରୁ ମନୁଷ୍ୟ ଓ ଅପରପ୍ରାଣୀମାନେ ଆନନ୍ଦରେ ବିହାର କରନ୍ତି । ବସନ୍ତ ଋତୁରେ ନାନାପ୍ରକାର ପକ୍ଷୀ ଉଲ୍ଲାସରେ ମଧୁର

ରାବ କରନ୍ତି । ଦେବଦାରୁ, ଆମ୍ର, ବଟ ପ୍ରଭୃତି ବୃକ୍ଷରୁ କୋକିଳର କୁହୁରବ ଉଚ୍ଛୁଳିପଡ଼େ । ବସନ୍ତ ପବନ ଅଧିକ ପରିମାଣରେ ଦେହରେ ଲାଗିଲେ ଜ୍ୱର, ଶ୍ଳେଷ୍ମା ଓ କଫର ପ୍ରକୋପ ଜନ୍ମେ । ଏହି ଋତୁ ଗ୍ରୀଷ୍ମ କାଳର ପୂର୍ବବର୍ତ୍ତୀ ଅଟେ ।

ଅନୁଶୀଳନୀ—ଉପର ଲିଖିତ ଆଦର୍ଶରେ ଗ୍ରୀଷ୍ମ, ବର୍ଷା, ଶରତ୍, ଶୀତ ଓ ହେମନ୍ତ ଋତୁ ବିଷୟରେ ଗୋଟିଏ ଗୋଟିଏ ପ୍ରବନ୍ଧ ଲେଖ ।

## (୨) କୃଷି-ବିଷୟକ

କୃଷିବିଷୟକୁ ଅବଲମ୍ବନ କରି ପ୍ରବନ୍ଧ ଲେଖିଲେ, ତାହା ବର୍ଷର କେଉଁ କେଉଁ ସମୟରେ ଓ କିପରି ମୃତ୍ତିକାରେ ହୁଏ, ସେହି କୃଷି ପାଇଁ ମୃତ୍ତିକାକୁ କିପରି ପ୍ରସ୍ତୁତ କରିବାକୁ ହୁଏ, କେଉଁ ସାର ତାହାର ଉପଯୋଗୀ, ବୀଜ ବା ବିହନ କିପରି ବୁଣାଯାଏ ବା ଲଗାଯାଏ, କେଉଁ କେଉଁ ଅବସ୍ଥାରେ କି ପରିମାଣରେ ଜଳ ଆବଶ୍ୟକ ଓ କି କି କାର୍ଯ୍ୟ କରିବାକୁ ହୁଏ, କିପରି ଅମଳ କରାଯାଏ ଏବଂ କୃଷି-ଲବ୍ଧ ପଦାର୍ଥ ଆମ୍ଭମାନଙ୍କର କି କି କାର୍ଯ୍ୟରେ ଲାଗେ, ଏହି ବିଷୟମାନ ସେ ପ୍ରବନ୍ଧରେ ସନ୍ନିବିଷ୍ଟ ହେବ ।

### ଆଦର୍ଶ :

### ଧାନ୍ୟ

ଚାଉଳ ଆମ୍ଭମାନଙ୍କର ପ୍ରଧାନ ଖାଦ୍ୟ । ଭାତ, କ୍ଷୀରି, ପିଠା, ଚୂଡ଼ା, ମୁଢ଼ି ପ୍ରଭୃତି ନାନା ଆକାରରେ ଚାଉଳ ଆମ୍ଭମାନଙ୍କର ଖାଦ୍ୟ । ଏହି ଚାଉଳ ଧାନ୍ୟରୁ ଉତ୍ପନ୍ନ ହୁଏ । ଏଥିପାଇଁ ଏ ଦେଶର କୃଷିମାନଙ୍କ ମଧ୍ୟରେ ଧାନ୍ୟ ସର୍ବଶ୍ରେଷ୍ଠ ।

ମାଘମାସରୁ ଜ୍ୟେଷ୍ଠମାସ ପର୍ଯ୍ୟନ୍ତ ବୃଷ୍ଟିର ସୁଯୋଗ ଦେଖି ଚାଷୀମାନେ ଜମି ଚଷନ୍ତି । ଅନ୍ତତଃ ତିନି ଓଡ଼ ଚାଷ ହେଲେ ଜମି ଏହି କୃଷିର ଉପଯୋଗୀ ହୁଏ । ପ୍ରଥମ ଥର କର୍ଷଣକୁ କଢ଼ାଣ, ଦ୍ୱିତୀୟଥର କର୍ଷଣକୁ ଦୋଓଡ଼ ଏବଂ ତୃତୀୟଥର କର୍ଷଣକୁ ତେଓଡ଼ ବା ମଡ଼ାଣ କହନ୍ତି । ଜ୍ୟେଷ୍ଠମାସ ମଧ୍ୟରେ ଧାନବୁଣା କାର୍ଯ୍ୟ ପ୍ରାୟ ଶେଷ ହୁଏ । ବୁଣିବା ପୂର୍ବରୁ ଚାଷୀମାନେ ପୀଡ଼ିଆ, ପୁରୁଣାପଙ୍କ ବା ଗୋବରଖତ ଲଗାନ୍ତି । ଯେଉଁମାନେ ବୁଣିବାର ଅବସର ପାଆନ୍ତି ନାହିଁ, ସେମାନେ ଆଷାଢ଼ ଓ ଶ୍ରାବଣ ମାସରେ ରୁଅନ୍ତି । ଧାନଗଛ କିଛି ବଢ଼ିଲେ ଏବଂ ପାଣି ଲଗାଇଲେ ଚାଷୀମାନେ ଜମିରେ ପୁନର୍ବାର ହଳ କରି ଗଛଗୁଡ଼ିକ ଉତ୍ତମରୂପେ

ଖେଳାନ୍ତି । ଏହାକୁ ବେଉସଣ ବା ବହୁଡ଼ା କହନ୍ତି । ଶ୍ରାବଣ ଶେଷରୁ ଆରମ୍ଭ କରି ଆଶ୍ୱିନ ପର୍ଯ୍ୟନ୍ତ କୃଷୀମାନଙ୍କର ବଡ଼ କାର୍ଯ୍ୟ ଲଗିଥାଏ । ଗର୍ଭଣା ସଂକ୍ରାନ୍ତିବେଳକୁ ଧାନ ବାହାରିବାର ଉପକ୍ରମ ହୁଏ । ଏ ସମୟରେ ଅଳ୍ପ ଅଳ୍ପ ବୃଷ୍ଟି ହେଲେ ଧାନର ବଡ଼ ଉପକାର ହୁଏ । ଆଶ୍ୱିନ ମାସରୁ ପୌଷ ମାସର ମଧ୍ୟଭାଗ ପର୍ଯ୍ୟନ୍ତ ଧାନ ପାଚିବା ଓ ଧାନ କଟାର ସମୟ ଅଟେ ।

କଟା ସରିଲେ କୃଷୀମାନେ କଳେଇ ବାନ୍ଧି ଧାନକୁ ଗଦାନ୍ତି ବା ପୁଞ୍ଜି ଦିଅନ୍ତି । ଏଥି ଉତ୍ତାରୁ କୃଷୀମାନେ ବେଙ୍ଗଲା ପକାଇ ବା ଅନ୍ୟ ପ୍ରକାରେ ଧାନ ଅମଳ କରନ୍ତି ଏବଂ ଅମାର ବା କୋଠିରେ, ଡୋଲିରେ, ମରାଇରେ ବା ଓଳିଆରେ ତାହା ସଞ୍ଚୟ କରନ୍ତି ।

ଧାନଗଛର ଓ ଧାନଶସ୍ୟର ପ୍ରତ୍ୟେକ ଅଂଶ ନାନା ପ୍ରୟୋଜନରେ ଲାଗେ । ଚାଉଳ ନାନାପ୍ରକାରେ ପ୍ରସ୍ତୁତ ହୋଇ ଆମ୍ଭମାନଙ୍କର ଉଦରସ୍ଥ ହେଉଅଛି । କୁଣ୍ଡା ଗୋରୁମାନଙ୍କ ପକ୍ଷରେ ପୁଷ୍ଟିକର ଅଟେ । ନଡ଼ା, କୁଟା ଓ ତୁଷ ମଧ୍ୟ ନାନା କାର୍ଯ୍ୟରେ ଲାଗେ ।

ଅନୁଶୀଳନୀ :—ଉପର ଲିଖିତ ଆଦର୍ଶରେ ଆଖୁ, ମୁଗ, ଖାର, ସୋରିଷ, ବିଲାତି ଆଳୁ, ନଳିତା, ଧୂଆଁପତ୍ର, ରାଶି ବା ଖସା, କପା, ଜଡ଼ା, କୋଳଥ, ମାଣ୍ଡିଆ ଓ ଗହମ ବିଷୟରେ ଗୋଟିଏ ଗୋଟିଏ ପ୍ରବନ୍ଧ ଲେଖ ।

## (୩) ପ୍ରାଣୀବିଷୟକ

କୌଣସି ପ୍ରାଣୀ ବିଷୟରେ ଲିଖିତ ପ୍ରବନ୍ଧରେ ତାହାର ଅବୟବ, ବାସସ୍ଥାନ, ସ୍ୱଭାବ, ଖାଦ୍ୟ ଏବଂ ମନୁଷ୍ୟ ଓ ଅପର ପ୍ରାଣୀ ସହିତ ତାହାର ସମ୍ବନ୍ଧର ବିଚାର କରାଯାଏ ।

### ଆଦର୍ଶ :

## ହସ୍ତୀ

ସ୍ଥଳଚର ପ୍ରାଣୀମାନଙ୍କମଧ୍ୟରେ ହସ୍ତୀ ବୃହତ୍ତମ ଅଟେ । ଏହାର ଚାରୋଟି ପାଦ, ଗୋଟିଏ ଲାଙ୍ଗୁଳ ଓ ଗୋଟିଏ ଶୁଣ୍ଢ ଅଛି । ମନୁଷ୍ୟମାନେ ହସ୍ତରେ ଯେଉଁ କାର୍ଯ୍ୟ କରନ୍ତି, ସେ ଶୁଣ୍ଢରେ ପ୍ରାୟ ସେହି ସେହି କାର୍ଯ୍ୟ କରେ ବୋଲି ଶୁଣ୍ଢକୁ ହସ୍ତ ବା କର ମଧ୍ୟ କହନ୍ତି । ଏଥିପାଇଁ ସେହି ପ୍ରାଣୀକୁ ହସ୍ତୀ ବା କରୀ କହନ୍ତି ।

ଦେହ ସହିତ ତୁଳନା କଲେ ହସ୍ତୀର ଲାଙ୍ଗୁଳଟି ଓ ଚକ୍ଷୁଦ୍ୱୟଟି ଅତି କ୍ଷୁଦ୍ର ଦିଶେ । ଦେହରେ ଲୋମଗୁଡ଼ିକ କ୍ଷୁଦ୍ର ଓ ବିରଳ ଅଟେ । ହସ୍ତୀର ମୁଖ ମଧ୍ୟରେ

ଅନେକଗୁଡ଼ିଏ ଦନ୍ତ ଥାଏ । ପୁରୁଷ ହସ୍ତୀର ଶୁଣ୍ଢର ଦୁଇପାଖରେ କଳଦାନ୍ତ ଦଉଟି ବଢ଼ିଲେ ଅତିଶୟ ଦୀର୍ଘ ହୁଏ । ଚକ୍ଷୁ ଓ ମୁଣ୍ଡ ସହିତ ତୁଳନାରେ କର୍ଣ୍ଣଦ୍ୱଉଟି ବଡ଼ ଅଟେ । ଶୁଣ୍ଢ ଦ୍ୱାରା ହସ୍ତୀ ଅନେକ କାର୍ଯ୍ୟ କରେ । କ୍ଷୁଦ୍ର ସୂଚିଟିଏ ତଳେ ପଡ଼ିଥିଲେ, ସେ ଶୁଣ୍ଢ ଦ୍ୱାରା ତାହା ଉଠାଇପାରେ । ଶୁଣ୍ଢଦ୍ୱାରା ଖାଦ୍ୟଦ୍ରବ୍ୟ ନେଇ ସେ ମୁଖରେ ପୂରାଏ ଏବଂ ବଟ, ଅଶ୍ୱତ୍ଥ ପ୍ରଭୃତି ବୃକ୍ଷର ବଡ଼ ବଡ଼ ଶାଖା ମଧ୍ୟ ଅନାୟାସରେ ମୋଡ଼ି ଭାଙ୍ଗି ପକାଏ । ହସ୍ତୀର ଦେହ ଈଷତ୍ କୃଷ୍ଣ ବର୍ଣ୍ଣ । ବ୍ରହ୍ମ-ଦେଶରେ ଓ ମୟୂରଭଞ୍ଜରେ ଶ୍ୱେତହସ୍ତୀ ମଧ୍ୟ ଦେଖାଯାଏ । ଶ୍ୱେତ ହସ୍ତୀର ଦେହର ବର୍ଣ୍ଣ ପ୍ରାୟ ପାଉଁଶିଆ ।

ହସ୍ତୀ ବନ୍ୟ ଜୀବ । ପର୍ବତର ନିକଟବର୍ତ୍ତୀ ଅରଣ୍ୟରେ ହସ୍ତୀମାନେ ବାସ ଓ ବିଚରଣ କରନ୍ତି । ଏମାନେ ବଟ, ଅଶ୍ୱତ୍ଥ ପ୍ରଭୃତି ଗଛର ଡାଳ, ଧାନ, ନଡ଼ିଆ, କଇଥ ପ୍ରଭୃତି ଫଳ ଏବଂ କଆକନ୍ଦା ଖାନ୍ତି । ଏଡ଼େ ବଡ଼ ପ୍ରାଣୀ ଧରିବା ପାଇଁ ମନୁଷ୍ୟକୁ ବିଶେଷ କୌଶଳ ଓ ଆୟୋଜନ କରିବାକୁ ହୁଏ ।

ହାତୀ ପୋଷ ମାନେ । ପୋଷା ହାତୀ ଅନେକ କାର୍ଯ୍ୟରେ ଲାଗେ । ପର୍ବତ ଓ ଅରଣ୍ୟରେ ଭ୍ରମଣ କରିବାପାଇଁ ହସ୍ତି ତୁଲ୍ୟ ବାହନ ଆଉ ନାହିଁ । ଏ ବଡ଼ ସାବଧାନ ଜୀବ । ଅନ୍ୟ ବାହନରେ ଆରୋହୀର ଯେଉଁ ଆଶଙ୍କା ଥାଏ, ହସ୍ତିପୃଷ୍ଠରେ ବସିଲେ ସେ ଆଶଙ୍କା ନ ଥାଏ । ହସ୍ତୀର ଦନ୍ତ ଅତି ସୁନ୍ଦର ଓ ମୂଲ୍ୟବାନ୍ ବସ୍ତୁ ଅଟେ । ଏଥିରେ ପଲଙ୍କ, ବାକ୍ସ, ନାନା ପ୍ରକାର ଅଳଙ୍କାର ଓ ଲେଖନୀ ନିର୍ମିତ ହୁଏ । ହାତୀର ହାଡ଼ରେ ମଧ୍ୟ ନାନାପ୍ରକାର ପଦାର୍ଥ ପ୍ରସ୍ତୁତ କରାଯାଏ ।

ଅନୁଶୀଳନୀ :—ଉପରଲିଖିତ ଆଦର୍ଶରେ ଗୋରୁ, ଘୋଡ଼ା, କୁକୁର, ମହିଷ, ମେଣ୍ଢା, ଓଟ, ମୟୂର, ସାରି, ହଂସ ଓ ମହୁମାଛି ବିଷୟରେ ଗୋଟିଏ ଗୋଟିଏ ପ୍ରବନ୍ଧ ଲେଖ ।

## (୪) ଖନିଜ ବିଷୟକ

କେଉଁଠାରେ ଓ କି ଅବସ୍ଥାରେ ମିଳେ, ବର୍ଣ୍ଣ ଓ ଅନ୍ୟ ଲକ୍ଷଣ, ଉପଯୋଗିତା—ଏହିଗୁଡ଼ିକ ପ୍ରବନ୍ଧରେ ଆଲୋଚ୍ୟ ।

**ଆଦର୍ଶ :**

## ସ୍ୱର୍ଣ୍ଣ

ହୀରା, ମାଣିକ୍ୟ ପ୍ରଭୃତି ମଣିଗୁଡ଼ିକ ଛାଡ଼ି ଦେଲେ ଯେତେଗୁଡ଼ିଏ ଖଣିଜ ପଦାର୍ଥ ଅଛି ସେମାନଙ୍କ ମଧ୍ୟରେ ସ୍ୱର୍ଣ୍ଣ ସର୍ବ ଶ୍ରେଷ୍ଠ । ଉତ୍ତର ଆମେରିକାର ଅନ୍ତଃ-

ପାଶ୍ଚା କାଲଫର୍ଣ୍ଣିଆ ଉପଦ୍ୱୀପ, ଆଫ୍ରିକାର ଟ୍ରାନ୍ସଭାଲ୍ ରାଜ୍ୟ ଏବଂ ଅଷ୍ଟ୍ରେଲିଆ ମହାଦେଶର ଖଣିମାନଙ୍କରେ ଏହା ପ୍ରଚୁର ପରିମାଣରେ ମିଳେ । ଭାରତବର୍ଷର ମହୀଶୂର ରାଜ୍ୟରେ ଯେଉଁ ଖଣିମାନ ଆବିଷ୍କୃତ ହୋଇଅଛି ତହିଁରୁ କ୍ରମଶଃ ଅଧିକ ପରିମାଣରେ ସୁବର୍ଣ୍ଣ ମିଳୁଅଛି ।

ବର୍ଣ୍ଣ, ଗୁଣ ଓ ମୂଲ୍ୟରେ ଅନ୍ୟ କୌଣସି ଧାତୁ ଅପେକ୍ଷା ସୁବର୍ଣ୍ଣ ଉତ୍କୃଷ୍ଟ ଅଟେ । ଏଥିରେ ମୋହର, ଗିନି ପ୍ରଭୃତି ମୁଦ୍ରା ଓ ନାନାପ୍ରକାର ଅଳଙ୍କାର ନିର୍ମିତ ହୁଏ । ନରପତି ଓ ଧନୀମାନେ କେତେକ ଯାନ-ଭୋଜନ-ପାତ୍ର ଏଥିରେ ନିର୍ମାଣ କରାଇଥାନ୍ତି । ସୁନାରେ ସୂତାପରି ଅତି ସୂକ୍ଷ୍ମ ତାର ପ୍ରସ୍ତୁତ ହୁଏ । ଏହାକୁ ସୁନାର ଜରି କହନ୍ତି । ପାଟସୂତା ଓ ସୁନାଜରିରେ ଯେଉଁ ବସ୍ତ୍ର ବୁଣାଯାଏ ତାହା ଯେପରି ସୁନ୍ଦର, ସେହିପରି ମୂଲ୍ୟବାନ୍ । ବନାରସ ଏହି ବସ୍ତ୍ର ନିମନ୍ତେ ପ୍ରସିଦ୍ଧ । ସ୍ୱର୍ଣ୍ଣନିର୍ମିତ ଅଳଙ୍କାରରେ ହୀରା ମାଣିକ୍ୟ ପ୍ରଭୃତି ରତ୍ନ ଖଚିତ ହେଲେ ତାହା ଅତିଶୟ ମନୋହର ଦିଶେ । ଭାରତବର୍ଷରେ ଶାସ୍ତ୍ରୋକ୍ତ ପ୍ରଣାଳୀରେ ସୁନାର ଭସ୍ମ କରି ନାନା ଔଷଧରେ ତାହା ବ୍ୟବହାର କରନ୍ତି । ଅତି ପ୍ରାଚୀନ କାଳରୁ ସ୍ୱର୍ଣ୍ଣ ଚୀନ ଦେଶରୁ ଏ ଦେଶକୁ ଆସୁଅଛି । ବର୍ତ୍ତମାନ ସୁଦ୍ଧା ଚୀନ ଦେଶର ପତ୍ର ସୁନା ସର୍ବୋତ୍କୃଷ୍ଟ ବିବେଚିତ ହୁଏ ।

ଅନୁଶୀଳନ :—ଉପର ଲିଖିତ ଆଦର୍ଶରେ ଲୌହ, ରୌପ୍ୟ, ତାମ୍ର, ପିତ୍ତଳ, ପଥରକୋଇଲା, କେରୋସିନ୍ ଓ ରଙ୍ଗ ବିଷୟରେ ଗୋଟିଏ ଗୋଟିଏ ପ୍ରବନ୍ଧ ଲେଖ ।

## (୪) ଭୌଗଳିକ ବିଷୟ

### (୧) ମହାନଦୀ

( ଉତ୍ପତ୍ତି, ଗତି, ପତନ, ପ୍ରଧାନ ପ୍ରଧାନ ଉପନଦୀ ଓ ଶାଖାନଦୀ, କୂଳସ୍ଥ ପ୍ରଧାନ ନଗର ଓ ବାଣିଜ୍ୟ ସ୍ଥଳୀ, କୃଷି ଓ ବାଣିଜ୍ୟରେ ଉପଯୋଗିତା, ଦୃଶ୍ୟାବଳୀ । )

ଭାରତବର୍ଷର ମଧ୍ୟସ୍ଥଳରେ ପୂର୍ବ-ପଶ୍ଚିମରେ ବିସ୍ତୃତ ବିନ୍ଧ୍ୟ ନାମରେ ଗୋଟିଏ ପର୍ବତ ଅଛି । ସେହି ପର୍ବତର ପୂର୍ବ ଦିଗରେ ଅମରକଣ୍ଟକ ନାମରେ ଯେଉଁ ସୁବିସ୍ତୀର୍ଣ୍ଣ ଉପତ୍ୟକା ଅଛି, ସେଥିରୁ ଉତ୍ପନ୍ନ ହୋଇ ମହାନଦୀ ମଧ୍ୟପ୍ରଦେଶର ଛତିଶଗଡ଼ ବିଭାଗ ଏବଂ ଓଡ଼ିଶାର ସମ୍ବଲପୁର ଜିଲ୍ଲା, ସୋନପୁର, ବୌଦ୍ଧ, ଆଠମଲ୍ଲିକ, ଦଶପଲ୍ଲା, ନରସିଂହପୁର, ଖଣ୍ଡପଡ଼ା, ବଡ଼ାମ୍ବା, ତିଗିରିଆ ଓ ଆଠଗଡ଼ କରଦରାଜ୍ୟ * ଏବଂ କଟକ ଜିଲ୍ଲା ଦେଇ ବଗ୍ଧଦରଠାରେ ସମୁଦ୍ରରେ ପତିତ

* ୧୯୪୮ ମସିହା ପର୍ଯ୍ୟନ୍ତ ଏଗୁଡ଼ିକ ଗଡ଼ଜାତ ଥିଲା—ସମ୍ପାଦକ ।

ହୋଇଅଛୁ । ଅନେକଗୁଡ଼ିଏ ଉପନଦୀର ଜଳ ଏହାର ପୁଷ୍ଟି ସାଧନ କରୁଅଛୁ । ସେମାନଙ୍କ ମଧ୍ୟରେ ତେଲନଦୀ ସର୍ବପ୍ରଧାନ । ତେଲନଦୀ ଦକ୍ଷିଣରୁ ଆସି ସୋନପୁର ରାଜ୍ୟର ପୂର୍ବରେ ମହାନଦୀ ସଙ୍ଗେ ମିଳିତ ହୋଇଅଛୁ । କଟକ ନଗରରେ ପ୍ରାୟ ତିନ କ୍ରୋଶ ପଶ୍ଚିମରେ ନରାଜ ନାମରେ ଗୋଟିଏ ସ୍ଥାନ ଅଛୁ । ସେହିଠାରେ ମହାନଦୀରୁ ଗୋଟିଏ ଶାଖା ନିର୍ଗତ ହୋଇ ପୂର୍ବଦିଗକୁ ପ୍ରବାହିତ ହେଉଅଛୁ । ତାହାର ନାମ କାଠଯୋଡ଼ି । ଏହି ନଦୀ କଟକ ନଗରର ଦକ୍ଷିଣ ସୀମା ଓ ମହାନଦୀ ଉତ୍ତର ସୀମା ଅଟେ । ମହାନଦୀ ଓ କାଠଯୋଡ଼ିର ଅନେକ ଶାଖା ଅଛୁ । ସେମାନଙ୍କ ମଧ୍ୟରେ ବିରୂପା, ଧାଇକା, ଚନ୍ଦ୍ରୋପଳା, ପିଢୁଆ, କୁଆଖିଆ ପ୍ରଧାନ ଅଟେ । ପିଢୁଆ ନଦୀ ପଶ୍ଚାତ୍ ଦେବୀନାମ ଧାରଣ କରିଅଛୁ । ପୁରୀ ଜିଲ୍ଲାରେ ପ୍ରବେଶ ପରେ କୁଆଖିଆରୁ କୁଶଭଦ୍ରା ଓ ଭାର୍ଗବୀ ନାମରେ ଯୋଡ଼ିଏ ଶାଖା ସେଥିରୁ ବାହାରି ଅଛୁ । ଏ ଦିଓଟି ପୁରୀ ଜିଲ୍ଲାର ପ୍ରଧାନ ନଦୀ ଅଟେ ।

ମହାନଦୀ କୂଳରେ ସମ୍ବଲପୁର, ସୋନପୁର, ବୌଦ, କଟକ ଆଦି ପ୍ରାଚୀନ ନଗର ଅବସ୍ଥିତ । ଏହାର କୂଳବର୍ତ୍ତୀ ପଦ୍ମାବତୀ, କଣ୍ଟିଲୋ, ବୈଦ୍ୟେଶ୍ୱର ଓ ଚର୍ଚ୍ଚିକା ଶିଳ୍ପ ଓ ବାଣିଜ୍ୟ ନିମନ୍ତେ ପ୍ରସିଦ୍ଧ । ଏହାର କୂଳରେ ଓ ଗର୍ଭରେ ଅନେକଗୁଡ଼ିଏ ରମଣୀୟ ସ୍ଥାନ ଅଛୁ । ବୌଦରାଜ୍ୟରୁ ଦଶପଲ୍ଲା ରାଜ୍ୟର ବଡ଼ମୂଳ ଘାଟି ପର୍ଯ୍ୟନ୍ତ ସପ୍ତ କ୍ରୋଶ-ବ୍ୟାପୀ ମହାନଦୀର ଯେଉଁ ଗଣ୍ଡ ଅଛୁ, ତାହା ଓଡ଼ିଶାରେ ଗୋଟିଏ ପ୍ରଧାନ ଦୃଶ୍ୟ । ସମ୍ବଲପୁର ନିକଟବର୍ତ୍ତୀ ହୀରାକୁଦ, ଏବଂ କଟକ ଓ ଆଠଗଡ଼ର ମଧ୍ୟବର୍ତ୍ତୀ ଧବଳେଶ୍ୱର ଏ ଯୋଡ଼ିକ ମହାନଦୀ ଗର୍ଭରେ ରମଣୀୟ ଦ୍ୱୀପ । କଟକ ନଗରର ଐଶାନ୍ୟ କୋଣରେ ଜୋବ୍ରା ନିକଟରେ ଯେଉଁ ଆନିକଟ ବା ପଥର ବନ୍ଧ ଅଛୁ ଏବଂ ତାହା ନିକଟରେ ନଦୀ ଉପରେ ଯେଉଁ ରେଲ-ପୋଲ ଅଛୁ, ତାହା ଭାରତବର୍ଷରେ ଗୋଟିଏ ଗୋଟିଏ ଦୃଶ୍ୟ । ଏଠାରେ ମହାନଦୀର ବିସ୍ତାର ଏକ ମାଇଲରୁ ଊଣା ନୁହେଁ । ଏହି ନଦୀର ଶାଖା ଓ ଉପଶାଖାମାନଙ୍କରେ କଟକ ଜିଲ୍ଲାର ପୂର୍ବାଂଶ ଜାଲଛନ୍ଦା ପରି ହୋଇଅଛୁ ।

ମହାନଦୀର କୂଳଭୂମି ଏବଂ ତାହାର ଗର୍ଭସ୍ଥ ଅନେକଗୁଡ଼ିଏ ଦ୍ୱୀପ ଅତି ଉର୍ବର । ଏହାର ଜଳଦ୍ୱାରା ଯେଉଁ କୃତ୍ରିମ ନାଳଗୁଡ଼ିକ (କେନାଲ ଓ କରନାଲ) ପୁଷ୍ଟ, ସେମାନଙ୍କ ଦ୍ୱାରା ବହୁ ପରିମାଣରେ ଭୂମି ଉର୍ବରା ହୋଇଅଛୁ । ଏହି ଜଳ-ସେଚିତ ଉର୍ବର ଭୂମିରେ ଧାନ, କୋଲଥ, ମୁଗ, ସୋରିଷ ପ୍ରଭୃତି ନାନା ପ୍ରକାର ଶସ୍ୟ ଏବଂ ଅନେକ ପ୍ରକାର ପରିବା ପ୍ରଚୁର ପରିମାଣରେ ଉତ୍ପନ୍ନ ହୁଏ । ମହାନଦୀ, ତାହାର ଶାଖାପ୍ରଶାଖା ଏବଂ ପୂର୍ବୋକ୍ତ ନାଳମାନଙ୍କରେ ନାନା ସ୍ଥାନରୁ ସ୍ଥାନାନ୍ତରକୁ ବାଣିଜ୍ୟ-ପଦାର୍ଥମାନ ପ୍ରେରିତ ହୁଏ । ମହାନଦୀର ମୁହାଣରେ ଅବସ୍ଥିତ ବନ୍ଦରଘର

ଓଡ଼ିଶାର ଗୋଟିଏ ପ୍ରଧାନ ବନ୍ଦର । ଏଠାରୁ ଓ ଏଠାକୁ ସମୁଦ୍ରପଥରେ ବଡ଼ ବଡ଼ ବାଣିଜ୍ୟ ଜାହାଜମାନ ଯାତାୟାତ କରେ ।

[ ତାହାର ଅପର ପାର୍ଶ୍ୱରେ ଏବେ ପାରାଦ୍ୱୀପ ଗୋଟିଏ ପ୍ରଧାନ ବନ୍ଦର ଓ ଆଧୁନିକ ସହର ଗଠିତ ହୋଇଅଛି । —ସଂପାଦକ । ]

## (୨) ଚିଲିକା ହ୍ରଦ

(ଭୌଗଳିକ ଅବସ୍ଥାନ, ବିସ୍ତୃତି, ଶୋଭା, କୃଷି-ବାଣିଜ୍ୟ ଓ ଅନ୍ୟ ବିଷୟରେ ଏହାର ଉପଯୋଗିତା)

ପୁରୀ ଜିଲ୍ଲାର ଦକ୍ଷିଣାଂଶରେ ଚିଲିକା ନାମରେ ଗୋଟିଏ ହ୍ରଦ ଅଛି । ଏହାର ଦୈର୍ଘ୍ୟ ପ୍ରାୟ ବାଇଶ କୋଶ, ପ୍ରସ୍ଥ ପ୍ରାୟ ଦଶ କୋଶ । ସମୁଦ୍ର ସହିତ ଏହାର ସଂଯୋଗ ଥିବାରୁ ଏହାର ଜଳ ଲବଣାକ୍ତ ହୋଇଅଛି । ଏହି ହ୍ରଦ ଓ ବଙ୍ଗୋପସାଗର ମଧ୍ୟରେ ଉଚ୍ଚ ସ୍ୱାଭାବିକ ବାଲି ବନ୍ଧଟିଏ ମାତ୍ର ବ୍ୟବଧାନ ଅଛି । ଉତ୍ତରରୁ ଦୟା, ଭାର୍ଗବୀ ଏବଂ ପଶ୍ଚିମରୁ ଶାଳିଆ ନଦୀ ଆସି ଏଥିରେ ପତିତ ହୋଇଅଛି । ଏହି ହ୍ରଦ ମଧ୍ୟରେ ସାତପଡ଼ା, ପାରିକୁଦ, ନଳବନ ପ୍ରଭୃତି କେତେଗୁଡ଼ିଏ ଦ୍ୱୀପ ଏବଂ କାଳିଜାଈ ପାହାଡ଼ ଓ ଅନେକଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ଶୈଳ ଅଛି । ନଳବନରେ ମନୁଷ୍ୟର ବାସ ନାହିଁ । ଅନ୍ୟ ଦ୍ୱୀପମାନଙ୍କରେ କ୍ଷୁଦ୍ର କ୍ଷୁଦ୍ର ଗ୍ରାମ ଅଛି । ସାତପଡ଼ା ଦ୍ୱୀପଟି ସୁନ୍ଦର ଅଟେ । ପାରିକୁଦ ଦ୍ୱୀପ ମଧ୍ୟରେ ପାରିକୁଦ ରାଜାଙ୍କର ରାଜଧାନୀ ଅଛି ।

ଚିଲିକା ହ୍ରଦ ଏବଂ ତାହାର କୂଳବର୍ତ୍ତୀ ସ୍ଥାନଗୁଡ଼ିକ ଅତି ରମଣୀୟ ଅଟେ । ଦକ୍ଷିଣ ଓ ପୂର୍ବ ଦିଗରେ ଏବଂ ଐଶାନ୍ୟ କୋଣରେ ବିସ୍ତୀର୍ଣ୍ଣ ବାଲୁକାରାଶି ବିଦ୍ୟମାନ । ଏଥିରେ ଆଦୌ ମାଟି ନାହିଁ । ଉତ୍ତର ଓ ପଶ୍ଚିମ ଦିଗରେ ନାନା ପ୍ରକାର ତରୁଲତା, ଶସ୍ୟ-କ୍ଷେତ୍ର, ଜନପଦ ଏବଂ କ୍ଷୁଦ୍ର କ୍ଷୁଦ୍ର ପର୍ବତ ଏହାର ଶୋଭା ବୃଦ୍ଧି କରୁଅଛି । ପଶ୍ଚିମ ପାର୍ଶ୍ୱରେ ଗଞ୍ଜାମ ସଡ଼କ ଏହାର କୂଳେ କୂଳେ ଯାଇଅଛି । କଟକଠାରୁ ଯେଉଁ ରେଲପଥ ଦକ୍ଷିଣରେ ମାନ୍ଦ୍ରାଜକୁ ଯାଇଅଛି ତାହାର ଭୁବନେଶ୍ୱର ଓ ରମ୍ଭା ଷ୍ଟେସନ ମଧ୍ୟରେ ଆରୋହୀମାନେ ରେଲଗାଡ଼ିରେ ଥାଇ ଚିଲିକା ଦର୍ଶନ କରିପାରିବେ । ଚିଲିକା ହ୍ରଦର ଯେଉଁ ଅଂଶ ଗଞ୍ଜାମ ଜିଲ୍ଲାର ଅନ୍ତର୍ଗତ, ସେଥିରେ ରମ୍ଭା ନାମକ ନାସୀ ବା ଅନ୍ତରୀପ ଅତି ରମଣୀୟ ସ୍ଥାନ । ଖଲିକୋଟ ଷ୍ଟେସନର ନିକଟରେ ରେଲପଥ ଯେଉଁଠାରେ ଖଲିକୋଟ ପାହାଡ଼ର ପାଦଦେଶରେ ଚିଲିକାକୁ ସ୍ପର୍ଶ କରି ଯାଇଅଛି, ତାହା ଓ ତାହାର ଅତି ନିକଟବର୍ତ୍ତୀ ହରିଡ଼ାମୂଳ ଘାଟି, ବଡ଼କୂଳ ସମୀପବର୍ତ୍ତୀ ଜଟିଆ-ନାସୀ, ଇଣ୍ଟନପୁର ପୋଲ ଏବଂ ବାଲୁଗାଁର ଉତ୍ତରବର୍ତ୍ତୀ

ମାମୁଁ-ଭଣଜା ପାହାଡ଼ ଦେଖିଲେ ବହୁକାଳ ପର୍ଯ୍ୟନ୍ତ ଭୁଲି ହୁଏ ନାହିଁ । ମାମୁଁ-ଭଣଜା ପାହାଡ଼ ଯୋଡ଼ିକ ଅତଶୟ କ୍ଷୁଦ୍ର । ଏମାନଙ୍କର ଉପରକୁ ଯାଇ ଗୃହିଁଲେ ଚିଲିକାର ଯେଉଁ ଦୃଶ୍ୟ ଦେଖାଯାଏ, ତାହା ସ୍ପଷ୍ଟ ଓ ମନୋହର ଅଟେ । ଚିଲିକାର କୂଳରେ ଓ ନିକଟରେ ଇନ୍ଦ୍ରନପୁର, ବାଲୁଗାଁ, ବାଣପୁର ହନୁଆଳ, ଆଲଇଡ଼ାହ, ପାଇକକୋପଡ଼ାହ, ବଉଲାବନ୍ଧ, ଜଗପଡ଼ା, ଟାଙ୍ଗି, ଚଣ୍ଡେଶ୍ୱର, ଭୁଷଣ୍ଡପୁର ପ୍ରଭୃତି ସୁନ୍ଦର ଗ୍ରାମଗୁଡ଼ିକ ଅଛି ।

ଚିଲିକା ଜଳରେ ନାନା ଜାତୀୟ ଅସଂଖ୍ୟ ଜୀବର ବାସ । ଏଥିରେ ଭେକଟା, ଇଲିଶି, ଖଙ୍ଗା, ତାହାଙ୍ଗିଶି, ଚଙ୍ଗୁଡ଼ି ପ୍ରଭୃତି ନାନାପ୍ରକାର ମାଛ ଏବଂ ବଡ଼ ବଡ଼ କଙ୍କଡ଼ା ଯେତେ ମିଳେ, ଓଡ଼ିଶାର ଅନ୍ୟ କୌଣସି ସ୍ଥାନରେ ସେତେ ମିଳେ ନାହିଁ । ଚିଲିକାରେ ଭୟଙ୍କର ମଗର, ଘାଙ୍କୁଚ, ଶିଶୁମାର ମଧ୍ୟ ଅନେକ ଅଛନ୍ତି । ଏହି ହ୍ରଦରେ ରାବଣେଶ୍ୱର ଛତା ନାମରେ ଅସ୍ଥିହୀନ ଏକପ୍ରକାର ଜଳଚର ଜୀବ ଲକ୍ଷ ଲକ୍ଷ ବାସ କରନ୍ତି । ଏମାନଙ୍କର ଦେହ ଅତଶୟ କୋମଳ । ଜଳରୁ ଉଠାଇ ଆଣି ସ୍ଥଳରେ ଛାଡ଼ିଲେ ଏମାନେ ସେହି ସ୍ଥାନରୁ ଆଦୌ ଯାଇ ପାରନ୍ତି ନାହିଁ । ସ୍ଥଳରେ ପଡ଼ିଲେ ଏମାନଙ୍କ ଦେହରୁ ଜଳଗୁଡ଼ାଏ ବାହାର ଯାଏ । କେତେକ ଘଣ୍ଟାପରେ ଦେଖିବ, ରାବଣେଶ୍ୱରଛତାର ଅସ୍ତିତ୍ୱ ନାହିଁ । ଶରତ ଓ ଶୀତକାଳରେ ଚିଲିକା ନାନାଜାତି ଅସଂଖ୍ୟ ପକ୍ଷୀରେ ପୂର୍ଣ୍ଣ ହୁଏ । ଚିଲିକାର ମାଛ ଓ ପୋକ ଏମାନଙ୍କୁ ଆକର୍ଷଣ କରି ଆଣେନ୍ତି । ଚିଲିକା କୂଳରେ ଯେତେ ଚକ୍ରବାକ ପକ୍ଷୀ ଦେଖାଯାନ୍ତି ଅନ୍ୟତ୍ର ସେତେ ଦେଖା ଯାନ୍ତି ନାହିଁ । ରେଲପଥର ସୃଷ୍ଟିର ପୂର୍ବେ ଲୋକେ ପୁରୀ ଓ ଗଞ୍ଜାମ ଜିଲ୍ଲା ମଧ୍ୟରେ ଚିଲିକାବାଟେ ଯାତାୟାତ କରୁଥିଲେ । କାର୍ତ୍ତିକ ପକ୍ଷକରୁ ଆରମ୍ଭ କରି ବସନ୍ତ କାଳ ପର୍ଯ୍ୟନ୍ତ ଯାତ୍ରୀ ଓ ବାଣିଜ୍ୟ-ଦ୍ରବ୍ୟରେ ପରିପୂର୍ଣ୍ଣ ବହୁସଂଖ୍ୟକ ନୌକା ଚିଲିକାରେ ଦୃଷ୍ଟିଗୋଚର ହେଉଥିଲା । ଅଦ୍ୟାପି ଚିଲିକା କୂଳବର୍ତ୍ତୀ ପ୍ରତି ଗ୍ରାମରେ ନୌକା ଦେଖାଯାଏ । ଗୋଧୂଳି ସମୟରେ ଡଲେଇ ଲଗାଇ ପୂର୍ବାଞ୍ଚଳରୁ ନୌକାଗୁଡ଼ିକ ଯେତେବେଳେ ଗୋଟିକ ପଛରେ ଗୋଟିଏ ପଶ୍ଚିମ କୂଳକୁ ଆସୁଥାଏ, ମାମୁଁ ଭଣଜା ପାହାଡ଼ ବା ସେହିପରି ଉଚ୍ଚ ସ୍ଥାନରୁ ଗୃହିଁଲେ ତାହାର ଶୋଭା ସମ୍ୟକ୍ ଉପଲବ୍ଧ ହୁଏ ।

ଚିଲିକା ଓ ତାହାର କୂଳ ଶୋଭାରେ ପୂର୍ଣ୍ଣ । ମାତ୍ର ପ୍ରବଳ ପବନରେ ଏହାର ଢେଉମାନ ଭୀଷଣ ଆକାର ଧାରଣ କରେ । ଯେଉଁମାନେ ନୌକାରେ ଆରୋହଣ କରି ଯାତାୟାତ କରନ୍ତି, ଏପରି ଅବସ୍ଥାରେ ପଡ଼ିଲେ, ସେମାନେ ପ୍ରାଣର ଆଶା ପରିତ୍ୟାଗ କରନ୍ତି ।

ପୂର୍ବକାଳରେ ସମୁଦ୍ର ଓ ଚିଲିକା ମଧ୍ୟରେ ମୁହାଣ ବାଟେ ବଡ଼ ଜାହାଜମାନ ଯାତାୟାତ କରୁଥିଲା । ସେତେବେଳେ ଚିଲିକା କୂଳବର୍ତ୍ତୀ ସ୍ଥାନ-

ଗୁଡ଼ିକ ଭାରତବର୍ଷର ପ୍ରସିଦ୍ଧ ବନ୍ଦରମାନଙ୍କ ମଧ୍ୟରେ ପରିଗଣିତ ହେଉଥିଲା । ଓଡ଼ିଆ ଜାହାଜ ପଣ୍ୟଦ୍ରବ୍ୟ ଘେନି ବାଲି ଓ ଯବ ଦ୍ୱୀପକୁ ଯାଉଥିଲା । ବର୍ତ୍ତମାନ କୂଳବର୍ତ୍ତୀ ସ୍ଥାନମାନଙ୍କ ମଧ୍ୟରେ ଅଳ୍ପ ପରିମାଣରେ ବାଣିଜ୍ୟ ଚଳୁଅଛି । ରେଳପଥ ନିର୍ମାଣ ପୂର୍ବେ ବାଣିଜ୍ୟର ପରିମାଣ ଜଳପଥ ଅଧିକରେ ଥିଲା । ସାତପଡ଼ା, ପାରିକୁଦ ପ୍ରଭୃତି ସ୍ଥାନରେ ଲୁଣ ପ୍ରଚୁର ପରିମାଣରେ ପ୍ରସ୍ତୁତ ହେଉଥିଲା । ଏହି ଲବଣ ଚିଲିକା ବାଣିଜ୍ୟର ଗୋଟିଏ ପ୍ରଧାନ ଅଙ୍ଗ ଥିଲା ।

[ଚିଲିକାରେ ଏବେ ଭାରତ ସରକାର ନୌବାହିନୀର ଟ୍ରେନିଂକେନ୍ଦ୍ର କରିଛନ୍ତି । ଆଧୁନିକ ପଦ୍ଧତିରେ ମାଛ ଓ କଙ୍କଡ଼ା ଧରାଯାଉଛି । ]—ସମ୍ପାଦକ

## ୩—ଖଣ୍ଡଗିରି

### (ଭୌଗଳିକ ଅବସ୍ଥାନ, ଶୋଭା, ପ୍ରାଚୀନ କୀର୍ତ୍ତି)

ଓଡ଼ିଶାରେ ଭୁବନେଶ୍ୱର ଗୋଟିଏ ଅତି ପ୍ରାଚୀନ ସ୍ଥାନ ଓ ହିନ୍ଦୁମାନଙ୍କର ତୀର୍ଥ ଅଟେ । ଭୁବନେଶ୍ୱରଠାରୁ ଦୁଇକୋଶ ପଶ୍ଚିମରେ ପରସ୍ପରର ଅତି ନିକଟବର୍ତ୍ତୀ ଯୋଡ଼ିଏ କ୍ଷୁଦ୍ର ପାହାଡ଼ ଅଛି । ତନ୍ମଧ୍ୟରୁ ଗୋଟିକର ନାମ ଖଣ୍ଡଗିରି ଓ ଅପରଟିର ନାମ ଉଦୟଗିରି । କାଠଯୋଡ଼ି ନଦୀର ଦକ୍ଷିଣ କୂଳରୁ ଯେଉଁ ସଡ଼କ ଗଞ୍ଜାମ ଜିଲ୍ଲାକୁ ଯାଇଅଛି, ତାହାର ଧାରରେ ଚନ୍ଦକା ନାମରେ ଗୋଟିଏ କ୍ଷୁଦ୍ର ଗ୍ରାମ ଅଛି । ଭୁବନେଶ୍ୱର ଓ ଚନ୍ଦକା ମଧ୍ୟରେ ଯେଉଁ ସଡ଼କ ବିଦ୍ୟମାନ, ତାହା ଖଣ୍ଡଗିରି ଓ ଉଦୟଗିରିକୁ ଦୁଇପାଖରେ ରଖି ମଧ୍ୟରେ ଯାଇଅଛି । ଖଣ୍ଡଗିରିର ପାଦଦେଶରେ ଏହି ସଡ଼କରୁ ଗୋଟିଏ ଶାଖା ଖୋରଧା ପର୍ଯ୍ୟନ୍ତ ଯାଇଅଛି । ଏହି ସଡ଼କରେ ଖଣ୍ଡଗିରିର ମୂଳରେ ଗୋଟିଏ ସରକାରୀ ଡାକବଙ୍ଗଳା ଅଛି ଏବଂ ଉଦୟଗିରିର ମୂଳରେ ଗୋଟିଏ ମଠ ଅଛି । ଖଣ୍ଡଗିରି ଦୁରାରୋହ ନୁହେଁ । ଏହାର ଚୂଡ଼ାରେ ଆଧୁନିକ ଜୈନ ମନ୍ଦିର ଏବଂ କଟି ଦେଶରେ କେତେଗୁଡ଼ିଏ ଅତି ପ୍ରାଚୀନ କ୍ଷୁଦ୍ର ଗୁମ୍ଫା ଅଛି । କେହି କେହି କହନ୍ତି ବୌଦ୍ଧରାଜାମାନଙ୍କର ରାଜତ୍ୱକାଳରେ ଏଗୁଡ଼ିକ ସାଧାରଣ ଚିକିତ୍ସାଳୟ ଥିଲା । ଜୈନମନ୍ଦିରଠାରୁ ଅଳ୍ପ ଦୂରରେ ଶ୍ୟାମକୁଣ୍ଡ ନାମରେ କ୍ଷୁଦ୍ର କୁଣ୍ଡଟିଏ ଅଛି । ପାହାଡ଼ଦେହ ଖୋଳି ଏହି କୁଣ୍ଡ ନିର୍ମାଣ କରାଯାଇ- ଅଛି । ଯେଉଁ ସ୍ଥାନରେ ଏହି କୁଣ୍ଡ ଖୋଳାଯାଇଅଛି ପାହାଡ଼ର ସେହି ଅଂଶଟି କାନ୍ଥପରି । ସୁତରାଂ କୁଣ୍ଡଟି କାନ୍ଥକୂପ ପରି ଦିଶେ । କୁଣ୍ଡଟି ଏଡ଼େ କ୍ଷୁଦ୍ର ଯେ ବାଳକ-ବାଳିକା ଅପେକ୍ଷା ଅଧିକ ବୟସର ଲୋକେ ତାହା ମଧ୍ୟରେ ଦଣ୍ଡାୟମାନ ହେଲେ ମୁଣ୍ଡ ନୁଆଁଇବାକୁ ହେବ । ଏବେ କୁଣ୍ଡରେ କ୍ଷୁଦ୍ର ଯାଉଁଳି କବାଟ ଲାଗିଲାଣି । କୁଣ୍ଡର ଜଳ ଅତି ସ୍ୱଚ୍ଛ, ଶୀତଳ ଓ ସ୍ୱାଦୁ । ଜଳତଳେ ମୃତ୍ତିକା ଅଛି ।

ଖଣ୍ଡଗିରି ସ୍ୱାସ୍ଥ୍ୟକର ସ୍ଥାନ, ଏବଂ ତାହାର ଚତୁଃପାର୍ଶ୍ୱବର୍ତ୍ତୀ ସ୍ଥାନ ରମଣୀୟ ଅଟେ । ପାହାଡ଼ ଉପରୁ ଭୁବନେଶ୍ୱର-ଚନ୍ଦକା ସଡ଼କ ସଲଙ୍ଗ ସୂକ୍ଷ୍ମ ସିନ୍ଦୂର ରେଖା ପରି ସୁନ୍ଦର ଦିଶେ । ପାହାଡ଼ର ଦେହଟି ତରୁ, ଲତା ଓ ଗୁଳ୍ମରେ ଆଚ୍ଛନ୍ନ । ତଳକୁ ଚାହିଁଲେ କେଉଁଠାରେ କ୍ଷୁଦ୍ରଗ୍ରାମ, କେଉଁଠାରେ ଅବା ଆମ୍ରତୋଟା, କେଉଁ-ଠାରେ କ୍ଷୁଦ୍ର ଅରଣ୍ୟ, କେଉଁଠାରେ ବା ହରିଦ୍‌ବର୍ଣ୍ଣ ଶସ୍ୟ କ୍ଷେତ୍ର ବିରାଜମାନ ।

ସଡ଼କର ଅପର ପାର୍ଶ୍ୱବର୍ତ୍ତୀ ଉଦୟଗିରିକୁ ଖଣ୍ଡଗିରିର ଏକ ଅଙ୍ଗ ବୋଇଲେ ଅଯୁକ୍ତ ହେବ ନାହିଁ । ସାନ ସାନ ବାଳକବାଳିକା ମଧ୍ୟ ଉଦୟଗିରିରେ ଅନାୟାସରେ ଆରୋହଣ କରିପାରନ୍ତି । ଏଥିରେ ରାଣୀହଂସପୁର, ହାତୀ ଗୁମ୍ଫା ଏବଂ ଆଉ କେତେ ଗୁଡ଼ିଏ ଗୁମ୍ଫା ଅଛି । ହାତୀଗୁମ୍ଫାରେ ପାଲି ଅକ୍ଷରରେ ଅଶୋକଙ୍କର ଅନୁଶାସନ ଖୋଦିତ ଅଛି । ଏହାର ଅନେକ ଅଂଶ ବର୍ତ୍ତମାନ ଅସ୍ପଷ୍ଟ ହୋଇଗଲାଣି । ଖଣ୍ଡଗିରିର କୌଣସି କୌଣସି ଗୁମ୍ଫାରେ ପାଲି ଅକ୍ଷରରେ ଯାହା ଯାହା ଖୋଦିତ ଥିଲି ତାହା ବହୁପରିମାଣରେ ନଷ୍ଟ ଓ ଅସ୍ପଷ୍ଟ ହୋଇଯାଇଅଛି । ପୂର୍ବଦିଗରେ ଖଣ୍ଡଗିରିଠାରୁ କିଛି ଦୂରରେ ଗୋଟିଏ କ୍ଷୁଦ୍ର ନିର୍ଝରଣୀ ଅଛି । ଏହା ଉତ୍ତର ଦିଗରୁ ଆସି ସଡ଼କକୁ ଭେଦ କରି ଦକ୍ଷିଣ ଦିଗକୁ ବହି ଯାଉଅଛି ।

[ପୂର୍ବପରି ଆଜିକାଲି ଖଣ୍ଡଗିରି ଓ ଉଦୟଗିରିରେ ଗୁଳ୍ମଲତା, ନିର୍ଜନତା ଓ ଶାନ୍ତି ନାହିଁ । ନିକଟରେ ଆଧୁନିକ କୋଠା, ଉଚ୍ଚ ଶିକ୍ଷାନୁଷ୍ଠାନ ହେଲାଣି । ଅଧୁନାତନ ସ୍ଥିତିରେ 'ତପୋବନ' ନାମରେ ଗୋଟିଏ ଆଶ୍ରମ ବିଦ୍ୟାଳୟ ହୋଇଛି] । -ସମ୍ପାଦକ

## ଜୀବନ-ଚରିତ

# ରାଧାନାଥ ରାୟ

( ଜନ୍ମସ୍ଥାନ, ବଂଶ, ବାଲ୍ୟ, ମଧ୍ୟ ଓ ଅନ୍ତ୍ୟ ଜୀବନ, ପାଣ୍ଡିତ୍ୟ, କବିତ୍ୱ, ଅପର ଗୁଣାବଳି, ପ୍ରଧାନ ପ୍ରଧାନ କାବ୍ୟ ଓ କବିତା )

ଚିଲିକା-କବିତା ଏବଂ ମହାଯାତ୍ରା-କାବ୍ୟର ପ୍ରଣେତା ବର୍ତ୍ତମାନ ଉତ୍କଳର ସମସ୍ତଙ୍କଠାରେ ସୁପରିଚିତ । ବାଲେଶ୍ୱର ଜିଲ୍ଲାର ମଧ୍ୟସ୍ଥଳରେ ସୋର ନାମରେ ଗୋଟିଏ ଗଣ୍ଡଗ୍ରାମ ଅଛି । ଏହାର ଅତି ନିକଟରେ ଅବସ୍ଥିତ କ୍ଷୁଦ୍ର କେଦାରପୁର କବି ରାଧାନାଥଙ୍କର ଜନ୍ମସ୍ଥାନ । ଏଥିରେ କେତେଗୁଡ଼ିଏ ବ୍ରାହ୍ମଣ ଓ ବଙ୍ଗାଳୀ କାୟସ୍ଥଙ୍କର ନିବାସ ଅଛି । କେଦାରପୁର-ନିବାସୀ ସୁନ୍ଦରନାରାୟଣ ନାମକ ଜଣେ ବିଦ୍ୱାନ୍ ଓ ଚରିତ୍ର-ବାନ୍ କାୟସ୍ଥ ବାଲେଶ୍ୱରରେ ରାଜ-କାର୍ଯ୍ୟରେ ନିଯୁକ୍ତ ଥିଲେ । ରାଧାନାଥ ତାଙ୍କର ଜ୍ୟେଷ୍ଠ ପୁତ୍ର । ଶୈଶବ ଓ ବାଲ୍ୟକାଳରେ ତାହାଙ୍କର ଦେହ କ୍ଷୀଣ ଓ ରୁଗ୍ଣ ଥିଲା ।

ଛଅବର୍ଷ ବୟସରେ କେଦାରପୁର ଗୁରୁଶାଳୀରେ ତାହାଙ୍କର ବିଦ୍ୟାରମ୍ଭ ହେଲା । ସେଠାରେ ସେ ତିନି ବର୍ଷ ମାତ୍ର ଅଧ୍ୟୟନ କଲେ । ଏହି ସମୟ ମଧ୍ୟରେ ତାହାଙ୍କର କାଶରୋଗ ଜନ୍ମି କ୍ରମେ ଅତି ପ୍ରବଳ ହେବାରୁ ତାହାଙ୍କର ପିତା ଚିକିତ୍ସା ନିମନ୍ତେ ତାଙ୍କୁ ବାଲେଶ୍ୱରକୁ ନେଇଗଲେ । ରୋଗ ଓ ଶରୀରକୃଶତା ତାହାଙ୍କର ଚିରସହଚର ଥିଲା । ଦଶବର୍ଷ ବୟସରେ ସେ ବାଲେଶ୍ୱର ଜିଲ୍ଲା-ସ୍କୁଲରେ ପ୍ରବେଶ କରି ଷୋହଳ ବର୍ଷ ବୟସରେ ସେଠାରୁ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । * ତଦନନ୍ତର ଉଚ୍ଚଶିକ୍ଷା ନିମନ୍ତେ ସେ କଲିକତା ନଗରୀସ୍ଥ ପ୍ରେସିଡେନ୍‌ସି କଲେଜରେ ପ୍ରବେଶ କଲେ । ଅତ୍ୟଳ୍ପ କାଳ ପରେ ଅସୁସ୍ଥତାବଶତଃ ତାହାଙ୍କୁ କଲେଜ ପରିତ୍ୟାଗ କରିବାକୁ ହେଲା । ବାଲେଶ୍ୱରକୁ ଫେରିଆସି ସେ ତତ୍ରତ୍ୟ ଜିଲ୍ଲା ସ୍କୁଲର ତୃତୀୟ ଶିକ୍ଷକ ପଦରେ ନିଯୁକ୍ତ ହେଲେ ।

ବାଲେଶ୍ୱରରେ ପୁନହଟିନିବାସୀ ଦାମୋଦର ପ୍ରସାଦ ଦାସ, ବାଲେଶ୍ୱର ଜିଲ୍ଲା ସ୍କୁଲରେ ପଢ଼ିବାବେଳେ ରାଧାନାଥଙ୍କର ସତୀର୍ଥ ଥିଲେ । ଏହି ଦାମୋଦର ନିଜ ଗୃହରେ ଗୋଟିଏ ଓଡ଼ିଆ—ବଙ୍ଗଳା ପୁସ୍ତକାଳୟ ସ୍ଥାପନ କରିଥିଲେ । ବାଲେଶ୍ୱରରେ ଥିବାବେଳେ ରାଧାନାଥ ଅନେକ ସମୟରେ ଦାମୋଦରଙ୍କ ଘରକୁ ଯାଉଥିଲେ, ଏବଂ ସେଠାରେ ଭଲ ଭଲ ପୁସ୍ତକମାନ ପଢ଼ୁଥିଲେ । ଅଧୁନା ଖ୍ୟାତନାମା କବି ଫକୀରମୋହନ ସେନାପତି ମଧ୍ୟ ଅନେକ ସମୟରେ ପଢ଼ିବା ଇଚ୍ଛାରେ ଦାମୋଦରଙ୍କ ଘରକୁ ଆସୁଥିଲେ । ଦାମୋଦର ଏବଂ ଫକୀରମୋହନଙ୍କ ଉତ୍ସାହରେ ରାଧାନାଥ ସ୍ୱରଚିତ ବଙ୍ଗଳା କବିତାଗୁଡ଼ିକ 'କବିତାବଳୀ' ନାମ ଦେଇ ପ୍ରକାଶ କଲେ ।

କିଛି ଦିନ ପରେ ରାଧାନାଥ ପୁରୀ ଜିଲ୍ଲା ସ୍କୁଲର ଦ୍ୱିତୀୟ ଶିକ୍ଷକ ପଦରେ ନିଯୁକ୍ତ ହେଲେ । ସେଠାରେ ମଧୁସୂଦନ ରାଓ ରାଧାନାଥଙ୍କର ପ୍ରିୟତମ ଶିଷ୍ୟ ଥିଲେ । ସାହିତ୍ୟରେ ଗୁରୁଶିଷ୍ୟଙ୍କର ବିଶେଷ ଆଗ୍ରହ ଥିବାରୁ ଦୁହେଁ ଅବସର ପାଇଲାବେଳେ ବିବିଧ ସାହିତ୍ୟ ଗ୍ରନ୍ଥର ଚର୍ଚ୍ଚା ଏବଂ ଭିନ୍ନ ଭିନ୍ନ ବିଷୟରେ କ୍ଷୁଦ୍ର କ୍ଷୁଦ୍ର ରଚନା କରୁଥିଲେ । ଏହି ସମୟରେ ରାଧାନାଥ ସଂସ୍କୃତ 'ମେଘଦୂତକୁ' ଓଡ଼ିଆ ଭାଷାରେ ଅନୁବାଦ କରିଥିଲେ । କିଛି କାଳ ପରେ ସେ ବଙ୍ଗ ଦେଶର ଅନ୍ତର୍ଗତ ବାଙ୍କୁଡ଼ା ଜିଲ୍ଲାସ୍କୁଲର ଦ୍ୱିତୀୟ ଶିକ୍ଷକ ପଦରେ ନିଯୁକ୍ତ ହେଲେ ଏବଂ ପ୍ରାୟ ଛଅମାସ ପରେ

---

* ତାହାର ପ୍ରାୟ ତୁଲ୍ୟ ପରୀକ୍ଷାର ନାମ ମ୍ୟାଟ୍ରିକୁଲେଶନ୍ ଏବଂ ଏବେ ହାଇସ୍କୁଲ୍ ସାର୍ଟିଫିକେଟ୍ ପରୀକ୍ଷା । ] -ସମ୍ପାଦକ

ବାଲେଶ୍ୱର ଜିଲ୍ଲାର ସ୍କୁଲସମୂହର * ଡେପୁଟି ଇନ୍‌ସ୍‌ପେକ୍ଟର ପଦରେ ନିଯୁକ୍ତ ହୋଇ ବାଲେଶ୍ୱରକୁ ବାହୁଡ଼ ଆସିଲେ । ବାଲେଶ୍ୱରରେ ପ୍ରାୟ ପାଞ୍ଚ ବର୍ଷ ଡେପୁଟି ଇନ୍‌ସ୍‌ପେକ୍ଟର କାର୍ଯ୍ୟ କଲା ପରେ ଗୁଣୀ ଓ ଗୁଣଗ୍ରାହୀ ସାମ୍‌ସ୍ ସାହେବ ମହୋଦୟ ତାହାଙ୍କୁ ଓଡ଼ିଶା-ସ୍କୁଲମାନଙ୍କର ଜଏଣ୍ଟ ଇନ୍‌ସପେକ୍ଟର ପଦରେ ନିଯୁକ୍ତ କଲେ । ଏହି ସମୟରେ ତତ୍କାଳୀକ ସ୍କୁଲ ଇନ୍‌ସପେକ୍ଟର ଭୂଦେବ ମୁଖୋପାଧ୍ୟାୟ ମହାଶୟ ରାଧାନାଥଙ୍କର ବଙ୍ଗଳା ରଚନା ପାଠ କରି ଅତିଶୟ ପ୍ରୀତ ହୋଇ ବଙ୍ଗଳାଭାଷା ପରିବର୍ତ୍ତିରେ ଓଡ଼ିଆ ଭାଷାରେ ରଚନା କରିବାପାଇଁ ତାଙ୍କୁ ଉପଦେଶ ଦେଲେ । ଏହି ଉପଦେଶ ଶିରୋଧାର୍ଯ୍ୟ କରି ରାଧାନାଥ ଓଡ଼ିଆ ଭାଷାରେ ରଚନା କରିବାରେ ବ୍ରତୀ ହେଲେ ।

ତତ୍ପରେ ରାଧାନାଥ ୧୮୯୨ ମସିହାରେ ଇନ୍‌ସପେକ୍ଟର ପଦକୁ ଉନ୍ନୀତ ହେଲେ । ଓଡ଼ିଶାର ଇନ୍‌ସପେକ୍ଟର ଥିବାବେଳେ ୧୮୯୬ ମସିହାରେ ଗୁଣଗ୍ରାହୀ ଗବର୍ଣ୍ଣମେଣ୍ଟ ତାହାଙ୍କୁ 'ରାୟବାହାଦୂର' ଉପାଧିରେ ଭୂଷିତ କଲେ । କିଛିକାଳପରେ ସେ ୧୮୯୯ ମସିହାରେ ବର୍ଦ୍ଧମାନ ବିଭାଗକୁ ବଦଳି ହେଲେ । ସେଠାରେ ପ୍ରାୟ ଚାରିବର୍ଷ କାର୍ଯ୍ୟ କଲା ପରେ ସେ ୧୯୦୩ ମସିହାରେ ରାଜକାର୍ଯ୍ୟରୁ ଅବସର ଗ୍ରହଣ କରି କଟକରେ ଅବସ୍ଥାନ କଲେ । ଏହି ନଗରୀରେ ୧୯୦୮ ମମସିହାର ଚୈତ୍ର-ପୂର୍ଣ୍ଣିମାରେ ରାଧାନାଥ ମାନବଲୀଳା ସମ୍ବରଣ କଲେ ।

ରାଧାନାଥ ଯେପରି ସୁପଣ୍ଡିତ ଥିଲେ ସେହିପରି ନାନାଗୁଣରେ ପୂର୍ଣ୍ଣ ଥିଲେ । କାହାରି ଅନିଷ୍ଟ କରିବା ବା ପାଞ୍ଚିବା ରାଧାନାଥଙ୍କର ପ୍ରକୃତିବିରୁଦ୍ଧ ଥିଲା । କଥାରେ ଓ ବ୍ୟବହାରରେ ସେ କାହାରି ମନରେ ଆଘାତ କରୁ ନ ଥିଲେ । ଅନ୍ୟଠାରେ ଦୋଷ ଦେଖିଲେ ତାହାକୁ ଲଘୁ ମଣିବା ତାହାଙ୍କ ପକ୍ଷରେ ସ୍ୱାଭାବିକ ଥିଲା । କର୍ତ୍ତବ୍ୟପରାୟଣତା, ବିଦ୍ୟାନୁରାଗ, ବିନୟ ଓ ଶିଷ୍ଟାଚାରରେ ସେ ଗୋଟିଏ ଆଦର୍ଶ ଥିଲେ । ସେ ସୁରସିକ ଥିଲେ, ମାତ୍ର ବିଳାସିତା ତାହାଙ୍କ ମନରେ ସ୍ଥାନ ପାଇ ନ ଥିଲା । ସେ ଗୁଣଜ୍ଞ ଥିଲେ । ସୁଗନ୍ଧ ପୁଷ୍ପ ପ୍ରତି ମଧୁମକ୍ଷିକା ଯେପରି ଆକୃଷ୍ଟ ହୁଏ, ଅନ୍ୟଠାରେ ରଚନାଶକ୍ତି ଦେଖିଲେ ସେ ସେହିପରି ଆକୃଷ୍ଟ ହେଉଥିଲେ । କାବ୍ୟାଦି

---

* ଏହି ସରକାରୀ କର୍ମଚାରୀ ସେତେବେଳେ ଗୋଟିଏ ଜିଲାର ସମସ୍ତ ପ୍ରାଇମେରୀ ଓ ମିଡ଼ଲ୍ ସ୍କୁଲମାନ ପରିଦର୍ଶନ କରୁଥିଲେ । ପରେ ସେହି ପଦବୀର ନାମ ଡିଷ୍ଟ୍ରିକ୍ଟ ଇନ୍‌ସପେକ୍ଟର ହେଲା । ଏବେ ଗୋଟିଏ ଗୋଟିଏ ଜିଲାରେ ଏପରି ସ୍କୁଲ ସଂଖ୍ୟା ବହୁତ ବଢ଼ିଯିବାରୁ, ଗୋଟିଏ ଜିଲାରେ ଏକାଧିକ ଡିଷ୍ଟ୍ରିକ୍ଟ ଇନ୍‌ସପେକ୍ଟର ଅଛନ୍ତି—ସମ୍ପାଦକ ।

ରଚନାରେ ତାହାଙ୍କର ଅସାଧାରଣ ନୈପୁଣ୍ୟ ଥିଲା । ଅଠରବର୍ଷ ବୟସରେ ବାଲେଶ୍ୱର ନଗରରେ ତାହାଙ୍କର ଯେଉଁ କବିତ୍ୱଶକ୍ତିର ପ୍ରଥମ ବିକାଶ ଦେଖା-ଯାଇଥିଲା, କଟକ ନଗରରେ ତାହା ପରିଣତ ଅବସ୍ଥା ପ୍ରାପ୍ତ ହେଲା । ସେ ଅନେକ ଗୁଡ଼ିଏ କବିତା ଓ କେତେଗୁଡ଼ିଏ କାବ୍ୟ ଲେଖି ଯାଇଅଛନ୍ତି । ଆଧୁନିକ ଉତ୍କଳର କବିମାନଙ୍କ ମଧ୍ୟରେ ସେ ସର୍ବଶ୍ରେଷ୍ଠ ଥିଲେ । ତାହାଙ୍କର ରଚନା ମଧ୍ୟରେ 'ଚନ୍ଦ୍ରଭାଗା', 'ଚିଲିକା' ଓ 'ମହାଯାତ୍ରା' ଅତି ଉପାଦେୟ ଅଟେ ।

( ରଚନାଶିକ୍ଷା, ପ୍ରଥମ ସୋପାନ ଶେଷ )

●

## ଚନ୍ଦ୍ରମୋହନ ଗ୍ରନ୍ଥାବଳୀର ବ୍ୟାକରଣ ଓ ରଚନାଶିକ୍ଷାରେ ଶୁଦ୍ଧିପତ୍ର

| | | | | |
|---|---|---|---|---|
| ପୃ ୨୭୪ | ତଳ ଆଡ଼ୁ | ଧାଡ଼ି ୬ | ଦାସ୍ଥା | ଦସ୍ଥା |
| ୨୯୧ | ,, | ,, ୭ | ବିଶେଣ | ବିଶେଷଣ |
| ୨୯୪ | ,, | ,, ୧୧ | ଦିଅଟି | ଦିଓଟି |
| ୨୯୫ | ,, | ,, ୧୨ | କର୍ତ୍ତୃ ଉକ୍ତ | କର୍ତ୍ତୃ ଉକ୍ତ |
| ୨୯୭ | ଉପରୁ | ,, ୧ | ର | ଋ |
| | ,, | ,, ୧୨ | ଇଶ୍ୱର | ଈଶ୍ୱର |
| ୩୦୯ | ତଳୁ | ,, ୧୨ | ଘରମାନଙ୍କରେ | ଘରମାନଙ୍କର |
| ୩୧୦ | ଉପରୁ | ,, ୧୪ | ବ୍ରାହ୍ମଣମାଙ୍କୁ | ବ୍ରାହ୍ମଣମାନଙ୍କୁ |
| ୩୧୨ | ,, | ,, ୧୪ | ଆମ୍ଭଙ୍କୁ, ଆମ୍ଭଙ୍କୁ | ଆମ୍ଭଙ୍କୁ, ଆମ୍ଭକୁ |
| ୩୩୨ | ,, | ,, ୧୨ | ଦୃଷ୍ଟ | ଜ୍ଞୃଷ୍ଟ |
| ,, | ତଳୁ | ,, ୫ | ଖାର-ସ୍ + କ୍ୱ ସ୍ | ଖାର-ସ୍ + କ୍ୱ ସ୍ = ଖାରସ୍ |
| ୩୩୩ | | ଶେଷ ଧାଡ଼ି | ରୁ ଦରିଦ୍ରା | ରୁ (ଦରିଦ୍ରା) |
| ୩୩୭ | ପ୍ରଥମା | ,, | ଉକ୍ତ | ଭକ୍ତ |
| ,, | ତଳ ଆଡ଼ୁ | ,, ୯ | ସ୍ମୃତିମାନ୍ | ସ୍ମିତିମାନ୍ |
| ୩୪୨ | ,, | ,, ୫ | ଇନ୍‌ରନ୍ | ଇନ୍ ର ନ୍ |
| ୩୫୨ | ତଳୁ ଧାଡ଼ି | ୨ | ଗ, ଘ | ପ, ଫ |
| ୩୬୦ | ଉପରୁ | ୧୩ | ଗ ବର୍ଗ | ପ ବର୍ଗ |
| ୩୬୪ | ତଳୁ | ୨ | ଚଳନ୍ଦକୁ | ଚନ୍ଦନକୁ |
| | ସବାତଳ | | ଶଙ୍ଖି | ଶଙ୍ଖ |
| ୩୬୧ | ,, | ୧୩ | କପା କଲ | ପାକଲ |
| ୩୮୮ | ,, ଧାଡ଼ି | ୧, ୨, ୫ | ଦୁରନ୍ଦୃସ୍ଥ | ଦୁରନ୍ଦୃସ୍ଥ |

———

# ଗ୍ରନ୍ଥାବଳୀର ପରିଶିଷ୍ଟ

## ୧—ଚନ୍ଦ୍ରମୋହନ ଓ 'ଶ୍ରୀନାରଦ' *

ଚନ୍ଦ୍ରମୋହନ ୧୮୮୭ ମସିହା 'ସଂସ୍କାରକ' ପତ୍ରିକାର ୩୩୬ତମ ପୃଷ୍ଠାରେ ରାଧାନାଥଙ୍କ 'କେଦାରଗୌରୀ' କାବ୍ୟ ଓ ତାଙ୍କ କବି-ପ୍ରତିଭା ସପକ୍ଷରେ ଲେଖି-ଥିଲେ । "ସେକ୍ସ୍‌ପିୟର ମଧ୍ୟ ଅନ୍ୟାନ୍ୟ ରଚୟିତାଙ୍କଠାରୁ ଭାବ ଗ୍ରହଣ କରିଅଛନ୍ତି । ଏ କଥା ସତ୍ୟ ହୋଇପାରେ, କିନ୍ତୁ ବଡ଼ ବଡ଼ ଇଂରାଜୀ କବିମାନେ ଯେଉଁଠାରେ ଯାହା ସଂଗ୍ରହ କରିଅଛନ୍ତି, ସେମାନେ ତାହା ଜୁଆଚ୍ଚୋରି କରି ନ ଲୁଚାଇ ସ୍ପଷ୍ଟରୂପେ ସ୍ୱୀକାର କରିଛନ୍ତି । କେଉଁଠାରୁ କଅଣ ଗ୍ରହଣ କରାଯାଇଅଛି, ତାହା ଜଣାଇବା ଯଦି ଟୀକାକାରଙ୍କ କର୍ତ୍ତବ୍ୟ ହୁଏ, ତଥାପି ରାଧାନାଥବାବୁଙ୍କ ପରି କବିଙ୍କ କୁଟିଳତା ଭେଦ କରିବା ଟୀକାକାରଙ୍କ ପିତାମହଙ୍କ ମଧ୍ୟ ସାଧ୍ୟ ନୁହେଁ । କାରଣ, ସେକ୍ସ୍‌ପିୟରଙ୍କ ମୃତ୍ୟୁର ଏତେକାଳ ପରେ ଓଡ଼ିଶାରେ ରାଧାନାଥ ଅବତାର ରୂପରେ ପୁନର୍ବାର ଜନ୍ମଗ୍ରହଣ କରିଅଛନ୍ତି ।"

ରାଧାନାଥଙ୍କ ଏହି 'କେଦାରଗୌରୀ' କାବ୍ୟର ଆହରଣଜନିତ ବିଷୟ ଉପରେ ଚନ୍ଦ୍ରମୋହନଙ୍କ ପ୍ରଦତ୍ତ ଅନୁକୂଳ ମନ୍ତବ୍ୟକୁ 'ଶ୍ରୀନାରଦ' ଛଦ୍ମନାମଧାରୀ କୌଣସି ବ୍ୟକ୍ତି କଟୁ ସମାଲୋଚନା କରିଥିଲେ । ଏହା ସମ୍ପାଦକ ମହାଶୟଙ୍କୁ ପ୍ରେରିତ ଚିଠିରେ 'ସଂସ୍କାରକ' ୪ର୍ଥ ଖଣ୍ଡ, ୪୫ତମ ସଂଖ୍ୟାରେ ୧୮୮୭ ନଭେମ୍ବର ୨୪ ତାରିଖରେ ପ୍ରକାଶ ପାଇଥିଲା । ଏଥିରେ ସେ ଚନ୍ଦ୍ରମୋହନଙ୍କୁ ଆକ୍ଷେପ କରି ଲେଖି-ଥିଲେ, "କୁକୁରମାନେ ସ୍ୱାଭାବିକ ପ୍ରଭୁଭକ୍ତ ଏବଂ ମୁନିବର କଷ୍ଟ ଦେଖନ୍ତି ନାହିଁ । ଚନ୍ଦ୍ରମୋହନ ରାଧାନାଥବାବୁଙ୍କ ନିନ୍ଦା ସହ୍ୟ କରି ନ ପାରି ଏବଂ ନିଜେ ଉତ୍କଳ-ଉଦ୍ୟାନର ଗୋଟିଏ ନୂତନ କବି ହୋଇ ଥିବାରୁ ପ୍ଲୀହା ଚମକିବାରୁ କେବଳ ତୋଷାମଦପୂର୍ଣ୍ଣ ଓ ବିତଣ୍ଡା ଯୁକ୍ତ କରି ଖଣ୍ଡେ ବିଟତଳା କାଗଜର କଳେବର ପୂରଣ କରିଅଛନ୍ତି । ବୋଧହୁଏ ସେ "ନବସମ୍ବାଦୀୟ ବାହ୍ଲିକଦଳ" ମଧ୍ୟରେ ନାମ ଲେଖାଇଅଛନ୍ତି ।" ଏହାର ଉତ୍ତରରେ ଚନ୍ଦ୍ରମୋହନ ଯେଉଁ ବ୍ୟକ୍ତିଗତ ଅଭିମତ ପୋଷଣ କରିଥିଲେ, ତାହା ସମ୍ପାଦକଙ୍କୁ 'ପ୍ରେରିତ ପତ୍ର' ନାମରେ 'ନବସମ୍ବାଦ'ରେ ପ୍ରକାଶ ପାଇଥିଲା । ତାଙ୍କର ଅଭିମତର ନକଲ ତଳେ ଦିଆଗଲା ।

---

* ସଂଗ୍ରାହକ ଶ୍ରୀ ଅରବିନ୍ଦ ଗିରି

## ପ୍ରେରିତ ପତ୍ର

( ପ୍ରେରିତ ପତ୍ରର ମତାମତ ନିମନ୍ତେ ସମ୍ପାଦକ ଦାୟୀ ନୁହନ୍ତି )

ଶ୍ରୀଯୁକ୍ତ ନବସମ୍ବାଦ ସମ୍ପାଦକ ମହାଶୟ

ସମୀପେଷୁ—

୧୮୮୭ ମସିହାର "ଉତ୍କଳଦୀପିକା"ର ୩୫୨ତମ ପୃଷ୍ଠାରେ ନାରଦଙ୍କ ଦ୍ୱାରା ପ୍ରକାଶିତ ସମାଲୋଚନାର ପ୍ରତ୍ୟୁତ୍ତର—

ବଡ଼ ଦୁଃଖର ବିଷୟ ଆଜିକାଲି ଆମ୍ଭମାନଙ୍କ ମଧ୍ୟରେ କେହି କେହି ଅପରର ସଦ୍‌ଗୁଣମାନଙ୍କୁ ପାଠ କରି କେବଳ ଛିଦ୍ରାନ୍ୱେଷଣ କରିବାରେ ରତ ହୋଇଅଛନ୍ତି । ଯାହାର ଯେଉଁ କଥାଟା ସେମାନଙ୍କ ମନକୁ ଦୋଷ ବୋଲି ବୋଧହୁଏ, ତାହା ସେମାନେ ତତ୍‌କ୍ଷଣାତ୍ କଲମରେ ଝାଡ଼ି ଦେଉଅଛନ୍ତି । ଆକ୍ରମଣ କରିବାର ବା ଦୋଷ ବାହାର କରିବାର ଧାରଣା ଅନେକପ୍ରକାର ଅଛି । ସିଂହ ଶିକାର ଦେଖିଲେ ଅକୁତୋଭୟ ହୋଇ ପିଠିରେ ପକାଇ ନେଇଯାଏ । କିନ୍ତୁ ଗୋଟିଏ କୁକୁର ଦୋଷୀ ହେଉ ବା ନିର୍ଦ୍ଦୋଷ ହେଉ, କୌଣସି ପ୍ରାଣୀ ଦେଖିଲେ 'ଖେଁକ୍ ଖେଁକ୍ ଖେଁ' କରି ଲାଙ୍ଗୁଳ ତଳକୁ ମାରି ଦେଇ ପଳାଇ ଯାଇ ଲୁଚେ । ୩୫୨ତମ ପୃଷ୍ଠାର 'ନାରଦ' ଗୋଟିଏ କୁକୁର ପରି ଦିଶୁଅଛନ୍ତି । ଓଃ, ଓଡ଼ିଶାରେ ଏପରି କୁଳାଙ୍ଗାର ମଧ୍ୟ ଅଛନ୍ତି !!! ହାୟ ମଧୁସୂଦନ ! ହାୟ ମଧୁସୂଦନ !!

'ନାରଦ' ଲେଖିଅଛନ୍ତି, "ଓଡ଼ିଆ ପଦ୍ୟଲେଖକମାନଙ୍କ ମଧ୍ୟରୁ ଅନେକ ଭିନ୍ନ ଭିନ୍ନ ଭାଷାରୁ ଅନୁବାଦ କରି କବିତା ଲେଖିଅଛନ୍ତି, କିନ୍ତୁ ସେ କଥା ଆଦୌ ସ୍ୱୀକାର କରୁନାହାନ୍ତି ଏବଂ ତାହାସବୁ ଆପଣା ଆପଣାର ମସ୍ତିଷ୍କପ୍ରସୂତ ବୋଲି ଲୋକମାନଙ୍କ ନିକଟରେ ଘୋଷଣା କରି 'କବି' ବୋଲାଉଅଛନ୍ତି । ଏଥିର ଶତଶତ ପ୍ରମାଣ ଅଧିକାଂଶ ଓଡ଼ିଆ ପୁସ୍ତକମାନଙ୍କ ମଧ୍ୟରେ ରହିଅଛି । ପାଠକବର୍ଗ ! ଏପରି କାର୍ଯ୍ୟର ନାମ କଅଣ ?"

ପ୍ରଥମତଃ ଅନୁବାଦ କେତେ ଆଦୌ ପ୍ରଯୋଜ୍ୟ ନୁହେଁ । ଏହା ତାଙ୍କର ନିଜର ବିଦ୍ୟାବୁଦ୍ଧିର ପରିଚାୟକ । ୨ୟତଃ ଆଚ୍ଛା, ନାରଦ କିମ୍ବା ତାଙ୍କର ପିତୃପିତାମହାଦି କେହି ହଲପ ଦେଇ ପଚାରିଥିଲେ ଯେ ଉକ୍ତ 'କବି'ମାନେ ଅସ୍ୱୀକାର କଲେ ? ଆଉ ନାରଦଙ୍କୁ କିଏ କହିଲା ଯେ ଉକ୍ତ କବିମାନେ ଉକ୍ତ ଧରଣର ପଦ୍ୟମାନଙ୍କୁ ଆପଣା ଆପଣା ମସ୍ତିଷ୍କପ୍ରସୂତ ବୋଲି ଲୋକମାନଙ୍କ ନିକଟରେ ଘୋଷଣା କରୁଅଛନ୍ତି ? ନା, ଏପରି ମତଟା ନାରଦଙ୍କର ସ୍ୱମସ୍ତିଷ୍କ ପ୍ରସବ

କଲ ? ଉକ୍ତ ପଦ୍ୟମାନ କେଉଁ ଭାଷାରୁ ଅନୁବାଦିତ କିମ୍ବା ସେମାନଙ୍କର ବିଷୟ କେଉଁଠାରେ ଦିଆ ହୋଇଅଛି, ଲୋକମାନଙ୍କୁ ଜଣାଇବା ଟୀକାକାର (annotator) ମାନଙ୍କର କର୍ତ୍ତବ୍ୟ; ତାହା 'କବି'ମାନଙ୍କର ଖାସ କାମ ନୁହେଁ । ପୁଣି ସେ ଲେଖିଅଛନ୍ତି, ''ଶତଶତ ପ୍ରମାଣ ରହିଅଛି'' । ମୁଁ ପଚାରେଁ, ଶତ ଶତ ତେଣିକି ଥାଉ ଗୋଟିଏ ଶତର ଦଶମାଂଶ ଯେତେ, ତେତିକି ଉଦାହରଣ ସେ ଦେଇପାରନ୍ତି କି ? ଆଉ 'ଅଧିକାଂଶ ଓଡ଼ିଆ ପୁସ୍ତକମାନଙ୍କ ମଧ୍ୟରେ' ବୋଲି ଯାହା ଲେଖିଅଛନ୍ତି, ସେ କେତେଜଣ ଉତ୍କଳ କବିଙ୍କୁ ଜାଣନ୍ତି ଏବଂ କେତେଜଣ ଉତ୍କଳକବିଙ୍କ କବିତା ପଢ଼ିଅଛନ୍ତି ? କବୀନ୍ଦ୍ର ନାରାୟଣ ଶର୍ମା ଯେ କି ପ୍ରାୟ ୧୬୦୦ ବର୍ଷ ପୂର୍ବରେ ଜୀବିତ ଥିଲେ, ନାରାୟଣ ପୁରୋହିତ ଓ ଶ୍ରୀପତି ଦାସ ଯେ କି ପ୍ରାୟ ୭୦୦ ବର୍ଷ ପୂର୍ବରେ ଜୀବିତ ଥିଲେ, ଏବଂ ହରି ନାୟକ ଯେ କି ପ୍ରାୟ ୬୫୦ ବର୍ଷ ପୂର୍ବରେ ଜୀବିତ ଥିଲେ, ଏମାନଙ୍କ କବିତା ପଢ଼ିବା ତେଣିକି ଥାଉ, ନାମ କେବେଁ ଶୁଣିଥିଲେ କି ? ଉପେନ୍ଦ୍ର ଭଞ୍ଜଙ୍କର ଚନ୍ଦ୍ରକଳା, ଚନ୍ଦ୍ରରେଖା, ଚିତ୍ରଲେଖା, ହେମମଞ୍ଜରୀ, କାମକଳା, ମୁକ୍ତାବତୀ, ପ୍ରେମଲତା, ଶୋଭାବତୀ ଓ ବିଶ୍ୱନାଥ ପାଟଜୋଷିଙ୍କର (ସଂସ୍କୃତ ଭାଷାରେ ରଚିତ) ଉଷା-ପରିଣୟ ନାଟକ ଏବଂ ଚନ୍ଦ୍ରଶେଖର ରାଜଗୁରୁଙ୍କର (ସଂସ୍କୃତ ଭାଷାରେ ରଚିତ) ମଧୁର ନିରୁଦ୍ଧ ନାଟକ ପଢ଼ିବା କଥା ତେଣିକି ଥାଉ, ଏ ପୁସ୍ତକମାନଙ୍କର ନାମ କେବେଁ ଶୁଣିଅଛନ୍ତି କି? ଏବଂ ଉକ୍ତ କବିତାବଳୀରୁ କେଉଁଟା କେଉଁ ଅପର ଭାଷାରୁ ଅନୁବାଦିତ, ସେ କହିପାରନ୍ତି କି ? ଆଉ ଯଦି ପଦ୍ୟର ବିଷୟ ଘେନି ତର୍କ କରିବାକୁ ବସନ୍ତି, ଭାବ ଓ ବିଷୟର ନୂତନତ୍ୱ ଅବଶ୍ୟ ପ୍ରଂଶସନୀୟ କିନ୍ତୁ ପୃଥିବୀରେ ଏପରି କେତେଜଣ କବି ଅଛନ୍ତି ? ଇଂରାଜୀ inquisitive critic ନାମଧାରୀ, 'ନାରଦ'ଙ୍କର ଅଗ୍ରଜ ଚଳିତ ସନ "ସମ୍ପାଦକ", ୩୩୬ତମ ପୃଷ୍ଠାରେ ଯେଉଁ ଇଂରାଜୀ କବି ସେକସ୍‌ପିୟରଙ୍କ କଥା ଲେଖିଥିଲେ, ସେ କି ସ୍ଥାନେ ସ୍ଥାନେ ଭାବ ଓ ବିଷୟ-ମାନ ଅନ୍ୟ ରଚୟିତାଙ୍କଠାରୁ ଗ୍ରହଣ କରି ନାହାନ୍ତି ? ପ୍ରଚୁର ଉଦାହରଣ ଦାଖଲ କରିବାର କ୍ଷମତା ମୋର ଅବଶ୍ୟ ନାହିଁ କିନ୍ତୁ ଉଦାହରଣ ଯେ ଯଥେଷ୍ଟ ଅଛି, ଏଥିରେ ସନ୍ଦେହ ନାହିଁ । କଲିର 'ନାରଦ' ଯଦି ଇଂରେଜୀ କବିତାମାନଙ୍କର ପୈତୃକ ସମ୍ପତ୍ତି ପରି ବିଶେଷ ଆଲୋଚନା କରିଥାନ୍ତେ ତେବେ ବୋଧହୁଏ ଏ ବିଷୟରେ ଭିନ୍ନମତ ହେବେ ନାହିଁ ।

ପରିଶେଷରେ ଯୁଗ-ପରିବର୍ତ୍ତନ ସଙ୍ଗେ ସଙ୍ଗେ ମନୁଷ୍ୟର ମଧ୍ୟ ପରିବର୍ତ୍ତନ ହେଉଅଛି ବୋଲି ଯେଉଁ ଉଦ୍ଦେଶ୍ୟରେ ଲେଖିଅଛନ୍ତି ତହିଁରେ ସୁରୁଚି-ସମ୍ପନ୍ନ ଲୋକେ ଅବଶ୍ୟ ଏକମତ ହେବେ । ବାସ୍ତବିକ ସଙ୍ଗୀ ପରିବର୍ତ୍ତନ କରିବାଟା କି ରକମ ଖରାପ

ବୋଧ ହେଉଅଛି * । ଆମ୍ଭେମାନେ ବିଦ୍ୱାନ୍ ହେଲୁଁ ବା ଉଚ୍ଚପଦ ପାଇଲୁଁ ବୋଲି ଯେ ଆମ୍ଭମାନଙ୍କର ପିତା ପ୍ରଭୃତିଙ୍କଠାରୁ 'ସଂଜ୍ଞା' ପରିବର୍ତ୍ତନଦ୍ୱାରା ଭିନ୍ନ ବର୍ଣ୍ଣର ବୋଲି ପରିଚୟ ଦେବୁଁ, ଏହା ଅତିଶୟ ଅସୁନ୍ଦର ବୋଧ ହେଉଅଛି । 'ସଂଜ୍ଞା' ପରିବର୍ତ୍ତନ କଲେ ବରଂ ଖୁବ୍ ବାହାରିଆ ଦିଶନ୍ତା; ତେବେ କାହାର ଯଦି ପରିବର୍ତ୍ତନଦ୍ୱାରା କିଛି ଗୂଢ଼ ଉଦ୍ଦେଶ୍ୟ ଥାଏ ତ ସେ ଭିନ୍ନ କଥା । ଏ ସ୍ଥଳରେ ଆଉ ଏତିକି ମନ୍ତବ୍ୟ ଯେ 'ନାରଦ' ସ୍ୱୟଂ ଏହି ନିୟମାଧୀନ ବୋଲି ମନ କରୁଅଛି । କାହିଁକି ନା ଅ-କଳିଯୁଗ-ରେ 'ନାରଦ' ଦୁଇପକ୍ଷ ମଧ୍ୟରେ କଳି ଲଗାଇ ଦେଇ ରଙ୍ଗ ଦେଖୁଥିବାରୁ ନାରଦ ଶବ୍ଦର ଅପର ଅର୍ଥ "ଯେ କଳି ଲଗାଇ ଦେଇ ରଙ୍ଗ ଦେଖେ", ଏପରି ହୋଇ ଆସୁଥିଲି । କିନ୍ତୁ କଳିର ପରିବର୍ତ୍ତନ କଥା ଭାବୁଁ ଭାବୁଁ ଆମ୍ଭମାନଙ୍କର କଳିର 'ନାରଦ'ଙ୍କର ମସ୍ତିଷ୍କର ପରିବର୍ତ୍ତନ ହେବାରୁ, "ଯେ କଳି କରେ" ନାରଦ ଶବ୍ଦର ଏପରି ଆଉ ଗୋଟିଏ ଅର୍ଥ ହେଲାପରି ବୋଧ ହେଉଅଛି । ଛି ଛି ! ମୁଁ ଆଜି ମୋର ଲେଖନୀ ଓ କାଳିର କି ଅପବ୍ୟବହାର କଲି ! ଯେଉଁ ଲେଖନୀ ଦ୍ୱାରା ମହାତ୍ମାମାନେ ରାମାୟଣ, ମହାଭାରତ, ଶକୁନ୍ତଳା, ଲାବଣ୍ୟବତୀ, ରସକଲ୍ଲୋଳ, ଚନ୍ଦ୍ରଭାଗା ପ୍ରଭୃତି ରଚନା କରି ଜନ-ମନକୁ ପ୍ରସାଦଗୁଣରେ ପ୍ରଫୁଲ୍ଲିତ କରିଯାଇଛନ୍ତି ଏବଂ ମହାନ୍ ଶିକ୍ଷା ଦେଇଯାଇଅଛନ୍ତି, ମୁଁ ସେ ଲେଖନୀର ହାୟ ! ଆଜି କି କାର୍ଯ୍ୟରେ ପ୍ରୟୋଗ କଲି !

ଅତଏବ ହେ ନାରଦ ! ଏପରି ଅନୁଦାରତାର ଆଉ ପରିଚୟ ଦିଅନାହିଁ । ନାରଦଙ୍କର ବାଦ୍ୟଯନ୍ତ୍ର ସହକାରେ ହରିଗୁଣ କୀର୍ତ୍ତନ କରି ଜନମନ ମୋହିତ କରିବାର ଯେଉଁ ଦୁର୍ଲଭ ଗୁଣ ଥିଲା, ତାହାହିଁ ଅନୁକରଣ କର ଏବଂ ଆସ ପରସ୍ପରର ଦୋଷ ମାର୍ଜ୍ଜନା କରି ସମୟର ଆଉ ଅପବ୍ୟବହାର କରିବା ନାହିଁ ।

**ଶ୍ରୀ ଚନ୍ଦ୍ରମୋହନ ମହାରଣା ।**

—ତା ୧୦ ନଭେମ୍ବର, ୧୮୯୭ ମସିହାର "ନବସମ୍ବାଦ"



* 'ସଂସ୍କାରକ'ରେ ନାରଦ ଯେଉଁ ସଂଜ୍ଞା ପରିବର୍ତ୍ତନ କରିବା ବିଷୟ ଲେଖି-ଅଛନ୍ତି, ତାହା ସମ୍ପୂର୍ଣ୍ଣ ମିଥ୍ୟା ଅଟେ । କେବଳ ଲୋକଙ୍କୁ ଗାଳିଦେବା ଉଦ୍ଦେଶ୍ୟରେ ସେପରି ଲେଖା ହୋଇଅଛି । ଯେଉଁମାନଙ୍କର ନାମ ଉଲ୍ଲେଖ କରାହୋଇଅଛି, ସେମାନେ କେହି କୌଣସି ଉପାଧି ବଦଳାଇ ନାହାନ୍ତି, ଅନୁସନ୍ଧାନ କଲେ ଏହାର ଯଥେଷ୍ଟ ପ୍ରମାଣ ପାଇ ପାରିବେ ।

—ସଂସ୍କାରକର ସମ୍ପାଦକ ।

## ୨—ଛ ରାଗର ଜନ୍ମ ଓ ବଂଶ-ବିବରଣ

ସପ୍ତସ୍ୱର ମଧ୍ୟରେ ଏକସ୍ୱର ଅର୍ଥାତ୍ ନିଷାଦ ନିଃସନ୍ତାନ; ଅପର ଛଅଟିରୁ ଛଅ ରାଗର ଉତ୍ପତ୍ତି ହୋଇଅଛି । ଯଥା—ଷଡ଼ଜରୁ ଭୈରବ, ଋଷଭରୁ ମାଲକୋଶ ବା ମାଳବ । ଗାନ୍ଧାରରୁ ହିନ୍ଦୋଲ, ମଧ୍ୟମରୁ ଦୀପକ, ପଞ୍ଚମରୁ ମେଘ, ଏବଂ ଧୈବତରୁ ଶ୍ରୀ । ଏହି ଛ ରାଗ ତିନି ବଂଶରେ ବିଭକ୍ତ ହୋଇଅଛି, ଯଥା—ଓଡ଼ବ, ଖାଡ଼ବ, ସମ୍ପୂର୍ଣ୍ଣ; ଅଥବା ଓଡ଼, ଖାଡ଼, ସମ୍ପୂରଣ । ହିନ୍ଦୋଲ ଓ ମାଲକୋଶ ରାଗରେ ପାଞ୍ଚଟି ସ୍ୱର ବ୍ୟବହୃତ ହୁଏ ବୋଲି, ସେ ଦୁଇଟି ଓଡ଼ ବଂଶୀୟ ବୋଲି ଅଭିହିତ; ମେଘରେ ଛଅଟି ସ୍ୱରର ବ୍ୟବହାର ହେବାରୁ ତାହା ଖାଡ଼ ବଂଶୀୟ; ଏବଂ ଭୈରବ, ଦୀପକ ଓ ଶ୍ରୀ ରାଗରେ ସାତଟି ସ୍ୱରର ପ୍ରୟୋଗ ହୁଏ ବୋଲି ସେମାନେ ସମ୍ପୂରଣ ବଂଶୀୟ ବୋଲି ଆଖ୍ୟାତ । ଓଡ଼ ବଂଶୀୟ ରାଗଦ୍ୱୟ ଋଷଭ-ପଞ୍ଚମ-ବର୍ଜିତ; ଖାଡ଼ ବଂଶୀୟ ରାଗଟି ଧୈବତ-ରହିତ । ଏହି ଛ ରାଗର ପରସ୍ପର ସଂଯୋଗରେ ଉପରାଗ ଓ ଉପରାଗିଣୀର ବୃଦ୍ଧି ହୋଇଅଛି । ନାରଦ ପୁରାଣରେ ଲିଖିତ ଅଛି ଯେ ଏହି ତିନି ବଂଶରୁ ଚୌଦନଟି ରାଗ-ରାଗିଣୀର ସୃଷ୍ଟି ହୋଇଅଛି ।

ପ୍ରାଚୀନ ସଙ୍ଗୀତବେତ୍ତାମାନଙ୍କ ମଧ୍ୟରେ ରାଗରାଗିଣୀ ଘଟିତ ଅନେକ ମତଭେଦ ଦୃଷ୍ଟ ହୁଏ । ସଙ୍ଗୀତବିତ୍ ମୀରବାଖାଁ ଭୈରବ ରାଗରେ ରେଓପା ପରିତ୍ୟାଗ କରି ଗାନ କରିବାକୁ ବିଧି ଦେଇଅଛନ୍ତି । କିନ୍ତୁ ରାଗ ଗ୍ରନ୍ଥକାର ସୋମେଶ୍ୱର ରେଓପା ପରିତ୍ୟାଗ କରିବାକୁ କହିନାହାନ୍ତି ।



## ୩—ରାଗାଦିର ପରିବାର ବର୍ଣ୍ଣନ

ଅସ୍ମଦ୍ ଦେଶରେ ସହସ୍ର ସହସ୍ର ରାଗରାଗିଣୀର ବ୍ୟବହାର ଥିଲି, କିନ୍ତୁ ବର୍ତ୍ତମାନ ନ୍ୟୂନାଧିକ ଏକଶତ ଷଡ଼କଂଶତି ମାତ୍ର ପ୍ରଚଳିତ ଅଛି; ଆଉ ସମୁଦାୟ ପ୍ରାୟ ଲୁପ୍ତ ହୋଇଅଛି । ପ୍ରତ୍ୟେକ ରାଗର ଛ ଭାର୍ଯ୍ୟା, ଛ ପୁତ୍ର, ଛ ପୁତ୍ରବଧୂ, ଏକ ସଖା ଓ ଏକ ସଖୀ । ଏହି ରୂପେ ପ୍ରତି ରାଗର ବିଂଶତି, ଏବଂ ଛ ରାଗର ଏକଶତ ଷଡ଼ ବିଂଶତି । ଆଦି ଛ ରାଗର ନାମ ସମ୍ବନ୍ଧରେ ଗ୍ରନ୍ଥକାରମାନଙ୍କର କିଛି ଅନୈକ୍ୟ ଦେଖାଯାଏ, ଯଥା—ବ୍ରହ୍ମାର ମତାନୁସାରେ— ଶ୍ରୀ, ବସନ୍ତ, ପଞ୍ଚମ, ଭୈରବ, ମେଘ, ବୃହନ୍ନଟ ବା ବୃହନ୍ନଟ ବା ନଟ-ନାରାୟଣ ।

ଭରତ ମତରେ—ଭୈରବ, ମାଲକୋଣ, ହିନ୍ଦୋଲ, ଦୀପକ, ଶ୍ରୀ ଓ ମେଘ ।

ହନୁମନ୍ତରେ— ,, ,,

ସୋମେଶ୍ୱର—ଭୈରବ, ମାଲବ, ଶ୍ରୀ, ହିନ୍ଦୋଲ, ଦୀପକ ଓ ମେଘ ।

ମତାନ୍ତରେ—ବସନ୍ତ, ବୃହନ୍ନଟ, ମଲ୍ହାର, ମାଲବ, ପ୍ରଦୀପ, କୌଶିକ ।

ବ୍ରହ୍ମା ମତରେ—

(ଅସମ୍ପୂର୍ଣ୍ଣ)

## ୪—ପତ୍ର

ବାଲେଶ୍ୱରର ରାଜା ଶ୍ୟାମାନନ୍ଦ ଦେ (ରାଜା ବାହାଦୂର ବୈକୁଣ୍ଠନାଥ ଦେଙ୍କ ପିତୃଦେବ)ଙ୍କ ମୃତ୍ୟୁରେ—

ଶ୍ରୁତଂ ମୟା ବଂଶୋପାଧି ଧାରଣାଦ୍ଦେ-କୁଲ ପ୍ରସୂତେନ ଶ୍ରୀମତା ଶ୍ୟାମାନନ୍ଦେନ ବାଲେଶ୍ୱର ନଗରେ ଯୁବକ—ସୁରଣାର୍ଥଂ ସଂସ୍କୃତ ବିଦ୍ୟାଲୟଃ ସ୍ଥାପିତବ୍ୟଃ । ସାଧ୍ୱେବୈତତ୍ । ନିଃସନ୍ଦେହମବଧାରିତ ମାଧୁନିକୈଃ ନିଖିଲୈର୍ଭାଷାଭିଜ୍ଞୈଃ, ଜଗତ ପ୍ରଚଳିତାନାଂ ଭାଷୋ ଭାଷାନାଂ ସଂସ୍କୃତମେବ ପ୍ରସୂତିଃ । ଅସ୍ମାଭିସ୍ତୁ ଭାରତବାସିଭିସ୍ତତ୍ତୁ ଦେବବାଣୀତ୍ୟୁଚ୍ୟତେ । ବାଦ୍ୟଂ ଦୃଶ୍ୟତେ ସଂସ୍କୃତ କବିତାନାମଲୌକିକଂ ମାଧୁର୍ଯ୍ୟ । ଅତଏବୋଚ୍ୟତେ ମୟା କଷ୍ଟିତ୍ ସମାନବ୍ୟସ୍ୟ ସାଧ୍ୟଂ ଜନହିତକରଂ ସାଧୁକାର୍ଯ୍ୟମ୍ । ପ୍ରାର୍ଥୟାମୋବୟମୁତ୍କଳବାସିନୋ ଜଗଦୀଶଂ, ଭବତୁ ନାମୈତସ୍ୟ ମହାପୁରୁଷସ୍ୟ ସଦୃଶୈର୍ଜନହିତକରୈଃ ସାଧୁକାର୍ଯ୍ୟୈଃ ସଂଯୁକ୍ତମପୁନର ବିଚ୍ଛେଦୀୟ୍ୟ ।

ଚନ୍ଦ୍ରମୋହନ ମହାରଣା

"ସମ୍ପାରକ"—୪ର୍ଥ ଖଣ୍ଡ/୮ମ ସଖ୍ୟା-ପୃ ୬୮

## ୫—ସ୍ୱାଗତ ସଙ୍ଗୀତ

ରେଭେନ୍‌ସା ବାଳିକା ଉଚ୍ଚ ଇଂରାଜୀ ବିଦ୍ୟାଳୟର ସହକାରୀ ପ୍ରଧାନ ଶିକ୍ଷୟିତ୍ରୀ ମିସ୍ ନିର୍ମଳା ନାୟକଙ୍କ ନିବେଦନ କ୍ରମେ ସ୍କୁଲର ପୁରସ୍କାର-ବିତରଣୀ ଉତ୍ସବ ପାଇଁ ୧୯୧୬ ମସିହାରେ ଚନ୍ଦ୍ରମୋହନ ମହାରଣା ଲେଖିଥିଲେ :—

ଆଜ ଶୁଭ ଦିନେ ଆନନ୍ଦ ଭବନେ
ଆହା କି ମଧୁର ମେଳନ
ଅନ୍ତରେ ଅନ୍ତରେ ବାଜଇ ମଧୁର ନିକ୍ୱଣ ।

ବାଣୀ ବୀଣାପାଣି ଶ୍ୱେତ ସରୋଜେ
ସ୍ୱରୂପ ସମ୍ଭାରେ ଦେଖ କିବା ବିଜେ ।
ହରଷେ, ଆବେଶେ
ଝଲସଇ ସଭା-ଭବନ ।
ଉଦାର ହୃଦୟ ପ୍ରଶାନ୍ତ ମୂରତି
ଦେଖ ଉଚ୍ଚାସନେ ବିଜେ ସଭାପତି
ଶ୍ରୀକରୁଁ, ଅନ୍ତରୁ
ହେବ ପୁରସ୍କାର-ବଣ୍ଟନ ।
ଆସ ସର୍ବେ ଆସ ଫିଟାଇ ଅନ୍ତର
ଗାଇବା ବାଣୀଙ୍କ ମହିମା ନିକର
ଭକତିରେ, ପୂଜିବା
ବରଦା ଅଭୟ ଚରଣ ॥

## ୭—ନିର୍ବାସିତା ସୀତାର ସ୍ୱଗତ

( ରାଗିଣୀ-ଭୈରବୀ-ତାଳ-ଏକତାଳି )

ଲଲାଟ ଲେଖ ବଜ୍ରରେ ଲେଖା କେ ବଳୀଆର
କରେ ତାହା ଆନ ।
ଯା ହେବାର ଥିଲା ହେଲାଣି ତ ତାହା
କାହାର ଦିନ ଯାଇଛି ସମାନ ! ।[ଘୋଷା ।
ପିତା ମୋ ମିଥିଳା-ନରେଶ ରାଜର୍ଷି
ବଧୂ ରଘୁକୁଳେ ହେଲଇଁ,
ମୋ ନାଥ ବୀରେନ୍ଦ୍ର ଜଗନ୍ନାଥ ତୁମ୍ଭେ,
କେ ଥିଲା କହ ମୋହର ସମାନ । ୧ ।
ମହାରାଜ ତୁମ୍ଭେ ମହାରାଣୀ ବୋଲି
ସୁଖୀ ମଣି ନାହିଁ ମୋତେ ମୁଁ,
ସେ ପାଦ-ପଙ୍କଜ ସ୍ୱହସ୍ତେ ସେବଣ
ପରମାନନ୍ଦେ ଥିଲି ଦାସୀ ଜାଣ । ୨ ।

ପ୍ରଜାରଞ୍ଜନଟି ପ୍ରଜାନାଥ-ବ୍ରତ
ଭଲେ ଜାଣିଅଛ ରାଜେନ୍ଦ୍ର,
ପ୍ରଜା-ଅପବାଦ-ନିଦାରୁଣ-ବାତେ
ଉଡ଼ିଲା ପ୍ରୀତି ତୁଷାର ସମାନ । ୩ ।
ଏ ଗର୍ବେ ଧରଛୁ, ସେ ତୁମ୍ଭର ପ୍ରଜା,
ଯତନେ ଥିବ ମୁଁ ସମ୍ପାଦ
ହେଲେକ ଭୂମିଷ୍ଠ ନିଅ ନିଜ ବାସେ
ସେ ପାଇଁ କାହିଁ ଏ ବିଜନେ ସ୍ଥାନ । ୪ ।
କିବା ଜନପଦ କିବା ବନସ୍ଥଳୀ
ସବୁ ହେ ରାଜେନ୍ଦ୍ର ତୁମ୍ଭର,
ଥିଲେ ଯହିଁ ତହିଁ ମୁଁ ତୁମ୍ଭର ପ୍ରଜା,
ସେ ପଦେ ଥିବ ଏ ଚିତ୍ତ ଧିଆନ । ୫ ।
ସତୀ ରମଣୀର ପତି ହିଁ ଦେବତା
ସତୀ-ଗତି ପତି କେବଳ,
ହୃଦେ ଏ ବିଜନେ ପୂଜି ପତି-ପାଦ
ଯାପିବି ବାଞ୍ଛା ଏ ଶେଷ ଜୀବନ । ୬ ।
ବନେ ବାସିନୀର ଯେ ଅବା ବାସନା
ଭାଗୀରଥୀ-ନୀରେ ତେଜିଛୁ,
ଏତିକ ମାଗୁଣି ସେ ପଦ୍ମର ତଳେ
ଦିଅ ହେ ଲଭେ ମନେ ମନେ ସ୍ଥାନ । ୭ ।
( ଉତ୍କଳ ସାହିତ୍ୟ, ୪ର୍ଥ ବର୍ଷ, ୬ଷ୍ଠ ସଂଖ୍ୟା—ପୃ୪୭,
ଫାଲ୍‌ଗୁନ, ୧୩୦୭)

## ୭—କପିଳାସ

× × ×
× × ×

ପ୍ରକୃତି ମଞ୍ଜୁଳା ବୋଲଇ "ଶୁଣ ମୋହର କଥା,
ନିସ୍ତନ ଦେଇଛି ବିଧାତା, କର ତା ସାର୍ଥକତା ।"
"କବି ଅତିରିକ୍ତେ" ନ ମଣ ଅନଭିଜ୍ଞ ପାଠକ !
ଅନୁଭବ କାଲେ ରହିବ, ତୁମ୍ଭେ ଅବିବେଚକ ।

ଭାବ-ସମୁଦ୍ରରୁ କଣିକେ ଜିହ୍ୱା ବଖାଣେ ସିନା,
ଉଚ୍ଚ ଭାବଯାକ ବ୍ୟାଖ୍ୟାତ ବର୍ଣ୍ଣ-ରସନା ବିନା।
ସଜୀବ-ନିର୍ଜୀବେ କହୁଛନ୍ତି କଥା ଯେଝା ଭାଷାରେ;
ବୁଝଇ ସେ କଥା ବୁଝିବା ଲୋକ ନିଜ ଭାଷାରେ।
କବିର ଏ ମିଥ୍ୟା ପ୍ରବୃତ୍ତି ଅନଭିଜ୍ଞେ ବୋଲିବେ,
ଜନନୀ ପ୍ରେମିକା ମାନବେ କବି-ସାକ୍ଷୀ ହୋଇବେ।
କ୍ରମେ ଆସି ଊର୍ଦ୍ଧ୍ୱ ଗଗନେ ଶଶଧର ବସିଲା,
ପ୍ରାଙ୍ଗଣେ ମୋହିନୀ କୌମୁଦୀ-ବାଳା ଆସି ଖେଳିଲା।
ଚଉଦିଗୁ ଜଳଦ-ବିତାନ-ଛାୟା ପଡ଼ି ଯାଉଅଛି,
ଲୁଚ-କାଳି ଅବା କୌମୁଦୀ ଖେଳେ, ମନ ପାଞ୍ଚୁଛି।
ଛାୟା-କୌମୁଦୀରେ ଶବଦ ସେହି ଗିରି-ସନ୍ଧିରେ
ଦେହିରୁ ପଳାଇ ଚପଳ ଆତ୍ମା ଖେଳେ ଅସ୍ଥିରେ।

× × ×

ଆଶ୍ରମ-ମାଧୁରୀ-ମୋହନ ଛାଡ଼ି ପ୍ରକୃତ ଦେଶ
ଅନୁକରି ଆଦ୍ୟେ ଲେଉଟିଲି ଏବେ ନିଦ୍ରା-ଆବେଶ।
ନିମେଷ ପରଏ ରଜନୀ-ଶେଷ ଶେଷ ହୋଇଲା,
ପ୍ରକୃତି ଅଶେଷ ମୁଖରେ ବୋଲେ "ରାତି ପାହିଲା"।
ବୁଡ଼ି ଯାଇଅଛି ଶଶାଙ୍କ ଏବେ ପଶ୍ଚିମାଶାରେ,
ପାତଳିଛି ନିଶା-କାଳିମା ଫିକା ପ୍ରାଚୀ-ଆଶାରେ,
ଦୋଳୁଛି ଦୋଳୁଛି ଗୁବାକ-ଚୂଡ଼ା-ଉଷା-ସମୀରେ;
ସୁରଭି ନିଶ୍ୱାସ ଛାଡ଼ନ୍ତି ଫୁଲେ ନିଜ କୁଟୀରେ;
ସେ ଦିବ୍ୟ ସୁରଭି ବିତରି ସମୀରଣ ବୋଲଇ
"ଯେବେ ଉପହାର ଅତିଥି! ଉଷା ଦେଇ ଅଛଇ।"
ସହଯାତ୍ରୀ ଯୁବାଜନଙ୍କ ମୁଖୁ ଏହା ଶୁଣିଲି,
"କି ସୁଖୁଁ ବଞ୍ଚିତ ହୋଇଲି ଆହା! କ୍ଷଣେ ଭାଳିଲି।
ହରଙ୍କ ସୁରଭି ପ୍ରସାଦ ଗନ୍ଧବହ! ବିତରୁ
ସକଳେ; କାଲିଗି ବଞ୍ଚିତ ଦୀନ ସେ ପ୍ରସାଦରୁ!
ସାଧାରଣ ବିଭୁ-ପ୍ରସାଦ; ଯଦି କରି ଶଠତା
ଗନ୍ଧବହ! ନାହିଁ ଦେଲୁ ତ, କପାଁ ବୃଥା ଏ ବ୍ୟଥା।

× × ×

ଶ୍ୟାମ ଉତ୍ତରୀୟ କ୍ଷଣକେ ଉଷା ଦେଲା ପକାଇ;
ଯେ ଯାହା ଆଳସ୍ୟେ ତରୀଏ ତେଣେ ଗଲେ ପଳାଇ
ଗିରି-ଅନ୍ତରାଳେ ଅରୁଣ ଉଠି ଅଛଇ ଲୁଚି,
ନୀଳ ଅଭିନବ ଗଗନ-କାନ୍ତି ଦେଉଛି ସୂଚି,
ତରୁଣ-ଅରୁଣ-ଆଲୋକେ ସବେ ହେଲା ପ୍ରକଟ,
ବାସନ୍ତୀ ପ୍ରକୃତି ଲାବଣ୍ୟେ ଦିଶେ କେଡ଼େ ଚଟକ ।
ଦୂର ସନ୍ନିହିତ ଲଳିତ ଗିରି-କୁଞ୍ଜ-କୋଳରୁ
ପ୍ରଭାତୀ-ପୀୟୂଷ ଢାଳୁଛି ପକ୍ଷୀ କଳକଣ୍ଠରୁ;
କେତେ ଅଭିନବ ରଙ୍ଗରେ ବହେ ସେ ସୁଧା-ଧାରା,
ସୁଖ ଶ୍ରବଣରୁ ହୋଇଛୁ ଆଜ ମୋହନ କାରା ।
ବାନର-ଶିଶୁଏ ବାନରୀ-କୋଳେ ଦନ୍ତ ଦେଖାଇ
ଉଠିଲେ ଚିତ୍କାରି, ସେ ଛଳୀଯାକ ଦେଲେ ବୁଡ଼ାଇ ।
ପିପାସୁ ପ୍ରକୃତି-ସେବକ ଦେଖେ ନୟନ ଫେଡ଼ି
ଫିଟାଇ ଥୋଇଛି ପ୍ରକୃତି ଆଗେ ମାଧୁରୀ-ପେଡ଼ି;
ଗୁବାକ, ବକୁଳ, ଅଶୋକ, ଚମ୍ପା, ଚୂତ ଅପରେ,
ତରୁବର ଛନ୍ତି ବିରାଜି ଗିରି-ନିତମ୍ବ ପରେ ।
ଶ୍ୟାମଳ ଗହଳ ପଲ୍ଲବେ ମହୀରୁହଙ୍କ କାୟା
ରଚିତ କରିଛି ଚତ୍ୱର ସ୍ନିଗ୍ଧ ନିବିଡ଼ ଛାୟା ।
କେତେ ଗୁଳ୍ମ କେତେ ଲତିକା ରାଜେ ଗିରି-ଶରୀରେ;
କେତେ କୁଞ୍ଜ-କୁଟି ପ୍ରକୃତି ରହିଅଛି ତହିଁରେ ।
ଅଶୋକ, ଯୂଥିକା, ନିଆଳୀ, ଗୁଡ଼ବାଣ, ଗୋଲାପ
ବକୁଳ, ଟଗର, ଚମ୍ପକ ଫୁଟେ ପୁଷ୍ପ-କଳାପ;
ଶିଖର-ଶିଖରେ ସୁରଭି ଶିଖରିଣୀର ଶୋଭା
ଖର୍ବାଙ୍ଗୀ ପଦ୍ମିନୀ ତରୁଣୀ ପ୍ରାୟେ ମାନସ-ଲୋଭା;
ସଦା ସୋହାଗିନୀ ଅରଣ୍ୟ-ବେଶେ ଦିଶଇ ତୋରା,
ଗୃହ-ସୋହାଗିନୀ-କୁଶଳ ପୁଚ୍ଛେ ଗୃହୀଙ୍କି ପରା !
ଶୁଣି କମନୀୟ ଝରଣା ବହିଅଛି ଚତ୍ୱରେ;
"ଝରଣା କି ହରି-କରୁଣା" ଏ ବିକଳ୍ପ ମନରେ ।
ଅବଗାହି ସେହି ମହିମା-ଭରା ପୁଣ୍ୟ ଝରଣେ
ମନ୍ଦାକିନୀ-ସ୍ନାନ-ସୁକୃତି ଧୀନ ପାଇଲା ମଣେ ।

କେତେ ଜଳ କାହିଁ ଧରିରେ କେତେ ଦେଖିବା କାହିଁ,
କି ମହିମା ସେହି ସଲିଳେ ଭୁଲି ପାରୁ ତ ନାହିଁ ।
ଚହିର ନିର୍ଗମି ନିର୍ଝର ରଙ୍ଗେ ବହି ଯାଉଛି,
କେତେବେଳେ ଅବା ଦିଶୁଛି, କେବେ ଯାଉଛି ଲୁଚି;
ଯହିଁ ବହିଯାଏ ଝରଣା, ଘୁଞ୍ଚେ କୁହ୍ଲା-ଅବିର;
ଉଦ୍ଭିଦ-ଶିଶୁକି ଦିଏ ସେ ଗିରୁ ନବୀନ ଜୀବ ।
ସଂସାର-ବିରାଗୀ ପୁରୁଷ-ବର ନିବସେ ତହିଁ;
ନ ମୋହି ତାହାର ଭିଆଣେ ମନ ନ ପାରେ ରହି ।
ହୃଦେ ଅନୁରାଗ ଯେତକ ଅଧେ ବନ୍ଧୁ-ପଦରେ,
ଅଧେ ସେ ବଞ୍ଚାଣୀ ଦେଇଛି ରମ୍ୟ-ଉପବନରେ ।
ସୁବାସ ସୁରଙ୍ଗ ସୁରସ ସ୍ଥଳୀ ଛୁଇ ଯାଇଛି;
ପ୍ରତିପର୍ଣ୍ଣେ ତହିଁ ସୁରୁଚି-ଯତ୍ନ ଲେଖା ହୋଇଛି ।
ପୟଃ-ପ୍ରଣାଳୀରେ ଝରଣା ଉପବନେ ଭ୍ରମଇ;
ପାରିବ କି ବାଣୀ ବଖାଣି ଆଖି ଦେଖେ ଯେ ଛୁଇ ।
ବାଳଚୂତ, ବାଳ ଦାଳିମ, ବାଳ ଗୁବାକ ପନ୍ତି;
ବାଳ ନାରିକେଳ, ଅଶୋକ ନବଭାଗେ ବଢ଼ନ୍ତି;
ସୁରଙ୍ଗ ମରିଚେ ଧାଆନ୍ତି ପ୍ରବାଳକୁ ଜିଣିବେ;
ଫୁଲ-କାମିନୀଏ ଗରବେ କିବା ଛୁଟି ପଡ଼ିବେ,
ଅପର ସକଳେ ଜିଣିଛି ଏକା କଦଳୀ-ବନ,
ହାରିଛି ତା'ଠାରେ ଗଣନା, ହାରିଅଛି ଦର୍ଶନ;
ଦେଖି ମନେ ହୁଏ, ହରୁଁ ବା ପାଇ ଅଛନ୍ତି ବର
ପିଇ ସେ ନିର୍ଝର-ଅମୃତ ସର୍ବେ ହେବେ ଅମର ।
ଗିରି-ଲଲାଟରେ ଶୋଭୁଛି ଜୀର୍ଣ୍ଣ-ପର୍ଣ୍ଣ-କୁଟୀର;
କିମ୍ବଦନ୍ତି, ଥିଲେ ଯୋଗୀଏ , ଛାଡ଼ିଲେଣି ଶରୀର ।
ଶିଖର-ଶିଖର ସରଳ ଦ୍ରୁମେ ସଦାମଣ୍ଡିତ;
ଲଭେ ତରୁ କାହୁଁ ଜୀବନ ମନ ଭାବ ବିସ୍ମିତ ।
ଦାବାନଳେ ସର୍ବ ଶରୀର ଦଗ୍ଧ ପାଦପଙ୍କର,
ମଳୟ ଅନିଳ ପଲ୍ଲବେ ମଣ୍ଡିଅଛି ଶିଖର ।
ବନ୍ଧୁର ପାଷାଣେ ଦୁର୍ଗମ ଗିରି-ଚୂଡ଼ା-ପ୍ରଦେଶ
ଅନାବୃତ-ପଦ-ସଞ୍ଚାରେ ଦିଏ ବହୁତ କ୍ଲେଶ ।
ଲତା-କୁଞ୍ଜଟିଏ ଦେଖିଣ ଗିରି-ଶିରୋଭୂଷଣ
ଛାଡ଼ିବ କି ଅବା ଛାଡ଼ିବ ନାହିଁ ପାଞ୍ଚଇ ମନ ।

ଚଉପାଶେ ଦେଖେ ନୟନ ଅତ୍ରିକମି ସେ ଗିରି
ବନ-ଜନପଦ—ପନ୍ତାରେ ଶୋହେ ପ୍ରକୃତି-ଶିରୀ ।
ଦୂର ଅଟ୍ଟାଳିକା କୁଟୀର, ଦୀର୍ଘିକା ବା ପଲ୍ୱଳ,
ଶ୍ୟାମିକା-ସନ୍ତାନେ-ବିଲୀନ ଦିଶେ ଏକ ସକଳ ।
ସଖୀଗଣ ସହ କେବଳ ମହାନଦୀ ଦିଶଇ
କୁଟିଳ, ବିଦୂର ବାଲୁକା-ଶେଯେ ଖେଳୁ ଅଛଇ ।
କମେ ଧରିଛବି ଅସ୍ପଷ୍ଟ; ଶେଷେ ଆଶା-ବଳୟ,
ଯହିଁ ଦିଶେ ଯେହ୍ନେ ଲଭିଛି ଧରା ଗଗନେ ଲୟ ।
କଖିଲ ଧରଣୀ ଦିଶଇ ମରୁ ନୀରବ ଛେଦ;
ଭୁଲିଯାଏ ତାନ ମାଠେ ଯେ କେତେ ନୀଚ ପ୍ରଭେଦ ।
ଏ ଉଦାସ ଛବି ଦେଖିଲେ ଆତ୍ମା ଦେହ ଗୁଡ଼ଣ
କାହିଁ ମରୁ-ଦୀପ ଲୋଡ଼ଇ, କାହିଁ ହୋଇବ ଲୀନ ।
ଏସନ ମାଧୁରୀ-ମାଳାରେ 'ରମ୍ୟ ଯେ ପୁଣ୍ୟ ଧାମ
ବିରାଜୁ ଅଛଇ,ପ୍ରଥିତ କପିଳାସ ତା ନାମ ।
ଗିରି-କୋଳେ ରାଜୁଅଛନ୍ତି ଦେବ ଚନ୍ଦ୍ରଶିଖର,
ସ୍ୱଭାବେ ପବିତ୍ର ସେ ଗିରି କରି ପବିତ୍ରତର ।
ଯେ ମାଧୁରୀ ଆଖି ରମିଲି, ଖୀଣା ତୂଳି ଥରଇ,
କାହିଁବା ଶକତି ଏସନ, ତାହା ଚିତ୍ରି ପାରଇ ?
ସେ ମାଧୁରୀ ରୂପେ ମୋହନୀ, ସ୍ୱଭାବରେ ସରଳା,
ଗୁଣେ ସେ ପାବନୀ, ବିଭବେ ଅବା ସ୍ୱୟଂ କମଳା,
ତେସନ ମାଧୁରୀ ନୁହଇ ପର୍ଯ୍ୟାପ୍ତ ହେବାର;
ଦେଖିଲେ ବାରେ ସେ ସ୍ମୃତିକି ସଦା ହୋଇବ ହାର ।
ଧନ୍ୟ ସେହି ବିଶ୍ୱବିଧାଣୀ କଲା ଏହା ରଚନ;
ଧନ୍ୟ ସେ କରୁଣା, ସାର୍ଥକ କଲା ଦୀନ ନୟନ ।
ସ୍ମରିଲେ ରଚନା, କରୁଣ ହୃଦ ଯାଏ ତରଳି,
କି ଲାଗି କେ ଜାଣେ ପଡ଼ଇ ବାଷ୍ପ-ବାରି ଉଚ୍ଛୁଳି ।

ଶ୍ରୀ ଚନ୍ଦ୍ରମୋହନ ମହାରଣା

ଉତ୍କଳ ପ୍ରଭା—୨ୟ ଭାଗ/୯ମ ସଂଖ୍ୟା

ବି.ଦ୍ର—ଉକ୍ତ କବିତାର ପ୍ରଥମାଂଶଟି ପ୍ରାପ୍ତ ୨୮ ପଦ ନାହିଁ । 'ଉତ୍କଳ ପ୍ରଭା'ର ସଂଖ୍ୟାଗୁଡ଼ିକ ଆଜି ଦୁଷ୍ପ୍ରାପ୍ୟ ଥିବାରୁ ଏହା ମିଳିବା ସମ୍ଭବ ନୁହେଁ ।
—ସମ୍ପାଦକ ଶ୍ରୀ ଅରବିନ୍ଦ ଗିରି ।

## ୮—ଯେ ଗଲ୍‌ଣି ସେ ତ ଆଉ ନୁହେଁ ଫେରିବାର !

ଛି ଛି ଲୋ ନିଷ୍ଠୁର ! ତୋର କି କୁଟିଳ ଗତି !
ହୃଦେ ବାଦ ସାଧିବାରେ କପାଁ ତୋର ରତି ?
ଦସ୍ୟୁରେ, ବିପଦ ଦେଖି, ଡରିଲେ ଭଗାଣି;
ତୋ ଭଗାରପଣ କିନ୍ତୁ ନ ବୁଝିଲି ପାଣି ।
କଠୁରତା-ପ୍ରତିଶବ୍ଦ ଅଟେ କି ତୋ ନାମ,
ନୋହିଲେ ତୋ ଗତି କପାଁ ସତତ ହିଁ ବାମ ?
ପରଶ-ମଧୁର ସ୍ନିଗ୍ଧ କେତେ ଫୁଲ-କଳି
ଦେଇ ନାହିଁରେ କଠୁରେ ! ତୋ ଚରଣେ ଦଳି !
ସେ ଫୁଲ-ମାଧୁରୀ ଆହ୍ୱା ଫେରି ଆସନ୍ତା କି !
କଠୁରୀ, କୁଟିଳା ବୋଲି ତୋତେ ମୁଁ ନ ଡାକି
ନର୍ମଦା, ରସିକା ନାମ ତୋର ରଖିଥାନ୍ତି,
ମାନସ-ମନ୍ଦିରେ ଆସି ସଦା ପୂଜୁଥାନ୍ତି ।
ଦେଖିଲେ ଅତୀତ-ପଟ ବିଦରଇ ମନ,
ପାପ ବୋଲି ମନେ-ହୁଏ ତୋ ନାମ-ସ୍ମରଣ ।
କି କାମ ସେ ନାମ ସ୍ମରି, ତୋର ଗୁଣ ଗାଇ ?
ଅନଳ ସେ ନାମ ଦେଇ ଉଦରେ ପକାଉ ।
ରେ ଅତୀତ ! ତୋର ଚରିତ କି ବିସ୍ମୟକର !
ସୁଖ ଦୁଃଖ ଏକାବେଳେ ଜନ୍ମାଉ ମନର
ସୁଖ, ସୁଖ ସ୍ମରି; ଦୁଃଖ, ସୁଖ-ଅବସାନେ ।
ସକଳ ଦିବସ କପାଁ ନ ଯାଏ ସମାନେ ?
ଅତୀତ ! ତୋ ବକ୍ଷୁ ପଟୁଁ ଗୋଟିଏ ପଟରେ
ପଡ଼ନ୍ତେ ଏ ନେତ୍ର ଆଜି, ଶୈଥିଲ୍ୟ-ସାଗରେ
ବୁଡ଼ିଯାଇ ଅଛି ଅଙ୍ଗ, ମାନସ ଉଦ୍ଭ୍ରାନ୍ତ ।
କ୍ଷଣିରେ ସମ୍ଭବେ—କାହିଁ ରବିର ଉଦୟ !!
ଜୀବନ-ନାଟକେ ଆହ୍ୱା କେଡ଼େ ସୁଲଳିତ
ବାଲ୍ୟ-ଅଙ୍କ, ବାଲ୍ୟ-ଲୀଳା ଛନ୍ଦରେ ରଚିତ ।
ବାଲ୍ୟର ସେ ସରଳତା ସେ ଭାବ ଅ-ମଳ
ସ୍ୱପ୍ନ ପରି ତିରୋହିତ ହୋଇଛି ସକଳ ।

କାହିଁ ସେ ପୀରତି ଏବେ ବାଲ୍ୟ ଯା ବହିଲା ?
ସେ ରତ୍ନ ଏ ଧାମଠାରୁ କେ କପାଁ ହରିଲା ?
ରହିଛ ତ ପ୍ରିୟତମ, ମୁହିଁ ବି ରହିଛି,
ତଥାପି ସେ ପ୍ରୀତିପାଶ ଶିଥିଳ ହୋଇଛି ।
ପ୍ରିୟତମ ମୋତେ ଦେଖେ, ତାହାକୁ ମୁଁ ଦେଖେଁ,
ନେତ୍ରେ ସେ ଚୁମ୍ବକ ଭାବ ତଥାପି ନ ଦେଖେଁ ।
ତଟିନୀ-ବାରଧି କୂଳେ, ମଞ୍ଜୁ ଉପବନେ,
ବିଜନ ପ୍ରାନ୍ତର ଦେଶେ, ବିଜନ ଗହନେ,
ଶାଳି-ରମ୍ୟ କେଦାରରେ, ଦେବ-ଆୟତନେ
ଭ୍ରମଣ ହସ୍ତରେ ହସ୍ତ, ଶୁଚି-ଶାନ୍ତ ମନେ,
ମଧୁର ଆଳାପ କେଳି; ବିଦାୟ କାଳରେ
ମୁଣ୍ଡ ଭଙ୍ଗି ସେ ଚାହାଣି ନୟନ-କୋଣରେ;
ସେହି ଲୀଳା ଖେଳ-ଭାବ; ସେହି ମାନ-କଳି—
ଏମାନ ସ୍ୱପନ, କାହିଁ ଗଲେ ଚଳି !!
ରେ ଆକାଶ ! କହ ଦେଖି, ତୁ ତ ସର୍ବ-ସାକ୍ଷୀ,
ସେ-ଆଭା-ବିଶ୍ୱାନ କପାଁ ଏ ଆଖି, ସେ ଆଖି ?
ସେହି ମୁଁ, ସେହି ସେ, କିନ୍ତୁ କି ଲଗି ବନ୍ଧନ,
ନୁହଇ ତେସନ ଦୃଢ଼ ବାଲ୍ୟରେ ଯେସନ ?
କହ ରେ, ଅନନ୍ତ ତୁହି, ସବୁଠାରେ ଥାଉ,
କାହିଁଗଲା ବାଲ୍ୟ-ଭାବ ? ନ ଫେରିବ ଆଉ ?
ପୀୟୂଷ-କଣା ସେ ଭାବ ଦେଖିଥିଲୁ ଯେହୁ
କହ ଏବେ ଅମ୍ଭ ଭାବ ଫେରାଇଣ ଦେଉ;
ହେଉ କରିଥିବୁଁ କିଛି ଦୋଷ ତା' ପୟରେ,
ଦୁଃଖି କି ସେ ଲଗି ଦଣ୍ଡ ଦେଲୁ ଏ ରୂପରେ;
କ୍ଷମାଶୀଳ ପରା ସେହୁ ? କରି ଦୋଷକ୍ଷୟ
ଫେରାଇ ଦେଲେ ସେ ଭାବ ହେବ କି ଅମିୟ ?
ରେ ବିଧୁ ! ବିରାଜୁଛୁ ତ ଯଥା ପୂରୁବରେ,
ଆନ୍ତର ସେ ଭାବ କପାଁ ନାହିଁ ସେ ରୂପରେ ?
କେବଣ ତସ୍କର ଆସି କହ ରେ କପରି
ଧାନ ଘରୁ ସେ ମାଣିକ୍ୟ କପାଁ ନେଲା ହରି ?

ସୁଧାର ଭଣ୍ଡାର ବୋଲି ନାମ ସୁଧାକର,
ସେ ଗ୍ରବ ସୁଧା କି ନାହିଁ ଭଣ୍ଡାରେ ତୋହର ?
ଥାଏ ଯଦି, ବିଶ୍ୱଯାକ ମୂଲ୍ୟରୂପେ ନେଇ
ପାରିବୁ କି ନାହିଁ କହ ସେ ସୁଧାକୁ ଦେଇ ?
ଅୟି ଶୁଭେ ତାରାଗଣ ! ତୁମ୍ଭମାନଙ୍କୁ କି
ଜଣାନାହିଁ ଦୁଃଖୀକି କେ କଲା ଅତି ଦୁଃଖୀ ?
ଏ ଆଖିରେ ଥିଲା ଯେଉଁ ଆଭା ଚମତ୍କାର,
ତୁମ୍ଭର ସେ ଫିକା ଆଭା ତା-ଠାରେ କି ଛାର ।
ବିଶ୍ୱ-ଆଖିରେ ତପନ ! କହ କେ ପାମର
ହରିଲା ତା ମୂଲ୍ୟ ନିଧି ଏ ମୀନ-ଯୁଗର ?
ତୁ ତ ଜାଣୁ ପୁଣି ଫେରେ ଋତୁ, ମାସ, ଦିନ ;
ସେମିତି କି ନ ଫେରିବ ଆମ୍ଭର ସେ ଦିନ ?
ତେବେ କି ବୃଥା ଏ ଆଶା, ବୃଥା ହାହାକାର !
ଯେ ଗଲାଣି ସେ ତ ଆଉ ନୁହେଁ ଫେରିବାର !!

(ଉତ୍କଳ ପ୍ରଭା, ୧ମ ଭାଗ, ୪ର୍ଥ ସଂଖ୍ୟା)

## ମାଧୁରୀ

ବିଧାତା ଭିଆଣେ ରମଣୀଏ ଅଛି
    ଜଗତ ମନୋମୋହିନୀ,
ଶୁଣିବା ପାଇବା ପାଇଁ ହେଲି ମୁହିଁ
    ଅଧୀର ଦିବା ଯାମିନୀ ।

ଦେଖିଣ ଥିଲି କି କେତେ ଥର, ମାତ୍ର
    ଚିହ୍ନି ତ ନ ଥିଲି ତାକୁ,
ନ ଚିହ୍ନି ନ ଜାଣି, ଶୁଣି ମୁଁ ଅଥୟ
    ତାହା ସଙ୍ଗ ଲଭିବାକୁ ।
ଭାଳୁଁ ଭାଳୁଁ ମନେ ହୋଇଲା ପ୍ରତୀତି
    ନିଶ୍ଚେ ସେ ମିଳିବ ମତେ,
ବିସ୍ମିତ ବସିଲି ମିଳିଲେ ରମଣୀ,
    ରଖିବି କାହିଁ କେମନ୍ତେ ।

ଦେଖିଲେ ତାହାକୁ ଆନ କେହି ଲୋଭେ
କାଲ ଯେସନ ପଲାଇବ,
ଶଙ୍କି, ବସ୍ତୁରଲ୍ଲ ରଖିବି ଏମନ୍ତ
ଠାବେ କେହି ନ ଦେଖିବେ ।

କାହିଁଛୁ ତେସନ ଠାବ ? ମନେ କଲି
ରଖିବି ପଥର ଘରେ;
ଉହୁଁ ଉହୁଁ, ମହା-ପଥର ଘରକୁ
ମାନବେ ନାହିଁ ଡରରେ ।

ବସ୍ତୁରଲ ଲୌହ ସିନ୍ଦୁକ ଭିତରେ
ରଖିବି ମୁଁ ମାଟିତଳେ,
ଜାଣିଛୁ ସିନ୍ଦୁକ ବଳେ ସିନା, ମାତ୍ର
ଜାଣିନାହିଁ କଉଶଳେ ।

ବସ୍ତୁରଲ ତାକୁ ଯତନେ ରଖିବି
ନବଢ଼ ନକୁଞ୍ଜ ବନେ,
ମାତ୍ର ମୁଁ କେସନ ନହିବ ବିଶ୍ୱାସ
ଗ୍ରୀଷ୍ମାଫୁଲ ସମୀରଣେ ?

ଉପବନେ ମଲ୍ଲୀ ମାଲତୀ ଗୋଲାପ
ଗନ୍ଧଲେ ବା ଯୋଇ ଦେବ ;
ମାତ୍ର ଅନୁକ୍ଷଣ ଭ୍ରମୁଥାନ୍ତି ତହିଁ
କେତେ ଉପବନ-ସେବୀ ।

ବସ୍ତୁରଲ ବହୁ ବସନ ଭୂଷଣେ ଦେହେ
ଦେହେ ଥିବ ଯେସନ ;
ମାତ୍ର ଜଗତରେ ବଡ଼ ଲୋଭ ସିନା
ଜନମାନ୍ତ୍ର ଏହି ବେଳ ।

ଅଙ୍ଗେ ଅଙ୍ଗରାଗ ଅବା କାନ୍ତି କରି
ରଖିବି ବା ରମଣୀକ ;
ଡର ହେଲ ମନେ, ଅଧିକ ଅନର୍ଥ
ଏହା ଯେସନ ହୁଏ ଠିକ ।

ଏହି ରୂପେ କେତେ ବସ୍ତୁର ବସ୍ତୁର
ଶେଷେ କଲି ଏହା ସ୍ଥିର

ଗୃହତଳେ ମଣ୍ଡୁ ରମଣୀ-ରତନ
　　　　　　ମୋର ହୃଦୟ-କୁଟୀର ।
ଦରିଦ୍ର କୁଟୀରି ଲିପି ପୋଛି ମୁହିଁ
　　　　　　ଦେଲି ଅତି ଯତନରେ,
ନବକ୍ଷ ଚତ୍ୱରେ ଧ୍ୟାଇ ଆବାହନ
　　　　　　କଲି ସେ ରମଣୀ-ବରେ ।
ସଦ୍‌ଗୁଣୀ ସଜନୀ ସଙ୍ଗେ ସେ ମୋହିନୀ
　　　　　　ଅବତରି ଧୀରେ ଧୀରେ,
ନ କରିଣ ଘୃଣା ରହିଲା ସାମାନ୍ୟ
　　　　　　ମାଟିବେଢ଼ା ସେ କୁଟିରେ
ଚହଲିଲା ପୁଲକେ ହେରି, ବିଶ୍ୱରାଜ-
　　　　　　ଜେମା, ମାଧୁରୀ ତା' ନାମ,
ଦେହେ ଶାନ୍ତ-ଶାଢ଼ୀ ଶିରେ ଭକ୍ତି-ଚୂଡ଼ା,
　　　　　　ଚୁଲେ ପ୍ରୀତି-ପୁଷ୍ପଦାମ ।

ଉତ୍କଳ ସାହିତ୍ୟ ୧ମ ଭାଗ ୧ମ ସଂଖ୍ୟା-୧୮୯୭ଖ୍ରୀ



## ଶ୍ରୀହରିଶରଣମ୍

କଟକ, ୨୪।୧।୦୨

ମହାଶୟ !

ବହୁଦିନ ପୂର୍ବରେ ଖଣ୍ଡିଏ ପତ୍ର ଆପଣଙ୍କ ନିକଟକୁ ଦେଇଥିଲି । ତାହାର ଉତ୍ତର ନ ପାଇବାରୁ ହତାଶ ପ୍ରାପ୍ତ ହୋଇଅଛି । ଏଥି ମଧ୍ୟରେ ଆପଣଙ୍କ ସହ ସାକ୍ଷାତ୍କାର ହୋଇ ନ ଥିବାରୁ ମୋର ସେସବୁ କଥା ଜଣାଇ ପାରିଲି ନାହିଁ । ଆପଣ ପୂର୍ବରୁ ଅବଗତ ଥିବାରୁ ତାହାର ପୁନରୁକ୍ତି ଅନାବଶ୍ୟକ । ଆପଣ ମୋର ହିତାକାଙ୍କ୍ଷୀ ଏବଂ ଉତ୍ସାହଦାତା । ମୁଁ ଆପଣଙ୍କ ଠାରୁ ବିଶେଷ ସାହାଯ୍ୟ-ପ୍ରାପ୍ତିର ସମ୍ପୂର୍ଣ୍ଣ ଆଶା ପୋଷଣ କରିଅଛି । ଶିକ୍ଷା-ବିଭାଗର କର୍ତ୍ତୃପକ୍ଷମାନଙ୍କ ନିକଟରୁ ସାହାଯ୍ୟ ବା ଉତ୍ସାହ ନ ପାଇବାରୁ ସେ ପୁସ୍ତିକାର ସୁପ୍ରଚାର ହୋଇପାରୁ ନାହିଁ । ଆପଣଙ୍କ କୃପାସଲିଳରେ ମୋର ଆଶାଲତା ଫଳବତୀ ହେବ । ବିଶେଷତଃ ଏହି ସମୟ ଉପଯୁକ୍ତ । ବର୍ତ୍ତମାନ ଯଦି ସେ ସମ୍ବନ୍ଧରେ ଅନୁକମ୍ପା ପ୍ରଦର୍ଶନ କରନ୍ତି, ତାହା ହେଲେ ଚିର କୃତାର୍ଥ ହେବି ।

ଏହି ପର୍ଯ୍ୟନ୍ତ ମୋର ଅଧିକାର । ଏତଦ୍‌ବ୍ୟତୀତ ଅନ୍ୟ ଭାଗ୍ୟାୟତ୍ତ । ଈଶ୍ୱରଙ୍କଠାରେ ପ୍ରାର୍ଥନା—ମୋର ଏ ନିବେଦନ ସୁଅବସରରେ ଗୃହୀତ ହେଉ ।

ଆଶା କରେଁ ଆପଣ ବର୍ତ୍ତମାନ ସୁସ୍ଥ ଅଛନ୍ତି । ମୋର ସ୍ୱାସ୍ଥ୍ୟ ଭଲ ଅଛି । ବନ୍ଧୁମାନଙ୍କ ଠାରୁ ମୁଁ ଆପଣଙ୍କର କୁଶଳ ସମ୍ବାଦ ପ୍ରାପ୍ତ ହୋଇଅଛି । ମୁଁ ବର୍ତ୍ତମାନ ଆଗାମୀ ମାସର ୨୮ଶ ଦିବସରେ କାବ୍ୟର ୨ୟ ପରୀକ୍ଷା ଦେବାକୁ ପ୍ରସ୍ତୁତ ହେଉଅଛି । କଟକର ଅନ୍ୟାନ୍ୟ ସମ୍ବାଦ ଭଲ ।

ଆପଣଙ୍କର

ଅନୁଗ୍ରହାକାଙ୍କ୍ଷୀ ସ୍ନେହାଧୀନ

ଶ୍ରୀ ମୃତ୍ୟୁଞ୍ଜୟ ରଥ

## ଓଁ

କଟକ, ୧୬।୮।୦୨

ପ୍ରିୟତମ ଚନ୍ଦ୍ରମୋହନ —

ତୁମ୍ଭ ଲେଖା ପାଠ କରିବା ଦିନଠାରୁ ଚିନ୍ତା କରି କରି ମୁଁ ଅସ୍ଥିର ହୋଇ ପଡ଼ିଲିଣି । ଶ୍ରୀଧର ସ୍ୱାମୀ ରେମୁଣାବାସୀ ଥିଲେ ବିଶ୍ୱାସଯୋଗ୍ୟ ପ୍ରମାଣ କାହିଁ ? ତୁମ୍ଭେ କେବଳ ଶୁଣା କଥା, ଉଡ଼ା କଥା ଲେଖିଅଛ । ମୁଁ ପଚ୍ଛରେଁ ତୁମ୍ଭର ବିଶ୍ୱାସ

କରି ? ତୁମ୍ଭେ ଏ ସମ୍ବନ୍ଧେ ଯାହା କିଛି ଜାଣ, ବଡ଼ ବିସ୍ତାରିତ କରି ମୋତେ ଲେଖ । ମୋହର ଯଦି କିଛି ମାତ୍ର ପ୍ରତ୍ୟୟ ଜନମେ ରେମୁଣା ଯିବି । ସେଠାରେ ଯଦି ଦୁଇ ଚାରି ମାସ ରହିବାକୁ ହୁଏ, ରହିବି । ବିଶେଷ ଅନୁସନ୍ଧାନ କରିବି । ଘଟଣା ସତ୍ୟ ହେଲେ ତାହାଙ୍କ ହସ୍ତାକ୍ଷର ମିଳିପାରେ । ମୋହର ଇଚ୍ଛା ତାହାଙ୍କର ଖ୍ୟାତିଜନକ କିଛି କାର୍ଯ୍ୟ କରାଇବି—କେନ୍ଦୁବିଲ୍ୱ ପରି ସେଠାରେ ଯେମନ୍ତ ଗୋଟିଏ ମେଳା ହୁଏ ସେଥିସକାଶେ ପ୍ରତ୍ୟେକ ଉତ୍କଳପୁତ୍ରର ଯତ୍ନ କରିବା ଉଚିତ । ଏହି ଅଧଃପତିତ ଜାତିକୁଳରେ ଶ୍ରୀଧର ଜନ୍ମଗ୍ରହଣ କରିଥିଲେ,ବିଶ୍ୱାସ କରିବାକୁ ସାହସ ଆସୁନାହିଁ ।

ମୋହିନୀ କଲିକତାରେ Duff Collegeରେ ପଢ଼ୁଅଛି ।

କି ସକାଶେ ସାହିତ୍ୟ ପ୍ରତି ସଂଖ୍ୟାରେ ତୁମ୍ଭର ଲେଖା ଦେଖେଁ ନାହିଁ ? ଉପୟୁକ୍ତର ଜବାବଦିହି କାର୍ଯ୍ୟ କରୁଅଛ ।

ତୁମ୍ଭର ଫକୀରମୋହନ

To

Babu Chandra Mohan Maharana, B.A.,
Dy. Inspector of Schools, Puri.

ଓଁ

୨୫।୮।୦୨, ରମ୍ଭା

ପ୍ରିୟତମ ଚନ୍ଦ୍ରମୋହନ—

ତୁମ୍ଭେ ଶ୍ରୀଧର—ଏତେ ବଡ଼ କଥାଟା ଜାଣି ଦୁଇ ଚାରିଟା ଧାଡ଼ି ଲେଖି କିପରି ତୁନି ହୋଇ ବସିଅଛ ? ମୁଁ ଦିବାରାତ୍ରି ଏହି କଥା ଚିନ୍ତାକରୁଅଛି । ତୁମେ ମୋହର ପୂର୍ବ ପତ୍ରର ଉତ୍ତର ଦେଇ ଅଛ କି ନାହିଁ କହିପାରୁ ନାହିଁ । ଉତ୍ତର ପାଇଲେ ମୋହର ବକ୍ତବ୍ୟ ବିଷୟ ଲେଖିବି । ମୁଁ ୯ ଦିନ ହେଲା ରମ୍ଭାରେ ଅଛି । ଆଉ ୩।୪ ଦିନ ବାଦ କଟକ ଯିବି । ଇତି ।

ଫକୀର ମୋହନ ସେନାପତି

To

Bubu Chandra Mohan Maharana, B.A.,
Deputy Inspector of Schools, Puri.

ଓଁ

କଟକ

ପ୍ରିୟତମ ଚନ୍ଦ୍ରମୋହନ ୨୭।୯।୦୨

ତୁମ୍ଭେ ନିଶ୍ଚୟ ଜାଣିବ ଶ୍ରୀଧର ସ୍ୱାମୀ ବିଷୟ ମୋହର ଦିବାସ୍ୱପ୍ନ ଚିନ୍ତାର କାରଣ ହୋଇଅଛୁ । ମୋ ଜୀବନର ଅବଶିଷ୍ଟ କାଳ ସାଧ୍ୟାନୁସାରେ ଅର୍ଥ ଏହି ବିଷୟରେ ବ୍ୟୟ କରିବାକୁ ଇଚ୍ଛା କରେଁ । ତୁମ୍ଭେ କି ମୋ ପତ୍ରର ଉତ୍ତର ଦେବ ନାହିଁ ! ସାବଧାନ ହୁଅ ତୁମ୍ଭକୁ ୭ଦିନ ମାତ୍ର ମିଆଦ ଦେଲି । ଏହି ମିଆଦ ମଧ୍ୟରେ ମୋ ପତ୍ରର ଉତ୍ତର ନ ପାଇଲେ ତୁମ୍ଭ ବସାରେ ପହୁଞ୍ଚିବି । ତୁମ୍ଭେ ଇଚ୍ଛାପୂର୍ବକ ଯଦି ବିପଦରେ ପଡ଼ ମୁଁ ନାଚାର ।

୨୭।୯।୧୯୦୨ ଫକୀରମୋହନ ସେନାପତି

To

Babu Chandra Mohan Maharana, B.A.

Deputy Inspector, Puri.

Karup matha [handwritten correction: "ma"], Banaras Camp.

My dear Chandra mohan Babu, 5.11.02

How are you and your wife and children ? I have written you 3 letters to Cuttack which failed to bing back a reply. Mahaprasad parcel received at Darjeeling. How Sudarsan Babu's case succeeded ? Hope this will find all of you in cheer. Wish all of you well. Good wishes

yours,

(Swami) Dayalchand.

To

Babu Chandra Mohan Maharana,

Deputy Inspector of Scbools, Puri.

## 'ଅଦ୍ଭୁତ-ଆଲୟ' ଉଦ୍ଦେଶ୍ୟରେ ତାଙ୍କର ଲିଖିତ ପତ୍ର—

ମୁଁ ଓଡ଼ିଶାର କୂପମଣ୍ଡୂକ ବିଶେଷ । ଏ ଦେଶର କୌଣସି ପଦାର୍ଥ ସହିତ ଅନ୍ୟ ପ୍ରଦେଶର ସମଶ୍ରେଣୀ ପଦାର୍ଥ ତୁଳନା କରିବାର ଅଧିକାର ମୋର ନାହିଁ ।

ଏହି ପ୍ରଦେଶ ମଧ୍ୟରେ ଧବଳେଶ୍ୱରର ଶୋଭା ଅତୁଳନୀୟ । ଏହି ନିସର୍ଗ-ଶୋଭା ମଧ୍ୟରେ 'ନିଭୃତ-ନିଳୟ' ସୁନ୍ଦର ପ୍ରଶସ୍ତ ଲଲାଟରେ ଚନ୍ଦନ ବିନ୍ଦୁ ପରି । କବି ବ୍ୟତୀତ ଅପର ବ୍ୟକ୍ତି ପକ୍ଷରେ ଏହି ମାଧୁର୍ଯ୍ୟ ସମ୍ୟକ୍ ଅନୁଭବ ବା ବର୍ଣ୍ଣନ ସମ୍ଭବ-ପର ନୁହେଁ । ମାତ୍ର ହୃଦୟ ମଧ୍ୟରେ କବିତାର ବୀଜ ନିହିତ ଥିଲେ, ତାହା ଏଠାରେ ଅଙ୍କୁରିତ ହେବ ଓ ବିଷୟ-ଭାବନାବିହୀନ ଲୋକର ମନରେ ପ୍ରସାଦ ଓ ଶାନ୍ତି ଜନ୍ମିବ । ତ୍ରିତାପ-ତପ୍ତ ବ୍ୟକ୍ତିର ଏଠାରେ ଆଗମ ଅବଶ୍ୟମ୍ଭାବୀ ।

ଭୂତ ଓ ବର୍ତ୍ତମାନ ଧବଳେଶ୍ୱର ମଧ୍ୟରେ ମହତ୍ ପ୍ରଭେଦ ଜନ୍ମି ଅଛି । ପୂର୍ବେ ଅହୋରାତ୍ର ଅତିବାହିତ କରି ଏଠାରେ ପ୍ରକୃତିର ପଟ ପରିବର୍ତ୍ତନ ନିରୀକ୍ଷଣ କରିବାର ସମ୍ଭାବନା ନ ଥିଲା । 'ନିଭୃତ-ନିଳୟ' ଏହି ଅଭାବ ପୂରଣ କରି ଆଗନ୍ତୁକ-ମାନଙ୍କୁ ଋଣୀ କରିଅଛି । ଯୁଗେ ଯୁଗେ ଏହି ନିଳୟ ବିରାଜୁଥାଉ ଏବଂ ତ୍ରିଲୋକପଦ ଏହାର ଅଧିବାସୀଙ୍କର ଏହି ସୁରୁଚି ଉତ୍ତରୋତ୍ତର ବର୍ଦ୍ଧିତ ହେଉ ।

ଶ୍ରୀ ଚନ୍ଦ୍ରମୋହନ ମହାରଣା ତା୨୭।୭।୧୯୦୩

No. 904, the 14 th. December, 1903

From Babu Chandramohan Maharana, B.A.,
Deputy Inspector of Schoosl, Balasore.

To Raja Baikunthanath De Bahadur.

Sir,

I have the honor to inform you with pleasure that the silver Atardan of Cuttack filigree work, which you have offered as a priz e to the best girl student of the Barabati Model Girls' School in memory of Lady Frazer's first visit to this town, has been accepted by Her Honor, and I am directed to convey thanks for your generosity. I request the favour of your returning the accompanying paper per bearer after your perusal.

I have etc.
Sd- Chandramohan Maharana,
Deputy Inspector of Schools,
Balasore.

## ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଚରଣେ ଶରଣ—

ପୁରୀ
୧୨-୩-୧୯୦୪

ଶ୍ରୀଯୁକ୍ତ ମାତାଠାକୁରାଣୀଙ୍କ ଶ୍ରୀଚରଣ ତଳକୁ ଅଧୀନ ଚନ୍ଦ୍ରମୋହନର କୋଟି କୋଟି ଭୂମିଷ୍ଠ ଦଣ୍ଡବତ । ନିବେଦନ—ତୁମ ଆଶୀର୍ବାଦରୁ ଆମ୍ଭେମାନେ ନିରାପଦରେ ଏଠାରେ ପହଞ୍ଚିଅଛୁଁ । କେବଳ କେତେକ ମାଲ ଆମ୍ଭମାନଙ୍କ ସଙ୍ଗରେ ଆସିପାରି ନ ଥିଲା, ତହିଁ ଆରଦିନ ଆସିଲା । ଏହା ସୁନ୍ଦର ଓ ଈଶାନଠାରୁ ଶୁଣିଥିବ । ଗତ ମାସରେ ଓ ଏ ମାସରେ ନାନା ଅପଗ୍ଭର ହେବାରୁ ଏଠାରେ ମୋର ଦେହ କିଛି ଅସୁସ୍ଥ ହୋଇଥିଲା । ବର୍ତ୍ତମାନ ଭଲ ଅଛି । ଆମ୍ଭେମାନେ ଯେଉଁଦିନ ପହଞ୍ଚିଲୁଁ ଦୁଇଦିନ ପରେ ଆମ୍ଭମାନଙ୍କର ଇନ୍‌ସପେକ୍ଟର ସାହେବ ଏଠାରେ ପହଞ୍ଚି ଗ୍ଭରିଦିନ ସ୍କୁଲ ତଦାରଖ କରିବାରୁ ଏବଂ ଆଉ କେତେକ କାର୍ଯ୍ୟ ହେତୁରୁ ମୁଁ ଏହା ମଧ୍ୟରେ ଫୁରସତ ପାଇ ନ ଥିଲି । ଇନ୍‌ସପେକ୍ଟର ସାହେବ କାଲି ଏଠାରୁ ଗଲେ ।

ମୁଁ ଆସିବାବେଳେ ତୁମ୍ଭର ଶ୍ରୀଚରଣରୁ ବିଦାୟ ଘେନି ଆସିନାହିଁ । କ୍ଷମା କରିବ । ମୋତେ ସମୟ ଘଟିଲା ନାହିଁ । ପୁଣି ଭୟ ହେଲା ଘରକରଣା କଥାରେ କାଳେ ରାଗଦ୍ୱେଷରେ ତୁମ୍ଭଙ୍କୁ କିଛି କହି ପକାଇବି । ତୁମ୍ଭର ମନରେ କଷ୍ଟ ହେବ ଓ ଆମ୍ଭମାନଙ୍କୁ ତୁମ୍ଭେ ମନେ ମନେ ଗାଳି ଦେଉଥିବ ।

ହେମ ଓ ବୁଢ଼ୀ ଭଲ ଅଛନ୍ତି । ବୁଢ଼ୀର ବଡ଼ କୌତୁକ ଲାଗିଛି ।

ମୁଁ ଆସିବାବେଳେ ଘରଖରଚ ପାଇଁ ଦଶଟଙ୍କା ଦେଇ ଆସିଥିଲି, ପାଇଥିବ । ଧ୍ୟାନ, ଖବରଦାର ଲୋକସାନ କରିବ ନାହିଁ । ଯେଉଁ ମାସରେ ଯେତେ ଘର ଖରଚ ଆବଶ୍ୟକ, ପହିଲା ପୂର୍ବରୁ ମୋତେ ଲେଖିଲେ ମୁଁ ଏଠାରୁ ପଠାଇଦେବି । ଅରକ୍ଷୁଥିର ମୋତେ ଟଙ୍କା ମାଗିବ ନାହିଁ । କାହାଠାରୁ ଧାର କରିବ ନାହିଁ କି କାହାର ପାଉଣା ରଖିବ ନାହିଁ । ଏପରି କରି ମୋ ମନରେ କଷ୍ଟ ଦେବା ତୁମ୍ଭର ଉଚିତ ନୁହେଁ । ସବୁବେଳେ ସାବଧାନ ଥିବ ଓ ଭବିଷ୍ୟତ କଥା ଭାବୁଥିବ । ଆପେ ସାବଧାନ ନ ହେଲେ ଆପଣାର କଷ୍ଟ ହେବ ।

ଆମ୍ଭମାନଙ୍କ ପ୍ରତି ଦୟା ରଖିଥିବ ।
ଚନ୍ଦ୍ରମୋହନ

Commissioner, Orissa Division, Cuttack

Dear Chandramohan Babu, 1-5-1912

I got your letter. The whole affair of the school boys is being enquired into jointly by Mr. Shaw and Mr. Maclean with the S.P. and hope everything will be settled satisfactorily.

I have shown your letter to the new Magistrate. I am sorry to hear of all this.

Yours sincerely,
Sd/ W. Egerton.

To

Babu Chandra Mohan Maharana,
Head Master, Cuttack Normal School, Cuttack

ବଡ଼ ଖେମୁଣ୍ଡି, ପୋ: ଦଗୂପୁଡ଼, ଗଞ୍ଜାମ ୧୯-୫-୧୫

ପ୍ରିୟ ମହାଶୟ !

“ଓଡ଼ିଆ ଓ ନବସମ୍ବାଦ”ରୁ ଆପଣଙ୍କର ପତ୍ନୀବିୟୋଗ-ବାର୍ତ୍ତା ଶ୍ରବଣ କରି ନିରତିଶୟ ଦୁଃଖିତ ହୋଇଅଛୁଁ । ବିଚ୍ଛେଦଯାତନା କିପରି ଦୁର୍ବିସହ ତାହା ଭୁକ୍ତଭୋଗୀ ବ୍ୟତୀତ ଅନ୍ୟ କେହି ସମ୍ୟକ୍ ଅନୁଭବ କରିପାରିବେ ନାହିଁ । ମୁଁ ଭୁକ୍ତଭୋଗୀମାନଙ୍କ ମଧ୍ୟରେ ଅନ୍ୟତମ । ପ୍ରବୋଧ-ପ୍ରଦାନ ମାନବୀୟ ଶକ୍ତିର ଅତୀତ । ଜଗଦୀଶ୍ୱର ଆପଣଙ୍କର ହୃଦୟରେ ଶାନ୍ତିପ୍ରଦାନ ଓ ପରଲୋକଗତ ଆତ୍ମାର ସଦ୍‌ଗତିବିଧାନ କରନ୍ତୁ, ଏହି ପ୍ରାର୍ଥନା କରୁଅଛୁ ।

ଆପଣଙ୍କର
ଶ୍ରୀ ନୀଳମଣି ବିଦ୍ୟାରତ୍ନ ।

ମାନନୀୟ ମହାଶୟ !

ଭବଦୀୟ ସହଧର୍ମିଣୀଙ୍କର ପରଲୋକ-ଗମନ-ବାର୍ତ୍ତା ଶ୍ରବଣ କରି ମୁଁ ନିତାନ୍ତ ମର୍ମାହତ ହୋଇ ରହିଅଛି ।

ଶ୍ରୀ ଚନ୍ଦ୍ରମୋହନ ମହାରଣା, ବି.ଏ,
ସମୀପେଷୁ
ପୋ: ରେମୁଣା, ଜି: ବାଲେଶ୍ୱର

ବଶଂବଦ
ହିପଦ ଗାୟକରତ୍ନ, ତା-୧୯।୫।୧୫

Kydganj, Allahabad 15-1-16

My dear Chandra Mohan Babu,

Please find under a separate cover a copy of Ritu-samgraha as a present from H. H. The Maharaja & Feudatory Chief of Sonepur State. I was enjoined to request you to send your favourable remarks on it to the Mahraaja Sahib directly & also to get them published in some local papers in an encouraging tone. You are also requested to fulfil your kind promise to write some treatise on some special subject which the Maharaja can conveniently dedicate to his worthy wife, the Maharani Sahiba. Besides, we hear of an Oria Grammar prepared by you for students of higher classes, and if you write it, Maharaja will be highly pleased to meet the printing cost of that book, or if you like, you can safely sell the copyright to him.

Really, Chandra Mohan Babu, we expect much from your able pen, which should be instructive to individuals and agreeable to society. I wish I were with you to urge you on in that direction. I do not know if you have a taste for Biology, which, I think, is sadly neglected in Orissa. It ought to be cultivated for our future good—i.e. for the good of Oria nation.

Tomorrow I shall send you per post my short critique on the "Utkala Sammilani" for publication in "Utkala Sahitya" after being duly corrected by you. Please see if my arguments avdanced therein are valid or not. I request you will quite agree with me that the promoters of "Sammilani" ought not to have debarred the Bengali settlers in Orissa from taking a part in the "Sammilani."

I am so-so, and trust you are keeping well.

With my best regards,

I am,
Yours ever
Kisori Mohan.
Swamai Asram
Kydganj.
Allahabad.

To,
Babu
Chandra Mohan Maharana, B. A.
Superintendent Govt. Training School, Cuttack.

ଓଁ

ବଡ଼ଖେମଣ୍ଡି, ପୋ: ଦିଗୁପୁଡ଼ି, ଗଞ୍ଜାମ, ୧।୬।୧୭

ପ୍ରିୟ ମହାଶୟ !

ସୁଦୀର୍ଘ କାଳ ହେଲା ଆପଣଙ୍କର ସାକ୍ଷାତ-ଲାଭରୁ ବଞ୍ଚିତ । ନିକଟରେ ସାକ୍ଷାତର ସମ୍ଭାବନା ନାହିଁ । ଅନେକ ଦିନ ହେଲା ଆପଣଙ୍କର କୌଣସି ସମାଚାର ପାଇନାହିଁ । ଅଭିଧାନ-ଲିଖନ-ବାସନା 'ଉତ୍ଥାୟ ହୃଦିଲୀୟନ୍ତେ' ହେଲା ପ୍ରାୟ ? ସ୍ଥାୟୀ ହୋଇ ରହିବା ଭଳି ଖଣ୍ଡେ ପୁସ୍ତକ ଓଡ଼ିଆଜାତିକୁ, ଉତ୍କଳ-ସାହିତ୍ୟ-ଭଣ୍ଡାରକୁ ପ୍ରଦାନ କରିବାଦ୍ୱାରା ଆପଣାର ସ୍ମୃତିଚିହ୍ନ ରକ୍ଷା କରନ୍ତୁ, ଆପଣଙ୍କୁ ଏହି ପ୍ରାର୍ଥନା କରୁଅଛି । ବର୍ତ୍ତମାନ ମୁଁ ଏକପ୍ରକାର ସୁଖଦୁଃଖରେ କାଳଯାପନ କରୁଅଛି । ସମୟ ସମୟରେ ସ୍ମାରକ ଲିପି ପଠାଇ ଅନୁଗୃହୀତ କରାଇବା ହେଉଥିବେ । ଗାୟକରତ୍ନଙ୍କ ଭକ୍ତିପୂର୍ଣ୍ଣ ନମସ୍କାର ଗ୍ରହଣ କରନ୍ତୁ ।

ଆପଣଙ୍କ ସ୍ନେହାଧୀନ
ଶ୍ରୀ ନୀଳମଣି ବିଦ୍ୟାରତ୍ନ

To

Babu Chandramohan Maharana,
Head Master, Cuttack Training School.
P.O.-Chandnichauk. Dist—Cuttack

କଟକ, ୩୦।୪।୧୯୧୮

ପ୍ରିୟ ଈଶାନ !

ଆମ୍ଭର ସ୍କୁଲ ଆଗାମୀ ୮ ତାରଖ ମଙ୍ଗଳବାର ଦିନ ହୋଇ ବନ୍ଦ ହେବ । ମୁଁ ସେହି ଦିନ ରାତ୍ରରେ ଅଥବା ତାପରଦିନ ଉପରଓଳି Passenger ଟ୍ରେନ୍‌ରେ ଯିବି ।

ବାଲେଶ୍ୱରରେ ଜ୍ୱରର ଅଦ୍ଭୁତ ଲୀଳା । ସମସ୍ତେ ଜ୍ୱସ୍ତ ଓ ଭୀତ । ବଙ୍ଗାଳୀ Civil Surgeonଟି ପଳାଇବ ବୋଲି ଛୁଟି ଦରଖାସ୍ତ କରିଅଛି । Police Supt. ଶ୍ରୀକୃଷ୍ଣ ବାବୁଙ୍କର ୧୬।୧୩ ବର୍ଷର ଝିଅଟିଏ ମରିଗଲା । ରେମୁଣାରେ ମଧ୍ୟ ଜ୍ୱରର ପ୍ରକୋପ ଏହିପରି । କଟକରେ choleraର ପ୍ରକୋପ ଅଧିକ, ଜ୍ୱରର ପ୍ରକୋପ ଟିକିଏ ଊଣା ।

ତୁମ୍ଭର

ଚନ୍ଦ୍ରମୋହନ

To

Dr. Isan Chandra Das

Camp—Dongri, Tumsar—Dongri
Via—Tumsar Road, B.N.Ry.
Dt. Balaghat (C.P.)

33/IC Lansdowne Road
Bhawanipur, Calcutta
22. 3. 1920

ଓଁ ଭଦ୍ରମ୍

ମହାଶୟ !

କଲିକତା-ବିଶ୍ୱବିଦ୍ୟାଳୟ ପକ୍ଷରୁ ଖଣ୍ଡିଏ ଗ୍ରନ୍ଥ ସଙ୍କଳିତ ହେଉଅଛି । ଏଥିରେ ଓଡ଼ିଶାର ପ୍ରାଚୀନ ଓ ଆଧୁନିକ ସାହିତ୍ୟର ଉତ୍କୃଷ୍ଟ ଅଂଶମାନ ସନ୍ନିବେଶିତ

ହେବ, ଓ ଏହାର ଭୂମିକାରେ କବିମାନଙ୍କର ସଂକ୍ଷିପ୍ତ ଜୀବନୀ ପ୍ରଦତ୍ତ ହେବ । ସାହିତ୍ୟ-ଦର୍ପଣକାରଙ୍କ ସମ୍ବନ୍ଧରେ ଆପଣ ଯେଉଁ ପ୍ରବନ୍ଧଟି ଲେଖିଥିଲେ, ସେହି ପ୍ରବନ୍ଧଟି ଏହି ଗ୍ରନ୍ଥରେ ସନ୍ନିବେଶ କରିବାପାଇଁ ମୋର ଏକାନ୍ତ ଅଭିଳାଷ ଅଛି । "ନବୋଦ୍ୟମ"ଟି ପାଇଲେ, ତହିଁରୁ ମଧ୍ୟ କେତେକ ଅଂଶ ସନ୍ନିବେଶ କରନ୍ତି । ଏଣୁ ପ୍ରାର୍ଥନା କରେଁ, ଆପଣ ଅନୁଗ୍ରହ ପୂର୍ବକ 'ନବୋଦ୍ୟମ' ବହି ଖଣ୍ଡିକ ଓ ସାହିତ୍ୟ-ଦର୍ପଣକାରଙ୍କ ସମ୍ବନ୍ଧେ ଲିଖିତ ପ୍ରବନ୍ଧଟି ପଠାଇଦେଲେ ଉପକୃତ ହେବି ।

ଆପଣଙ୍କ ସନ୍ତୋଷରୁ ଏଠାରେ ମୁଁ ଆଜକୁ ପ୍ରାୟ ଦେଢ଼ ବର୍ଷ ହେଲା ଅଛି । ଉତ୍ତର ପ୍ରତୀକ୍ଷାରେ ରହିଲି ।

ଆପଣଙ୍କର

ଶ୍ରୀ ବିନାୟକ ମିଶ୍ର

To

Babu Chandramohan Maharana.
PO-Chandni-Chauk, Dist-Cuttack.



# ଚନ୍ଦ୍ରମୋହନ ଗ୍ରନ୍ଥାବଳୀରେ କେତେକ ପଦର ଅର୍ଥ

## ନବୋଦ୍ୟମ

| ବହିର ପୃଷ୍ଠା | ପଦ | ଅର୍ଥ |
|---|---|---|
| ୧ | ଗୀର | ବାକ୍ୟ |
| ୨ | ଦଣେ | ଦଗରେ |
| ୩ | ଦ୍ୱିଓସ୍ଥ | — |
| ୪ | ମଧୁ-ର | ବସନ୍ତ ଋତୁର |
| ୫ | ପରାଣୀ-ନିକର | ପ୍ରାଣୀମାନେ |
| ୫ | ପରବରେ | ପର୍ବରେ ( ୮ମୀ, ୧୪ଶୀ, ପୂର୍ଣ୍ଣିମା, ଅମାବାସ୍ୟାରେ) |
| ୬ | ଦ୍ୱିରେଫ | ଭ୍ରମର |
| ୭ | ନଳିନ | ଜଳ |
| | (ପରବର୍ତ୍ତୀ ଧାଡ଼ିର) ନଳିନ | ପଦ୍ମ |
| ୯ | ହୃଥା | ହୃଦସ୍ଥ |
| ୧୦ | ପୁଷ୍ପ-ଦାମ | ଫୁଲମାଳା |
| ୧୩ | ସଙ୍କୁଳ | ପରିପୂର୍ଣ୍ଣ |
| | ଲୋକପାଳ | ରାଜା |
| | ପିଧାନ | ଢାଙ୍କୁଣି |
| ୧୪ | ପକ୍ଷିଗଣ | ପକ୍ଷୀମାନେ |
| | ସପଦ୍ | ତତ୍କ୍ଷଣାତ୍ |
| | ପ୍ରହାରୁ | ପ୍ରହାର କରୁ |
| ୧୫ | ତୁହିନ | କାକର |
| | ଅମ୍ଭୋଧେ ! | ହେ ସମୁଦ୍ର ! |
| | ପରମେଷ୍ଠୀ | ବ୍ରହ୍ମା, ବିଷ୍ଣୁ ଓ ଶିବ |
| ୧୬ | ପୟୋଦ-ପଙ୍‌କ୍ତି | ମେଘ ଧାଡ଼ି |
| | ବିଅତ | ବ୍ୟକ୍ତ |
| ୧୭ | ଅନ୍ତଃ-ସଂଜ୍ଞ | ଅନ୍ତରରେ ଚେତନାମସ୍ଥ |
| ୧୮ | ହର୍ଷ-ଅବ୍ଧି-ଅବଧି | ଆନନ୍ଦ-ସାଗରର ସୀମା |
| ୧୯ | ପୋତ-ଶ୍ରେଢା | ନଙ୍ଗର |

| | | |
|---|---|---|
| | ତାରକାସ-ନାଥ | |
| | ପ୍ରସୂତ | ମାତା |
| ୨୦ | ଅଗମେ ( ତେ ? ) ଅଶୁଦ୍ଧ ଅଛେ । | ଅଗ୍ରତେ ହେବ |
| | ଘର୍ଘଟ-ଘର୍ଘଷ୍ଟ | ପେଷିବା ଯନ୍ତ୍ରର ଶବ୍ଦ |
| ୨୧ | ଉତ୍କ୍ଷେପିଲ | ଉପରକୁ ଫିଙ୍ଗିଲ |
| | ଦିନକର-କର | ସୂର୍ଯ୍ୟକିରଣ |
| | ଶକଳ | ଖଣ୍ଡ |
| | ସକଳ | ସମୂହ |
| ୨୨ | ଦେବ | ଶକଳ-ସକଳ |
| | ଶଙ୍କୁ— | କଳା, ମେଘ |
| ୨୩ | ଆସ୍ଯ | ଆସ |
| | ଅରଥ | ଅର୍ଥ |
| | ପ୍ରିୟାକୁଳ | ପ୍ରିୟା ପାଇଁ ବ୍ୟସ୍ତ |
| ୨୬ | ପ୍ରବସ୍ଯାଃ | —— |
| | ବଂଶ-ବଂଶ | ବାଉଁଶର ବଂଶ |
| | ହାଟକ | ସୁନା |
| | ସ୍ୱାପତେୟ | ଧନ |
| ୨୭ | ଉତ୍ସାଦଲ— | ବିନାଶ କଲ |
| ୨୮ | ସଦାନାବ୍ୟ | |
| | ପ୍ରାଂଶୁତମ | ସବୁଠାରୁ ଉଚ୍ଚ |
| | ପରମେଷ୍ଠୀ-ନେତ୍ରେ | ବ୍ରହ୍ମା-ବିଷ୍ଣୁ-ଶିବଙ୍କ ଦୃଷ୍ଟିରେ |
| ୨୯ | ହେଧା— | ତିନି ଭାଗରେ |
| ୩୦ | ତୁରୀୟ | ଚତୁର୍ଥ |
| | ଅବିଷୟ | ଯେଉଁ ବସ୍ତୁ ଇନ୍ଦ୍ରିୟଗ୍ରାହ୍ୟ ନୁହେଁ |
| ୩୧ | ନିରଯ-ନିଲୟ | ନରକର ସ୍ଥାନ |
| | ଦମ୍ଭୋଳି ଖେଳିଲ | ବଜ୍ର ପଡ଼ିଲ |
| ୩୩ | ଭୂଧର-ଶଙ୍କଟ | —— |
| ୩୫ | ଆଳୀ | ଯୁବତୀ ସ୍ତ୍ରୀ |
| ୩୮ | ଅଭ୍ୟାଗମସ୍ଥେ | —— |
| | ରଜତ ଭ୍ରମର | ରୂପାରେ ତିଆରି ଭ୍ରମର |
| ୩୯ | ବାତ-ଯାତ-ଜାତ | —— |

| | | |
|---|---|---|
| | କବର-ପ୍ରବର | —— |
| ୪୦ | ମୁକୁର | ପ୍ରବର |
| | ନିଷଣ୍ଣ | ଆସୀନ, ଉପବିଷ୍ଟ |
| ୪୧ | ଅନିଳ-ରଙ୍ଗେ | ପବନର ବେଗରେ |
| ୪୩ | କୁସୁମ-ଭାଜନ | ଫୁଲ-ଗୁଙ୍ଗୁଡ଼ି |
| | ଯୁବତୀ-ସମିତି | ଯୁବତୀମାନଙ୍କର ସଙ୍ଘ |
| ୪୪ | ପକ୍ଷି-ଗଣ | ପକ୍ଷୀମାନେ |
| ୪୫ | ଯେ ସନ | (ଛପା ଭୁଲ ମନ ହେଉଛି) |
| ୪୬ | ପ୍ରବସ୍ଥାଃ | —— |
| ୪୮ | ବିପ୍ରୟୋଗ | ବିଚ୍ଛେଦ |

## କଥାବଳି-ପଦ୍ୟାଂଶ

| ପୃଷ୍ଠା | ପଦ | ଅର୍ଥ |
|---|---|---|
| ୫୦ | ପୀଡ଼ୁ | କଷ୍ଟ ଦେଉ |
| ୫୧ | ଉପେକ୍ଷି | ତ୍ୟାଗ କରି |
| ୫୨ | ଚୋର | ମନୋହର |
| ୫୩ | ତୁରିତ | ତୁରନ୍ତ |
| | ଝଳଇ ଝଳା | ତୀବ୍ର ଆଲୁଅ ଦିଏ |
| | ଲମ୍ବିକା | ନଇଁ ପଡ଼ିଥିବା |
| | ନୀଡ଼ | ପକ୍ଷୀର ବସା |
| | ହରିତ | ସବୁଜ |
| ୫୮ | ଶୋଭନ | ସୁନ୍ଦର, ଶୋଭାଯୁକ୍ତ |
| ୫୯ | ନିକାଞ୍ଚନେ | ନିରୋଳ ଜାଗାରେ |
| | ପର୍ଣ୍ଣେ | ପତ୍ରରେ |
| | କର-ଯୁଗଳ | ଦୁଇ ହାତ |
| | ପରିଜନ | ଚାକର, ପରିବାରର ଲୋକ |
| ୬୨ | ବକୁଳ | ବଉଳ |
| | ମଞ୍ଜୁଳ | ସୁନ୍ଦର |
| ୬୨ | ଚିରପର୍ଣ୍ଣ | ସବୁଦିନେ ପତ୍ର ଥିବା |
| | ଦାମ | ଗୁଚ୍ଛ |

| | | |
|---|---|---|
| ୬୨ | ସରଣୀ | ବାଟ |
| | ବିଗ୍ରହ | ଦେବମୂର୍ତ୍ତି |
| ୬୩ | ଆତପ | ଟାଣ ଖରା |
| | ଆତପତ୍ର | ଛତା |
| | ପଲ୍ୱଲ-ଜୀବନ | ଗଡ଼ିଆର ପାଣି |
| | ରସାଳ | ଆମ୍ବ (ବିଶେଷ୍ୟ ପଦ) |
| | ଆପାତରେ | ଆରମ୍ଭରେ |
| ୬୪ | ରସାଳ | ବହୁତ ରସଯୁକ୍ତ (ବିଶେଷଣ ପଦ) |
| | ଆସାର | ଅସରା |
| ୬୫ | ରସା | ପୃଥିବୀ |
| | ପଟ୍ଟାର | ଡଙ୍ଗାରେ ପାରହେବା ଲୋକ |
| | ଜନପଦ | ଗାଁ |
| ୬୬ | ତସ୍କର | ଚୋର |
| | ଜୂର | ନଷ୍ଟ |
| ୬୯ | ତାରାପତି | ଚନ୍ଦ୍ର |
| ୭୦ | କୋଦଣ୍ଡ | ଧନୁ |
| | ଅଚରେ | ଯେଉଁମାନେ ଗତି କରିପାରନ୍ତି ନାହିଁ |
| ୭୧ | ପୀୟୂଷ | ଅମୃତ |
| | ଶତବର୍ଗ | ଗେଣ୍ଡୁ ଫୁଲ |
| ୭୨ | କୃଶ | ଶ୍ରେଷ୍ଠ |
| ୭୩ | ଅଳକା | ସ୍ତ୍ରୀମାନଙ୍କର ମୁଣ୍ଡରେ ପିନ୍ଧିବା ଗହଣା |
| ୭୪ | ସଞ୍ଜୀବନୀ | ମଲା ଜନ୍ତୁକୁ ବଞ୍ଚାଇ ଦେବା ପଦାର୍ଥ |
| | ମଞ୍ଜୁଷିକା | ପେଟରା, ପେଡ଼ି |
| ୭୫ | ଧାଡିକାରେ | ଅତି ଶୀଘ୍ର |
| | ଖେଚରେ | ଆକାଶରେ ଉଡ଼ିପାରିବା ଜୀବମାନେ |
| ୭୬ | ବିଘାତକଂ | ବିଘ୍ନକାରୀ |
| | କଶଳସ୍ଥ | କଅଁଳ ପତର |
| | ପୁରଃ ସ୍ଥାନ | ସବା ଆଗରେ ସ୍ଥାନ |
| ୭୮ | ଔତ୍ସୁକ୍ୟ-ବିକାର | ଆଗ୍ରହପୂର୍ଣ୍ଣ ଭାବ |
| | ନିସ୍ୱନ ବା ନିଃସ୍ୱନ | ଶବ୍ଦ |
| | ଶାଟୀ | ଶାଢ଼ୀ |

| | | |
|---|---|---|
| ୭୮ | ଅବଗୁଣ୍ଠକରେ | ଓଢ଼ଣା ଦେଇ |
| ୮୦ | ଦ୍ୱିନ | ଅଧ ସବୁ |
| | ସମାସ | ସବୁ ଏକାଠି ଥିବା |
| ୮୧ | ଭଣି | ପଦ୍ୟ ଶେଷରେ ଭଣିତା |
| | ସପ୍ତ | ଅଗ୍ନି |
| ୮୨ | ଜୃମ୍ଭିଲେ | ହାଇ ମାରଲେ |
| ୮୩ | ମଣ୍ଡଳ | ସମୂହ |
| ୮୪ | ମଞ୍ଜୁଳ | ସୁନ୍ଦର, ମଧୁର |
| ୮୬ | ଅକଞ୍ଚନ | ନଗଣ୍ୟ, ଦରିଦ୍ର (ଲୋକ) |
| | ଉର୍ଜସ୍ୱଳ | ତେଜସ୍ୱୀ |
| ୮୭ | ପତଙ୍ଗି-କୁଳ | ଚଢ଼େଇମାନେ |

---

## କଥାବଳୀ-ଗଦ୍ୟାଂଶ

| | | |
|---|---|---|
| ୯୧ | ସମ୍ପାଦବାର | ସାଇତ ରଖିବାର |
| | କୁତ୍ସା | ମନ୍ଦକଥା |
| ୯୨ | ପ୍ରତିଜ୍ଞା | ଦୃଢ଼ ପଣ, ଶପଥ |
| ୯୩ | ବିଲମ୍ବରେ | ଡେରିରେ |
| ୯୪ | ନର୍ବୋଧ | ବୋକା |
| ୯୫ | ଦର୍ପଣ | ଆର୍ଣି |
| ୯୬ | ଧନ୍ୟ | କୃତାର୍ଥ, ଭାଗ୍ୟବାନ୍ |
| ୯୮ | ବେଦନା | ଦୁଃଖ |
| ୯୯ | ଗଜେ | ୩୬ ଇଞ୍ଚ ବା ୨ ହାତ ଲମ୍ବ |
| ୧୦୦ | ଅନାୟାସେ | ସହଜରେ |
| ୧୦୧ | ନରାଶ୍ରୟ | ଯାହାର କେହି ଆଶ୍ରା ନାହିଁ |
| | ଅନନ୍ତ | ବିଷ୍ଣୁ, ଭଗବାନ୍ |
| ୧୦୨ | ଭଲ୍ଲୁକ | ଭାଲୁ |
| | ପଥିକ | ବାଟୋଇ |
| ୧୦୪ | କ୍ଷୁଧା | ଭୋକ |
| ୧୦୬ | ମର୍କଟ | ମାଙ୍କଡ଼ |
| ୧୦୭ | ବୃକ୍ଷ | ବଡ଼ ଗଛ |

| | | |
|---|---|---|
| ୧୦୭ | ବିସ୍ମିତ | ଆଶ୍ଚର୍ଯ୍ୟାନ୍ୱିତ |
| ୧୦୮ | ପ୍ରୀତ | ଖୁସି |
| | ମିଷ୍ଟାନ୍ନ | ମିଠେଇ |
| ୧୦୯ | ପିପାସା | ଶୋଷ |
| | ଉଦ୍ୟାନ | ବଗିଚ୍ଚ |
| ୧୧୦ | ପରିଣାମେ | ଶେଷରେ |
| | ପ୍ରସ୍ତର | ପଥର |
| ୧୧୪ | ଅନ୍ୱେଷଣ କଲେ | ଖୋଜିଲେ |
| | ପ୍ରଭାତ | ସକାଳ |
| ୧୧୫ | ସମ୍ବୋଧନ କଲି | ଡାକିଲି |
| ୧୧୬ | ଆତ୍ମଗୋପନ | ନିଜକୁ ଲୁଚ୍ଚାଇବା |
| ୧୧୭ | ଅନ୍ତ୍ୟେଷ୍ଟି କ୍ରିୟା | ଲୋକ ମରିବାପରେ ନିଜଲୋକେ ଶାସ୍ତ୍ର ଅନୁସାରେ ସ୍ୱଚ୍ଛ ହେବା ପାଇଁ ୧୦।୧୨ ଦିନ ଯାହା କରନ୍ତି |
| ୧୧୭ | ନିଷ୍ଠୁର | ଖଜଣା ପଡ଼ୁ ନ ଥିବା |
| ୧୧୮ | ଲଗାଇ ଦେଇଛନ୍ତି | ଭାଗରେ ଚାଷ କରିବାକୁ ଦେଇଛନ୍ତି |
| | ପ୍ରତ୍ୟୁଷରେ | ଭୋରରେ |
| ୧୧୯ | ଆକୁଳ | ବ୍ୟସ୍ତ |
| ୧୨୧ | କୁଟୀର | କୁଡ଼ିଆ |
| | ସେତୁ | ପୋଲ |
| ୧୨୨ | ଭୃତ୍ୟ | ଚାକର |
| ୧୨୩ | ସମ୍ମୁଖରେ | ଆଗରେ |
| | ସମ୍ମୁଖରେ | ଆଗରେ |
| ୧୨୪ | ଦଣ୍ଡାୟମାନ | ଠିଆ |
| ୧୨୬ | ଆଘ୍ରାଣ | ଶୁଙ୍ଘିବା |
| | ଘୋଟକ | ଘୋଡ଼ା |
| ୧୨୯ | ସାଷ୍ଟାଙ୍ଗ ଦଣ୍ଡବତ ହୋଇ | ଲମ୍ବ ହୋଇ ତଳେ ନମସ୍କାର କରି |
| ୧୩୦ | ମୁଦ୍ରିତ କରି | ବୁଜି |
| | ପ୍ରଦର୍ଶନ କରି | ଦେଖାଇ |
| | ଆର୍ତ୍ତନାଦ | କଷ୍ଟ ହେରୁ ଶବ୍ଦ |
| | ଚଞ୍ଚୁ | ଥଣ୍ଟ |
| ୧୩୨ | ଅରଣ୍ୟ | ଜଙ୍ଗଲ, ବଣ |

| | | |
|---|---|---|
| ୧୩୫ | ଉତ୍ତୋଳନ | ଉଠାଇବା |
| | ଅମୂଲ୍ୟ | ଦାମିକା |
| ୧୩୬ | କୋଟର | କୋରଡ଼ |
| ୧୩୭ | ରଜକ | ଧୋବା |
| ୧୩୮ | କାରାଗାର | ଜେଲଖାନା |
| | ଉତ୍କୋଚ | ଲାଞ୍ଚ |
| | ବ୍ୟବହାର-ଶାସ୍ତ୍ର | ଆଇନ-ବିଦ୍ୟା |
| ୧୩୯ | କୃତାଞ୍ଜଳି-ପୁଟରେ | ହାତକୁ ଆଞ୍ଜୁଳି କରି, ହାତ ଯୋଡ଼ି |
| | ବଧିର | କାଲା |
| ୧୪୦ | ନିଦର୍ଶନ | ଚିହ୍ନ, ପ୍ରମାଣ |
| ୧୪୧ | କାର୍ଯ୍ୟଗ୍ରାସ୍ତ | କାମର ଦାୟିତ୍ୱ ତୁଲାଉଥିବା |
| | ଆତ୍ମଶ୍ଳାଘାଶୂନ୍ୟ | ନିଜର ପ୍ରଶଂସା କରୁ ନ ଥିବା |
| ୧୪୨ | ସତ୍ୟଲଙ୍ଘନ | କୌଣସି ପ୍ରତିଜ୍ଞା କରିଥିବା କାର୍ଯ୍ୟ ନ କରିବା |
| ୧୪୩ | ସମୀପବର୍ତ୍ତୀ | ନିକଟରେ ଥିବା |
| ୧୪୪ | ପରିହାସରେ | ଥଟ୍ଟାରେ |
| | କୁପିତ ହୋଇ | ରାଗିଯାଇ |
| ୧୪୬ | ଶୟାନ | ଶୋଇଥିବା |
| | ଉତ୍ଥାନ କରି | ଉଠି ପଡ଼ି |
| ୧୪୭ | ସ୍ଖଳିତ ହେବାରୁ | ଖସି ଯିବାରୁ |
| | ଅଧଃ-ପତିତ ହୋଇ | ତଳେ ପଡ଼ି ଯାଇ |
| | ଆରୋହଣ କରି | ଚଢ଼ି |
| ୧୪୮ | ବରାହ | ବାର୍ହା |
| | ଲେହନ କରି | ଚାଟି |
| | ଗଳାଧଃକୃତ ହେବା | ତଣ୍ଟି ତଳକୁ ଯିବା |
| ୧୫୦ | ତୀର୍ଥାଟନ କରୁଁ କରୁଁ | ତୀର୍ଥରେ ବୁଲୁଁ ବୁଲୁଁ |
| ୧୫୧ | ଏକଦା | ଏକ ସମୟରେ |
| | ବିକ୍ଷତ | ଖଣ୍ଡିଆ |
| ୧୫୨ | ଧୂର୍ତ୍ତ-ଶିରୋମଣି | ଠକମାନଙ୍କ ମଧ୍ୟରେ ଶ୍ରେଷ୍ଠ |
| ୧୫୩ | ଜୀବନ୍ ମୃତ | ଜୀବନ୍ତ, ମାତ୍ର ମଲା ପରି |
| | ତଥାସ୍ତୁ | ତାହା ହେଉ |
| | ଅବହିତ | ଅନୁଚିତ |

| | | |
|---|---|---|
| ୧୫୩ | ଅଜ୍ଞାତ-କୁଳଶୀଳ | ଯାହାର ବଂଶ ଓ ଆଚରଣ ଜଣା ନାହିଁ |
| | ଲଘୁମନା | ନୀଚ |
| | ମହାମତ | ଉଚ୍ଚମନା, ଉଦାର |
| ୧୫୪ | ପ୍ରବଞ୍ଚକ | ଠକ |
| | ନିଶ୍ଚେଷ୍ଟ ହୋଇ | ହଲଚଲ ନ ହୋଇ |
| ୧୫୫ | କ୍ଷେତ୍ରପତି | ଜମିର ମାଲିକ |
| | ଲୁକ୍କାୟିତ | ଲୁଚି ରହିଥିବା |
| | ପଞ୍ଚତ୍ୱ ପ୍ରାପ୍ତ ହେଲା | ମରିଗଲା |
| | ଶୂକର | ବାର୍‌ହା |
| | ତୀକ୍ଷ୍ଣ | ମୁନିଆଁ |
| ୧୫୬ | କୋଟି | ଅଗ |
| ୧୫୬ | ଅଭିଭୂତ | ଅଜ୍ଞାନ |
| | ଭାବି | ଭବିଷ୍ୟତ୍‌ |
| ୧୫୭ | ରଜ୍ଜୁ | ଦଉଡ଼ି, ରସି |
| | ଘ୍ରାଣ-ଶକ୍ତି | ଶୁଙ୍ଘିବାର ଶକ୍ତି |
| | ଛିଦ୍ର | କଣା |
| ୧୫୮ | ସମାସୀନ ହୋଇ | ବସି |
| | ସମ୍ଭାଷଣ କରୁଁ କରୁଁ | କଥାବାର୍ତ୍ତା କରୁଥିବା ବେଳେ |
| | ଯଦୃଚ୍ଛା | ଦୈବାତ୍‌ |
| | ବାତୁଳ | ବାଦୁଡ଼ି |
| ୧୫୯ | ସ୍ତନ୍ୟପାୟୀ | ଯେ ନିଜର ପିଲାକୁ ନିଜର ଦୁଧ ପିଆଏ |
| | ପଙ୍‌କ୍ତି-ଭୋଜନ | ଏକା ଧାଡ଼ିରେ ବସି ଖାଇବା |
| ୧୬୦ | ପ୍ରସାରଣ କରି | ବଢ଼ାଇ |
| | ପୁତ୍ରକଳତ୍ର | ପୁଅ ଓ ସ୍ତ୍ରୀ |
| | ଦୁର୍ନିବାର | ଯାହାକୁ ବାରଣ କରିହେବ ନାହିଁ |
| | ଅହରହ | ସବୁବେଳେ |
| | ସମଦର୍ଶୀ | ଯେ ସମସ୍ତଙ୍କୁ ସମାନ ଭାବରେ ଦେଖେ ଓ ବ୍ୟବହାର କରେ |
| | କୃତ୍ରିମ | ନକଲି |
| ୧୬୧ | ପ୍ରତ୍ୟୟ | ବିଶ୍ୱାସ |
| | ପୂଜ୍ୟପାଦ | ମାନନୀୟ, ଯାହାଙ୍କର ପାଦ ପୂଜା କରିବା ଉଚିତ |

| | | |
|---|---|---|
| ୧୬୧ | ମାର୍ଜ୍ଜାର | ବିରାଡ଼ି |
| ୧୬୨ | ବିଳାପ କରୁଁ କରୁଁ | କାନ୍ଦୁ କାନ୍ଦୁ |
| | ଜିଜ୍ଞାସା କଲେ | ପଚାରିଲେ |
| ୧୬୩ | ଦେଶାନ୍ତରବାସୀ | ଅନ୍ୟ ଦେଶରେ ବାସ କରୁଥିବା |
| | ସାଶ୍ରୁ ନୟନରେ | ଲୁହ ବହୁଥିବା ଆଖିରେ |
| ୧୬୪ | ତନ୍ଦ୍ରାରେ | ଘୁମ ଜଦରେ |
| | ନିର୍ବନ୍ଧ ସହକାରେ | ଅତି ଆଗ୍ରହରେ |
| | ନିଗ୍ରହ | ଦଣ୍ଡ, ପୀଡ଼ା, ଲାଞ୍ଛନା |
| ୧୬୬ | ମିତାବ୍ୟୟୀ | ଯେ ଅକାରଣରେ ଖର୍ଚ୍ଚ କରେ ନାହିଁ |
| | ଗାତ୍ରୋତ୍ଥାନ କରିବାକୁ | ଦେହକୁ ଉଠାଇବାକୁ |
| | ଅନ୍ତିମ | ଶେଷ |
| | ସୌହାର୍ଦ୍ଦ | ସ୍ନେହ |
| | ଯତ୍ପରୋନାସ୍ତି | ଯାହା ଅପେକ୍ଷା ଆଉ ଅଧିକ କରିଯାଇ ପାରେ ନାହିଁ |
| | ଅକୃତ୍ରିମ | ନିଖଳ |
| ୧୬୭ | ସହିତ | ଏକତାବଦ୍ଧ |
| | ଶାଲ୍ମଳୀ | ଶିମୁଳି |
| ୧୬୮ | ତିରସ୍କାର କଲେ | ଗାଳି ଦେଲେ |
| | ନିବୃତ୍ତ ହେଲା | ଫେରିଗଲା |
| ୧୭୦ | ତନ୍ମିତ୍ର | ତାହାର ବନ୍ଧୁ |
| | ବାସୁକି | ସାପମାନଙ୍କର ରାଜା |
| ୧୭୧ | ଉପବିଷ୍ଟ ହେଲେ | ବସିଲେ |
| ୧୭୨ | କାନନବିହାରୀ | ବଣରେ ବୁଲୁଥିବା |
| ୧୭୩ | ଧ୍ରୁବ | ନିଶ୍ଚିତ ପଦାର୍ଥକୁ |
| | ଅଧ୍ରୁବ | ଅନିଶ୍ଚିତ ପଦାର୍ଥ |
| | କତିପୟ | ଅଳ୍ପ କେତେକ |
| ୧୭୪ | କଟୂକ୍ତି | କର୍କଶ କଥା |
| | ରୋଷକଷାୟିତ କଟାକ୍ଷ ନିକ୍ଷେପ କରି | ରାଗରେ ଲାଲ ଆଖି ଦେଖାଇ |
| ୧୭୪ | ଆସ୍ଥା | ବିଶ୍ୱାସ |
| | ସଂଘର୍ଷ | ମୁହାଁମୁହିଁ ଧକ୍କା |

| | | |
|---|---|---|
| ୧୭୪ | କଅଣ୍ଟ୍ରୁ | କୌଣସି ପ୍ରକାରେ |
| | କ୍ଷୁବ୍ଧ ଚିତ୍ତରେ | ଦୁଃଖିତ ବା ଘାଣ୍ଟିହେଉଥିବା ମନରେ |
| ୧୭୫ | ବୟଃ-ପ୍ରାପ୍ତ | ସାବାଳକ |
| | ଜ୍ୟେଷ୍ଠ ତାତ | ବାପାଙ୍କର ବଡ଼ଭାଇ |
| | ନିର୍ବାସନରେ | ନିଜ ସ୍ଥାନରୁ ବା ଦେଶରୁ ତଡ଼ା ଖାଇଥିବାରୁ |
| ୧୭୬ | ଅମାତ୍ୟ | ମନ୍ତ୍ରୀ |
| | ଖନକ | ଖୋଳିବା ଲୋକ |
| | ଆଚ୍ଛାଦନ କରି | ଢାଙ୍କି |
| ୧୭୭ | ନିଷାଦୀ | ଶବର ବା ବ୍ୟାଧର ସ୍ତ୍ରୀ |
| | ତାମସୀ | ଗାଢ଼ ଅନ୍ଧାର |
| ୧୭୮ | ସମ୍ୟକ୍ | ପୂର୍ଣ୍ଣ ବା ଉତ୍ତମ ରୂପେ |
| ୧୭୯ | ବାଷ୍ପାକୁଳ ନେତ୍ରରେ | ଲୁହପୂର୍ଣ୍ଣ ଆଖିରେ |
| ୧୮୧ | ମୁଖ ବ୍ୟାଦାନ କରି | ମୁହଁ ମେଲା କରି |
| | ଉଦ୍‌ଗ୍ରୀବତ | ନୂଆକରି ମନରୁ ବାହାର କରିଥିବା |
| | କୁଳୀରକ | କଙ୍କଡ଼ା |
| | ମତ୍ସ୍ୟାଶୀ | ମାଛ ବା ଆମିଷ ଖାଉଥିବା |
| ୧୮୨ | ମକର | ମଗର, କୁମ୍ଭୀର |
| | ନାତିଦୂରବର୍ତ୍ତୀ | ଯାହା ବେଶି ଦୂର ନୁହେଁ |
| ୧୮୩ | ବଣିକ | ବ୍ୟବସାୟୀ ଜୀବ |
| | ଇଷ୍ଟଦେବ | ପରିବାରରେ ପୂଜା ପାଉଥିବା ଦେବତା |
| | ଭାଗ୍ୟ-ବିପର୍ଯ୍ୟୟ | ଭାଗ୍ୟ ଓଲଟିବା, ମନ୍ଦହେବା |
| | ପଟାନ୍ତର | ତୁଳନା |
| | ଆସନ୍ନ କାଳରେ | ମୃତ୍ୟୁର ଠିକ୍ ପୂର୍ବରୁ |
| | ସୌଭ୍ରାତ୍ର | ଭାଇମାନଙ୍କ ମଧ୍ୟରେ ସଦ୍‌ଭାବ |
| ୧୮୪ | ତିରୋହିତ | ଲୁପ୍ତ, ଦୃଷ୍ଟିଭୂତ |
| | ପ୍ଲାବିତ | ବୁଡ଼ି ରହିଥିବା |
| | ଅବଚ୍ଛେଦକ | ଖଣ୍ଡ ଖଣ୍ଡ କରିଦେଉଥିବା, ବାଧା ଦେଉଥିବା |
| | ପକ୍ଷାନ୍ତରେ | ଓଲଟା, ଅନ୍ୟ ପକ୍ଷରେ |
| | ବିଶ୍ରବ୍ଧ ମନରେ | ନିଃଶଙ୍କରେ, ନିର୍ଭୟରେ |
| ୧୮୫ | ଯଥେଚ୍ଛ | ନିଜର ଖୁସି ଅନୁସାରେ |

| | | |
|---|---|---|
| ୧୮୫ | ସୁହୃଦ୍‌ବର୍ଗ | ହିତାକାଙ୍‌କ୍ଷୀ ବନ୍ଧୁମାନେ |
| | ରମଣୀୟ | ସୁନ୍ଦର, ମନୋହର |
| | ଅଧିଷ୍ଠାତ୍ରୀ | ବାସ କରୁଥିବା |
| ୧୮୬ | ସାଷ୍ଟାଙ୍ଗ ପ୍ରଣିପାତ | ଦେହର ଆଠ ଅଙ୍ଗକୁ ତଳେ ଲଗାଇ ଦଣ୍ଡବତ |
| | ଉପାନହ | ଯୋତା, ପାଣ୍ଡୋଇ |
| | ଉପଗତ | ଉପସ୍ଥିତ |
| ୧୮୭ | ମହାଗଜ | ଅତି ବଡ଼ ହାତୀ |
| | ଅନୁଚର | ପଛେ ପଛେ ଯିବା ଲୋକ, ଚାକର |
| | ଅବଗାହନ | ସମୁଦାୟ ଦେହ ବୁଡ଼ାଇ ଗାଧୋଇବା |
| | ମୁମୂର୍ଷୁ | ମରଣ ଅବସ୍ଥାରେ ପଡ଼ିଥିବା |
| | ରୁଧିରକ୍ତ | ରକ୍ତରେ ବୋଳା |
| ୧୮୮ | ବିଭୀଷିକା | ଭୀଷଣ ଭୟ |
| | ଦୌତ୍ୟକାର୍ଯ୍ୟ | ଦୂତର କାର୍ଯ୍ୟ |
| | ଯୂଥ | ଗୋଠ, ପଲ |
| ୧୮୯ | ଯଥାର୍ଥବାଦୀ | ଖାଣ୍ଟି ବା ସତ୍ୟ କଥା କହୁଥିବା |
| | କ୍ଷୁଭିତ-ହୃଦୟ ହୋଇ | ଧାଣ୍ଡି ହେଉଥିବା ହୃଦୟରେ |
| | ସମ୍ପ୍ରତି | ଏବେ, ଆଜକାଲି |
| | ହତାବଶିଷ୍ଟ | ମର ନ ଥିବା ବାକୀ |
| ୧୮୯ | ଗଜାଧିପ | ହାତୀମାନଙ୍କର ରାଜା |
| | ଭ୍ରାମ୍ୟମାନ | ବୁଲୁ ଥିବା, ଘୁରୁଥିବା |
| ୧୯୦ | ଅବନୀ | ପୃଥିବୀ, ଦେଶ |
| | ଆବୃତ୍ତି | ବାରମ୍ବାର କହିବା, ମୁଖସ୍ଥ କରିବା |
| ୧୯୧ | ଅଗ୍ନିସେବା | ନିଆଁ ପୋଉଁବା |
| | ରୁକ୍ଷଭାବରେ | କର୍କଶ ଭାଷାରେ, କ୍ରୋଧରେ |
| | ନିର୍ବିକାରରେ | ସ୍ଥିର ମନରେ, ଶାନ୍ତଭାବରେ |
| ୧୯୨ | ସନ୍ ମାର୍ଗରେ | ଭଲ ବାଟରେ |
| | ଉଲ୍ଲଙ୍ଘନ | ଟପିଯିବା, ଡେଇଁଯିବା |
| ୧୯୩ | ଅନାବୃତ | ଖୋଲା, ମୁକୁଳା, ଫୁଙ୍ଗା |
| | ଯାମିନୀ | ରାତି |

